# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**July 2013**

୬୯ ଭାଗ ୧୨ଶ ସଂଖ୍ୟା ଆଷାଢ଼-ଶ୍ରାବଣ ଜୁଲାଇ- ୨୦୧୩



**ପ୍ରତିଖଣ୍ଡ : ଟ. ୫.୦୦**



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

ଜୁଲାଇ ୨୦୧୩

# ସୂଚୀ

❖ ❖ ❖



**ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।**

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗା
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉଚ୍ଚ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟଶ୍ୱେରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଭୈ ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଭୈଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଳାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ଲେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଚ୍ଚିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର



ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ



# ଶ୍ରୀଜଗନ୍ନାଥାଷ୍ଟକ

ଗୋପଅଙ୍ଗନା–ବଦନ–          କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ          କଲାକ ମୋଦେ ମଗନ
ରମା ଶମ୍ଭୂ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)



ବାମକରେ ମୁରଲିକା          ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି          ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)

ଯେହୁ ମହୋଦଧିତୀରେ          ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି          ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)



ଯେହୁ କୃପା–ପାରାବାର          ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ          ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)

ଯେ ପ୍ରଭୁ କରୁଣାସିନ୍ଧୁ          ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି          ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)



ବିରଞ୍ଚି ଶିରଭୂଷଣ ପଦ୍ମପଲାଶଲୋଚନ

ନିଳାଦ୍ରି ବିହାରୀ ଯେ ଅନନ୍ତ-ମସ୍ତକେ,

ପୟର ଥାପି ଆସୀନ ସଦା ରସାନନ୍ଦ ଘନ

ମଗନ ଶ୍ରୀରାଧାଅଙ୍ଗ-ଆଶ୍ଳେଷ ସୁଖେ,

ପଥୁକି ମୋ' ନୟନପଥେ

ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ

ନମାଗେଁ ନୟନ ନିଧି ବର କାମିନୀ,

ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି

ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,

ପଥୁକି ମୋ' ନୟନ ପଥେ

ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ

ଅଥଳ ପାପପୟୋଧି ଦିଅ ଶୁଖାଇ,

ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ

ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,

ପଥୁକି ମୋ' ନୟନପଥେ

ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)



ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରୟତଃ ଶୁଚିଃ

ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,

ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର

ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,




ପାତକି-ପାତକମାନ ହୁଅଇ ହେଳେ ଦହନ

ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,

ଜୟ ଜୟ ଶ୍ରୀଜଗନ୍ନାଥ

ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)

**(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)**

(ସଂସ୍କୃତରେ ଲିଖିତ 'ଜଗନ୍ନାଥାଷ୍ଟକମ୍'କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୨ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗରେ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)

ସମ୍ପାଦକୀୟ

# ଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରା ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ପରିଚୟ

ପବିତ୍ର ରଥଯାତ୍ରା ବା ଘୋଷଯାତ୍ରା ସବୁବର୍ଷ ପରି ଚଳିତ ବର୍ଷ ମଧ୍ୟ ଅନୁଷ୍ଠିତ ହେଉଅଛି ଏବଂ ଚତୁର୍ଦ୍ଧାମୂର୍ତ୍ତି ନିଜ ସିଂହାସନରୁ ଓହ୍ଲାଇ ସିଂହଦ୍ୱାର ଦେଇ ଜଗତଜନଙ୍କ ସହିତ ଏକାକାର ହୋଇ ଗୁଣ୍ଡିଚା ମନ୍ଦିରକୁ ବିଜେ କରି ନବ ଦିବସ ବ୍ୟାପୀ ସେଠାରେ ଅବସ୍ଥାନ କରିବେ ।

ଏହି ନବ ଦିବସୀୟ ଯାତ୍ରା ହିଁ ଘୋଷଯାତ୍ରା । ଏହି ଯାତ୍ରାର ପୌରାଣିକ ଓ ଶାସ୍ତ୍ରୀୟ ବ୍ୟାଖ୍ୟା ଅନେକାନେକ । ଧର୍ମ ଶାସ୍ତ୍ରରେ ଘୋଷଣା କରି ଦିଆଯାଇଛି ଯେ, ରଥାରୂଢ ଶ୍ରୀଜଗନ୍ନାଥ (ବାମନ)ଙ୍କୁ ଦର୍ଶନ କରିବା ପରେ ଆଉ ପୁନର୍ଜନ୍ମ ହୁଏ ନାହିଁ, ଅର୍ଥାତ୍ ଆତ୍ମାଟି ଅନ୍ୟ ଶରୀର ଧାରଣ କରି ପୁନରାୟ ପୃଥିବୀକୁ ଆସେ ନାହିଁ । ଜନ୍ମଜନ୍ମାନ୍ତରର ବନ୍ଧନରୁ ତାକୁ ମୁକ୍ତି ମିଳିଯାଏ ଏବଂ ସେ ମୋକ୍ଷ ପ୍ରାପ୍ତି କରେ ବା ବୈକୁଣ୍ଠ ପ୍ରାପ୍ତ ହୋଇଥାଏ ।

ଶାସ୍ତ୍ର ପୁରାଣର ଆହୁରି ଅନେକ ତତ୍ତ୍ୱ ଓ ତଥ୍ୟ ଏହି ରଥଯାତ୍ରା ସମ୍ପର୍କରେ ବିଦ୍ୟମାନ ଅଛି । ସେସବୁ ଭିତରକୁ ପ୍ରବେଶ କରିବାର ଧୃଷ୍ଟତା କରିବି ନାହିଁ । କିନ୍ତୁ ଏହି ଘୋଷଯାତ୍ରାର ଜାତୀୟ ମହତ୍ତ୍ୱ ବିଷୟରେ ନକହିଲେ, ରଥଯାତ୍ରାର ପ୍ରାସଙ୍ଗିକତା ଉହ୍ୟ ରହିଯିବ ।

ଦ୍ୱାଦଶ ଶତାବ୍ଦୀରେ ଜଗନ୍ନାଥ ଦେଉଳ ନିର୍ମାଣ କାର୍ଯ୍ୟ ସମାପ୍ତ କରି ସମ୍ରାଟ ଅନଙ୍ଗ ଭୀମ ଦେବ ନିଜକୁ ଶ୍ରୀଜଗନ୍ନାଥଙ୍କ ରାଉତ ବା ରାଜ ପ୍ରତିନିଧି ଏବଂ ସମଗ୍ର ଉତ୍କଳ-କଳିଙ୍ଗ-କୋଶଳ ଅଞ୍ଚଳର ପ୍ରକୃତ ସମ୍ରାଟ୍ ମହାପ୍ରଭୁ ଶ୍ରୀଜଗନ୍ନାଥ ବୋଲି ଉଦାତ୍ତ କଣ୍ଠରେ ତାଙ୍କ ସାମ୍ରାଜ୍ୟର ସକଳ ପ୍ରଜାଙ୍କୁ ସେ ଜଣାଇ ଦେଇଥିଲେ । ସେହି ସମୟରୁ ବା ତାଙ୍କ ପିତା ସମ୍ରାଟ ଚୋଡଗଙ୍ଗ ଦେବଙ୍କ ସମୟରୁ ଏହି ଘୋଷଯାତ୍ରା ଆରମ୍ଭ କରାଯାଇଛି । ତେଣୁ ବର୍ଷକରେ ଅନ୍ତତଃ ଏହି ୯ ଦିନ ଉତ୍କଳର ଗଙ୍ଗ ସାମ୍ରାଜ୍ୟର ଉତ୍କର୍ଷତା, ପ୍ରଗତି ତଥା ଉନ୍ନତ ଶିଳ୍ପ, ବାଣିଜ୍ୟ, ସଂସ୍କୃତିର ଚିହ୍ନ ଜଗତଜନଙ୍କ ନିକଟରେ ପ୍ରତ୍ୟକ୍ଷ କରାଇବା ପାଇଁ ଗଙ୍ଗ ବଂଶୀୟ ସମ୍ରାଟମାନେ ଯତ୍ନ କରିଥିଲେ । ହୁଏତ ଏହି ଯାତ୍ରାର ଉଦ୍ଦେଶ୍ୟ ଏହା ହିଁ ହୋଇପାରେ । ମାତ୍ର ତା'ଠାରୁ ଅଧିକ ହେଉଛି, ପାର୍ଥିବ ସହିତ ଅପାର୍ଥିବର ଭେଟ ଏବଂ ସମାଜର ସର୍ବୋଚ୍ଚ ଆସନରେ ଆସୀନ ମହାମହିମ ସମ୍ରାଟ୍ ମଧ୍ୟ ଝାଡୁଦାରଠାରୁ ଅଧିକ କିଛି ନୁହନ୍ତି, ଏହା ପ୍ରତିପାଦିତ କରିବା । ଅର୍ଥାତ୍ କେବଳ ବ୍ରହ୍ମ ସତ୍ୟ, ବ୍ରହ୍ମ ହିଁ ମହାନ୍, ଅନ୍ୟସବୁ ଅପାର୍ଥିବ ବସ୍ତୁ ଅସତ୍ୟ, ଗୌଣ ଏବଂ କ୍ଷଣିକ ।

ଓଡ଼ିଆ ଜାତିର ଏହି ସମର୍ପଣ ଭାବ ଅର୍ଥାତ୍ ନିଜକୁ ଜଗତର ସକଳ ମଣିଷ ଭିତରେ ସାମାନ୍ୟ ଜଣେ ବୋଲି ଜଣାଇ ଦେବାର ବ୍ୟବସ୍ଥା ବିଶ୍ୱରେ କ୍ୱଚିତ ଦେଖିବାକୁ ମିଳିଥାଏ । ତେଣୁ ରଥଯାତ୍ରା ବା ଘୋଷଯାତ୍ରା ବିଶ୍ୱର ସକଳ ଜାତିମାନଙ୍କ ଭିତରେ ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ସନ୍ତକ ବା ପରିଚୟ କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଜିର ଏହି ପବିତ୍ର ରଥଯାତ୍ରା ଅବସରରେ ବିଶ୍ୱର ସକଳ ପ୍ରାଣୀଙ୍କ ସୁଖ, ସମୃଦ୍ଧି ତଥା ଶାନ୍ତି କାମନା କରି 'ଉତ୍କଳ ପ୍ରସଙ୍ଗ' ତା'ର ପାଠକମାନଙ୍କୁ ନିଜ ଜାତିର ଏହି ମହନୀୟ ପରମ୍ପରା ପାଇଁ ଗୌରବାନ୍ୱିତ ହେବାକୁ ପ୍ରତ୍ୟେକ ଓଡ଼ିଆଙ୍କୁ ସୂଚାଇ, ଏହି ରଥଯାତ୍ରା ଅବସରରେ ନିଜକୁ ଆହୁରି ଅଧିକ ଓଡ଼ିଆ ପ୍ରାଣ ଭାବେ ଗଢି ତୋଳିବା ପାଇଁଓଡ଼ିଶାର ପ୍ରତ୍ୟେକ ନରନାରୀଙ୍କୁ ଆମର ଆହ୍ୱାନ ।

ଓଡ଼ିଶା ଓ ଓଡ଼ିଆ ଜାତି ଆହୁରି ଅଧିକ ପ୍ରଗତି କରୁ, ବିକାଶ ମାର୍ଗରେ ଧାବମାନ ହେଉ ଏବଂ ସୁଖ, ଶାନ୍ତି ଓ ସମୃଦ୍ଧି ପ୍ରାପ୍ତ ହେଉ, ଏହି ଶୁଭ ଅବସରରେ ଏତିକି କାମନା ।

**ବନ୍ଦେ ଉତ୍କଳ ଜନନୀ**

# ଉତ୍ତରାଖଣ୍ଡର ଚାରିଧାମ ତୀର୍ଥଯାତ୍ରୀଙ୍କ ଦିବଂଗତ ଆତ୍ମା ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ଏବେ ଏବେ ଭାରତର ଉତ୍ତରାଖଣ୍ଡରେ ଘଟିଯାଇଛି ପ୍ରକୃତିର ପ୍ରଳୟ ଲୀଳା । ସୃଷ୍ଟି ହୋଇଥିଲା ମହାଜଳ ପ୍ଲାବନ ଓ ଭୂସ୍ଖଳନ । ପର୍ବତମାନଙ୍କରୁ ଛୁଟିଥିଲା ମହାବନ୍ୟାର ପ୍ରବଳ ଜଳସ୍ରୋତ ଓ ଭୂସ୍ଖଳନ ଯୋଗୁଁ ହିମାଳୟର ବକ୍ଷ ବିଦୀର୍ଣ୍ଣ ହୋଇ ବିରାଟ ବିରାଟ ପ୍ରସ୍ତର ଖଣ୍ଡ ଜନବସତି ଦିଗରେ କ୍ଷିପ୍ର ଗତିରେ ଧାବିତ ହୋଇଥିଲା । ଫଳରେ ଉତ୍ତରାଖଣ୍ଡର ବହୁ ସହସ୍ର ନରନାରୀଙ୍କ ସହିତ ଭାରତର ବିଭିନ୍ନ ଅଞ୍ଚଳରୁ ଯାଇଥିବା ହଜାର ହଜାର ତୀର୍ଥଯାତ୍ରୀ ଏଥିରେ ପ୍ରଭାବିତ ହେଲେ । ଓଡ଼ିଶା ସମେତ ବିଭିନ୍ନ ଅଞ୍ଚଳର ସହସ୍ରାଧିକ ଚାରିଧାମ ତୀର୍ଥଯାତ୍ରୀ ପ୍ରାଣ ହରାଇଛନ୍ତି । ଅନେକ ଆହତ ହୋଇଛନ୍ତି ଏବଂ ଆହୁରି ଅଧିକ ନିଖୋଜ ରହିଛନ୍ତି ।

ତୀର୍ଥଯାତ୍ରୀ ତଥା ଉତ୍ତରାଖଣ୍ଡର ସମସ୍ତ ଦିବଂଗତ ଜନସାଧାରଣଙ୍କ ଅମର ଆତ୍ମା ପ୍ରତି ଓଡ଼ିଶାବାସୀଙ୍କ ସହିତ ଆମେ ମଧ୍ୟ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛୁଁ । ଆହତମାନଙ୍କର ଆଶୁ ଆରୋଗ୍ୟ କାମନା କରି ନିଖୋଜମାନଙ୍କର ସଠିକ୍ ଖବର ଶୀଘ୍ର ତାଙ୍କ ଆତ୍ମୀୟ ସ୍ୱଜନଙ୍କ ନିକଟରେ ପହଞ୍ଚୁ, ସେଥିପାଇଁ ଈଶ୍ୱରଙ୍କ ନିକଟରେ 'ଉତ୍କଳ ପ୍ରସଙ୍ଗ' ପ୍ରାର୍ଥନା କରୁଅଛି ।

ସମ୍ପାଦକ, ଉତ୍କଳ ପ୍ରସଙ୍ଗ



# କିମ୍ବଦନ୍ତୀରେ ଶ୍ରୀଜଗନ୍ନାଥ

**ପ୍ରଫେସର ବୈଷ୍ଣବ ଚରଣ ସାମଲ**

ଶ୍ରୀଜଗନ୍ନାଥ କିଏ କ'ଣ କାହିଁକି କେବେ ଏସବୁ ତାତ୍ତ୍ୱିକ ପ୍ରଶ୍ନକୁ ନେଇ ଏ ପ୍ରବନ୍ଧର ପରିକଳ୍ପନା ନୁହେଁ, କିମ୍ବଦନ୍ତୀରେ ଓ ଲୋକ ବିଶ୍ୱାସରେ ଶ୍ରୀଜଗନ୍ନାଥ କିପରି ଲୋକଙ୍କ ନିକଟବର୍ତ୍ତୀ ହୋଇଯାଇଛନ୍ତି ଓ ସେହି ବିଶ୍ୱାସକୁ ଯେତେ ଯୁକ୍ତି ତର୍କ ଓ ତଥ୍ୟ ବଳରେ ଅସାର, ଅନୈତିହାସିକ ଏବଂ ଅନ୍ଧବିଶ୍ୱାସ ବୋଲି ପଣ୍ଡିତମାନେ ଯେତେ କହିଲେ ମଧ ତାହା ଲୋକଙ୍କୁ ଆଦୌ ପ୍ରଭାବିତ କରୁ ନାହିଁ ବା ସେମାନଙ୍କ ବିଶ୍ୱାସରୁ ସେମାନେ ଦୂରେଇ ଯାଇ ନାହାନ୍ତି । ବରଂ ସେହି ବିଶ୍ୱାସକୁ ଜୀବନର ସଂପଦ ରୂପେ ଗ୍ରହଣ କରୁଛନ୍ତି । ଲୋକ ବିଶ୍ୱାସରୁ ଓ ଲୋକ ମାନସିକତାରୁ କିମ୍ବଦନ୍ତୀର ସୃଷ୍ଟି । ଲୋକ ମାନସିକତା ଏପରି ଏକ ଶକ୍ତିଶାଳୀ ଉପାଦାନ ଯାହା ସ୍ୱତଃ ଗଢ଼ି ଦିଏ କାହାଣୀ ଅଲୌକିକ ପ୍ରସଙ୍ଗକୁ ନେଇ ଓ ତାହା ହୋଇଯାଏ କିମ୍ବଦନ୍ତୀ । ସେହି କିମ୍ବଦନ୍ତୀରେ ଐତିହାସିକ ସତ୍ୟତା ଅଛି ବା ନାହିଁ ସେ ନେଇ ଲୋକେ ଆଦୌ ମୁଣ୍ଡ ଖେଳାନ୍ତି ନାହିଁ। ସେମାନଙ୍କ ବିଶ୍ୱାସ ସକଳ ଯୁକ୍ତି ତର୍କର ଉର୍ଦ୍ଧ୍ୱରେ । ସେହି କିମ୍ବଦନ୍ତୀରେ ଯେ ଇତିହାସର ସ୍ପର୍ଶ ନଥାଏ, ନୁହେଁ । ତାକୁ ଆବିଷ୍କାର କରିବା ହୁଏତ କଷ୍ଟସାଧ । ମାତ୍ର ଇତିହାସ ନାହିଁ ବୋଲି କହି ହୁଏ ନାହିଁ । ଲୋକେ ଯେଉଁ କିମ୍ବଦନ୍ତୀ ଗଢ଼ି ଦିଅନ୍ତି ଓ ଯାହା ଯୁଗକୁ ଯୁଗକୁ ଲୋକ ମୁଖରେ ଗଡି ଆସେ ତାହା ସେମାନଙ୍କ ଧର୍ମ ବିଶ୍ୱାସରୁ ସୃଷ୍ଟି ହୁଏ । ଆଦିମ ଧର୍ମ ମୁଖ୍ୟତଃ କୌଣସି ଅଲୌକିକ ଶକ୍ତି ବା ବାହ୍ୟ ଶକ୍ତିରୁ ସୃଷ୍ଟ । ଏହି ଆଦିମ ଧର୍ମର ସୃଷ୍ଟି ଜୀବବାଦ, ପ୍ରାଣବାଦ, ଫେଟିସବାଦ, ମାନାବାଦ ଓ ଟୋଟେମ୍‌ବାଦ ରୂପରେ ଦେଖିବାକୁ ମିଳିଥାଏ । (ମହାପାତ୍ର ଶ୍ୟାମ ସୁନ୍ଦର: ଲୋକ ଧର୍ମ ଓ ଓଡ଼ିଆ ଲୋକ ସାହିତ୍ୟ) । ଜୀବବାଦରେ ଗୋଟିଏ ଆତ୍ମା ବା ଜୀବ ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଥିବାରୁ ଲୋକେ ବାଘ, ବୃକ୍ଷଲତା, ନାଗ, ସମୁଦ୍ର, ପର୍ବତ, ନଦୀ, ପଶୁପକ୍ଷୀଙ୍କୁ ପୂଜା କରନ୍ତି ମାତ୍ର ପ୍ରାଣବାଦରେ ଲୋକେ ବିଶ୍ୱାସ କଲେ ଏକ ଅଶରୀରୀ ଅଲୌକିକ ସତ୍ତାରେ, ଯାହାକୁ କୁହାଗଲା ଆତ୍ମା । ଫେଟିସ୍‌ବାଦରେ ବସ୍ତୁରେ ଆତ୍ମାକୁ ଆରୋପିତ କରି କାର୍ଯ୍ୟ ସାଧନ ପାଇଁ ଉଦ୍ୟମ କରାଗଲା । ମାନାବାଦରେ ଅତିପ୍ରାକୃତିକ ଶକ୍ତିର ପ୍ରକାଶ, ଟୋଟେମବାଦରେ ପଶୁପକ୍ଷୀ ସର୍ପ ଆଦିଠାରୁ ବଂଶର ଉତ୍ପତ୍ତି ହେତୁ ସେହି ସେହି ଗୋତ୍ରର ଲୋକେ ସେହି ସେହି ଜୀବଙ୍କୁ ଉପାସନା କରିବାର ବିଧି, ପ୍ରକୃତିବାଦରେ ପ୍ରକୃତିକୁ ଈଶ୍ୱର ଭାବରେ ଆରାଧନା ପ୍ରାଧାନ୍ୟ ଲାଭ କଲା । ଏସବୁ ଧର୍ମ ବିଶ୍ୱାସରୁ ଉଦ୍‌ଭବ ହେଲା ମାନବତାବାଦୀ ଧର୍ମ ବିଶ୍ୱାସ । ମାନବୀୟ ଗୁଣରେ ଈଶ୍ୱରଙ୍କୁ ଭୂଷିତ କରି ଉପାସନା କରିବା ହେଲା ଏହି ଧର୍ମର ମୁଖ୍ୟ ବିଶ୍ୱାସ । ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଚିନ୍ତା କଲାବେଳେ ଆମେ ତାଙ୍କଠାରେ ମୁଖ୍ୟତଃ ମାନବବାଦ ଓ ଆଧାତ୍ମବାଦର ସମନ୍ୱୟ ହୋଇଥିବା ଲକ୍ଷ୍ୟ କରୁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଜଗନ୍ନାଥ ଆଦିମ ଧର୍ମ ବିଶ୍ୱାସରୁ ସୃଷ୍ଟ ନୁହନ୍ତି । ମାନବବାଦୀ ଧର୍ମ, ଆଧାତ୍ମବାଦୀ ଧର୍ମ ଓ ପ୍ରକୃତିବାଦୀ ଧର୍ମର ସମନ୍ୱୟରୁ ହିଁ ତାଙ୍କର ଉଦବର୍ତ୍ତନ । ପ୍ରକୃତିବାଦରେ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଜଳ, ଆକାଶ ଆଦି ସହିତ ବୃକ୍ଷ ମଧ ଉପାସିତ । ଜଗନ୍ନାଥ ଦାରୁବ୍ରହ୍ମ । ଦାରୁ ଉପାସନାରୁ ଜଗନ୍ନାଥଙ୍କର ବିବର୍ତ୍ତନ । ଜଗନ୍ନାଥଙ୍କ ପତ୍ନୀ ଲକ୍ଷ୍ମୀ । ସେ ବରୁଣ କନ୍ୟା । ତେଣୁ ଜଗନ୍ନାଥଙ୍କର ସମୁଦ୍ର ଅର୍ଥାତ୍ ଜଳ ବ୍ରହ୍ମଙ୍କ ସହିତ ସଂପର୍କ । ସ୍ନାନ ଯାତ୍ରା ବେଳେ ଜଗନ୍ନାଥ ସୁବର୍ଣ୍ଣ କୂପର ଜଳରେ ସ୍ନାନ କରନ୍ତି । ନରେନ୍ଦ୍ର ସରୋବରରେ ଚାପ ଖେଳନ୍ତି । ଅତଏବ ଦାରୁବ୍ରହ୍ମ ଓ ଜଳବ୍ରହ୍ମର ସେ ଏକ ସମନ୍ୱିତ ବିଗ୍ରହ ।

ଜଗନ୍ନାଥ ମାନବାୟିତ । ତେଣୁ ସେ ମଣିଷଙ୍କ ପରି ବେଶ ହେଲେ, ଶୟନ କଲେ (ପହୁଡ଼), ଅବକାଶ କଲେ, କାଠିଲାଗି କଲେ, ମଣୋହି କଲେ । ସେ ମଧ ରାଜା ହେଲେ । ତେଣୁ ତାଙ୍କୁ କୁହାଗଲା ମଣିମା ମହାବାହୁ । ସେ ପୁଣି ପତିତମାନଙ୍କୁ ପାବନ କଲେ ବୋଲି ହେଲେ ପତିତପାବନ । ସେ ପୁଣି ହେଲେ ମୈତ୍ରୀଦେବ । ଜାତି

ବର୍ଣ୍ଣ ଧର୍ମ ନିର୍ବିଶେଷରେ ସେ ସମସ୍ତଙ୍କର ବନ୍ଧୁ ପାଲଟି ଗଲେ । ମୈତ୍ରୀ ଧର୍ମର ସେ ହେଲେ ଆଦର୍ଶ । ସେ ପୁଣି ରଥଯାତ୍ରା ବେଳେ ମାଉସୀ ଘରକୁ ଯାଇ ପୋଡ଼ପିଠା ଖାଇଲେ, ଗୁଣ୍ଡିଚା ଦେବୀଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା ପାଇଁ ଗୁଣ୍ଡିଚା ମନ୍ଦିରରେ ସାତଦିନ କଟେଇଲେ । ଏସବୁ ତାଙ୍କର ମାନବ ଧର୍ମ, ମାନବୀୟିତ କର୍ମ । ଏହା ମଧ୍ୟରେ ଆଧ୍ୟାତ୍ମବାଦୀ ଦୃଷ୍ଟିକୋଣରୁ ତାଙ୍କୁ କୁହାଗଲା ସେ ରୂପ ହୋଇ ମଧ୍ୟ ଅରୂପ, ବ୍ୟକ୍ତ ହୋଇ ମଧ୍ୟ ଅବ୍ୟକ୍ତ, ଅପୂର୍ଣ୍ଣ ହୋଇ ମଧ୍ୟ ପୂର୍ଣ୍ଣ, ସ୍ଥୂଳ ହୋଇ ମଧ୍ୟ ଶୂନ୍ୟ ଶୂନ୍ୟ ମହାଶୂନ୍ୟ । ସେ ବେଦେଚ ପୁରୁଷୋତ୍ତମ । ସେ ସ୍ୱୟଂ ପରଂବ୍ରହ୍ମ । ଜଗନ୍ନାଥ ସ୍ୱୟଂ ପରଂବ୍ରହ୍ମ ହେଲେ ମଧ୍ୟ ସମୟ କ୍ରମେ ତାଙ୍କଠାରେ କୃଷ୍ଣତ୍ୱ ଓ ରାମତ୍ୱକୁ ପ୍ରୟୋଗ କରି ଦିଆଗଲା । ସକଳ ଧର୍ମର ସେ ପ୍ରତୀକ ହୋଇଗଲେ । ତାଙ୍କୁ ମଧ୍ୟ ଆଦିବାସୀ ଶବର ଦେବତା କୁହାଗଲା । ଏପରି ଦେବତାଙ୍କୁ ନେଇ ଲୋକ ବିଶ୍ୱାସରେ ସେ ହୋଇଗଲେ ନାନା ରୂପ, ନାନା ଭାବର ଦ୍ୟୋତକ । ଲୋକେ ମଧ୍ୟ ତାଙ୍କୁ ନେଇ କହିଲେ:

ଜଗନ୍ନାଥଙ୍କର ବଢ଼େଇ
କାହାକୁ ଦିଅନ୍ତି କ୍ଷୀରି ଖେଚଡ଼ି
କାହାକୁ ଦିଅନ୍ତି ଗଢ଼େଇ ।

ଜଗନ୍ନାଥଙ୍କୁ ନେଇ କେତେ କେତେ କିମ୍ବଦନ୍ତୀ ତିଆରି ହୋଇଗଲା । ସେହିସବୁ ମଧ୍ୟରୁ କେତେ ମଧ୍ୟ ମିଥ୍‌ରେ ରୂପାନ୍ତରିତ ହୋଇ ନୂତନ ନୂତନ ଚେତନା ସୃଷ୍ଟି କଲା । ଜଗନ୍ନାଥଙ୍କ ଆଦି ରୂପ ଓ ତାଙ୍କର ଦେଉଳ ତୋଳା ସଂପର୍କରେ ଇତିହାସ ଏବେ ମଧ୍ୟ ସ୍ପଷ୍ଟ ନୁହେଁ । କିଏ କହେ ସେ ପ୍ରଥମେ ପଥର ମୂର୍ତ୍ତି ଥିଲେ ଓ ବହୁ ପରେ ହେଲେ ଦାରୁ ମୂର୍ତ୍ତି (ରାଜଗୁରୁ ସତ୍ୟନାରାୟଣ) । ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗକୁ ମଧ୍ୟ ଇତିହାସ କୁହାଗଲା ନାହିଁ । ପୁରାଣ ବର୍ଣ୍ଣନା ଅନୁଯାୟୀ ଇନ୍ଦ୍ରଦ୍ୟୁମ୍ନ ମାଳବର ରାଜା । ସେ ସପରିବାର ବ୍ରାହ୍ମଣ ବିଦ୍ୟାପତିଙ୍କୁ ସାଙ୍ଗରେ ନେଇ ପୁରୀରେ ପହଞ୍ଚିଲେ । ବିଷ୍ଣୁଙ୍କ ଯୋଗ୍ୟ ମନ୍ଦିରଟିଏ ଗଢ଼ିବାକୁ ଇଚ୍ଛା ପ୍ରକାଶ କଲେ । ମନ୍ଦିରଟିଏ ଗଢ଼ିଲେ ମଧ୍ୟ । କୁଆଡ଼େ ସେହି ମନ୍ଦିର ତିଆରିରେ ଅଂଶ ଗ୍ରହଣ କରିଥିବା ଶ୍ରମିକମାନେ କୂର୍ମ ପାଲଟି ଗଲେ । ସେମାନେ ରହିଛନ୍ତି ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ । ଲୋକେ ଗୋଟାଏ ଧର୍ମ ବିଶ୍ୱାସରେ ସେମାନଙ୍କୁ ଖାଇବାକୁ ଦିଅନ୍ତି । ମନ୍ଦିରରେ ପ୍ରଭୁଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବାକୁ ଚିନ୍ତା କଲେ । ବିଦ୍ୟାପତିଙ୍କୁ ସେ ପଠାଇଲେ ବିଷ୍ଣୁମୂର୍ତ୍ତି କେଉଁଠି ଉପାସିତ ହେଉଛନ୍ତି ଖୋଜି ଆଣିବାକୁ । ବିଦ୍ୟାପତି ଶବର ପଲ୍ଲୀରେ ପହଞ୍ଚି ଶବର ରାଜା ବିଶ୍ୱାବସୁ ନୀଳମାଧବଙ୍କୁ ପୂଜା କରୁଥିବା ଜାଣିଲେ । ସେ ବିଶ୍ୱାବସୁଙ୍କ କନ୍ୟା ଲଳିତାକୁ ବିବାହ କଲେ ଓ ଲଳିତା ସାହାଯ୍ୟରେ ସେ ବିଶ୍ୱାବସୁଙ୍କ ସହିତ ଯାଇ ନିର୍ଜନ ସ୍ଥାନରେ ନୀଳମାଧବଙ୍କୁ ଦେଖିଲେ । ତତ୍‌ପରେ ସେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି ସଂବାଦ ଦେବାରୁ ରାଜା ସସୈନ୍ୟ ସେଠାକୁ ଗଲେ । ବିଶ୍ୱାବସୁଙ୍କ ସହିତ ତାଙ୍କର ଯୁଦ୍ଧ ହେଲା । ନୀଳମାଧବ ଅନ୍ତର୍ଦ୍ଧାନ ହୋଇଗଲେ । ଶୂନ୍ୟବାଣୀ ହେଲା ସେ ବାଙ୍କିମୁହାଣ ନିକଟରେ ଦାରୁ ରୂପରେ ଭାସୁଛନ୍ତି । ସେହି ଦାରୁକୁ ଆଣି ବିଗ୍ରହ କରିବାକୁ କହିଲେ । ରାଜ ସୈନ୍ୟ ଦାରୁ ଆଣି ପାରିଲେ ନାହିଁ । ପୁନଶ୍ଚ ଶୂନ୍ୟବାଣୀ ହେଲା ଯେ ରାଜା, ବ୍ରାହ୍ମଣ ବିଦ୍ୟାପତି ଓ ଶବର ବିଶ୍ୱାବସୁ ତିନିଜଣ ମିଳିତ ଭାବରେ ଧରିଲେ ଦାରୁ ଆସିବ । ତିନିଜଣ ଶତ୍ରୁତା ଭୁଲି ଦାରୁ ଆଣିଲେ ମାତ୍ର ବଢ଼େଇମାନେ ଦାରୁକୁ ଛେଦନ କରିପାରିଲେ ନାହିଁ । ସେମାନଙ୍କର ବାରିସି ଓ ନିହାଣ ଭାଙ୍ଗିଗଲା । ଏହି ସମୟରେ ଜଣେ ବୃଦ୍ଧ ମହାରାଣା ପହଞ୍ଚି ସେ ଦାରୁ ଗଢ଼ି ଦେବେ ବୋଲି କହିଲେ । ସର୍ତ୍ତ ରହିଲା ଗୋଟିଏ ନିବୁଜ ଘରେ ସେ ମୂର୍ତ୍ତି ଗଢ଼ିବେ । ଦୀର୍ଘ ଏକୋଇଶି ଦିନ ପାଇଁ କେହି ସେଠାକୁ ଯିବେ ନାହିଁ । ସର୍ତ୍ତ ଅନୁସାରେ ବୃଦ୍ଧ ଅନନ୍ତ ମହାରଣା ଏକାକୀ ଦାରକୁ କାଖରେ ଜାକି ସେହି ଘରକୁ ଗଲେ । ଦ୍ୱାର ବନ୍ଦ ହେଲା । ବାହାରେ ସୈନ୍ୟସାମନ୍ତ ଜଗି ରହିଲେ । ପନ୍ଦର ଦିନ ବେଳକୁ ସେହି କୋଠରୀ ଭିତରୁ କୌଣସି ଶବ୍ଦ ଶୁଭିଲା ନାହିଁ । ରାଣୀ ଗୁଣ୍ଡିଚା ବ୍ୟସ୍ତ ହୋଇ ପଡ଼ିଲେ । ବୃଦ୍ଧ ବୋଧ ହୁଏ କୋଠରୀ ଭିତରେ ମରିଗଲା । ତାଙ୍କ ବାଧରେ ରାଜା ଦ୍ୱାର ଖୋଲି ଦେଲେ । ଆଶ୍ଚର୍ଯ୍ୟ କଥା ଯେ ମହାରଣା ନାହାନ୍ତି । ତିନୋଟି ଅପୂର୍ଣ୍ଣ ମୂର୍ତ୍ତି ଥୁଆ ହୋଇଛି । ସେମାନେ ହିଁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଶୂନ୍ୟବାଣୀ ହେଲା ସେହି ମୂର୍ତ୍ତିକୁ ମନ୍ଦିରରେ ରଖି ପୂଜା କରିବା ପାଇଁ । ଏଥର ପୁଣି କାହାଣି ଗତି କଲା ଭିନ୍ନ ଦିଗରେ । ମନ୍ଦିରକୁ ପ୍ରତିଷ୍ଠା କରିବା ପାଇଁ ଇନ୍ଦ୍ରଦ୍ୟୁମ୍ନ ଗଲେ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ପାଇଁ । ବ୍ରହ୍ମାଙ୍କୁ ନେଇ ଆସିଲା ବେଳକୁ ଅନେକ ଯୁଗ ବିତି ଗଲାଣି । ଦେଉଳ ବାଲିରେ ପୋତି ହୋଇଗଲାଣି । ରାଣି ଓ ତାଙ୍କର କୁଟୁମ୍ବ ବିଦ୍ୟାପତି, ବିଶ୍ୱାବସୁ ଆଦି ମରିଗଲେଣି । ସେହି ମନ୍ଦିରକୁ ଉତ୍କଳର ରାଜା ମାଧବ ବାଲିସ୍ତୂପ ଭିତରୁ ବାହାର କଲେ ଓ ସେହି ମନ୍ଦିର ତାଙ୍କର ବୋଲି ଘୋଷଣା କଲେ । ବ୍ରହ୍ମା ଓ ଇନ୍ଦ୍ରଦ୍ୟୁମ୍ନ ପହଞ୍ଚିଲା ପରେ ରାଜା ମାଧବ ମନ୍ଦିରକୁ ଇନ୍ଦ୍ରଦ୍ୟୁମ୍ନ ତିଆରି କରିଛନ୍ତି ବୋଲି ପ୍ରମାଣ ଖୋଜିଲେ । ଅବଶେଷରେ ଭୁଷଣ୍ଡ କାକ, ମାର୍କଣ୍ଡ ଋଷି, ଯତିଜଥଂ ହଂସ ପ୍ରମୁଖ ସାକ୍ଷ୍ୟ ଦେବାରୁ ଇନ୍ଦ୍ରଦ୍ୟୁମ୍ନ ମନ୍ଦିରର ପ୍ରକୃତ ନିର୍ମାତା ବୋଲି ଜଣାଗଲା । ସେହି ଦିନରୁ ମାଧବ ହେଲେ ଗାଲ ମାଧବ । ମନ୍ଦିର ପ୍ରତିଷ୍ଠା ପରେ ତ୍ରିମୂର୍ତ୍ତି ପୂଜା ପାଇଲେ ।

ଜଗନ୍ନାଥଙ୍କର ଜନ୍ମଦେବୀ ଗୁଣ୍ଡିଚା ମନ୍ଦିର ପରିବେଶ । ସେହି ଜନ୍ମଦେବୀକୁ ବର୍ଷରେ ଥରେ ରଥ ଯାତ୍ରାବେଳେ ପ୍ରଭୁମାନେ

ରଥରେ ଯାଇ ବିରାଜମାନ ହୁଅନ୍ତି । ରାଣୀ ଗୁଣ୍ଡିଚାଙ୍କ ପ୍ରତି ଏହା ପ୍ରଭୁଙ୍କର କୃପା । ଅପରପକ୍ଷରେ ଜଗନ୍ନାଥ ଯେତେବେଳେ ଇନ୍ଦ୍ରଦ୍ୟୁମ୍ନଙ୍କୁ ବର ମାଗିବା ପାଇଁ କହିଲେ ସେ କହିଲେ ତାଙ୍କୁ ନିର୍ବଂଶ କରିଦେବା ପାଇଁ । ଜଗନ୍ନାଥ ଆଶ୍ଚର୍ଯ୍ୟ ହେବାରୁ ଇନ୍ଦ୍ରଦ୍ୟୁମ୍ନ କହିଲେ ଯେ ତାଙ୍କର ଭବିଷ୍ୟତ ବଂଶଧରମାନେ ସେହି ମନ୍ଦିର ତାଙ୍କ ପୂର୍ବ ପୁରୁଷଙ୍କ କୀର୍ତ୍ତି କହି ଅହଂକାର ପ୍ରକାଶ କରିବେ । ତେଣୁ ସେ ଚାହାନ୍ତି ନାହିଁ ତାଙ୍କ ବଂଶରେ କେହି ରହୁ ବୋଲି । ଫଳରେ ଇନ୍ଦ୍ରଦ୍ୟୁମ୍ନ ମୃତ୍ୟୁ ପରେ ସେହିକାଳରୁ ଏ ପର୍ଯ୍ୟନ୍ତ ସ୍ୱୟଂ ଜଗନ୍ନାଥ ହିଁ ତାଙ୍କର ପିଣ୍ଡ ଦେଇ ଆସୁଛନ୍ତି । ଏହି କିମ୍ବଦନ୍ତୀଟି ତାତ୍ପର୍ଯ୍ୟପୂର୍ଣ୍ଣ । ଲୋକ ବିଶ୍ୱାସରେ ଏପରି ଗୋଟିଏ କାହାଣୀ ସୃଷ୍ଟି ହୋଇ ଜଗନ୍ନାଥଙ୍କ ମାହାତ୍ମ୍ୟକୁ ବିକଶିତ କରି ଦେଇଛି । ଏଥିରେ ଜାତିଭେଦକୁ ବିରୋଧ କରାଯାଇଛି । ବ୍ରାହ୍ମଣ, କ୍ଷତ୍ରିୟ, ଶୂଦ୍ର ବା ଆଦିବାସୀ ସମସ୍ତଙ୍କୁ ସମାନ ମନେ କରାଯାଇଛି । ଜଗନ୍ନାଥ ଯେ ଅବ୍ୟକ୍ତ ଅନନ୍ତ ପରବ୍ରହ୍ମ ତାହା ସୂଚିତ ହୋଇଛି । ବୃଦ୍ଧ ମହାରଣା ଯେ ସ୍ୱୟଂ ବ୍ରହ୍ମ ଓ ସେ ନିଜେ ନିଜର ମୂର୍ତ୍ତି ଗଠନ କରିଛନ୍ତି, ତାହା ମଧ୍ୟ ବ୍ୟଂଜିତ ହୋଇଛି । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଅପୂର୍ଣ୍ଣ ମୂର୍ତ୍ତି ହୋଇ ମଧ୍ୟ ପୂର୍ଣ୍ଣତାର ଇଙ୍ଗିତ ଦେଇଛନ୍ତି । ସେହି ତିନିମୂର୍ତ୍ତି ଯେ ଏକ ଏବଂ ଅଭିନ୍ନ ତାହା ମଧ୍ୟ ସୂଚିତ । ଜଗନ୍ନାଥଙ୍କ ମନ୍ଦିରରେ ବ୍ରାହ୍ମଣ, ରାଜା ଓ ଦଇତା (ଶବର) ସମସ୍ତ ଭେଦ ଦୂର କରି ଉପାସନା ଓ ପୂଜା କରନ୍ତି ତାହା ଏକ ଉଦାର ମାନବୀୟ ପରମ୍ପରାର ମାନ୍ୟତା ପାଇ ଅଛି । ଅତଏବ ଏହି କିମ୍ବଦନ୍ତୀଟି ଯଦିଓ ଇତିହାସ ସମ୍ପର୍କିତ ନୁହେଁ, ତଥାପି ଲୋକ ବିଶ୍ୱାସରୁ ଜନ୍ମନେଇ କେତେ ଯେ ମହୀୟାନ ହୋଇଯାଇଛି ତାହାକୁ ଉପଲବ୍ଧି କରାଯାଏ । ଇତିହାସଠାରୁ ଏହା ହୋଇଯାଇଛି ଏକ ବୃହତ୍ତର ମାନବୀୟ ଓ ଆଧ୍ୟାତ୍ମିକ ଇତିହାସ । ଏବେ ଏହା ଆଉ କେବଳ କିମ୍ବଦନ୍ତୀ ହୋଇ ରହିନାହିଁ । ଏକ ମିଥ୍‌ରେ ପରିଣତ ହୋଇଯାଇଛି ।

ଶ୍ରୀଜଗନ୍ନାଥଙ୍କୁ ନେଇ ଆହୁରି କେତେକ କେତେ କିମ୍ବଦନ୍ତୀ ସୃଷ୍ଟି ହୋଇଯାଇଛି । ମାଦଳା ପାଞ୍ଜି ଓ ଦାର୍ଢ୍ୟତା ଭକ୍ତିରେ ଆମେ ଅନେକ କିମ୍ବଦନ୍ତୀ ଦେଖୁ । ଏସବୁ ସେହି ସରଳ ଭକ୍ତି ପ୍ରାଣ ଲୋକମାନସିକତାରୁ ସୃଷ୍ଟି ହୋଇଛି । ସ୍ନାନ ମଣ୍ଡପରେ ଅତ୍ୟଧିକ ସ୍ନାନ କରିବା ହେତୁ ଜଗନ୍ନାଥଙ୍କୁ ଜ୍ୱର ହୁଏ । ପନ୍ଦର ଦିନ କାଳ ଅଣସର ଘରେ ରହି ଚିକିତ୍ସିତ ହୁଅନ୍ତି । ସେ ଭଲ ହୁଅନ୍ତି । ତାଙ୍କର ନେତ୍ରୋତ୍ସବ ହୁଏ । ତାହାପରେ ସେ ରତ୍ନସିଂହାସନକୁ ଆସନ୍ତି ଓ ସେଠାରୁ ଯାଆନ୍ତି ତିନୋଟି ରଥରେ ଗୁଣ୍ଡିଚା ମନ୍ଦିରକୁ । ଏସବୁ ସେହି ଲୋକ ବିଶ୍ୱାସର ମାନବୀୟ ରୂପ ଓ ଲୀଳା । ନିଃଶଙ୍କ ଭାନୁଦେବଙ୍କ ସମୟରେ ପଶୁପାଳକଙ୍କ ଆର୍ତ୍ତ ନିବେଦନରେ ଜଗନ୍ନାଥଙ୍କ ତ୍ରିମୁଣ୍ଡିରୁ କେଶ ବାହାରିବା, ନୀଳାକୁମ୍ଭାରୁଣୀ କାହାଣୀ, ଅନ୍ଧ ଦଇତା ଦାସ କାହାଣୀ, ମତ୍ତ ଭାନୁଦେବଙ୍କ ସମୟରେ ମହାସୁଆରଙ୍କ ପ୍ରତି ଜଗନ୍ନାଥଙ୍କ କରୁଣା, ମତ୍ତଭାନୁ ଦେବଙ୍କ ପୋଷ୍ୟପୁତ୍ର ରୂପେ କପିଳରାଉତଙ୍କୁ ଗ୍ରହଣ, ପୁରୁଷୋତ୍ତମ ଦେବଙ୍କ ସମୟରେ କାଞ୍ଚି କାବେରୀ କାହାଣୀ, ମାଣିକ ଗଉଡୁଣୀଠାରୁ ସୈନିକ ବେଶରେ ଜଗନ୍ନାଥ ଓ ବଳଭଦ୍ରଙ୍କ ଦହିଖିଆ କାହାଣୀ, କାଞ୍ଚି ଯୁଦ୍ଧ କ୍ଷେତ୍ରରେ ଜଗନ୍ନାଥ, ବଳଭଦ୍ରଙ୍କର ଯୁଦ୍ଧ ଓ ବିଜୟ । କାଞ୍ଚି ରାଜକନ୍ୟା ପଦ୍ମାବତୀ (ରୂପାମ୍ବିକା)କୁ ପୁରୁଷୋତ୍ତମଦେବ ମନ୍ତ୍ରୀଙ୍କୁ ପ୍ରଦାନ ଓ ଚଣ୍ଡାଳ ସହିତ ବିବାହ ଦେବା ପାଇଁ ଆଦେଶ, ପରବର୍ତ୍ତୀ ରଥ ଯାତ୍ରା ସମୟରେ ପୁରୁଷୋତ୍ତମ ଦେବ ଛେରାପହଁରା କରୁଥିବା ସମୟରେ ମନ୍ତ୍ରୀ ପଦ୍ମାବତୀଙ୍କୁ ତାଙ୍କୁ ସମର୍ପଣ ଓ ପଦ୍ମାବତୀଙ୍କ ସହିତ ପୁରୁଷୋତ୍ତମ ଦେବଙ୍କର ବିବାହ, ମୁକୁନ୍ଦ ଦେବଙ୍କ ସମୟରେ କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ ଓ ଜଗନ୍ନାଥଙ୍କୁ ନେଇ ଗଙ୍ଗାକୂଳରେ ଦହନ, ବିଶର ମହାନ୍ତି ଜଗନ୍ନାଥଙ୍କ ବ୍ରହ୍ମକୁ ମୃଦଙ୍ଗ ଖୋଳ ଭିତରେ କୁଜଙ୍ଗକୁ ଆନୟନ ଓ ରାମଚନ୍ଦ୍ର ଦେବ ତାହାକୁ ଆଣି ଜଗନ୍ନାଥଙ୍କ ନବକଳେବର କରି ସେହି ବ୍ରହ୍ମର ସ୍ଥାପନ ଇତ୍ୟାଦି ନାନା କଥା ମାଦଳା ପାଞ୍ଜିରେ ଦେଖିବାକୁ ମିଳେ । ଏସବୁର ଐତିହାସିକ ତଥ୍ୟ ଖୋଜିଲେ ନିରାଶ ହେବାକୁ ପଡ଼େ । ତଥାପି ଏସବୁରେ ଯେ କିଛି ଐତିହାସିକ ତଥ୍ୟ ନାହିଁ, ନୁହେଁ । କାଞ୍ଚି ଯୁଦ୍ଧ ଓ ପଦ୍ମାବତୀଙ୍କ ସହିତ ପୁରୁଷୋତ୍ତମ ଦେବଙ୍କ ବିବାହ ଇତିହାସ ସମ୍ମତ । ମାଣିକୀ ପ୍ରସଙ୍ଗ ଇତିହାସ କି ନୁହେଁ ତାହା ବିବଦମାନ । ଏହି କାହାଣୀକୁ ଜନଶ୍ରୁତି ବୋଲି କେତେକ କହନ୍ତି (ଦାଶ ଗଗନେନ୍ଦ୍ର)। କେତେକ ପୁଣି କହନ୍ତି ଜଗନ୍ନାଥଙ୍କ ରଥଯାତ୍ରା ଓ ଗଜପତିଙ୍କ ଛେରା ପହଁରା ପୁରୁଷୋତ୍ତମ ଦେବଙ୍କଠାରୁ ଆରମ୍ଭ ହୋଇଥିଲା । ମାତ୍ର ଜଗନ୍ନାଥଙ୍କ ରଥଯାତ୍ରା ସଂପର୍କରେ ପୂର୍ବରୁ ରଚିତ କେତେକ ଗ୍ରନ୍ଥରେ ଓ ଶ୍ଳୋକରେ ଦେଖାଯାଏ । ହୁଏତ କାଞ୍ଚିକାବେରୀ ପ୍ରସଙ୍ଗଟି ଜନଶ୍ରୁତିମୂଳକ ବା କିମ୍ବଦନ୍ତୀ ହୋଇ ଥାଇପାରେ ମାତ୍ର ଏହା ଓଡ଼ିଶାର ଜନମାନସରେ ବୃହତର ସତ୍ୟରେ ପରିଣତ ହୋଇ ଯାଇଅଛି । ଏଥିପାଇଁ ପଣ୍ଡିତ ଗୋପବନ୍ଧୁ ଦାସ ବନ୍ଦୀର ଆତ୍ମ କଥାରେ ଶ୍ରୀମନ୍ଦିରର ଭିତ୍ତିରେ ଜଗନ୍ନାଥ ବଳଭଦ୍ରଙ୍କ କାଞ୍ଚି ଯୁଦ୍ଧକାଳୀନ ସୈନିକ ବେଶର ଚିତ୍ରକୁ ଦେଖି ଲେଖିଛନ୍ତି–

ଏବେ ଶ୍ରୀମନ୍ଦିରରେ ଦେଖି ଆସ ଯାଇ
କଳାଧଳା ଘୋଡ଼ା ପରେ ବେନିଭାଇ
ବୀରମୂର୍ତ୍ତି ଦିଶେ ଯେହ୍ନେ ଅଗ୍ନି ଶିଖା
ଦଧି ମୂଲ୍ୟ ମାଗେ ଛାମୁରେ ମାଣିକା
ଏ ଛବି ତ ନୁହେଁ ଶିଳ୍ପୀର କଳ୍ପନା
ଏ ଛବିର ସାକ୍ଷୀ ମାଣିକ ପାଟଣା ।

ତେଣୁ କାଞ୍ଚିକାବେରୀ ପ୍ରସଙ୍ଗଟି ଲୋକ ମାନସରେ ଆଉ କଳ୍ପନା ହୋଇ ରହି ନାହିଁ । ଏହି କାହାଣୀ ଭିତରେ ପୁରୁଷୋତ୍ତମ ଦାସ ତାଙ୍କର କାଞ୍ଚି କାବେରୀ କାବ୍ୟରେ ଜଗନ୍ନାଥଙ୍କୁ କୃଷ୍ଣ, ମାଣିକଙ୍କୁ ରାଧା ରୂପେ ତର୍କଣା କରି ଦେଇଛନ୍ତି । ଏହି କିମ୍ବଦନ୍ତୀ ଭିତରେ ଓଡ଼ିଆ ଜାତୀୟତା ଓ ଜଗନ୍ନାଥ ଭକ୍ତି ବ୍ୟଂଜିତ । ଏହିପରି କଳାପାହାଡ଼ର ଜଗନ୍ନାଥ ମନ୍ଦିର ଲୁଣ୍ଠନ ଓ ଜଗନ୍ନାଥଙ୍କ ବିଗ୍ରହ ପୋଡ଼ି ପ୍ରସଙ୍ଗ ମଧ୍ୟ ସୂଚାଇ ଦିଏ ଓଡ଼ିଆ ଜାତିର ଜଗନ୍ନାଥ ପ୍ରୀତି ଓ ଭକ୍ତିର ଗଭୀରତାକୁ । ଜଗନ୍ନାଥଙ୍କ ପ୍ରତି ବାରମ୍ବାର ଯବନମାନେ ଆକ୍ରମଣ କରିଛନ୍ତି । ଶୋଭନ ଦେବଙ୍କ ସମୟରେ ରକ୍ତବାହୁ ଜଗନ୍ନାଥଙ୍କୁ ଆକ୍ରମଣ କରିବାକୁ ଆସିଥିଲା ବେଳେ ରାଜା ଜଗନ୍ନାଥଙ୍କୁ ନେଇ ସୋନପୁରଠାରେ ଗୋଟିଏ ବରଗଛ ପାଖରେ ପୋତି ଦେଇଥିଲେ । ସେହି ବରଗଛକୁ ଦିଅଁ ବର କୁହାଯାଏ । ପରେ ସେହି ଦିଅଁକୁ ଅଣାଯାଇ ଶ୍ରୀମନ୍ଦିରରେ ସ୍ଥାପନ କରାଯାଇଥିଲା । ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ସମୟରେ ତକି ଖାଁଙ୍କ ଆକ୍ରମଣ ହେତୁ ଜଗନ୍ନାଥଙ୍କୁ ନେଇ ଚିଲିକା ଓ ସେଠାରୁ ନେଇ ଟିକାଲିରେ ରଖାଯାଇଥିଲା । ରାମଚନ୍ଦ୍ର ଦେବ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇ ରହିଥିଲାବେଳେ ସୁଜା ଖାଁର କନ୍ୟା ଓ ତକି ଖାଁର ଭଗିନୀ ରିଜିଆକୁ ବିବାହ କରି ହାଫିଜ୍ କାଦରବେଗ ନାମ ଧାରଣ କରିଥିଲେ । ସେ କିନ୍ତୁ ଜଗନ୍ନାଥ ପ୍ରାଣ । ସେ ଜାଣିଥିଲେ ଯେ ଜଗନ୍ନାଥ ଓଡ଼ିଆ ଜାତିର ପ୍ରାଣ, ମାନ ଓ ସମ୍ମାନ ସବୁ କିଛି । ତେଣୁ ସେ ଶ୍ରୀଜଗନ୍ନାଥଙ୍କୁ ପଣ୍ଡା ଓ ସେବକମାନଙ୍କ ସହାୟତାରେ ନେଇ ଯାଇଥିଲେ ଓ ରଥଯାତ୍ରା ବେଳେ ଜଗନ୍ନାଥଙ୍କୁ ପୁରୀକୁ ଆଣିଥିଲେ । ଏହି ପ୍ରସଙ୍ଗ ସହିତ ଇତିହାସ ଓ କିମ୍ବଦନ୍ତୀ ମଧ୍ୟ ମିଶିଯାଇଛି । ମାଦଳାପାଞ୍ଜି ବ୍ୟତୀତ ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ଜଗନ୍ନାଥଙ୍କୁ କେନ୍ଦ୍ରକରି କେତେ କିମ୍ବଦନ୍ତୀ ସୃଷ୍ଟି ହୋଇଯାଇଛି । ରାମ ଦାସଙ୍କ ଦାର୍ଢ୍ୟତା ଭକ୍ତିରେ ଏହିପରି କେତେ କାହାଣୀ ସଂଯୋଜିତ । ରଘୁ ଅର୍କ୍ଷିତ ପ୍ରତି ଜଗନ୍ନାଥଙ୍କ କରୁଣା, ବନ୍ଧୁମହାନ୍ତି ପ୍ରତି ଜଗନ୍ନାଥଙ୍କର କୃପା, ଜଗନ୍ନାଥ ଦାସଙ୍କର ଜଗନ୍ନାଥ ଭକ୍ତି ଓ ରାଜପରୀକ୍ଷାରେ ଉତ୍ତୀର୍ଣ୍ଣତା, କୃଷ୍ଣ ଦାସଙ୍କ ଜଗନ୍ନାଥ ଭକ୍ତି, ତିଳଛ ମହାପାତ୍ରଙ୍କର ଜଗନ୍ନାଥଙ୍କ କୃପାରୁ ରାଜ ରୋଷରୁ ମୁକ୍ତି, ଗଣପତି ଭଟ୍ଟଙ୍କର ଜଗନ୍ନାଥଙ୍କଠାରେ ଗଣେଶ ରୂପ ଦର୍ଶନ, ଯବନ ସାଲବେଗ ପାଇଁ ବଡ଼ଦାଣ୍ଡରେ ଜଗନ୍ନାଥଙ୍କ ରଥ ଅଟକି ରହିବା, ଦାସିଆ ବାଉରୀର ନଡ଼ିଆ ଜଗନ୍ନାଥ ନେବା, ତୁଳସୀ ଦାସଙ୍କର ଜଗନ୍ନାଥଙ୍କଠାରେ ଶ୍ରୀରାମ ରୂପ ଦର୍ଶନ ଇତ୍ୟାଦି କାହାଣୀଗୁଡ଼ିକ ଲୋକ ବିଶ୍ୱାସମୂଳକ । ଏହିପରି ବଳରାମ ଦାସଙ୍କର ଜଗନ୍ନାଥଙ୍କ ସହିତ ଲଙ୍କାଯାତ୍ରା ଓ ସୁବର୍ଣ୍ଣଝରି ଚୋରି ପ୍ରସଙ୍ଗ, ପଣସ ଚୋରି ପ୍ରସଙ୍ଗ ମଧ୍ୟ ସେହି ଲୋକ ବିଶ୍ୱାସ ଓ ଜଗନ୍ନାଥ ଭକ୍ତିର ନିଦର୍ଶନ । ଏସବୁ କିମ୍ବଦନ୍ତୀ ବା ଲୋକ ବିଶ୍ୱାସରେ କେତେ ସତ୍ୟତା ଅଛି, ତାହା ଜାଣିବାର ଆବଶ୍ୟକତା ନାହିଁ । ଭାରତବର୍ଷର ଚାରି ମୁଖ୍ୟ ଧାମ ବା ଅନ୍ୟାନ୍ୟ ଯେତେ ପୀଠ ଅଛି ସେସବୁର ଦେବତା, ପୁରୀର ଜଗନ୍ନାଥଙ୍କ ରୂପ ପରି ନୁହଁନ୍ତି । ଜଗନ୍ନାଥଙ୍କ ପୂଜା ପର୍ବ ନୀତିକାନ୍ତି ପରି ମଧ୍ୟ ସେସବୁର ନୁହେଁ । ଜଗନ୍ନାଥଙ୍କ ପାଖରେ ଲୋକେ ଓ ଦେବତା କୋଳାକୋଳି । ଏଇ ଜଗନ୍ନାଥ ଶ୍ରୀକୃଷ୍ଣ ହୋଇ ବି ଶ୍ରୀକୃଷ୍ଣଙ୍କ ପରି ନୁହଁନ୍ତି, ଶ୍ରୀରାମ ହୋଇବି ରାମଙ୍କ ପରି ନୁହନ୍ତି । ସିଏ ସ୍ୱତନ୍ତ୍ର । ତାଙ୍କର ରୂପ ସ୍ୱତନ୍ତ୍ର । ପର୍ବପର୍ବାଣି ସ୍ୱତନ୍ତ୍ର । ବେଶ ପୋଷାକ ସ୍ୱତନ୍ତ୍ର । ତାଙ୍କ ପ୍ରତି ଯେତେ ଯେତେ ଆକ୍ରମଣ ହୋଇଛି ଇମିତି ଅନ୍ୟ ଦେବତାଙ୍କ ପ୍ରତି ହୋଇ ନାହିଁ । ତାଙ୍କୁ ନେଇ ଓଡ଼ିଶାରେ ଗୋଟାଏ ସଂସ୍କୃତି ଗଢ଼ି ଉଠିଛି । ତା'ପାଖକୁ ଏ ଜାତି ଧାଇଁ ଆସେ । ଅଥଚ କିଛି ମାଗେ ନାହିଁ । ମାଗେ କେବଳ ଶରଧା ବାଲିରୁ ମୁଠାଏ । ସିଏ ତା'ର ବଳିୟାର ଭୁଜ ବିସ୍ତାର କରି ଦେଇ ସାରା ବିଶ୍ୱର ମଣିଷମାନଙ୍କୁ ଆଲିଙ୍ଗନ କରିବା ପାଇଁ ବିରାଜିତ । ତା'ର ବାନା ପତିତପାବନ । ସିଏ ସତେ ଯେମିତି ପାପୀମାନଙ୍କୁ ଡାକୁଛି ସେଇ ନୀଳ ନଗରୀକୁ ଯାଇ ପାପ ପ୍ରକ୍ଷ୍ୟାଳନ ପାଇଁ । ଏଥିପାଇଁ କବି ସମ୍ରାଟ ଉପେନ୍ଦ୍ର ଭଂଜ ଲେଖିଛନ୍ତି–

ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀକୁ ଅବା
ଏ ନୀଳ ନଗ ନଗରୀକୁ ଆସ ଭଲ କରିବା
ଯେତେଦୂରେ ଘଣ୍ଟ ନିନାଦ ଶୁଭେ ନଦରେ ନେଇ
ପକାଏ ଅମୃତ ଦୁଷ୍କୃତ ଗଲେ ଗଳଥା ଦେଇ ।

ଜଗତର ନାଥ କୋଟି ବ୍ରହ୍ମାଣ୍ଡର ଈଶ୍ୱର ଜଗନ୍ନାଥ କେବେ କ'ଣ କାହିଁକି ନେଇ ମୁଣ୍ଡ ନ ଖେଳାଇ ଲୋକ ବିଶ୍ୱାସରେ ଯେଉଁ କିମ୍ବଦନ୍ତୀ ଓ ମିଥ୍ ତିଆରି ହୋଇଯାଇଛି, ତାହାର ଅନ୍ତର୍ନିହିତ ତତ୍ତ୍ୱ ଓ ଦର୍ଶନକୁ ବୁଝି ତାଙ୍କ ପ୍ରତି ସମର୍ପିତ ହୋଇଗଲେ ହିଁ ପରମ ଶାନ୍ତି । ସିଏ ଯେ ମାନବିକତାର ଶାଶ୍ୱତ କର୍ତ୍ତା ତାକୁ ଉପଲବ୍ଧି କରିବାକୁ ହେବ । ସଂକୀର୍ଣ୍ଣ ଧର୍ମ ଭାବକୁ ଭୁଲି ଜାତିବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ତାଙ୍କର ମହିମାକୁ ଉପଲବ୍ଧି କରି ସଂହତି ଓ ବିଶ୍ୱ ଶାନ୍ତି ପାଇଁ ଉଦ୍ୟମ କରିବାକୁ ହେବ । କିମ୍ବଦନ୍ତୀ ଓ ମିଥ୍ ଭିତରେ ଯେଉଁ ଇତିହାସ ଓ ସତ୍ୟ ନିହିତ ଅଛି, ତାହାକୁ ଆବିଷ୍କାର କରି ପାରିଲେ ଓଡ଼ିଆ ଜାତିର ମହତ୍ତ୍ୱ ଯେ ପ୍ରସାରିତ ହୋଇଯିବ, ସନ୍ଦେହ ନାହିଁ ।

ଅପର୍ଣ୍ଣାନଗର
ଚାଉଳିଆଗଞ୍ଜ, କଟକ

# ଜଗନ୍ନାଥ ତତ୍ତ୍ୱ ବିଚାର

ଡକ୍ଟର ନାରାୟଣ ପଣ୍ଡା

ଓଡ଼ିଶା ଜଗନ୍ନାଥଙ୍କ ଦେଶ । ଜଗନ୍ନାଥଙ୍କ ନାମରେ ସମଗ୍ର ଭାରତବର୍ଷରେ ଓଡ଼ିଶାର ଲୋକେ ସୁପରିଚିତ । ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶାର ସଂସ୍କୃତି, ସାହିତ୍ୟ, ଧର୍ମବିଶ୍ୱାସ, ଆଚାର ବିଚାରର ବିକାଶ ଘଟିଚି । ଜଗନ୍ନାଥଙ୍କୁ ବାଦ୍ ଦେଇ କୌଣସି ଅନୁଷ୍ଠାନର ପରିକଳ୍ପନା କରାଯାଇପାରେ ନାହିଁ । କାରଣ ସେ ଲୋକର ଦେବତା, ଜନସାଧାରଣଙ୍କ ଦେବତା । ଜଗନ୍ନାଥଙ୍କ ପାଖରେ କୌଣସି ପ୍ରକାର ଭେଦାଭେଦ ସ୍ୱୀକାର କରାଯାଏ ନାହିଁ । ସେ ସାମନ୍ତ ବ୍ରାହ୍ମଣର ଦେବତା, ଚାଣ୍ଡାଳର ଦେବତା ।



ଭଗବାନ ନର ନାରାୟଣ ସତ୍ୟଯୁଗରେ ବଦ୍ରିକାଶ୍ରମରେ ତପସ୍ୟା କରି ତାକୁ ତପୋଭୂମି ରୂପରେ ସତ୍ୟଯୁଗରେ ଧାମ ରୂପରେ ପ୍ରତିଷ୍ଠା କଲେ । ତ୍ରେତା ଯୁଗରେ ସ୍ୱୟଂ ରାମଚନ୍ଦ୍ର ମହାଯଜ୍ଞରୁ ବାହାରି ରାମେଶ୍ୱରରେ ଶିବ ଓ ବିଷ୍ଣୁଙ୍କର ମିଶ୍ରଯଜ୍ଞ କରି ସମନ୍ୱୟ ମତର ପ୍ରତିଷ୍ଠା କରି ଯଜ୍ଞ ସ୍ୱରୂପ ଯୁଗଧାମ ପ୍ରତିଷ୍ଠା କଲେ । ଦ୍ୱାପର ଯୁଗରେ ଦ୍ୱାରକାରେ ସ୍ୱୟଂ ଶ୍ରୀକୃଷ୍ଣ ରାଜତ୍ୱ କରି ସେବାଭାବର ପରାକାଷ୍ଠା ବଢାଇ ମୂଳ ଦ୍ୱାରକାକୁ ସେବା ପୂଜାର ପ୍ରତୀକ ତୃତୀୟ ଯୁଗଧାମ ରୂପରେ ପ୍ରତିଷ୍ଠା କଲେ । କଳିରେ ସ୍ୱୟଂ ବ୍ରହ୍ମ ପୁରୁଷୋତ୍ତମ ଓଁକାର ବା ବ୍ରହ୍ମନାମର ପ୍ରତୀକ ରୂପରେ ପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ପ୍ରକଟ ହୋଇ ହରିକୀର୍ତ୍ତନ ସୂତ୍ରରେ ନାମମୟ ଧାମର ପ୍ରତିଷ୍ଠା କଲେ ।

'ଧାମ ବ୍ରହ୍ମେଣ ସ୍ଥାପିତମ୍' ଅର୍ଥାତ୍ ଚାରିଗୋଟି ମୁଖ୍ୟଧାମ ସାଧନମାର୍ଗ ଉପରେ ଆଧାରିତ ହୋଇଥିବାରୁ ଜଗଦ୍‌ଗୁରୁ ଶଙ୍କର ଜ୍ୟୋତି, ଦ୍ୱାରକା, ସେତୁଶଙ୍କର ଓ ପୁରୀ ଏହି ଚାରିଧାମ ପ୍ରତିଷ୍ଠା କଲେ । ଆପ୍ତ ପ୍ରମାଣରୁ ଏହାହିଁ ଜଣାଯାଏ ।

କୃତେଚ ବଦ୍ରିନାଥଶ୍ଚ ଦେତାୟାଂ ସେତୁଶଙ୍କରମ୍
ଦ୍ୱାପରେ ଦ୍ୱାରକାନାଥଂ କଲୌ ଶ୍ରୀପୁରୁଷୋତ୍ତମଂ ।

ମାର୍କଣ୍ଡେୟ ପୁରାଣରେ ପୁରୀର ପ୍ରାଚୀନ ନାମ 'ଅନ୍ତର୍ବେଦୀ' । ମହାଭାରତ ବନ ପର୍ବରୁ ଅନ୍ତର୍ବେଦୀ ମିତିଖ୍ୟାତମ୍ ଆନୀତ । 'ଗୀତା'ର ପୁରୁଷୋତ୍ତମ ଯୋଗରେ ଏହା ଲୋକରେ 'ପୁରୁଷୋତ୍ତମ' ବା ପୁରୁଷୋତ୍ତମ କ୍ଷେତ୍ର ରୂପରେ ପରିଚିତ । ବ୍ରହ୍ମ ପୁରାଣରେ ଏହାକୁ ପୁରୁଷୋତ୍ତମ କ୍ଷେତ୍ର ରୂପରେ ଅଭିହିତ କରାଯାଇଛି । ସ୍କନ୍ଦ ପୁରାଣ ଦ୍ୱାଦଶ ଅଧ୍ୟାୟରେ ପୁରୀ ଶଙ୍ଖାକାର ହୋଇଥିବାର 'ଶଙ୍ଖକ୍ଷେତ୍ର' ନାମରେ ବର୍ଣ୍ଣିତ ଓ ସେହି କ୍ଷେତ୍ରରେ ଅଷ୍ଟଶକ୍ତି, ଅଷ୍ଟଶମ୍ଭୁ ଓ ପଞ୍ଚତୀର୍ଥ ଥିବାର ପ୍ରମାଣ ଅଛି । ଦେବୀ ଭାଗବତ, କାଳୀକା ପୁରାଣ, ନୀଳତନ୍ତ୍ର ଏହିଠାରେ ସତୀଙ୍କର ପାଦ ପଡିଥିବାରୁ ଏହାକୁ ପାଦପୀଠ ବା ଉଡ୍ଡୀୟାନ ପୀଠ ନାମ ଦେଇ ବିମଳାଙ୍କ ଭୈରବୀ ଓ ଜଗନ୍ନାଥଙ୍କୁ ଭୈରବ ବୋଲି କହିଛନ୍ତି । ସ୍କନ୍ଦପୁରାଣ, ବାମଦେବ ସଂହିତା, କପିଳ ସଂହିତା, ଏଠାରେ ନୀଳ ପର୍ବତ ନାମକ ପବିତ୍ର ପର୍ବତ ଗୁହାରେ ପ୍ରଭୁ ପ୍ରଥମେ ବିରାଜିତ ଥିବାରୁ ଏହି କ୍ଷେତ୍ରକୁ ନୀଳାଦ୍ରି ନାମ ଦେଇଛନ୍ତି ।

ପୁରୀର ପ୍ରାଚୀନ ନାମ ପୁରୁଷୋତ୍ତମ କ୍ଷେତ୍ର । ଜୈନ ସାହିତ୍ୟରେ ମହାବୀରଙ୍କୁ ଜଗନ୍ନାଥ କୁହାଯାଇଛି । ବୌଦ୍ଧ ସାହିତ୍ୟରେ ବୁଦ୍ଧଦେବଙ୍କୁ ଜଗନ୍ନାଥ ରୂପରେ ଅଭିହିତ କରାଯାଇଛି । ବୌଦ୍ଧ ଧର୍ମର ପ୍ରସିଦ୍ଧ ଗ୍ରନ୍ଥ 'ଜ୍ଞାନସିଦ୍ଧି'ରେ ଜଗନ୍ନାଥଙ୍କ ନାମ ଅଛି । ସେଥିରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରାଯାଇଛି । ବିଷ୍ଣୁ ପୁରାଣରେ କୃଷ୍ଣଙ୍କୁ, ମସ୍ୟ ପୁରାଣରେ କାର୍ତ୍ତିକେୟଙ୍କୁ ଓ ସାରଳା ମହାଭାରତରେ କୃଷ୍ଣଙ୍କୁ ଜଗନ୍ନାଥ ରୂପରେ ବର୍ଣ୍ଣନା କରାଯାଇଛି ।

ବେଦରେ ଜଗନ୍ନାଥଙ୍କ ମହିମାର ବର୍ଣ୍ଣନା ଅଛି । ଋକ୍‌ବେଦରେ ଉଲ୍ଲେଖ ଅଛି:

ଅଦୋ ଯଦ୍‌ଦାରୁ ପ୍ଲବତେ
ସିନ୍ଧୋପାରେ ଅପୁରୁଷମ୍

ଆର୍ଯ୍ୟମାନଙ୍କର ପରମ ଓ ପବିତ୍ର ଗ୍ରନ୍ଥ ବେଦ । ପଞ୍ଚନଦ ପ୍ରଦେଶ ଭାରତବର୍ଷରେ ବେଦ ଲିଖିତ ହୋଇଛି । ଅଙ୍ଗ, ବଙ୍ଗ, କଳିଙ୍ଗ, ସୌରାଷ୍ଟ୍ର ଏ ରାଜ୍ୟଗୁଡ଼ିକୁ ଯିବନାହିଁ ପୁରାଣରେ ଉଲ୍ଲେଖ ଅଛି । ଭାରତରେ ସାତଗୋଟି ତୀର୍ଥସ୍ଥାନ ଅଯୋଧ୍ୟା, ମଥୁରା, (ମାୟା) ହରିଦ୍ୱାର, କାଶୀ, କାଞ୍ଚି, ଅବନ୍ତିକା, ପୁରୀ, ଦ୍ୱାରାବତି ଚୈବ ସପ୍ତତଃ ମୁଖ୍ୟ ଦାୟିକାଃ ।

ପୁରୀ ହେଉଛି ସର୍ବଧର୍ମ ସମନ୍ୱୟ ପୀଠ । ଭାରତବର୍ଷର ଧର୍ମ ବିଷୟରେ ଯେତେ ଆନ୍ଦୋଳନ ହୋଇଚି, ପରସ୍ପର ଭିତରେ ସଂଘର୍ଷ ହୋଇଛି, ପ୍ରତ୍ୟେକ ଧର୍ମ ମତର ସଂଘର୍ଷ ଯୁଗଯୁଗ ଧରି ଚାଲିଆସିଛି, ତାହାର ସର୍ବଧର୍ମ ସମନ୍ୱୟ ପୀଠ ହେଉଛି ପୁରୀ । ତନ୍ତ୍ରବିଦ୍‌ମାନଙ୍କ ମତରେ:

'ଉତ୍କଳେ ନାଭି ଦେଶେଚ ବିମଳା ପୁରୁଷୋତ୍ତମେ
ବିମଳା ଭୈରବୀ ଯତ୍ର ଜଗନ୍ନାଥ ତୁ ଭୈରବ ।'

ତନ୍ତ୍ର ମତରେ ଜଗନ୍ନାଥ ହେଉଛନ୍ତି ଭୈରବ । ତାନ୍ତ୍ରିକମାନେ ଜଗନ୍ନାଥଙ୍କୁ ଭୈରବ ରୂପରେ ପୂଜା କରନ୍ତି । ସୌର ଉପାସକମାନେ ଜଗନ୍ନାଥଙ୍କୁ ସୂର୍ଯ୍ୟ ରୂପରେ ପୂଜା କରନ୍ତି । ବର୍ଣ୍ଣିତ ଅଛି:

ରଥସ୍ଥଂ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନ ବିଦ୍ୟତେ ।

ରଥରେ ଜଗନ୍ନାଥଙ୍କୁ ବାମନ ରୂପରେ ଦେଖିଲେ ପୁନଃଜନ୍ମ ଧରାପୃଷ୍ଠରେ ହୁଏ ନାହିଁ । ଯୁଗେ ଯୁଗେ ବିଭିନ୍ନ ଧର୍ମର ଆଚାର୍ଯ୍ୟମାନେ ପୁରୀକୁ ଆଗମନ କରିଛନ୍ତି ନିଜର ମତ ପ୍ରଚାର କରିବା ପାଇଁ କିନ୍ତୁ କାୟମନବାକ୍ୟରେ ସମସ୍ତେ ଏଠାରେ ନିଜ ମତର ପ୍ରତିଫଳନ ଅନୁଭବ କରିଛନ୍ତି ।

ଅର୍ଥାତ୍ ସେ ଯାହା କହିବାକୁ ଆସିଥିଲେ ଏହି ସମନ୍ୱୟ ପୀଠରେ ବହୁ ଆଗରୁ ତାହା କୁହା ସରିଛି । ଜଗନ୍ନାଥଙ୍କ ଆକର୍ଷଣ ଅନନ୍ତ । ଶଙ୍କର, ରାମାନୁଜ, ରାମାନନ୍ଦ, ନିମ୍ବାର୍କ, ବିଷ୍ଣୁସ୍ୱାମୀ ଶ୍ରୀଚୈତନ୍ୟ, ନାନକ ପ୍ରଭୃତି ଜଗତର ନାଥ ଜଗନ୍ନାଥଙ୍କ ପ୍ରତି ଆକର୍ଷିତ ହୋଇ ଧର୍ମ ପ୍ରଚାର ନିମନ୍ତେ ସମୟକ୍ରମେ ପୁରୀକୁ ଆଗମନ କରିଛନ୍ତି ଓ ମଠ ସ୍ଥାପନ କରିଛନ୍ତି । ବ୍ରହ୍ମାଣ୍ଡ ପୁରାଣରେ କୁହାଯାଇଛି–

ବର୍ଷାଣାଂ ଭାରତ ଶ୍ରେଷ୍ଠଃ
ଦେଶାନାଂ ଉତ୍କଳ ସ୍ମୃତଃ
ଉତ୍କଳସ୍ୟ ସମଦେଶ
ଦେଶ ନାସ୍ତି ମହୀତଳେ ।'

ଜଗନ୍ନାଥ ହେଉଛନ୍ତି ଲୋକର ଦେବତା । ଯଥାର୍ଥରେ ହଣ୍ଟର ସାହେବ ଓଡ଼ିଶା ଇତିହାସରେ ଏହା ପ୍ରକାଶ କରିଛନ୍ତି:

Jagannath is the God of the common people. But the true source of Jagannath's undying hold upon the hindu race consists in the fact that is the God of the people as long as his towers rise upon the puri sands, so long there will be in the India a perpetual and visible protest of equality of men before God.

ଜଗନ୍ନାଥ ଲୋକର ଦେବତା ହୋଇଥିବାରୁ କାଳେ କାଳେ ସବୁ ରାଜା ଓ ଆଚାର୍ଯ୍ୟମାନେ ତାଙ୍କୁ ଆଶ୍ରୟ କରି ନିଜର ପ୍ରତିଷ୍ଠା କାମନା କରିଛନ୍ତି । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ଜଗତର ନାଥ ଜଗନ୍ନାଥଙ୍କ ସନ୍ତାନ । ସାଧାରଣ ବର୍ଗର ଲୋକ ଯେପରି ଆଚରଣ କରନ୍ତି, ଜଗନ୍ନାଥ ସେପରି ଦୈନନ୍ଦିନ ବ୍ୟବହାର କରନ୍ତି ।

ଜଗନ୍ନାଥ ତାଙ୍କ ପିତାମାତା ଓ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ଶ୍ରାଦ୍ଧ ଦିଅନ୍ତି । ପ୍ରତ୍ୟେକ ବର୍ଷ ତାଙ୍କ ବିବାହ ବାର୍ଷିକ ପାଳନ କରାଯାଏ । ଜଗନ୍ନାଥ ପ୍ରତି ବାରବର୍ଷ ଅନ୍ତରରେ ନବକଳେବର ହୁଅନ୍ତି । ଦଇତା ସେବକ କୁଳ ତାଙ୍କର ଶୁଦ୍ଧିକ୍ରିୟା ପାଳନ କରନ୍ତି । ପ୍ରତ୍ୟେକ ଦିନ ଜଗନ୍ନାଥ ମାଆ ଲକ୍ଷ୍ମୀଙ୍କ ପାଖରେ ବସି ସେବନ କରନ୍ତି । ଶୀତଦିନେ ଗରମ ବସ୍ତ୍ର ପରିଧାନ କରନ୍ତି । ଗ୍ରୀଷ୍ମଦିନେ ଜଳକେଳି କରନ୍ତି ଏବଂ ପ୍ରତ୍ୟେକ ଦିନ ଷାଠିଏ ପଉଟି ରାଜକୀୟ ଭୋଗ ତାଙ୍କୁ ଅର୍ପଣ କରାଯାଏ ।

ଓଡ଼ିଶାରେ ଜଗନ୍ନାଥଙ୍କୁ ବୌଦ୍ଧ ଧର୍ମର ପ୍ରତୀକ ଭାବରେ ଗ୍ରହଣ କରାଯାଏ । ବିଷ୍ଣୁ ଶାସ୍ତ୍ରରେ ଯେଉଁ ଦଶ ଅବତାରର ପରିକଳ୍ପନା କରାଯାଇଛି, ସେଥିମଧ୍ୟରୁ ନବମ ଅବତାର ହେଉଛି ବୁଦ୍ଧଦେବ । ବୁଦ୍ଧଦେବଙ୍କୁ ଜଗନ୍ନାଥ ସ୍ୱରୂପରେ ଆରୋପ କରାଯାଇଛି । ମାଟିର ମହାକବି ସାରଳା ଦାସ ମହାଭାରତର ସଭାପର୍ବରେ ପ୍ରକାଶ କରିଛନ୍ତି:

'ସଂସାର ଜନକୁ ତାରିବା ନିମନ୍ତେ
ବୌଦ୍ଧ ରୂପେ ବିଜେ ଅଛ ଜଗନ୍ନାଥ'

ହିନ୍ଦୁ ଧର୍ମର ଆରାଧ୍ୟ ଦେବତା ଶ୍ରୀରାମଚନ୍ଦ୍ର । ଭାରତବର୍ଷରେ କୋଟି କୋଟି ଲୋକ ପ୍ରଭୁ ଶ୍ରୀରାମଙ୍କ ଭକ୍ତ ଏବଂ ସେହି ଶ୍ରୀରାମଙ୍କ ଭକ୍ତମାନେ ଶ୍ରୀରାମଙ୍କୁ ଜଗନ୍ନାଥ ଭାବରେ ପୂଜା କରନ୍ତି । କବି ସଦାଶିବ ପ୍ରକାଶ କରିଛନ୍ତି:

'ଶ୍ରୀ ରଘୁନାଥ ବୋଲନ୍ତି ଜଗନ୍ନାଥ ମୁହିଁ
ସୀତା ସୁଭଦ୍ରା ଲକ୍ଷ୍ମଣ ବଳଭଦ୍ର ହୋଇ'

ଶୁଦ୍ରମୁନୀ ସାରଳା ଦାସ ମହାଭାରତରେ ପ୍ରକାଶ କରିଛନ୍ତି:

'ପୀତ କୁଙ୍କୁମ ବରନ ସେହି ବ୍ରହ୍ମ ମୂର୍ତ୍ତି
ଡାହାଣେ ଶୁକଳବର୍ଣ୍ଣ ମହାଦେବ ଜ୍ୟୋତି
ରୂପରେ ତ ଜଗନ୍ନାଥ ବର୍ଣ୍ଣ ଅଟେ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଦେବ ମେଳା'

ଭକ୍ତକବି ବଳରାମ ଦାସ 'ଗୁପ୍ତଗୀତା'ରେ ପ୍ରକାଶ କରିଛନ୍ତି:

'ଏଣୁ ଏ ଜଗନ୍ନାଥ କୃଷ୍ଣ
ଅଭିନ୍ନ ଅଟନ୍ତି ଅର୍ଜୁନ ।'

ନୀଳାଦ୍ରିଅର୍ଚ୍ଚନ ଚନ୍ଦ୍ରିକା'ରେ ସୂଚିତ ଅଛି:

ଜଗନ୍ନାଥ ମହାବାହୁ ପ୍ରତ୍ୟକ୍ଷ ରଘୁନନ୍ଦମ୍
ସୌମିତ୍ରୀ ବଳଦେବଶ୍ଚ ଭଦ୍ର ମୈଥିଳି ମେବଚ

ତାନ୍ତ୍ରିକମାନେ ଜଗନ୍ନାଥଙ୍କୁ ନିଜର ଦେବତା ରୂପରେ ପୂଜା କରନ୍ତି । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ବର୍ଣ୍ଣିତ ଅଛି:

'ତାରା ସାକ୍ଷାତ ଶୁଳପାଣିଂ ସୁଭଦ୍ରା ଭୁବନେଶ୍ୱରୀ
ନୀଳାଦ୍ରି ଜଗନ୍ନାଥଷ୍ଟ ସ୍ୱୟଂ ଦକ୍ଷୀଣକାଳିକା'

ଜଗନ୍ନାଥ ଧର୍ମ ନୁହେଁ ଜଗନ୍ନାଥ ସଂସ୍କୃତି । ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶାର ଯେଉଁ ସଂସ୍କୃତି ସମୃଦ୍ଧ ହୋଇଛି, ତାହାକୁ ଜଗନ୍ନାଥ ସଂସ୍କୃତି ନାମରେ ଅଭିହିତ କରାଯାଇଛି । ଜଗନ୍ନାଥ ସଂସ୍କୃତିରେ ଏବଂ ସ୍ୱରୂପରେ ଆର୍ଯ୍ୟମାନଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥ ବେଦକୁ ମଧ୍ୟ ଆରୋପ କରାଯାଇଛି । ବଳରାମ ଦାସ ଯଥାର୍ଥରେ ପ୍ରକାଶ କରିଛନ୍ତି :

'ବଳଭଦ୍ର ଯେ ସାମ ହୋଇ
ଋକ୍ ଯେ ସୁଭଦ୍ରା ଅଟଇ
ଜର୍ଜୁର୍ବେଦ ଶ୍ରୀଜଗନ୍ନାଥ
ଅଥର୍ବ ସୁଦର୍ଶନ ପାର୍ଥ ।'

ଜଗନ୍ନାଥ ମୁକ୍ତି, ସାମ୍ୟ, ମୈତ୍ରୀର ପ୍ରତୀକ । ତେଣୁ ଜଗନ୍ନାଥଙ୍କ ମହାପ୍ରସାଦରେ ଜାତିଭେଦ ସ୍ୱୀକାର କରାଯାଏ ନାହିଁ । ସେବା ପୂଜାରେ ମଧ୍ୟ ବ୍ରାହ୍ମଣକୁ ପ୍ରାଧାନ୍ୟ ନାହିଁ । ସେ ହେଉଛନ୍ତି ଶବର ଦେବତା । 'ଚନ୍ଦ୍ର ପୁରାଣ'ରେ ବର୍ଣ୍ଣନା ଅଛି:

'ସାମ୍ୟ ମୈତ୍ରୀବାନା ଖଞ୍ଜି ନୀଳଚକ୍ର ଚୂଳେ
ବିଜେ କରିଅଛ ଭାଇ ଭଉଣୀଙ୍କ ମେଳେ ।'

ଜଗନ୍ନାଥଙ୍କ ଦେହରୁ ସମସ୍ତ ଅବତାର ଆତ୍ମପ୍ରକାଶ କରିଛନ୍ତି । 'ବେଦାନ୍ତସାର ଗୁପ୍ତଗୀତା'ରେ ଭକ୍ତ କବି ବଳରାମ ଦାସ ପ୍ରକାଶ କରିଛନ୍ତି:

'ସର୍ବଦା ନୀଳାଦ୍ରିରେ ସ୍ଥିତି
ଏଥୁ ସକଳ ଜାତ ହୁଅନ୍ତି
ସମସ୍ତ ଅବତାର ମାନ
ଜାତ ହୋଇଣ ପଶେ ପୁଣ ।'

ପୁନଶ୍ଚ 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ବଳରାମ ଦାସ ଉଲ୍ଲେଖ କରିଛନ୍ତି:

'ଦେଖ ଦେଖ ଏ ନୀଳାଚଳ
ସକଳ ତୀର୍ଥଙ୍କର ଆଳ
ଗୋପ ମଥୁରା ବୃନ୍ଦାବନ
ଦ୍ୱାରିକା ଆଦି ଯେତେ ସ୍ଥାନ
ସକଳ ଏଇ ସ୍ଥାନେ ପାଇ
ଆବର କାଶି ମଧ୍ୟ ହୋଇ
କୋଟିଏ ତୀର୍ଥ ଏ କ୍ଷେତ୍ରରେ
ମହିମା କହିଲେ ନସରେ ।'

ଜଗନ୍ନାଥ ଧାମରେ ଜାତିଭେଦ ନାହିଁ । 'ଶୂନ୍ୟ ସଂହିତା'ରେ ଅଚ୍ୟୁତାନନ୍ଦ ଦାସ ପ୍ରକାଶ କରିଛନ୍ତି:

'ଚାଣ୍ଡାଳ ବ୍ରାହ୍ମଣ ଗୁରୁ ଶିଷ୍ୟ ପୁଣ
ବାରଣ ନଥିବ ତହିଁ ବିକାର ନଥିବ
ଏକାକାର ହେବ
ନିରାକାର ଆଜ୍ଞା ଏହି ।'

ସାଧୁ ଚୈତନ୍ୟ ଦାସ 'ନିର୍ଗୁଣ ମାହାତ୍ମ୍ୟ'ରେ ପ୍ରକାଶ କରିଛନ୍ତି:

'ଶୁଖିଲା କାଠ ଦାରୁବ୍ରହ୍ମ
ତହିଁ ଅଛନ୍ତି ପରବ୍ରହ୍ମ'

'ତନ୍ତ୍ରଜାମଳ' ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି:

'ଭାରତେ ଚୋତ୍କଳେ ଦେଶେ
ଭୁସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ
ଭକ୍ତନାମ ଭୟପ୍ରଦଃ ।'

କରପଲ୍ଲବ ନଥାଇ ସେ ଗ୍ରହଣ କରନ୍ତି । ପାଦ ନଥାଇ ବେଗଗାମୀ ହୁଅନ୍ତି । ଚକ୍ଷୁ ନଥାଇ ଦେଖି ପାରନ୍ତି, କର୍ଣ୍ଣ ନଥାଇ ଶୁଣି ପାରନ୍ତି, ସେ ସମସ୍ତଙ୍କୁ ଜାଣନ୍ତି, ତାଙ୍କୁ କେହି ଜାଣି ପାରନ୍ତି ନାହିଁ । ଉପନିଷଦରେ ବ୍ରହ୍ମର ଏହି ଚିତ୍ର ଶ୍ରୀଜଗନ୍ନାଥଙ୍କ ସ୍ୱରୂପରେ ବିଦ୍ୟମାନ ।

**ସହାୟକ ଗ୍ରନ୍ଥସୂଚୀ**

୧. ନବକଳେବର ଓ ଜଗନ୍ନାଥ ଧର୍ମର ଐତିହାସିକ ପୃଷ୍ଠଭୂମି: ଡକ୍ଟର ଯଜ୍ଞ କୁମାର ସାହୁ
୨. ଶ୍ରୀଜଗନ୍ନାଥ ତତ୍ତ୍ୱ ସମୀକ୍ଷା: ସଦାଶିବ ରଥଶର୍ମା
୩. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା: ଡକ୍ଟର ବାସୁଦେବ ସାହୁ
୪. ଜଗତ ଦର୍ଶନରେ ଜଗନ୍ନାଥ: ଗୁରୁଚରଣ ପଟ୍ଟନାୟକ
୫. ଶ୍ରୀକ୍ଷେତ୍ର: ଶ୍ରୀଜଗନ୍ନାଥ: ଉତ୍କଳ ପାଠକ ସଂସଦ
୬. ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସଂସ୍କୃତି: ପରମାନନ୍ଦ ତ୍ରିପାଠୀ
୭. ଜଗନ୍ନାଥ ଜିଜ୍ଞାସା: ରାମକୃଷ୍ଣ ପତି
୮. ଲୀଳାମୟ ଜଗନ୍ନାଥ: ଗଣେଶ ପ୍ରସାଦ ପରିଜା
୯. ପୁରୁଷୋତ୍ତମ ଶ୍ରୀଜଗନ୍ନାଥ : ସଦାଶିବ ମିଶ୍ର
୧୦. ବୃଦ୍ଧ ଜଗନ୍ନାଥ: ରାଧାକୃଷ୍ଣ ସାହୁ

ବିଭାଗ ମୁଖ୍ୟ
ସ୍ନାତକୋତ୍ତର
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଫକୀରମୋହନ ବିଶ୍ୱବିଦ୍ୟାଳୟ
ବାଲେଶ୍ୱର–୧

# ନିବେଦନ

**ମିଶ୍ର ସତ୍ୟନାରାୟଣ**

ବଣ ତୁଳସୀର ଜୀବନ ତ ଦେଇ
କଲ ମୋତେ ଉପହାସ
ଆର ଜନମରେ ତୁଳସୀ ନହେଲେ
କର ମୋତେ ଦୁବଘାସ ।

ମନାସିଛି ତୁମ ଆଶିଷ–ଶିଶିରେ
ତନୁ ମୋ' ପଖାଳି ଦେଇ
ଶ୍ରୀପଦ ରଜକୁ ଶିରେ ବୋଳି ହେବି
ଭକତର ମନନେଇ
ସେବା ଉପଚାରେ ଖଟୁଥିବି ସଦା
ତେଜିବିନି ତୁମ ପାଶ ।



ଗହନ ବିଜନ ବନରେ ରଖିଲ
କେଉଁ ଅଭିଶାପେ ମୋତେ
ଶିରୀଅଙ୍ଗ ଲାଗି ନହେଲେ ଭାଜନ
ଇଏ କି ଜନମ ସତେ !
ତୁମ ପୂଜାପୀଠ ଦରଶନ ବିନା
ହେଲି ପ୍ରଭୁ ମୁଁ ହତାଶ ।

ପ୍ଲଟ୍ ନଂ– ଏଫ୍–୫/ଏ
ଚନ୍ଦକା ଶିଳ୍ପାଞ୍ଚଳ, ପୋ–କିଟ୍
ଭୁବନେଶ୍ୱର–୨୪

# ଶ୍ରୀଜଗନ୍ନାଥ ସଂସ୍କୃତି

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ସଂସ୍କୃତିର ସଂଜ୍ଞା ବ୍ୟାପକ, ସଂକ୍ଷେପରେ ଉଲ୍ଲେଖ କଲେ, ଗୋଟିଏ ଜାତିର ଚିନ୍ତା, ଚେତନା, ଭାବ, ଅନୁଭବ, ଆବେଗ, ମୂଲ୍ୟବୋଧ, ମହତ୍ ଲକ୍ଷ୍ୟ କାର୍ଯ୍ୟଧାରା, ବୃତ୍ତି, ପ୍ରବୃତ୍ତି, ସାଫଲ୍ୟ ଓ ବିକାଶର ଧାରା ହିଁ ସଂସ୍କୃତି । ସଂସ୍କୃତି ହେଉଛି ମାନବ ସଭ୍ୟତାର ପ୍ରାଣ । ଜାତିର ଜୀବନଯାପନ ଧାରା ରୁଚିସମ୍ପନ୍ନ ଓ ମାର୍ଜିତ ହେଲେ ସଂସ୍କୃତିର ଅଭ୍ୟୁଦୟ ଘଟେ ତଥା ଭାଷା, ସାହିତ୍ୟ, କଳା, ଶିଳ୍ପ, ସ୍ଥାପତ୍ୟ, ନୃତ୍ୟ ସଂଗୀତ ଓ ଦର୍ଶନ ପ୍ରଭୃତିରେ ଏହାର ପରିପ୍ରକାଶ ଘଟିଥାଏ । ସଂସ୍କୃତି ସହିତ ଧର୍ମ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲେ ସଭ୍ୟତ୍ୟ ଉନ୍ନତ ହୋଇ ସମାଜ ସମୃଦ୍ଧ ହୁଏ । ଏହାର ଜ୍ୱଳନ୍ତ ଉଦାହରଣ ହେଉଛି ଶ୍ରୀଜଗନ୍ନାଥ ସଂସ୍କୃତି । ଶ୍ରୀଜଗନ୍ନାଥ ଉପାସନାରୁ ଜନ୍ମ ନେଇଥିବା ଜଗନ୍ନାଥ ସଂସ୍କୃତି ହେଉଛି ବିଶ୍ୱର ପ୍ରାଚୀନତମ ସଂସ୍କୃତି । ପ୍ରାଚୀନ ଭାରତର ତପୋନିଷ୍ଠ ମହାତ୍ମାଙ୍କ ମୁଖରୁ ବେଦ ନିସୃତ ହେବାର ବହୁ ପୂର୍ବରୁ ଶ୍ରୀଜଗନ୍ନାଥ ସଂସ୍କୃତିର ଉଦ୍ଭବ ଘଟିଥିଲା ।



ପ୍ରାଗ୍ ବୈଦିକ ଯୁଗରୁ ଦିବ୍ୟ ନୀଳାଚଳରେ ଦାରୁ ଉପାସନାର ପ୍ରବହମାନ ଧାରା ସମ୍ପର୍କରେ ଋଗ୍‌ବେଦରେ ଉଲ୍ଲିଖିତ ଥିବାରୁ ପ୍ରମାଣିତ ହୁଏ ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ପ୍ରାଗ୍‌ବୈଦିକ ସଂସ୍କୃତି । ନିର୍ଗୁଣ ନିରାକାର ପରଂବ୍ରହ୍ମ ସଗୁଣ ସାକାର ଦାରୁ ରୂପରେ ପୂଜା ପାଇ ବିଶ୍ୱର ପ୍ରଥମ ସାକାର ଦେବତାର ଆସନ ଗ୍ରହଣ କଲେ । ସେହି ଦାରୁ ଉପାସନାରୁ ଜନ୍ମ ନେଲା ଜଗନ୍ନାଥ ସଂସ୍କୃତି । ଜାତି, ବର୍ଣ୍ଣ, ସମ୍ପ୍ରଦାୟ ଭେଦରେ ତାହା ବିଭାଜିତ ନହୋଇ ଚିନ୍ତନଠାରୁ ବ୍ୟବହାରିକ ଜୀବନ ତଥା ମାନବୀୟ ସମ୍ବେଦନାଠାରୁ ସମଷ୍ଟିଗତ ଏକତାକୁ ଆଧାର କରି ଏହି ସଂସ୍କୃତି ସଂପ୍ରସାରିତ ହୋଇଥିଲା । ମହନୀୟତା ହେଉଛି, ଏହି ସଂସ୍କୃତିର ଉନ୍ମେଷ ସ୍ଥଳୀ । ଦିବ୍ୟ ନୀଳାଚଳର ପବିତ୍ର ବାଲୁକାରେଣୁ ସ୍ପର୍ଶ କଲା ମାତ୍ରେ ସଭିଏଁ ଜଗନ୍ନାଥ ସଂସ୍କୃତିର ମହାସାଗରରେ ଆପଣାକୁ ହଜାଇ ଦେଉଥିଲେ । ସମୟକ୍ରମେ ପୂଜିତ ମହାଦାରୁ ବୈଦିକ ବିଧି ଓ ଯାଜ୍ଞିକ ପ୍ରକ୍ରିୟାରେ ଚତୁର୍ଦ୍ଧା ମୂର୍ତ୍ତିରେ ରୂପାନ୍ତରିତ ହୋଇ ଶ୍ରୀଜଗନ୍ନାଥ ସଂସ୍କୃତି ସହିତ ବୈଦିକ ସଂସ୍କୃତିର ସମ୍ମିଶ୍ରଣ ହେଲା । ବୈଦିକ ପ୍ରଚେତାବୃନ୍ଦ ଶ୍ରୀଜଗନ୍ନାଥଙ୍କୁ ପୁରୁଷ ନାମରେ ଅଭିହିତ କଲେ । ବେଦୋକ୍ତ ପୁରୁଷୋତ୍ତମ ତତ୍ତ୍ୱକୁ ଜଗନ୍ନାଥଙ୍କଠାରେ ଆରୋପିତ କରାଯାଇ ତାଙ୍କୁ କ୍ଷର ବା ପରିବର୍ତ୍ତିତ ଓ ଅକ୍ଷର ବା ଅପରିବର୍ତ୍ତିତ ବିଶ୍ୱ ପୁରୁଷ ନାମରେ ଆଖ୍ୟାୟିତ କରାଗଲା । ଦିବ୍ୟ ନୀଳାଚଳ ପୁରୁଷୋତ୍ତମ ଧାମ ନାମରେ ପ୍ରସିଦ୍ଧି ଲାଭ କଲା । ଶ୍ରୀଜଗନ୍ନାଥଙ୍କ ନାମ ଓ ଧାମକୁ ଆଧାର କରି ପୃଥିବୀର ଏହି ପ୍ରାଚୀନତମ ସଂସ୍କୃତି ବିକଶିତ ହୋଇଥିଲା । ପୁରୁଷୋତ୍ତମ ଚେତନା ସହିତ ବିକଶିତ ବୈଶିଷ୍ଟ୍ୟଦ୍ୱାରା ଅଭିପୂରିତ ଜୀବନଶୈଳୀ 'ଜଗନ୍ନାଥ ସଂସ୍କୃତି' ନାମରେ ସ୍ୱତନ୍ତ୍ର ମର୍ଯ୍ୟାଦାରେ ଅଧିଷ୍ଠିତ ହେଲା । ପ୍ରାଥମିକ ପର୍ଯ୍ୟାୟରେ ଏହା ପୁରୁଷୋତ୍ତମ କ୍ଷେତ୍ରରେ ଜନ୍ମ ନେଇଥିଲେ ହେଁ ପରବର୍ତ୍ତୀ କାଳରେ ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । ଏହି ସଂସ୍କୃତିକୁ 'ସା ପ୍ରଥମା ସଂସ୍କୃତି ବିଶ୍ୱବାରୀ' ବୋଲି ବ୍ୟକ୍ତ କରାଗଲା । ଆଧ୍ୟାତ୍ମିକତାର ସୌରଭରେ ପ୍ରଫୁଲ୍ଲିତ ତଥା ଆଧ୍ୟାତ୍ମିକ ସ୍ପନ୍ଦନରେ ଉତ୍‌ଫୁଲ୍ଲିତ ସେହି ସଂସ୍କୃତିର ଆଚାର, ବିଚାର, ପରମ୍ପରା ଜନଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲା । ସାମାଜିକ ଓ ଅର୍ଥନୈତିକ ଜୀବନ ସହିତ ଧାର୍ମିକ ଓ ସାଂସ୍କୃତିକ ଜୀବନର ସମନ୍ୱୟରେ ଏହି ସଂସ୍କୃତି

ମାନବୀୟ ପଞ୍ଜାର ଉତ୍ତରୋତ୍ତର ଅଭିବୃଦ୍ଧି ଘଟାଇଲା । ମହନୀୟତା ହେଉଛି, ଏହା ମାନବକୁ ଦେବତାରେ ପରିଣତ କରିବାର କଳାକୌଶଳରେ ସମୃଦ୍ଧ ହୋଇ ମାନବ ସମାଜର ଜୀବନଚର୍ଯ୍ୟାକୁ ସରସ, ସୁନ୍ଦର, ସମୃଦ୍ଧ, ସୃଜନଶୀଳ ଓ ପରିପୂର୍ଣ୍ଣ କରି ପାରିଥିଲା । କ୍ରମାଗତ ସଂସ୍କାର ଓ ଉତ୍ତରଣଶୀଳତା ଏହାକୁ ଉର୍ଦ୍ଧ୍ୱମୁଖୀ କରାଇ ବିଶ୍ୱରେ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରିପାରିଥିଲା ।

ମହାଦାରୁରୁ ଚତୁର୍ଦ୍ଧା ମୂର୍ତ୍ତି ନିର୍ମିତ ହୋଇ ଶ୍ରୀବତ୍ସ ଖଣ୍ଡଶାଳ ରୀତିରେ ନିର୍ମିତ ଭବ୍ୟମନ୍ଦିରରେ ପୂଜା ପାଇଲା ପରେ ଶ୍ରୀଜଗନ୍ନାଥ ସଂସ୍କୃତିର ମାହାତ୍ମ୍ୟ ବୃଦ୍ଧି ହେଲା । ପ୍ରତିବର୍ଷ ଗୋଟିଏ ସପ୍ତାହ ନିମିତ୍ତ ଜନ୍ମବେଦୀକୁ ତ୍ରିରଥରେ ଯାତ୍ରା କରି ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଘୋଷଯାତ୍ରାର ଅୟମାରମ୍ଭ ଘଟାଇଲେ । ଶ୍ରୀଜଗନ୍ନାଥ ହେଉଛନ୍ତି ବିଶ୍ୱର ସର୍ବପ୍ରାଚୀନ ଦେବତା, ଯିଏ ଘୋଷଯାତ୍ରା ଅବସରରେ ରତ୍ନସିଂହାସନରୁ ଓହ୍ଲାଇ ଆସି ଜାତି ଧର୍ମ ନିର୍ବିଶେଷରେ ଅଗଣିତ ଭକ୍ତଙ୍କ ସହିତ ଏକାକାର ହୋଇଯାଆନ୍ତି । ଘୋଷଯାତ୍ରାର ମହତ୍ ଉଦ୍ଦେଶ୍ୟ ହେଉଛି 'ସର୍ବେଷାଂ ପାବନଂ ମହତ୍' । ଅଗଣିତ ପତିତଙ୍କୁ ପାବନ କରିବା ନିମିତ୍ତ ଏହା ପରଂବ୍ରହ୍ମଙ୍କର ସ୍ୱୟଂ ଲୀଳା । ଏହି ଲୀଳାରେ ଯୁଗେ ଯୁଗେ ପତିତମାନଙ୍କୁ ପାବନ କରି ସେ ହୋଇଛନ୍ତି ପତିତପାବନ । ତାଙ୍କ ବାନା ହେଉଛି ପତିତପାବନ ବାନା । ଜଗତ ପତିତ କହିଲେ ଯାହା ବୁଝେ, ତାହା ତାଙ୍କଠାରେ ପାବନ ଭାବରେ ପ୍ରତିଷ୍ଠିତ । ଶ୍ରୀଜଗନ୍ନାଥଙ୍କ ଦିବ୍ୟ ଦୃଷ୍ଟିରେ ଯିଏ ପବିତ୍ର ସେ ହିଁ ପବିତ୍ର । ତାଙ୍କ ଘୋଷଯାତ୍ରାର ନାମ ପତିତପାବନ ଯାତ୍ରା । ଏହି ଯାତ୍ରାରେ ସେ ପତିତପାବନତ୍ୱକୁ ହିଁ ପ୍ରମାଣ କରି ଦେଇଛନ୍ତି । ତାଙ୍କ ପାଖରେ ସାନ, ବଡ, ଛୁଆଁ, ଅଛୁଆଁ, ଧନୀ, ଗରିବ, ରୋଗୀ, ଭୋଗୀ, ଜାତି, ଅଜାତି, ଦେଶୀ, ବିଦେଶୀର ଭାବ ନାହିଁ । ତାଙ୍କ ଚକାନୟନରେ ସଭିଏଁ ସମାନ । ତାଙ୍କ ନିକଟକୁ ଯିଏ ଆସିଛି ସେ ପାବନ ହୋଇଛି । ଅଗଣିତ ପତିତଙ୍କୁ ପାବନ କରିବାକୁ ସେ ଶ୍ରୀମନ୍ଦିରର ଐଶ୍ୱର୍ଯ୍ୟଲୀଳା ପରିହାର କରି ଘୋଷଯାତ୍ରାରେ ବଡଦାଣ୍ଡରେ ବିଜେ ହୋଇଥାନ୍ତି । ନିଜକୁ ପତିତ ଭାବିଲେ ହିଁ ତାଙ୍କ ପାବନ ସ୍ୱରୂପ ଉପଲବ୍ଧ ହୋଇଥାଏ । ଏହି ଚେତନାର ବଶବର୍ତ୍ତୀ ହୋଇ ଲକ୍ଷେ ରାଜାଙ୍କର ମଉଡମଣି ଗଜପତି ମହାରାଜା ସକଳ ରାଜକୀୟ ସ୍ୱାଭିମାନ ପରିହାର କରି ପତିତ ରୂପରେ ତାଙ୍କ ସେବା ସମ୍ପନ୍ନ କରିଥାନ୍ତି । ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଏହି ପତିତପାବନ ଲୀଳାରେ ଅବଗାହନ କରିବା ନିମିତ୍ତ ଲକ୍ଷ ଲକ୍ଷ ଭକ୍ତ ବଡଦାଣ୍ଡରେ ପଦାର୍ପଣ କରିଥାନ୍ତି । ବଡଦାଣ୍ଡର ଶରଧାବାଲି ଛୁଇଁବା ମାତ୍ରେ ସଭିଙ୍କ ଭାବ ମହାଭାବରେ ରୂପାନ୍ତରିତ ହୋଇଯାଏ । ଜ୍ଞାନୀଙ୍କ ଜ୍ଞାନ ହଜିଯାଏ, ବେଦାନ୍ତୀଙ୍କ ବେଦ ବିସ୍ମୃତ ହୋଇପଡେ, ଯୋଗୀ ଯୋଗରୁ ବିଚ୍ୟୁତ ହୋଇଯାଆନ୍ତି, ମାନୀଙ୍କ ମାନ ଭାଙ୍ଗିଯାଏ, ଭକ୍ତଙ୍କ ଭକ୍ତି ଭାବସାଗରରେ ମିଳାଇଯାଏ । ସଭିଏଁ ଦୀନହୀନ ଅକିଞ୍ଚନ ଓ ପତିତ ହୋଇଯାଆନ୍ତି । ସଭିଙ୍କ କଣ୍ଠରୁ ଆପେ ଆପେ ବାହାରି ଆସେ:

'ପତିତାନାଂ ପତିତୋଦ୍ଧହଂ ତ୍ୱମେବ ପାପହାରକଂ
ପାବନ ପୁରୁଷ ! ଦେହି ନିଶ୍ଚଳା ଭକ୍ତି ମେ ବିଭୋ !'

ଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରାର ଦିବ୍ୟ ସନ୍ଦେଶ ହେଉଛି ବିଶ୍ୱମୈତ୍ରୀ । ମାନବ ଜାତିର ଐତିହ୍ୟରେ ଶୀର୍ଷ ଆସନ ଅଳଙ୍କୃତ କରିଥିବା ଏହି ଯାତ୍ରା ସ୍ୱକୀୟ ପ୍ରସାରଣଶୀଳତାରେ ବିଶ୍ୱ ସଂସ୍କୃତିକୁ ସ୍ପନ୍ଦିତ କରି ପାରିଛି । ବିଶ୍ୱର କୋଣେ ଅନୁକୋଣେ ଘୋଷଯାତ୍ରା ଅନୁଷ୍ଠିତ ହୋଇ ବିଶ୍ୱାତ୍ମ ଚେତନା ଅନୁଭୂତ । ବିଶ୍ୱ ସମ୍ବିଧାନର ପ୍ରତୀକାତ୍ମକ ବିଗ୍ରହ ଶ୍ରୀଜଗନ୍ନାଥଙ୍କର ଘୋଷଯାତ୍ରା ବିଶ୍ୱ ପ୍ରସିଦ୍ଧ ଗଣମହୋତ୍ସବ ସ୍ୱରୂପରେ ପ୍ରତିଭାତ ତଥା ଏହି ବିଶ୍ୱ କଲ୍ୟାଣକାରୀ ମହୋତ୍ସବରେ 'ବସୁଧୈବ କୁଟୁମ୍ବକମ୍' ଚେତନା ସଞ୍ଚାରିତ । ଏହି ଗଣମହୋତ୍ସବରେ ମାନବବାଦ ସାକାର ରୂପ ଧାରଣ ପୂର୍ବକ ବିଶ୍ୱ ସଂସ୍କୃତିର ପୃଷ୍ଠପଟ୍ଟରେ ପ୍ରତିଷ୍ଠିତ । ସାମ୍ୟ, ମୈତ୍ରୀ, ପ୍ରୀତି, ଶାନ୍ତି, ସଂହତି ଓ ସଂପ୍ରୀତି ଏହି ଗଣପର୍ବରେ ଅନୁରଣିତ । ମହନୀୟତା ହେଉଛି, ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ବିଚାରରୁ ଉର୍ଦ୍ଧ୍ୱରେ ରହି ତଥା ମାନବ ସମାଜର ସାମଗ୍ରିକ ଭାବମାନସକୁ ସ୍ପର୍ଶ ଓ ସ୍ପନ୍ଦିତ କରି ଘୋଷଯାତ୍ରା ମୈତ୍ରୀମୁଖୀ ଆଭିମୁଖ୍ୟର ପରିପ୍ରଚାରରେ ବିଶ୍ୱବିଶ୍ରୁତ ।

ପ୍ରାଗ୍–ବୈଦିକ କାଳରୁ ଶ୍ରୀଜଗନ୍ନାଥ ଚେତନା ଓ ଉପାସନାର ଅୟମାରମ୍ଭ ଘଟିଥିଲେ ହେଁ ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥ ବୈଦିକ ଦେବତା ଭାବରେ ସ୍ୱୀକୃତ । ଶାସ୍ତ୍ର, ପୁରାଣ ଓ ତନ୍ତ୍ର ତାଙ୍କୁ ବୈଦିକ ଦେବତାର ମାନ୍ୟତା ପ୍ରଦାନ କରିଛନ୍ତି । କିନ୍ତୁ ଉଦାର ଓ ମହାନ୍ ଅନ୍ତଃପ୍ରେରଣରେ ଦୀପ୍ତିମନ୍ତ ଶ୍ରୀଜଗନ୍ନାଥ ସଂସ୍କୃତିର ବୌଦ୍ଧିକ ସୃଜନଶୀଳତା ଶ୍ରୀଜଗନ୍ନାଥଙ୍କୁ କୌଣସି ଗୋଷ୍ଠୀର ଦେବତା ପରିବର୍ତ୍ତେ ଗଣଦେବତା ଆସନରେ ଅଧିଷ୍ଠିତ କରାଇଛି । ଅନ୍ୟ ଭାଷାରେ ଉଲ୍ଲେଖ କଲେ ଶ୍ରୀଜଗନ୍ନାଥ ହେଉଛନ୍ତି ଗଣଦେବତା ଏବଂ ଶ୍ରୀଜଗନ୍ନାଥ ସଂସ୍କୃତି ହେଉଛି ଗଣ ସଂସ୍କୃତି । ଆଦିବାସୀ, ଦ୍ରାବିଡ, ଆର୍ଯ୍ୟ, ଅନାର୍ଯ୍ୟ, ଜୈନ, ବୌଦ୍ଧ, ଶିଖ୍, ଶାକ୍ତ, ଶୈବ, ବୈଷ୍ଣବ, ତାନ୍ତ୍ରିକ, ଯୋଗୀ ପ୍ରଭୃତି ସକଳ ମତବାଦୀଙ୍କର ସେ ଆରାଧ୍ୟ, ଅଥଚ କୌଣସି ଗୋଷ୍ଠୀ ଭିତରେ ସେ ସୀମିତ ରହି ନାହାନ୍ତି । ପ୍ରତ୍ୟେକ ମତବାଦର ପ୍ରଚେତାବୃନ୍ଦ ଓ କେତେକ

ଗବେଷକ ଶ୍ରୀଜଗନ୍ନାଥଙ୍କୁ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଦେବତା ବୋଲି ପ୍ରମାଣ କରିବାକୁ ଉଦ୍ୟମ କରିଥିଲେ ହେଁ ସେ ବିଶ୍ୱ ସଂସ୍କୃତିର ଆଧାର ହୋଇ ରହିଯାଇଛନ୍ତି । ସେଥି ନିମିତ୍ତ ମହାନାଟକରେ ଉଲ୍ଲେଖ ରହିଛି:

ଯଃ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନଃ,
ବୌଦ୍ଧାଃ ବୁଦ୍ଧଇତି ପ୍ରମାଣ ପଟ୍ଟବଃ କର୍ତ୍ତେତି ନୈୟାୟିକାଃ ।
ଅର୍ହନ୍ନିତ୍ୟଥ ଜୈନ ଶାସନରତାଃ କର୍ମେତି ମୀମାଂସକାଃ,
ସୋଽୟଂବୋ ପ୍ରବିଧାତୁ ବାଞ୍ଛିତ ଫଳ ତ୍ରୈଲୋକ୍ୟନାଥୋ ହରିଃ ।

ଶ୍ରୀଜଗନ୍ନାଥ ସଂସ୍କୃତି ଅନ୍ୟାନ୍ୟ ସଂସ୍କୃତିକୁ ପ୍ରଭାବିତ କରିଛି ଏବଂ ପୂର୍ବରୁ ଉଲ୍ଲିଖିତ ସଂସ୍କୃତି ସମୂହରୁ କିଛି କିଛି ଗ୍ରହଣ ପୂର୍ବକ କାୟା ବିସ୍ତାର କରିଛି, କିନ୍ତୁ କୌଣସି ସଂସ୍କୃତିକୁ ହତାଦର କରିନାହିଁ । ଏହି ପୁରୋଦୃଷ୍ଟିରୁ ଜଗନ୍ନାଥ ସଂସ୍କୃତିରେ ଅନ୍ୟ ସଂସ୍କୃତିର କିଛି ଛାପ ପରିଦୃଶ୍ୟ ହୋଇଥାଏ । ବିଭିନ୍ନ ମତବାଦୀ ଓ ଗବେଷକ ଶ୍ରୀଜଗନ୍ନାଥ ସଂସ୍କୃତିର ଏହି ସୃଜନଶୀଳ ସଂସ୍କାର ପ୍ରତି ଦୃଷ୍ଟି ନିକ୍ଷେପ ନକରି ଅନେକ କଥା ଲେଖିଯାଇଛନ୍ତି, ଅଥଚ ଶ୍ରୀଜଗନ୍ନାଥ ନିଜ ସୃଷ୍ଟ ସଂସ୍କୃତିର ମୂଳାଧାର ରୂପେ ଅଦ୍ୟାବଧି ବିରାଜିତ ।

ବିଶ୍ୱାବସୁ ଶବର, ବ୍ରାହ୍ମଣ ବିଦ୍ୟାପତି, ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ, ଦେବର୍ଷି ନାରଦ, ମହାରାଣୀ ଗୁଣ୍ଡିଚା, ବଜ୍ରଯାନୀ ଇନ୍ଦ୍ରଭୂତି, ଅଦ୍ୱୈତବାଦୀ ଶଙ୍କରାଚାର୍ଯ୍ୟ, ବିଶିଷ୍ଟାଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟ, ଦ୍ୱୈତବାଦୀ ମଧ୍ୱାଚାର୍ଯ୍ୟ, ଦ୍ୱୈତାଦ୍ୱୈତବାଦୀ ନିମ୍ବାର୍କାଚାର୍ଯ୍ୟ, ଭକ୍ତିଧର୍ମାବଲମ୍ବୀ ଶ୍ରୀଚୈତନ୍ୟ, ଶୂନ୍ୟବାଦୀ ବଳରାମ ଦାସ, ଶିଖ୍ ଧର୍ମଗୁରୁ ନାନକ, ମହାତ୍ମା କବୀର ଦାସ, ପୌତ୍ତଳିକ ହରିଦାସ, ଗଣପତି ଉପାସକ ଗଣପତି ଭଟ୍ଟ, ରାମଭକ୍ତ ତୁଳସୀ, ଅଚିନ୍ତ୍ୟଭେଦାଭେଦବାଦୀ ବଳଦେବ ବିଦ୍ୟାଭୂଷଣ ସଭିଏଁ ନୀଳାଚଳଧାମରେ ପଦାର୍ପଣ କରି ଆପଣା ଆପଣାର ଦାର୍ଶନିକ ଚିନ୍ତା ଓ ଚେତନା ଶ୍ରୀଜଗନ୍ନାଥଙ୍କଠାରେ ଆରୋପିତ କରିଥିଲେ ହେଁ ଶ୍ରୀଜଗନ୍ନାଥ ସଂସ୍କୃତିର ପଟ୍ଟ ପରିବର୍ତ୍ତନ କରିପାରି ନାହାନ୍ତି ଅଧିକନ୍ତୁ ଶ୍ରୀଜଗନ୍ନାଥ ସଂସ୍କୃତିରେ ସକଳ ଦାର୍ଶନିକ ଚିନ୍ତା ଓ ଚେତନାର ସମ୍ମିଶ୍ରଣ ଘଟି ସମନ୍ୱୟର ମହାଭାବ ସୃଷ୍ଟି ହୋଇଛି । ଅନେକ ରୂପାତ୍ମକ ତଥା କ୍ଷଣକ୍ଷଣକେ ବିଲକ୍ଷଣ ରୂପଧାରଣ କରୁଥିବା ବିଶ୍ୱରେ ପୁରୁଷୋତ୍ତମ ଜଗନ୍ନାଥ ତତ୍ତ୍ୱଜ୍ଞାନର ବ୍ୟାପକ ଦୃଷ୍ଟିକୁ ଦର୍ଶନରେ ରୂପାନ୍ତର କରି ପିଣ୍ଡ ଓ ବ୍ରହ୍ମାଣ୍ଡର ପ୍ରଭେଦକୁ ପ୍ରଜ୍ଞାନରେ ପରିଣତ କରିଛନ୍ତି । ଏହାଦ୍ୱାରା ଶ୍ରୀଜଗନ୍ନାଥ ଧର୍ମ, ସଂସ୍କୃତି ଓ ଦର୍ଶନରେ ଜୀବ ଓ ନିର୍ଜୀବର ଅନ୍ତଃସ୍ଥଳରେ ବିଦ୍ୟମାନ ଥିବା ଏକରୂପତା ସହଜ ବୋଧଗମ୍ୟ ହୋଇପାରିଛି ତଥା ଦୁଃଖପୂର୍ଣ୍ଣ ସଂସାରର ଆତ୍ୟନ୍ତିକ ଦୁଃଖ ଦୂରୀକରଣର ଦିବ୍ୟପଥ ପ୍ରଶସ୍ତ ହୋଇପାରିଛି । ମହନୀୟତା ହେଉଛି, ଭାରତୀୟ ଦର୍ଶନରେ ଜୀବକୁ ବ୍ରହ୍ମ କୁହାଯାଇ ଥିଲେ ହେଁ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଦର୍ଶନରେ ନିର୍ଜୀବ ବ୍ରହ୍ମରେ ପରିଣତ ହୋଇପାରିଛି । ନିର୍ଜୀବ ପଦବ୍ୟାଚ୍ୟ ତଣ୍ଡୁଳ ଶ୍ରୀଜଗନ୍ନାଥଙ୍କ ସେବା ନିମିତ୍ତ ସରଘରକୁ ଆସିଲେ ଅମୁଣିଆ, ବୈଷ୍ଣବାଗ୍ନିରେ ସିଦ୍ଧ ହେବା ପରେ ଅନ୍ନ, ଠାକୁରଙ୍କ ନିକଟକୁ ପ୍ରେରଣ ସମୟରେ ଛେକ, ପୋଖରିଆରେ ପହଞ୍ଚିଲେ ଭୋଗ, ଠାଆମୁରୁଜ ଉପରେ ସଂସ୍ଥାପିତ ହେଲେ ନୈବେଦ୍ୟ, ଉତ୍ସର୍ଗ ହେବାପରେ ପ୍ରସାଦ, ଜଗଜ୍ଜନନୀ ବିମଳାଙ୍କ ନିକଟରେ ସମର୍ପଣ ପରେ ମହାପ୍ରସାଦ, ଆନନ୍ଦ ବଜାରକୁ ଆସି ମୋକ୍ଷଦାତା ସ୍ୱରୂପରେ କୈବଲ୍ୟ, ଭକ୍ତ ସେବା ପୂର୍ବକ ପରମାନନ୍ଦ ଲାଭ କଲାବେଳେ ଅବଢା ଏବଂ ଶେଷରେ ଯାହା ଉଚ୍ଛିଷ୍ଟ ରହେ ତାହା ନିର୍ମାଲ୍ୟ ରୂପେ ପ୍ରତିଭାତ ହୋଇ ପରଂବ୍ରହ୍ମ ଜଗନ୍ନାଥଙ୍କ ସ୍ୱରୂପ ଧାରଣ କରିଥାଏ । ଏହା ହିଁ ଶ୍ରୀଜଗନ୍ନାଥ ସଂସ୍କୃତିରେ ନିର୍ଜୀବକୁ ବ୍ରହ୍ମରେ ପରିଣତ କରିବାର କଳାକୌଶଳ, ଯାହାକି ଯୁଗ ଯୁଗ ଧରି ଜନମାନସରେ ବ୍ରହ୍ମଚେତନା ସୃଷ୍ଟି କରି ଆସିଛି ।

ବିଶ୍ୱର ସକଳ ଧର୍ମଶାସ୍ତ୍ରର ସାରତତ୍ତ୍ୱ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ, ଅଥଚ ଏହି ସଂସ୍କୃତି କୌଣସି ଧର୍ମଧାରାରେ ସୀମାବଦ୍ଧ ନୁହେଁ । ଜଗନ୍ନାଥ ସଂସ୍କୃତିରେ କୌଣସି ପ୍ରକାର ଆଞ୍ଚଳିକ ସଂକୀର୍ଣ୍ଣତା ନାହିଁ । ଏହା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗକାରୀ ସେତୁ । ପରିବର୍ତ୍ତିତ ପରିସ୍ଥିତିରେ ଏହାର ବାହ୍ୟ ରୂପର ପରିବର୍ତ୍ତନ ଘଟିଥିଲେ ହେଁ ମୂଳତତ୍ତ୍ୱ ଅପରିବର୍ତ୍ତିତ ରହିଛି । ପରିଣାମ ସ୍ୱରୂପ ବିଶ୍ୱର ସକଳ ସଂସ୍କୃତି ମଧ୍ୟରେ ଏହା ସମନ୍ୱୟ ପ୍ରତିଷ୍ଠା କରି ପାରିଛି । ଜଗନ୍ନାଥ ସଂସ୍କୃତି ସମସ୍ତ ଜାତି, ଧର୍ମ, ପ୍ରଥା, ପରମ୍ପରା ଓ ସଂସ୍କୃତିକୁ ପ୍ରଶ୍ରୟ ଦେଇଛି । ନିଜେ ବଞ୍ଚିବା ଓ ଅନ୍ୟକୁ ବଞ୍ଚାଇବା ଏହାର ମୌଳିକ ନୀତି । ଏହି ସଂସ୍କୃତିରେ ଏକତା, ସମାନତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଭ୍ରାତୃତ୍ୱର ବାଣୀ ଅତି ସୁସ୍ପଷ୍ଟ । ଚତୁର୍ଦ୍ଧା ମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ସମଗ୍ର ମାନବ ଜାତିର ବିଭିନ୍ନ ରଙ୍ଗର ନିଦର୍ଶନ । ଏହାହିଁ ପ୍ରମାଣ କରିଥାଏ ଯେ ଜଗନ୍ନାଥ ସଂସ୍କୃତି ହେଉଛି ସାର୍ବଜନୀନ ସଂସ୍କୃତି । ଏକତା, ସମାନତା ଓ ବିଶ୍ୱଭ୍ରାତୃତ୍ୱ ଏହାର ପରମ ଲକ୍ଷ୍ୟ । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ହେଉଛି ପ୍ରତୀକାତ୍ମକ, ଯାହା ସମଗ୍ର ବିଶ୍ୱବାସୀଙ୍କ ନିକଟରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱ ପ୍ରତିଷ୍ଠା କରି ଆସୁଅଛି । ଏହି ପୁରୋଦୃଷ୍ଟିରେ ଜଗନ୍ନାଥ ସଂସ୍କୃତି କେବଳ ଜନହିତୈଷୀ ସଂସ୍କୃତି ନୁହେଁ, ବିଶ୍ୱହିତୈଷୀ ସଂସ୍କୃତି ।

ଏହି ସଂସ୍କୃତି ବିଶ୍ୱର ମଙ୍ଗଳ ଉପରେ ପ୍ରାଧାନ୍ୟ ଦିଏ । ଏହି ସଂସ୍କୃତି ଉଦ୍‌ଘୋଷଣା କରେ ଯେ, 'ଈଶ୍ୱର ସକଳ ଜୀବ ମଧ୍ୟରେ ପ୍ରକାଶିତ, ତେଣୁ ପୃଥିବୀର ସକଳ ପ୍ରାଣୀ ସମାନ ।'

ନୃତ୍ୟ, ସଂଗୀତ, ସାହିତ୍ୟ, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ପ୍ରଭୃତି ହେଉଛି ସଂସ୍କୃତିର ଅନ୍ତରଙ୍ଗ ବିଭବ। ସମନ୍ୱୟାତ୍ମକ ଜଗନ୍ନାଥ ସଂସ୍କୃତିରେ ଏହିସବୁ ଅନ୍ତରଙ୍ଗ ବିଭବର ଅନ୍ତଃସ୍ରୋତ ପ୍ରବାହିତ ଏବଂ ମାନବୀୟ ପ୍ରକାର ଉନ୍ନତ ରୁଚି ଓ ସଂସ୍କାରବୋଧ ଦ୍ୱାରା ଏହା ଉଜ୍ଜ୍ୱଳବନ୍ତ । ଶ୍ରୀଜଗନ୍ନାଥଙ୍କ ପାରମ୍ପରିକ ନୃତ୍ୟ ପ୍ରବାହରୁ ଓଡ଼ିଶୀ ନୃତ୍ୟ ଉଦ୍ଭବ, ଯାହାକି ସଂପ୍ରତି ପୃଥିବୀର ସର୍ବଜନାଦୃତ ନୃତ୍ୟକଳା। ଜଗନ୍ନାଥ ସଂସ୍କୃତିରେ ପ୍ରତ୍ୟେକଟି ସଂଗୀତ ଭାବସ୍ପର୍ଶୀ ଓ ଚେତନାଦ୍ୟୋତକ। ଏହି ସଂସ୍କୃତିକୁ ଆଧାର କରି ଯେଉଁ ଅସଂଖ୍ୟ ସାହିତ୍ୟ ସୃଷ୍ଟି ହୋଇଛି ତହିଁର ପଟ୍ଟାନ୍ତର ନାହିଁ । ଶ୍ରୀଜଗନ୍ନାଥ ସଂସ୍କୃତିର କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଏକ ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରିଥାଏ । ଏହା ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇ ଉତ୍କଳକୁ ଉତ୍କୃଷ୍ଟ କଳାର ଭୂଖଣ୍ଡ ରୂପେ ଖ୍ୟାତ କରିଛି। ଜଗନ୍ନାଥ ସଂସ୍କୃତିର ପ୍ରତ୍ୟେକଟି ଅନ୍ତରଙ୍ଗ ବିଭବ ଉଦାର ଓ ମହାନ ଅନ୍ତଃପ୍ରେରଣାରେ ଦୀପ୍ତିମନ୍ତ। ଏଗୁଡିକର ବୌଦ୍ଧିକ ସୃଜନଶୀଳତା ଏହାକୁ ବିଶ୍ୱ ସଂସ୍କୃତିରେ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରିପାରିଛି। ଶତାବ୍ଦୀ ଶତାବ୍ଦୀ ଧରି ଏହା ମାନବ ସମାଜର ଜୀବନଚର୍ଯ୍ୟାକୁ ସରସ, ସୁନ୍ଦର, ସମୃଦ୍ଧ, ସୃଜନଶୀଳ ଓ ପରିପୂର୍ଣ୍ଣ କରି ଆସିଛି। ବିଶେଷତ୍ୱ ହେଉଛି, ଯୁଗ ଯୁଗ ଧରି ଏହି ଅନ୍ତରଙ୍ଗ ବିଭବ ସମୂହ ବିଶ୍ୱ ଜନମାନସକୁ ଆକର୍ଷିତ କରି ଜଗନ୍ନାଥ ସଂସ୍କୃତି ସହିତ ଜନଜୀବନକୁ ଅଙ୍ଗାଙ୍ଗୀ ଭାବରେ ଜଡିତ କରିପାରିଛି। ମହନୀୟତା ହେଉଛି, କ୍ରମାଗତ ସଂସ୍କାର ଓ ଉତ୍ତରଶୀଳତା ଦ୍ୱାରା ଉର୍ଦ୍ଧ୍ୱମୁଖୀ ହୋଇ ଏହା ମାନବିକତାର ଫଳପ୍ରଦ ଶକ୍ତିରେ ସମୃଦ୍ଧ । ସୂଚନାଯୋଗ୍ୟ ଯେ, ସୁଦୀର୍ଘ ପରମ୍ପରା ଏହାକୁ ଉଜ୍ଜୀବିତ ରଖିବା ସହିତ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇ ନୈତିକତା, ମର୍ଯ୍ୟାଦାବୋଧ ଓ ସୃଜନଶୀଳତାକୁ ଭବ୍ୟରୂପ ପ୍ରଦାନ କରି ପାରିଛି । ଅଧିକନ୍ତୁ, ପରମ୍ପରାର କ୍ରମବିକାଶ ଧାରା ଜଗନ୍ନାଥ ସଂସ୍କୃତି ସହିତ ଜୀବନର ସମ୍ପର୍କକୁ ପ୍ରତିଷ୍ଠିତ କରିପାରିଛି। ପରିଣାମ ସ୍ୱରୂପ, ଏହାର ସାଂସ୍କୃତିକ ସ୍ରୋତ୍ରରେ ଅବଗାହନ କରୁଥିବା ପ୍ରତ୍ୟେକଟି ବ୍ୟକ୍ତି, ଜାତି, ଗୋଷ୍ଠୀ ଓ ସମାଜର ଜନଜୀବନ ସୁଶୃଙ୍ଖଳିତ, ସୁସଂହତ, ସମୃଦ୍ଧ ଓ ସମ୍ଭାବ୍ୟ । ଏହି ପ୍ରବହମାନ ଧାରାରେ ଆଧ୍ୟାତ୍ମିକ ଐକ୍ୟବୋଧର ଉନ୍ନତ ରୁଚି, ବୌଦ୍ଧିକ ସୃଜନଶୀଳତା ଓ ସଂସ୍କାରବୋଧ ଚିର ଜାଜ୍ୱଲ୍ୟମାନ ।

ଶ୍ରୀଜଗନ୍ନାଥଙ୍କଠାରେ ନିତ୍ୟ ସମାହିତ ତିନିଧୂପ ପାଞ୍ଚ ଅବକାଶ ରୀତିରେ ପୂଜା, ନୈମିତ୍ତିକ ପର୍ବପର୍ବାଣି ଓ ବାରମାସରେ ସଂଘଟିତ ତେରଯାତ୍ରା ଜଗନ୍ନାଥ ସଂସ୍କୃତିକୁ ସୁସଂଗଠିତ କରିପାରିଛି । ଏଥିରେ ସମାଜର ସକଳଶ୍ରେଣୀ ସକ୍ରିୟ ଅଂଶଗ୍ରହଣ କରି ମହାନତାରେ ଉଦ୍‌ବୁଦ୍ଧ ହୋଇଥାନ୍ତି । ସଭିଙ୍କୁ ଧର୍ମକ୍ଷେତ୍ରରେ ସମାନ ଅଧିକାର ପ୍ରଦାନ କରିବାର ମହାଭିପ୍ରାୟରେ ଶ୍ରୀଜଗନ୍ନାଥ ବାହୁପ୍ରସାରି ସମସ୍ତଙ୍କୁ ଆପଣାର କରି ନେଇଛନ୍ତି । ସମସ୍ତଙ୍କୁ ସେବାଧିକାର ଦେବା ନିମିତ୍ତ ସେ ଛତିଶା ନିଯୋଗ ଭିଆଇଛନ୍ତି । କେବଳ ଯେ ଦ୍ୱାରଫିଟାଠାରୁ ପହଡ ପର୍ଯ୍ୟନ୍ତ ସଭିଏଁ ସେବା ସମ୍ପନ୍ନ କରନ୍ତି, ତାହା ନୁହେଁ, ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନରେ ତଥା ଜନ୍ମଠାରୁ ଉପନୟନ, ବିବାହ, ମାଙ୍ଗଳିକ କାର୍ଯ୍ୟ, ଗୃହ ପ୍ରତିଷ୍ଠା ଓ ପରିଶେଷରେ ଅନ୍ତିମ ସଂସ୍କାର ପର୍ଯ୍ୟନ୍ତ ସଭିଏଁ ଶ୍ରୀଜଗନ୍ନାଥଙ୍କୁ ଆଶ୍ରୟ କରି ଆସୁଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତିରେ ସଂଘଟିତ ପ୍ରତ୍ୟେକ ପର୍ବପର୍ବାଣି ଓ ଯାନିଯାତ୍ରା ସଭିଙ୍କ ଭିତରେ ସଂପ୍ରୀତି, ମାନବିକତା, ଗୋଷ୍ଠୀଗତ ଐକ୍ୟ ଓ ଆଧ୍ୟାତ୍ମିକ ଚେତନାକୁ ସୁଦୃଢ଼ କରିପାରିଛି । ସକଳ ପ୍ରକାର ଯାନିଯାତ୍ରାର ପାରମ୍ପରିକ ପ୍ରବାହ, ସାଂସ୍କୃତିକ ସୌରଭ, ଗଣପର୍ବର ଗୌରବ ଓ ବିଶ୍ୱାତ୍ମବୋଧର ବୈଶିଷ୍ଟ୍ୟ ଶ୍ରୀଜଗନ୍ନାଥ ସଂସ୍କୃତିକୁ ବିଶ୍ୱସଂସ୍କୃତିରେ ରୂପାନ୍ତରିତ କରିପାରିଛି ।

ଶ୍ରୀଜଗନ୍ନାଥ ସଂସ୍କୃତି ବିଶ୍ୱ ସର୍ବପ୍ରାଚୀନ ସଂସ୍କୃତି ହେଲେ ହେଁ ସ୍ୱକୀୟ ସୃଜନଶୀଳତା ଓ ନମନୀୟତା ଯୋଗୁଁ ଏହା ନିତ୍ୟନୂତନ । ବିଭିନ୍ନତା ମଧ୍ୟରେ ଏକତ୍ୱ ଆଣି ମାନବ ସମାଜର ମଙ୍ଗଳ ସାଧନ କରିବାରେ ଏବଂ ସଂହତି ସ୍ଥାପନ କରିବାରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିଛି । ଯୁଗ ପରିପ୍ରେକ୍ଷୀରେ ବହୁ ଉତ୍‌ଥାନ ଓ ପତନ ମଧ୍ୟଦେଇ ଗତି କରିଥିଲେ ହେଁ ପରମ୍ପରାର ପରିଧି ଭିତରେ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇ ଏହା ନିଜର ସ୍ଥିତିକୁ ସୁଦୃଢ଼ କରିପାରିଛି । ପ୍ରଗତିଶୀଳ ଚିନ୍ତାଧାରା ଓ ସଂସ୍କାରବୋଧ ଏହାକୁ ମହାନ କରିପାରିଛି । ସଂକ୍ଷେପରେ ଉଲ୍ଲେଖ କଲେ ପରମ ସତ୍ୟାନ୍ୱେଷଣ ପ୍ରତି ଶ୍ରଦ୍ଧାଳୁତା ଏହାର ସୌରଭ, ଉଦାରତା, ବ୍ୟାପକତା ଓ ବିଶାଳତା ଏହାର ଗୌରବ ଏବଂ ବିଶ୍ୱାତ୍ମଭାବ ଏହାର ବିଭବ ତଥା ଉନ୍ନତ ବ୍ୟକ୍ତିତ୍ୱ, ଆଦର୍ଶ ପରିବାର, ସମୃଦ୍ଧ ସମାଜ, ଗୌରବୋଜ୍ଜ୍ୱଳ ରାଷ୍ଟ୍ର ଓ କଲ୍ୟାଣମୟ ବିଶ୍ୱ ଗଠନ ହିଁ ଏହାର ଆଭିମୁଖ୍ୟ ।

ସଦସ୍ୟ
ଓଡ଼ିଶା ସାହିତ୍ୟ ଏକାଡେମୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ

# ଜଗନ୍ନାଥ ପୁରୁଷୋତ୍ତମଙ୍କ ଗୁପ୍ତ ଗହନ ଗାଥା

ରଜତ କୁମାର କର

୭୮୮ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରି ଇହଧାମ ତ୍ୟାଗ କଲେ ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ । ସନାତନ ହିନ୍ଦୁ ଧର୍ମକୁ ବିପର୍ଯ୍ୟୟରୁ ରକ୍ଷା କରିବା ପାଇଁ ପରମ ପୁରୁଷଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ ସେ । ସ୍ୱଳ୍ପକାଳ ଜୀବଦ୍ଦଶା ଭିତରେ ବହୁ କାର୍ଯ୍ୟ ସମାହିତ ହେଲା ତାଙ୍କ ଦ୍ୱାରା । ଅଦ୍ଭୁତକର୍ମା ଏହି ମହାପୁରୁଷଙ୍କ ଯୁଗୋଦ୍ଧାର କାର୍ଯ୍ୟାବଳି ଦେଖି ସମସ୍ତଙ୍କ ମନରେ ବିଶ୍ୱାସ ଜନ୍ମିଲା, 'ଶଙ୍କର ଶଙ୍କର ସ୍ୱୟଂ' ।



ସନାତନ ଧର୍ମର ସୁରକ୍ଷା ପାଇଁ ସାର୍ବକାଳୀନ ବ୍ୟବସ୍ଥା ପାଇଁ ସେ ସ୍ଥିର କଲେ ସାରା ଭାରତର ଚାରି ଦିଗରେ ପ୍ରତିଷ୍ଠା କରିବେ ଚାରିଧାମ । ଉତ୍ତରରେ ବଦ୍ରିକା, ଦକ୍ଷିଣରେ ଶୃଙ୍ଗେରି, ପଶ୍ଚିମରେ ଦ୍ୱାରକା ଓ ପୂର୍ବରେ ପୁରୁଷୋତ୍ତମ ପୁରୀ ବା ପୁରୀରେ ପ୍ରତିଷ୍ଠା ହେଲା ଚାରି ମଠ । 'ଯତି ଧର୍ମ ନିର୍ଣ୍ଣୟ' ଗ୍ରନ୍ଥରେ ପୁରୀ ପୀଠ ସମ୍ବନ୍ଧରେ କୁହାଗଲା 'ଦ୍ୱିତୀୟ ପୂର୍ବ ଦିଗ୍‌ଭାଗେ ଗୋବର୍ଦ୍ଧନ ମଠଃ ସ୍ମୃତଃ' ପୂର୍ବ ଦିଗରେ ଅଛି ଗୋବର୍ଦ୍ଧନ ମଠ । ସେଠାର ଦେବତାଙ୍କ ସମ୍ବନ୍ଧରେ କୁହାଗଲା–

'ତସ୍ମିନ ଦେବୋ ଜଗନ୍ନାଥଃ ପୁରୁଷୋତ୍ତମ ସଂଜ୍ଞକଃ
କ୍ଷେତ୍ରଂ ଚ ସର୍ବଲୋକେଷୁ ଜନ୍ନାନମ୍ନୈବ ବିଶ୍ରୁତଂ'

ଅର୍ଥାତ୍ ସେଠାରେ ଜଗନ୍ନାଥ ଦେବଙ୍କ ନାମ ପୁରୁଷୋତ୍ତମ, ସେ କ୍ଷେତ୍ର ମଧ୍ୟ ସେହି ନାମରେ ସମସ୍ତ ସ୍ଥାନରେ ପ୍ରସିଦ୍ଧି ଲାଭ କରିଛି ।

ଏ ଶ୍ଳୋକ ପଢି କିଛି ଅସୁବିଧା ଲାଗିପାରେ । ଦେବ ଜଗନ୍ନାଥଙ୍କ ନାମ ପୁଣି ପୁରୁଷୋତ୍ତମ କ'ଣ ? ନୀଳାଚଳ ନାଥଙ୍କ ନାମ ଥିଲା ପୁରୁଷୋତ୍ତମ, ଏବେ ତ ଜଗନ୍ନାଥ ନାମରେ ସେ ବିଶ୍ୱ ପ୍ରସିଦ୍ଧ ହୋଇଛନ୍ତି । ଏ ଶ୍ଳୋକ କିଭଳି କହୁଛି, ଏଠି ଜଗନ୍ନାଥ ଦେବଙ୍କ ନାମ ପୁରୁଷୋତ୍ତମ ?

ପୁରୁଷୋତ୍ତମ ଓ ଜଗନ୍ନାଥ ଉଭୟ ତ ବିଷ୍ଣୁଙ୍କ ନାମ, ତେବେ ଜଗନ୍ନାଥଙ୍କ ନାମ ପୁରୁଷୋତ୍ତମ କାହିଁକି କହୁଛି ଏ ଶ୍ଳୋକ ? କୁହାଯାଇ ପାରିଥାନ୍ତା, ଏଠି ଦେବତାଙ୍କ ନାମ ଉଭୟ ଜଗନ୍ନାଥ ଓ ପୁରୁଷୋତ୍ତମ । ଏ ସମ୍ବନ୍ଧରେ କୁହାଯିବ ଯେ ଜଗନ୍ନାଥ ଶବ୍ଦ ଏଠାରେ ବିଷ୍ଣୁ ଅର୍ଥରେ ପ୍ରୟୋଗ କରାଯାଇଛି ।

ଶଙ୍କରାଚାର୍ଯ୍ୟଙ୍କ ସମୟ ହେଲା ୮ମ ଶତାବ୍ଦୀ । ସେତେବେଳକୁ 'ପୁରୁଷୋତ୍ତମ' ନାମ ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରୁ ଗୋଟିଏ ବୋଲି ଜଣାଥିଲା । ମହାଭାରତ ଭୀଷ୍ମପର୍ବରେ ବିଷ୍ଣୁ ସହସ୍ର ନାମରେ କୁହାଗଲା ।

ଯୋଗ ଯୋଗବିଦାଂ ନେତା
ପ୍ରଧାନ ପୁରୁଷେଶ୍ୱରଃ
ନାରସିଂହଃ ବପୁ ଶ୍ରୀମାନ୍
କେଶବ ପୁରୁଷୋତ୍ତମ ।

ଏହା ଭଗବାନ ବିଷ୍ଣୁଙ୍କ ବର୍ଣ୍ଣନା । ପରେ 'ପୁରୁଷୋତ୍ତମ' ଭଗବାନଙ୍କର ବହୁ ନାମରୁ ଏକ ବୋଲି କୁହାଯାଉଛି । 'ବେଦେ ଚ ଲୋକେ ଚ ପ୍ରଥିତ ପୁରୁଷୋତ୍ତମ' ବୋଲି ଗୀତାରେ ଅର୍ଜୁନଙ୍କୁ କହୁଛନ୍ତି ଶ୍ରୀକୃଷ୍ଣ । କ୍ଷର ଅର୍ଥାତ୍ କ୍ଷୟଶୀଳ ଜାଗତିକ ବସ୍ତୁରେ ସେ ବ୍ୟାପ୍ତ, ଅକ୍ଷୟ ଅର୍ଥାତ୍ ଚିରନ୍ତନ ଆତ୍ମାମାନଙ୍କ ମଧ୍ୟରେ ତାଙ୍କର ସ୍ଥିତି, ଏହି କ୍ଷର ଓ ଅକ୍ଷର ସତ୍ତାର ଉର୍ଦ୍ଧ୍ୱ ସତ୍ତା ହିଁ ପୁରୁଷୋତ୍ତମ । ଯତିଧର୍ମ ନିର୍ଣ୍ଣୟ ଗ୍ରନ୍ଥରେ ଯେଉଁ ପୁରୁଷୋତ୍ତମ ନାମ ବ୍ୟବହାର କରାଯାଇଛି, ତାହା ପୁରୀରେ ବିରାଜମାନ କରୁଥିବା ବିଷ୍ଣୁଙ୍କ ନାମ । ଜଗନ୍ନାଥ ଶବ୍ଦ ଏଠାରେ ବିଷ୍ଣୁ ଅର୍ଥରେ ବ୍ୟବହାର କରାଯାଇଛି । ଶଙ୍କରାଚାର୍ଯ୍ୟଙ୍କ ସମୟକୁ ପୁରୀ ମନ୍ଦିରର ଦେବ ବିଗ୍ରହ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ଥିଲେ । ଭାରତର ଅନ୍ୟ କୌଣସି ବିଷ୍ଣୁ ପ୍ରତିମାଙ୍କ ନାମ ପୁରୁଷୋତ୍ତମ ନଥିଲା । ଜଗନ୍ନାଥ ଶବ୍ଦ ବିଷ୍ଣୁ ଅର୍ଥରେ ବ୍ୟବହାର ହେଲେ ମଧ୍ୟ ଏହା ବିଗ୍ରହଙ୍କ ନାମ ଭାବରେ ଗୃହୀତ ହୋଇ ନଥିଲା ।

ମୂଳ ମହାଭାରତ ଭୀଷ୍ମପର୍ବରେ ଭୀଷ୍ମ କହୁଛନ୍ତି–

'ଜଗତ୍ ପ୍ରଭୁଂ ଦେବ ଦେବ ଅନନ୍ତଂ ପୁରୁଷୋତ୍ତମନ୍ ସ୍ତୁବନ୍ନାମ ସହସ୍ରେଣ ପୁରୁଷଃ ସତତୋତ୍ଥିତଃ ପୁରୁଷୋତ୍ତମ ଏଠି ବ୍ୟବହୃତ ବିଷ୍ଣୁ ଅର୍ଥରେ । ସେହି ଭାବରେ ବ୍ୟବହୃତ ହୋଇଛି ଜଗନ୍ନାଥ ଶବ୍ଦ ବିଷ୍ଣୁ ଅର୍ଥରେ । ଭୀଷ୍ମ କହୁଛନ୍ତି– 'ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ, ବିଷ୍ଣୋର୍ନାମ ସହସ୍ରଂ ମେ ଶୃଣୁ ପାପଭୟାପହମ୍ ସହସ୍ର ନାମ ଭିତରେ ପୁରୁଷୋତ୍ତମ ଗୋଟିଏ ନାମ ଭାବେ ଆସିଛି, କିନ୍ତୁ ଆସି ନାହିଁ ଜଗନ୍ନାଥ ଶବ୍ଦଟି ।

ଗୀତାରେ ପରମବ୍ରହ୍ମଙ୍କ କ୍ଷର ଓ କ୍ଷରାତୀତ ସତ୍ତାକୁ ପୁରୁଷୋତ୍ତମ ବୋଲି କୁହାଯାଇଛି ।

ଏହି ସର୍ବୋତ୍ତମ ସତ୍ତା ଓ ମହାଯାନ ବୌଦ୍ଧଧର୍ମ ବର୍ଣ୍ଣିତ 'ସର୍ବବୁଦ୍ଧମୟ ଗଗନୋପମ' ମହାଶୂନ୍ୟ ସତ୍ତା ଜଗନ୍ନାଥ ଏକ ବୋଲି କହିଲେ ଶଙ୍କରାଚାର୍ଯ୍ୟ ।

ବଜ୍ରଯାନ ବୌଦ୍ଧ ଧର୍ମର ପ୍ରଚାରକ ପଶ୍ଚିମ ଓଡ଼ିଶା ସମ୍ବଲର ରାଜା ଇନ୍ଦ୍ରଭୂତି ତାଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥରେ ସର୍ବୋଚ୍ଚ ସତ୍ତା ତଥା ମହାଶୂନ୍ୟ ସ୍ୱରୂପକୁ କହିଲେ 'ଜଗନ୍ନାଥ' ।

ସେ ଜଗନ୍ନାଥ ଆଦିବୁଦ୍ଧ । ତାଙ୍କଠାରୁ ଆସନ୍ତି ପାଞ୍ଚଜଣ ଧ୍ୟାନୀବୁଦ୍ଧ । ସର୍ବୋଚ୍ଚ ବୁଦ୍ଧ ବଜ୍ରଧର ବା ବଜ୍ରପାଣି । ଇନ୍ଦ୍ରଙ୍କ ଭଳି ବଜ୍ରଧାରୀ ସେ । ତାଙ୍କ ଶକ୍ତି ସ୍ୱରୂପା ପ୍ରଜ୍ଞା ପାରମିତା ।

ସର୍ବୋଚ୍ଚ ଶୂନ୍ୟ ସତ୍ତା ଜଗନ୍ନାଥ ଯେତେବେଳେ ଶଙ୍କରାଚାର୍ଯ୍ୟଙ୍କ ପ୍ରଖର ଯୁକ୍ତିରେ ସେଇ ଗୀତା ବର୍ଣ୍ଣିତ ପୁରୁଷୋତ୍ତମ ସହିତ ଏକୀଭୂତ ହୋଇଗଲେ, ପୁରୀର ପୁରୁଷୋତ୍ତମ ବିଗ୍ରହ ମଧ୍ୟ ଇନ୍ଦ୍ରଭୂତିଙ୍କ ସ୍ତୁତିର 'ବ୍ୟାପିନୋ ଗଗନୋପମ' ଓ 'ସର୍ବବୁଦ୍ଧମୟ' ହୋଇଗଲେ ।

ନୀଳାଚଳ ରୂପୀ ପର୍ବତ ଭଳି ବାଲୁକା ସ୍ତୂପ ବେଦୀ ଭଳି ସମୁଦ୍ର ଗର୍ଭରୁ ଉତ୍ଥିତ ହୋଇଥିଲା ବୋଲି ମହାଭାରତ ବନପର୍ବରେ ଲୋମଶ ମୁନି କହିଥିଲେ ପାଣ୍ଡବମାନଙ୍କୁ । ବ୍ରହ୍ମା ପୃଥିବୀକୁ କଶ୍ୟପ ମୁନିଙ୍କୁ ଦାନ କରିବା ହେତୁ କ୍ରୋଧାନ୍ୱିତା ପୃଥିବୀ ଦେବୀ ସମୁଦ୍ରରେ ନିମଜ୍ଜିତା ହେଲେ । ବ୍ରହ୍ମାଙ୍କ କ୍ଷମା ପ୍ରାର୍ଥନା ପରେ ବରାହଙ୍କ ଦ୍ୱାରା ପୁନରୁତ୍ଥିତା ହେଲେ ପୃଥ୍ୱୀ ଦେବୀ ଏକ ପବିତ୍ର ବେଦୀ ରୂପରେ । ସହି ପବିତ୍ର ବେଦୀରେ ସବୁ ମତର ଉପାସନା କେନ୍ଦ୍ର ଗଢି ଉଠିଲା । ପ୍ରସିଦ୍ଧ ଶୈବ କ୍ଷେତ୍ର ଭାବେ ଗଢି ଉଠିଲା ସେହି ବେଦୀ । ଶିବ ମନ୍ଦିରମାନଙ୍କ ମଧ୍ୟସ୍ଥାନରେ ରହିଲେ ପରମ ଶକ୍ତି ସ୍ୱରୂପିଣୀ ବିମଳା ।

ବିଷ୍ଣୁ ମନ୍ଦିର ଭାବେ ଅନନ୍ତ ପୁରୁଷୋତ୍ତମ ନାମରେ ଅନନ୍ତ ଶୟନ ମୂର୍ତ୍ତି, ନୃସିଂହ ମୂର୍ତ୍ତି ଓ ଚତୁର୍ଭୁଜ ମାଧବ ମୂର୍ତ୍ତି ଶୋଭା ପାଇଲେ ଏହି ସମୁଦ୍ରୋତ୍ଥିତ ଉଚ୍ଚ ପର୍ବତ ସଦୃଶ ଭୂମିରେ । ଏହି ଚତୁର୍ଭୁଜ ବିଷ୍ଣୁ ମାଧବ ଭାବେ ପରିଚିତ ହେଲେ ଏ ଭୂମିରେ । ଚତୁର୍ଦ୍ଦିଗରେ ମାଧବ ଉପାସନା ଚାଲିଲା । ନୀଳ ପ୍ରସ୍ତରରେ ନିର୍ମିତ ମାଧବ ଆଖ୍ୟା ପାଇଲେ ନୀଳମାଧବ ରୂପରେ । ପ୍ରସ୍ତର ମୂର୍ତ୍ତି ଭାବେ ଏହି ଚତୁର୍ଭୁଜ ବିଷ୍ଣୁଙ୍କୁ ଆଦରିବାର ବିଶେଷ କାରଣ ହେଲା ଏକ କିମ୍ବଦନ୍ତୀ । ଏହି କିମ୍ବଦନ୍ତୀ ଅନୁଯାୟୀ ଏଠାରେ ଅପ୍ରାକୃତ ନୀଳମଣି ବିଗ୍ରହ ବିଶ୍ୱାବସୁ ବା ଅନ୍ୟ ସତ୍ୟଯୁଗୀୟ ଭକ୍ତଙ୍କ ଦ୍ୱାରା ପୂଜିତ ଥିଲେ । ହୁଏତ ତେତ୍ରା ଯୁଗରେ ରାମଚନ୍ଦ୍ର ବା ଦ୍ୱାପର ଯୁଗର କୃଷ୍ଣ ତାଙ୍କୁ ଦେଖିଛନ୍ତି । କଳିର ଆଗମନରେ ସେ ଅପ୍ରାକୃତ ମୂର୍ତ୍ତି ବାଲୁକା ଗର୍ଭକୁ ଚାଲି ଯାଇଛନ୍ତି ।

ସେ ଅପାକୃତ ନୀଳମଣି ବିଗ୍ରହଙ୍କ ସ୍ଥାନ ଅଧିକାର କରିଛନ୍ତି ନୀଳମଣି ବିଗ୍ରହ ସ୍ୱରୂପ ପ୍ରସ୍ତର ମୂର୍ତ୍ତିଧାରୀ ବିଷ୍ଣୁ । ଶାସ୍ତ୍ର ଲକ୍ଷଣ ଅନୁସାରେ ଅସ୍ତ୍ରଧାରଣର କ୍ରମ ଅନୁସାରେ ବିଷ୍ଣୁଙ୍କର ବିଭିନ୍ନ ନାମ ରହିଛି । ଏଠାରେ ପୁରୁଷୋତ୍ତମ ଲକ୍ଷଣ ଯୁକ୍ତ ବିଷ୍ଣୁଙ୍କ ପୂଜାର ମହିମା ବ୍ୟାପୁ ଥିଲା ଚତୁର୍ଦ୍ଦିଗ । ଏହି ମହିମା ମୂଳରେ ଥିଲା ସେହି ବାଲୁକା ମଧ୍ୟରେ ଗୁପ୍ତ କିନ୍ତୁ ଲୁପ୍ତ ହୋଇ ନଥିବା ନୀଳମାଧବ ।

ଯୋଗ ବଳରେ ଜାଣିଲେ ଶଙ୍କର– ସେ ଅଛନ୍ତି ନୃସିଂହ ମନ୍ଦିର ପାଖ ସ୍ଥାନରେ । ଶଙ୍କର ତାଙ୍କୁ ଚିହ୍ନିତ କରାଇ ଉଦ୍ଧାର କରାଇଲେ ।

ସେ ଏମିତି ଉଦ୍ଧାର କରିଥିଲେ ବଦ୍ରିକାଠାରେ ଗଙ୍ଗାର ବିରାଟ ଗଣ୍ଡରୁ ବଦ୍ରିନାଥଙ୍କୁ । ଏଥର ବାଲୁକା ଗର୍ଭରୁ ଉଦ୍ଧାର କରିବା ପାଇଁ ତାଙ୍କୁ ଟାଣି ଆଣିଛନ୍ତି ନୀଳାଦ୍ରିନାଥ ।

ଶଙ୍କର ଉଦ୍ଧାର କଲେ ପ୍ରଭୁଙ୍କୁ । କାହିଁକି ବାଲୁକାଗାମୀ ହେଲେ ପ୍ରଭୁ ? ଏଥିପାଇଁ ଯମ ନିବେଦନ କରିଛନ୍ତି ବୋଲି ବ୍ରହ୍ମ ପୁରାଣ କହୁଛନ୍ତି । ପ୍ରଭୁଙ୍କୁ ପ୍ରାର୍ଥନା କରିଛନ୍ତି, 'ଚର୍ମ ଚକ୍ଷୁରେ କଳିରେ ନଦେଖନ୍ତୁ କେହି' । ପ୍ରଭୁ ତଥାସ୍ତୁ କରିଛନ୍ତି । ଏ କଥାକୁ ଶଙ୍କରାଚାର୍ଯ୍ୟ ଅନ୍ୟଥା କରିବେ ନାହିଁ ।

ପ୍ରଭୁଙ୍କୁ ସ୍ଥାପନା କରିବେ ଅନ୍ୟ ଏକ ବହିଃ କଳେବର ଭିତରେ । ବହିଃ କଳେବର ପ୍ରଭୁଙ୍କ ଲକ୍ଷଣ ଯୁକ୍ତ ହେଲେ ସିନା ପ୍ରଭୁଙ୍କ ଅଙ୍ଗସମ୍ଭୂତ ଅପ୍ରାକୃତ ବିଗ୍ରହକୁ ଧାରଣ କରିବ ? ସମାଧାନ ମିଳିଲା । ନିମ୍ବଦାରୁରେ ହେବ ସେ କଳେବର । ବିଷ୍ଣୁ ଲକ୍ଷଣ ଯୁକ୍ତ ଦାରୁରେ ପ୍ରତିମା ହୋଇ ତାଙ୍କ ଗର୍ଭରେ ଧାରଣ କରିବେ ଅପ୍ରାକୃତିକ ମୂର୍ତ୍ତିକୁ ।

ଶଙ୍କରଙ୍କ ମୁଖରୁ ସ୍ୱତଃ ଉଚ୍ଚାରିତ ହେଲା–

'ପ୍ରଣବ ଯନ୍ତ୍ର ଯୋଗାଢ୍ୟ
ସତ୍ୟ ସାଙ୍କେତ ବିଗ୍ରହ'

ଗୋବର୍ଦ୍ଧନ ମଠରେ ଆମ୍ନାୟ ବା ଏହି ଗୁରୁବାକ୍ୟ ବୋଧହୁଏ ସେତେବେଳେ ସ୍ୱତଃ ମନକୁ ଆସିବାରୁ ଶଙ୍କର ଚିନ୍ତା କଲେ ସାଙ୍କେତିକ ବିଗ୍ରହ ନିର୍ମିତ ହେବ ଦାରୁରେ ।

ବୌଦ୍ଧ ପଣ୍ଡିତମାନେ ଯୁକ୍ତିରେ ପରାସ୍ତ ହୋଇଛନ୍ତି । ପୁରୁଷୋତ୍ତମ ଆଦିବୁଦ୍ଧ ଜଗନ୍ନାଥ ଓ ପରମବ୍ରହ୍ମ ପୁରୁଷୋତ୍ତମ ମଧ୍ୟରେ ତଫାତ୍ ନାହିଁ । ସେହି ଜଗନ୍ନାଥ ବିସର୍ଗ ଭଳି ଦୁଇ ଶିଳାର ମିଳନରେ ପ୍ରତୀକ ରୂପୀ ହୋଇଛନ୍ତି । ଦୁଇ ଗୋଲାକାର ପ୍ରସ୍ତର ଉପର ଓ ତଳକୁ ରହି ପ୍ରକୃତି ପୁରୁଷର ଅବିଚ୍ଛେଦ୍ୟ ମିଳିତ ରୂପ ଭାବେ ପୁରୁଷୋତ୍ତମ ଆଦିବୁଦ୍ଧ ରୂପରେ ଚିହ୍ନିତ ହୋଇଛନ୍ତି ବୌଦ୍ଧ ସ୍ତୂପରେ । ବୁଦ୍ଧଦେବଙ୍କୁ ମଣିଷ ଭାବେ ନଚିହ୍ନେଇ ଏଇ ପ୍ରତୀକ ରୂପେ ଚିହ୍ନିତ କରାହୋଇଛି । ମଣିଷ ବୁଦ୍ଧ ସାଧନ ସିଦ୍ଧ ହୋଇ ଆଦିବୁଦ୍ଧ ଜଗନ୍ନାଥ ଶୂନ୍ୟ ପୁରୁଷରେ ରୂପାୟିତ ହୋଇଛନ୍ତି ।

ସେହି ରୂପ ତ ଗୀତା ବର୍ଣ୍ଣିତ ପୁରୁଷୋତ୍ତମ । ଶଙ୍କରଙ୍କ ଉଦ୍ଦିଷ୍ଟ ଯୁକ୍ତିରେ ବୌଦ୍ଧମାନେ ହିନ୍ଦୁ ହୋଇଗଲେ । ପୁରୁଷୋତ୍ତମ ଜଗନ୍ନାଥ ଭାବେ ସ୍ୱୀକୃତ ହେଲେ । ବୌଦ୍ଧସ୍ତୂପ ଅନୁରୂପ ପ୍ରତୀକ ଦାରୁ ଗର୍ଭରେ ରହିଲେ ନୀଳମାଧବ । ସାଙ୍ଗରେ ଦ୍ୱାରକାର ଗୋମତି ନଦୀରୁ ଆସିଥିବା ବହୁ ଚକ୍ର ଚିହ୍ନିତ ଦ୍ୱାରକା ଶିଳା ସହ ଅପ୍ରାକୃତ ମଣି ବିଗ୍ରହ ସହ ଗର୍ଭରେ ଶୋଭା ପାଇଲେ । ଅପ୍ରାକୃତ ମୂର୍ତ୍ତି ବିରାଟ ଜୀବନ୍ତ ଶାଳଗ୍ରାମ ସହ ଦ୍ୱାରକା ଶିଳା ଏକତ୍ର ରହିବାରୁ ପ୍ରଭୁ ମୂର୍ତ୍ତି ମଧ୍ୟରେ ପ୍ରାଣବନ୍ତ ହୋଇ ରହନ୍ତି ବୋଲି ଥିବା ଶାସ୍ତ୍ର କାବ୍ୟକୁ ଚରିତାର୍ଥ କଲେ ଶଙ୍କରାଚାର୍ଯ୍ୟ ।

ଦାରୁ ମୂର୍ତ୍ତି ବସିବା ବଇଠିରେ ପ୍ରତୀକ ଯନ୍ତ୍ର ପୋତା ହୋଇ ଜଗନ୍ନାଥ ଜୀବନ୍ତ ଦେବତା ହୋଇଗଲେ ଓ ଭକ୍ତ ପ୍ରାର୍ଥନା ମତେ ମନସ୍କାମନା ପୂରଣ କଲେ ।

କାଞ୍ଚି ପୀଠରେ ଶ୍ରୀଯନ୍ତ୍ର ସ୍ଥାପନା କଲା ଭଳି ଜଗନ୍ନାଥଙ୍କ ରତ୍ନସିଂହାସନରେ ଶ୍ରୀଯନ୍ତ୍ର ସ୍ଥାପନ କଲେ ଶଙ୍କରାଚାର୍ଯ୍ୟ ।

ଭୈରବୀ ଚକ୍ର ରୂପୀ ଶ୍ରୀ ଯନ୍ତ୍ରର ସ୍ଥାପନା ହେତୁ ତନ୍ତ୍ର ମତେ ତାହା ମହାପ୍ରସାଦ ହେଲା ଓ ଜାତି ଧର୍ମ ନିର୍ବିଶେଷରେ ସେ ପ୍ରସାଦ ସମସ୍ତେ ପାଇଲେ ।

ବୌଦ୍ଧଙ୍କ ସହ ସଂଘର୍ଷ ହେତୁ ଯେଉଁ ପ୍ରତୀକ ମୂର୍ତ୍ତି ଶଙ୍କରଙ୍କ ଦୃଷ୍ଟି ପଥାରୂଢ଼ ହେଲା, ତାକୁ ଆହୁରି ଉନ୍ନତ କରିବା ପାଇଁ ନୃସିଂହ ମନ୍ତ୍ରରେ ପ୍ରତିଷ୍ଠା କରେଇଲେ । ରଙ୍ଗ ଓ ଲେପ ଦେଲାବେଳେ ନୃସିଂହଙ୍କ ସହ ସାମ୍ୟ ରହିଲା ।

ପୁରୁଷ ପ୍ରକୃତି ମିଳନ ସ୍ୱରୂପ ମୁଖ କଳା, ନିମ୍ନଭାଗ ଗୋଲାକାର ଶରୀର ଧଳା ରହିଲା । ପରିବର୍ତ୍ତିତ ହୋଇ ବିରାଟ ନୟନ, ବିରାଟ ବାହୁ, ବିପୁଳ ବପୁ ବହନ କଲେ ପୁରୁଷୋତ୍ତମରୁ ବିବର୍ତ୍ତିତ ଜଗନ୍ନାଥ । ବୌଦ୍ଧବାଦର ଶୂନ୍ୟତା ଓ ବେଦବାଦର ନିରାକାର ନିର୍ଗୁଣ ବ୍ରହ୍ମ ଆଲୋଚନାର ଅମୃତ ମନ୍ଥନ ହେଲା । ସାକାର ନିରାକାର ବ୍ରହ୍ମଙ୍କ ସର୍ବବାଦୀ ସର୍ବଜନ ସମ୍ମତ ରୂପ ଶ୍ରୀଜଗନ୍ନାଥ ବିଗ୍ରହବନ୍ତ ହେଲେ । ଏହା ବିଶ୍ୱ ଇତିହାସର ପରମ ଓ ଚରମ ଧର୍ମ ବିବର୍ତ୍ତନର ବଳିଷ୍ଠ ଉଦାହରଣ । ଏବେ ମଧ୍ୟ ଶ୍ରୀମନ୍ଦିର ଅଭ୍ୟନ୍ତରରେ ବୌଦ୍ଧ ଓ ସନାତନ ଧର୍ମର ପରସ୍ପରର ସମୀକରଣ ଓ ଆତ୍ମୀକରଣର ପ୍ରଭାବ ଦେଖିବାକୁ ମିଳେ ।

ବର୍ତ୍ତମାନର ଗରୁଡସ୍ତମ୍ଭ ମରାମତି ବେଳେ ଏହାର ମୂଳରେ ବୌଦ୍ଧ ସ୍ତୂପର ଭିତ୍ତି ଲକ୍ଷ୍ୟ କରିଥିଲେ ଇଞ୍ଜିନିୟରମାନେ । ପ୍ରତ୍ୟକ୍ଷଦର୍ଶୀ ମ୍ୟୁଜିଅମ ଉପନିର୍ଦ୍ଦେଶକ ଶ୍ରୀ ପଟେଲ ଜଗନ୍ନାଥାୟନ୍ ସଭାରେ ଏହା କହିଛନ୍ତି ରବୀନ୍ଦ୍ର ମଣ୍ଡପଠାରେ । ବିରାଟ ବଜ୍ରପାଣି ବୁଦ୍ଧମୂର୍ତ୍ତି ବୌଦ୍ଧ ସ୍ତୂପରୁ ସ୍ଥାନାନ୍ତରିତ ହୋଇ କ୍ଷୁଦ୍ର ଏକ ଅବ୍ୟବହୃତ ପୁରାତନ ମନ୍ଦିରରେ ଇନ୍ଦ୍ର ରୂପେ ପୂଜା ପାଇଲେ । ଉପଯୁକ୍ତ ନିରୀକ୍ଷଣରେ ଅନ୍ଧାର ଭିତରେ ଦୀପଜାଳି ଦେଖିଲେ କୋଣାର୍କର ଦଣ୍ଡାୟମାନ ସୂର୍ଯ୍ୟ ମୂର୍ତ୍ତିଙ୍କ ପଶ୍ଚାଦ୍‌ଭାଗରେ ଦିଶିବେ ବଜ୍ରପାଣି

ବୁଦ୍ଧ । ମୂର୍ତ୍ତି ଉପରେ ଅନ୍ତରୀକ୍ଷରେ ସ୍ୱାଗତ କରୁଛନ୍ତି ଗନ୍ଧର୍ବ କନ୍ୟାଗଣ । ଇନ୍ଦ୍ର ପୂଜା ପରମ୍ପରା ନଥିଲେ ବି ଇନ୍ଦ୍ର ପରିଚୟ ପାଇ ପୂଜିତ ହେଲେ ବଜ୍ରପାଣି ବୁଦ୍ଧ । ମୂର୍ତ୍ତିଙ୍କ ଭଗ୍ନାବସ୍ଥା ଦେଖି ଖୋର୍ଦ୍ଧା ଗଜପତି ନୃସିଂହଦେବ କୋଣାର୍କରୁ ଆନୀତ ସୂର୍ଯ୍ୟଙ୍କୁ ସିଂହାସନ ସହ ତାଙ୍କ କୋଳରେ ସ୍ଥାପନ କଲେ । ଏହା ନକରିଥିଲେ ଭଲ ହୋଇଥାନ୍ତା । କୋଣାର୍କଠାରେ ଅନ୍ୟଏକ ମନ୍ଦିରରେ ତାଙ୍କୁ ରଖିଥିଲେ ସୂର୍ଯ୍ୟକ୍ଷେତ୍ର ଜୀବନ୍ତ ହୋଇ ରହିଥାନ୍ତା । ନରସିଂହଦେବ ଏ ଉପଦେଶ ଶୁଣିଲେ ନାହିଁ । ବଜ୍ରପାଣି ବୁଦ୍ଧଙ୍କ ଶକ୍ତି ରୂପରେ କଳ୍ପିତା ପ୍ରଜ୍ଞା ପାରମିତା ଇନ୍ଦ୍ରାଣୀ ଭାବରେ ମୁଖଶାଳା ଦକ୍ଷିଣଦ୍ୱାର ପାଖରେ କ୍ଷୁଦ୍ର ଏକ ମନ୍ଦିରରେ ଏବେ ପୂଜା ପାଉଛନ୍ତି । ସନାତନ ଧର୍ମର ସେନାପତି ଶଙ୍କର ବୌଦ୍ଧ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବେ ଗ୍ରହଣ କରିନେବା ପରେ ବୌଦ୍ଧମାନେ ହିନ୍ଦୁଧର୍ମରେ ସାମିଲ ହୋଇଗଲେ । ଶଙ୍କରଙ୍କ ଉଦାହରଣରେ ବୁଦ୍ଧ ଜଗନ୍ନାଥଙ୍କ ଉପାସକମାନଙ୍କୁ ପୁରୁଷୋତ୍ତମ ଦାରୁ ଜଗନ୍ନାଥଙ୍କ ପୂଜାରେ ସ୍ୱତନ୍ତ୍ର ଅଧିକାର ଦିଆଗଲା । ଏହି ସାଲିସର ଫଳ ସ୍ୱରୂପ ଦଇତା ସମ୍ପ୍ରଦାୟ ସୃଷ୍ଟି ହୋଇପାରେ । ପୁରାଣ କାହାଣୀରେ ପୂର୍ବତନ ନୀଳମାଧବ ସେବକଙ୍କର ବଂଶଧର ଦଇତା ହୋଇଛନ୍ତି । ଇତିହାସର ଏକ ରମଣୀୟ ସ୍ମରଣୀୟ ମୁହୂର୍ତ୍ତରେ ବରଣୀୟ ଶଙ୍କରାଚାର୍ଯ୍ୟଙ୍କ ଅମୃତ କର ସ୍ପର୍ଶ ଓ ଆଶୀର୍ବାଦରେ ଏ ଗୋଷ୍ଠୀ ସୃଷ୍ଟିହେବା ସମ୍ଭବ । ଶଙ୍କର ପ୍ରବର୍ତ୍ତିତ ସମାଧାନ ଓ ସାଲିସର ସୂତ୍ରଭାବେ ବୁଦ୍ଧ ନବମ ଅବତାରଭାବେ ଗୃହିତ ହେଲେ । ଶ୍ରୀମନ୍ଦିର ମୂଳ ମନ୍ଦିର ଓ ନୃସିଂହ ମନ୍ଦିରରେ ନବମ ଅବତାର ଭାବେ ଧ୍ୟାନୀବୁଦ୍ଧ ସ୍ଥାନିତ ହେବାବେଳେ ଛତିଶଗଡରେ ମହାନଦୀ ନିକଟସ୍ଥ ରାଜିମ୍‌ର ରାଜୀବଲୋଚନ ମନ୍ଦିରର ଦଶାବତାର ମୂର୍ତ୍ତି ଭାବରେ ବିଜେ ହୋଇଛନ୍ତି ଜଗନ୍ନାଥଙ୍କ ସାଦୃଶ୍ୟ ଥିବା ଆଦିବୁଦ୍ଧ ମୂର୍ତ୍ତି । ଖଡିଆଳ ରାଜା ବିଶିଷ୍ଟ ଗବେଷକ ଜିତାମିତ୍ର ସିଂହ ରାଜିମଠାରେ ଏହା ଦେଖିଛନ୍ତି । ଏବେ ବି ଖଡିଆଳ ନୂଆପଡା ଅଞ୍ଚଳରେ ରହିଥିବା ଯୋଗୀମଠ ଭାବେ ପରିଚିତ ଗୁମ୍ଫାରେ ଏହା ଶୋଭା ପାଉଥିବା ସେ ଲେଖିଛନ୍ତି । ଏ ପ୍ରବନ୍ଧର ଲେଖକ ସେଠାକୁ ଯାଇ ଏହା ଦେଖିଛି । ପ୍ରକୃତି ଓ ପୁରୁଷ ରୂପୀ ବ୍ରହ୍ମ ବା ସୃଷ୍ଟିକର୍ତ୍ତାଙ୍କ ରୂପର ପ୍ରତୀକାତ୍ମକ ବର୍ଣ୍ଣନା ଚିତ୍ର ପ୍ରସ୍ତରରେ ରୂପାୟିତ ହୋଇଛି । ଏଥିରୁ ବୌଦ୍ଧମାନେ ଶୂନ୍ୟରୂପୀ ଜଗନ୍ନାଥ ମୂର୍ତ୍ତି କଳ୍ପନା କରିଥିବା ମତ ଦେଇଛନ୍ତି ରାଜା ସିଂହଦେଓ । ଏ ପ୍ରବନ୍ଧର ଲେଖକ ସାଞ୍ଚି ସ୍ତୂପରେ ବୁଦ୍ଧଙ୍କୁ ଦୁଇ ଗୋଲାକାର ପଥରର ସମାହାର ଭାବେ ଦେଖିଛି ।

କନିଙ୍ଗହାମ ଓ ଡକ୍ଟର ମହତାବ ଓଡ଼ିଶାର ବୌଦ୍ଧ ସ୍ତୂପରେ ଜଗନ୍ନାଥ ମୂର୍ତ୍ତି ସହ ଯେଉଁ ସାଦୃଶ୍ୟ ଲକ୍ଷ୍ୟ କରିଛନ୍ତି, ଏ ପ୍ରବନ୍ଧର ଲେଖକ ବିଭିନ୍ନ ପ୍ରବନ୍ଧରେ ଅନ୍ୟ ପ୍ରମାଣ ସହ ତାଙ୍କୁ ସମର୍ଥନ କରି ଆସିଛି । ଏଇ 'ଉତ୍କଳ ପ୍ରସଙ୍ଗ'ରେ ବାହୁବିହୀନ ମହାବାହୁ ପ୍ରବନ୍ଧରେ ବଲାଙ୍ଗୀର ଜିଲ୍ଲା ତେନ୍ତୁଳିଖୁଣ୍ଟି ଗ୍ରାମରେ ପୂଜା ପାଉଥିବା ତିନି ପ୍ରସ୍ତର ମୂର୍ତ୍ତି କଥା ମୁଁ କହିଛି । ସେଠାରେ ଦୁଇ ଗୋଲାକାର ପ୍ରସ୍ତରର ସମାହାର ପ୍ରତ୍ୟେକ ମୂର୍ତ୍ତିଙ୍କୁ ଏବେ ଜଗନ୍ନାଥଙ୍କ ଭଳି ରଙ୍ଗ କରାଯାଇଛି । ପୂର୍ବେ ଏ ତ୍ରିମୂର୍ତ୍ତି ଜଗନ୍ନାଥ ତ୍ରିମୂର୍ତ୍ତି ବା ବୁଦ୍ଧ ଜଗନ୍ନାଥ ତ୍ରିମୂର୍ତ୍ତିର ବୁଦ୍ଧ, ସଂଘ ଓ ଧର୍ମ ଭାବେ ବୋଧହୁଏ ପୂଜିତ ହେଉଥିଲା ।

ସ୍କନ୍ଦପୁରାଣ, ବ୍ରହ୍ମପୁରାଣ ଓ ସ୍କନ୍ଦପୁରାଣ ଇନ୍ଦ୍ରନୀଳମଣି ପୁରାଣର କାହାଣୀରେ ବହୁ ଉପାଦାନ ଅଛି, କିନ୍ତୁ ସ୍କନ୍ଦପୁରାଣ ଓ ବ୍ରହ୍ମପୁରାଣକୁ ବେଦଜ୍ଞାନ କରି ଅନ୍ୟ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଉପାଦାନ ସଂଗ୍ରହକୁ ଆଖି ବୁଜି ଦେଲେ ଆନ୍ତର୍ଜାତିକ ଜିଜ୍ଞାସୁଙ୍କ ସମ୍ମୁଖୀନ ହେବା ସହଜ ହେବ ନାହିଁ ।

ଅନନ୍ୟ ନିକେତନ
ଏନ୍ ୧/୧୮୩
ନୂଆପଲ୍ଲୀ, ଭୁବନେଶ୍ୱର

# ବିଶ୍ୱ ପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ମହୋତ୍ସବ

**ଡକ୍ଟର ଭାସ୍କର ମିଶ୍ର**

ପରମ ପବିତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପାଳିତ ହୋଇ ଆସୁଥିବା ଦ୍ୱାଦଶ ଯାତ୍ରା ଓ ଅନେକ ଉପଯାତ୍ରା ମଧ୍ୟରେ ଶ୍ରୀଗୁଣ୍ଡିଚା ମହୋତ୍ସବ ବା ରଥଯାତ୍ରା ଅତ୍ୟନ୍ତ ପ୍ରସିଦ୍ଧ । ସ୍କନ୍ଦ ପୁରାଣରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ, ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ କହୁଛନ୍ତି, ହେ କ୍ଷୀତିଶ୍ୱର ! ମୋର ଗୁଣ୍ଡିଚା ନାମକ ମହାନ୍ ଯାତ୍ରାକୁ ପାଳନ କରିବ । ଯେଉଁ ଯାତ୍ରାର ନାମୋଚ୍ଚାରଣ ହେତୁ ମାନବ ଅବଶ୍ୟ ପାପରୁ ମୁକ୍ତ ହୋଇଥାଏ । (ସ୍କନ୍ଦ ୨୯/୩୦)



ସ୍କନ୍ଦ ପୁରାଣର ୨୯ ଅଧ୍ୟାୟର ୩୧ ଓ ୩୨ ଶ୍ଳୋକର ଭାବାର୍ଥକୁ ପୁଙ୍ଖାନୁପୁଙ୍ଖ ତର୍ଜମା କଲେ ଜଣାଯାଏ ଯେ, ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଶ୍ରୀଗୁଣ୍ଡିଚା ମହୋତ୍ସବର ଅଂଶ ବିଶେଷ ଅଟେ । ସ୍କନ୍ଦ ପୁରାଣରେ ରଥଯାତ୍ରାକୁ 'ମହାବେଦୀ ମହୋତ୍ସବ' ନାମରେ ଅଭିହିତ କରାଯାଇଛି । ମହାବେଦୀ ହେଉଛି ଆବିର୍ଭାବ ବେଦୀ । 'ଶ୍ରୀଗୁଣ୍ଡିଚା ମହୋତ୍ସବ' ହେଉଛି ଅନେକ ଉତ୍ସବର ଏକ ଅପୂର୍ବ ସମାହାର । ଶ୍ରୀଗୁଣ୍ଡିଚା ମହୋତ୍ସବ ଏକ ଦୀର୍ଘ କାଳୀନ ମହୋତ୍ସବ, ତନ୍ମଧ୍ୟରେ ମାଘ ଶୁକ୍ଳ ପଞ୍ଚମୀ ହେଲା ଶ୍ରୀଗୁଣ୍ଡିଚା ମହୋତ୍ସବର ଆଦ୍ୟ ଚରଣ ବା ଆରମ୍ଭ ଦିବସ । ଯେଉଁଦିନ କି ରଥନିର୍ମାଣ ନିମିତ୍ତ ଶ୍ରୀକ୍ଷେତ୍ରକୁ ରଥକାଠ ଆସି ତାର ଅନୁକୂଳ ପୂଜା କରାଯାଇଥାଏ । ସେହିପରି ଚୈତ୍ର ଶୁକ୍ଳ ଅଷ୍ଟମୀ (ନବମୀଯୁକ୍ତ) ଶ୍ରୀଗୁଣ୍ଡିଚା ମହୋତ୍ସବର ଦ୍ୱିତୀୟ ଚରଣ । ଯେଉଁଥିରେ ରଥ ନିର୍ମାଣ ନିମିତ୍ତ ପୂର୍ବରୁ ଅଭିମନ୍ତ୍ରିତ କାଠର ଚିରଟ ଆରମ୍ଭ ହୁଏ । ବୈଶାଖ ଶୁକ୍ଳ ତୃତୀୟା ଶ୍ରୀଗୁଣ୍ଡିଚା ମହୋତ୍ସବର ତୃତୀୟ ଚରଣ । ଏହା ରଥ ନିର୍ମାଣର ଶୁଭାରମ୍ଭ ଦିବସ । ତତ୍ପରେ ମହାପ୍ରଭୁଙ୍କର ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ସ୍କନ୍ଦ ପୁରାଣରେ କୁହାଯାଇଛି:

ବିଶେଷାନ୍ ମୋକ୍ଷଦାଷାଢ଼
ଦ୍ୱିତୀୟା ପୁଷ୍ୟ ସଂଯୁତା ।
ରଷ୍ୟାଭାବେ ତିଥୌ
କାର୍ଯ୍ୟା ସଦା ସା ପ୍ରୀତୟେ
ମମ
(ସ୍କନ୍ଦ ୨୯/୩୨)

ଅର୍ଥାତ୍, ବିଶେଷତଃ ପୁଷ୍ୟା ନକ୍ଷତ୍ରଯୁକ୍ତ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥି ମୋକ୍ଷଦାୟିନୀ ଅଟେ । ପୁଷ୍ୟା ନକ୍ଷତ୍ରର ଅଭାବରେ କେବଳ (ଆଷାଢ଼ ଶୁକ୍ଳ ଦ୍ୱିତୀୟା) ତିଥିରେ ଏହି ଯାତ୍ରା ସର୍ବଦା ମୋର ପ୍ରୀତି ନିମନ୍ତେ କରଣୀୟ । ପୁନଶ୍ଚ ଭଗବାନ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ କହିଛନ୍ତି ଯେ–

ଆଷାଢ଼ସ୍ୟ ସିତେପକ୍ଷେ ଦ୍ୱିତୀୟା ପୁଷ୍ୟ ସଂଯୁତା ।
ତସ୍ୟାଂ ରଥେ ସମାରୋପ୍ୟରାମଂ ମାଂ ଭଦ୍ରୟା ସହ ।।
ମହୋତ୍ସବପ୍ରବୃତ୍ତ୍ୟର୍ଥଂ ପ୍ରୀଣୟିତ୍ୱା ଦ୍ୱିଜାନ୍ ବହୂନ୍ ।
ଗୁଣ୍ଡିଚାମଣ୍ଡପଂ ନାମ ଯତ୍ରାହମଜନଂ ପୁରା ।।
(୨୯/୩୩,୩୪)

ଅର୍ଥାତ୍, ଆଷାଢ଼ ମାସର ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ପୁଷ୍ୟା ନକ୍ଷତ୍ରଯୁକ୍ତ ହେଲେ, ସେହି ତିଥିରେ (ରାମ) ବଳଭଦ୍ରଙ୍କୁ ଓ ମୋତେ ସୁଭଦ୍ରାଙ୍କ ସହ ରଥରେ ଅଧିଷ୍ଠିତ କରାଇ ଶ୍ରୀଗୁଣ୍ଡିଚା ମଣ୍ଡପକୁ ନେବ । ରଥଯାତ୍ରା ମହୋତ୍ସବ ଆରମ୍ଭ ନିମନ୍ତେ ବହୁ ବ୍ରାହ୍ମଣଙ୍କୁ ପ୍ରୀତ କରାଇ ଯେଉଁ ସ୍ଥାନରେ ମୁଁ ପୂର୍ବେ ଆବିର୍ଭୂତ ହୋଇଥିଲି, ସେହି ଗୁଣ୍ଡିଚା ମଣ୍ଡପକୁ ମୋତେ ନେବ । ଏହିପରି ଭାବରେ ମହାଆୟୋଜନ କରି ନିୟମ ପାଳନ ପୂର୍ବକ ରାଜା ପରମ ଭକ୍ତି ଓ ଆନନ୍ଦଯୁକ୍ତ ହୋଇ ମହୋତ୍ସବ କରିବେ । 'କପିଳ ସଂହିତା'ରେ ଗୁଣ୍ଡିଚା ମହୋତ୍ସବ ନାମ ଦିଆଯାଇ ରଥଯାତ୍ରାକୁ 'ଗୁଣ୍ଡିଚା ମହାଯାତ୍ରା' କୁହାଯାଇଛି । (କପିଳ ସଂହିତା ୪/୨୮)

ବହୁ ପ୍ରାଚୀନ ସମୟରୁ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଦାରୁବ୍ରହ୍ମରୂପୀ ଶ୍ରୀବିଗ୍ରହମାନଙ୍କର ଶ୍ରୀଗୁଣ୍ଡିଚା ଯାତ୍ରା ପାଳିତ ହୋଇ ଆସୁଅଛି । ଘୋଷଯାତ୍ରା, ମହାବେଦୀ ମହୋତ୍ସବ, ପତିତପାବନ ଯାତ୍ରା, ନବଦିନାତ୍ମକ ଯାତ୍ରା, ଦଶାବତାର ଯାତ୍ରା, ଗୁଣ୍ଡିଚା ମହୋତ୍ସବ ଓ ଆଡ଼ପ ଯାତ୍ରା ଏହି ଯାତ୍ରାର ଅନ୍ୟ ନାମ ଅଟେ । ବିଭିନ୍ନ ପୁରାଣ ଓ ଉପ–ପୁରାଣ ମାନଙ୍କରେ ମହାପ୍ରଭୁଙ୍କର ଏହି ରଥ ମହୋତ୍ସବ ସଂପର୍କରେ ଉଲ୍ଲେଖ କରାଯାଇଛି । ତନ୍ମଧ୍ୟରେ ସ୍କନ୍ଦ ପୁରାଣ, ବ୍ରହ୍ମ ପୁରାଣ, ନାରଦ ପୁରାଣ, ପଦ୍ମ ପୁରାଣ, ନୀଳାଦ୍ରି ମହୋଦୟ, କପିଳ ସଂହିତା, ବାମଦେବ ସଂହିତା, ଶାରଦା ପୁରାଣ, ଚୈତନ୍ୟ ଚରିତାମୃତ ଗ୍ରନ୍ଥ ଉଲ୍ଲେଖଯୋଗ୍ୟ ଅଟେ । ଏହି ମହୋତ୍ସବ ପାଳନ ସଂପର୍କରେ ସ୍କନ୍ଦ ପୁରାଣରେ କୁହାଯାଇଛି–

'ମହାବେଦୀଂ ବ୍ରଜନ୍ତଂ ତଂ ରଥସ୍ଥଂ ପୁରୁଷୋତ୍ତମମ୍
ବଳଭଦ୍ରଂ ସୁଭଦ୍ରାଂଚ ଜନ୍ମକୋଟି ସମୁଦ୍ଭବମ୍
ଦୃଷ୍ଟପାପଂ ନାଶୟତି ନାତ୍ର କାର୍ଯ୍ୟା ବିଚରଣଂ ।'

ଏହି ମହୋତ୍ସବକୁ ନିର୍ମଳ ମନରେ ଯେଉଁ ଭକ୍ତ ଦର୍ଶନ କରେ, ତାର ସାତକୋଟି ଜନ୍ମର ପାପରାଶି କ୍ଷଣକେ ନଷ୍ଟ ହୁଏ । ମହାବେଦୀକୁ ଗମନ କାଳରେ ରଥାରୂଢ଼ ପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ମାନବର ଶତକୋଟି ଜନ୍ମାର୍ଜିତ ପାପରାଶି କ୍ଷୟ ହୋଇଥାଏ । ସେହିଭଳି ରଥାରୂଢ଼ ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ସହସ୍ର ଯଜ୍ଞର ଫଳ ମିଳିଥାଏ ବୋଲି ବିଶ୍ୱାସ ରହିଛି।

**ନେତ୍ରୋତ୍ସବ–** ଶ୍ରୀଗୁଣ୍ଡିଚା ଯାତ୍ରାର ପୂର୍ବଦିନ ନେତ୍ରୋତ୍ସବ ବିଧି ପାଳିତ ହୋଇଥାଏ । ଏହି ଦିନ ରଥ ଖଳାରେ ଥିବା ସୁସଜ୍ଜିତ ତିନି ରଥରେ ଶ୍ରୀବିଗ୍ରହମାନଙ୍କ ଆଜ୍ଞାମାଳ ଲାଗି ହେବା ପରେ ରଥଗୁଡ଼ିକ ଟଣା ହୋଇ ସିଂହଦ୍ୱାରଠାରେ ରଖାଯାଇଥାଏ । ପରେ ବିଳମ୍ବିତ ରାତ୍ରିରେ ଅଣସର ପିଣ୍ଡିରେ ବିରାଜମାନ କରିଥିବା ଶ୍ରୀବିଗ୍ରହମାନଙ୍କର କେତେକ ଗୁପ୍ତ ନୀତି ଯଥା ବାହୁଟକଣ୍ଠ, ସେନାପଟା, ଶୁକ୍ଳସଜ ଲାଗି ଇତ୍ୟାଦି କାର୍ଯ୍ୟ ସଂପୃକ୍ତ ସେବକମାନଙ୍କ ଦ୍ୱାରା ଶେଷ ହୋଇଥାଏ ।

**ଶ୍ରୀଗୁଣ୍ଡିଚା ନୀତି–** ଶ୍ରୀଗୁଣ୍ଡିଚା ଦିନ ପ୍ରତ୍ୟୁଷରୁ ଠାକୁରମାନଙ୍କର ମଙ୍ଗଳ ଆଳତୀ, ମଇଲମ, ଅବକାଶ, ରୋଷହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ବେଶ ଇତ୍ୟାଦି ନୀତି ଉକ୍ତ ଦିନର ପାଳିଆ ସେବକଙ୍କ ଦ୍ୱାରା ସମାପିତ ହୋଇଥାଏ । ଏହାପରେ ଏକାଠି ଗୋପାଳ ବଲ୍ଲଭ ଓ ସକାଳ ଧୂପ ପୂଜା ଅନୁଷ୍ଠିତ ହୋଇଥାଏ । ଏହି ସମୟରେ ଶ୍ରୀମନ୍ଦିର ପୁରୋହିତ ଏବଂ ଅନ୍ୟାନ୍ୟ ଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କ ଦ୍ୱାରା ରଥ ପ୍ରତିଷ୍ଠା କାର୍ଯ୍ୟ ହୋଇଥାଏ । ତତ୍ପରେ ଠାକୁରମାନଙ୍କ ମନୋମୁଗ୍ଧକର ପହଣ୍ଡି ନୀତି ଅନୁଷ୍ଠିତ ହେବା ପୂର୍ବରୁ ବିଜେ କାହାଳୀ ବାଜି ମଙ୍ଗଳାର୍ପଣ ନୀତି ବଢ଼ିଥାଏ ।

**ପହଣ୍ଡି ବିଜେ–** ପହଣ୍ଡି ସମୟରେ ପ୍ରଥମେ ଶ୍ରୀସୁଦର୍ଶନ, ପରେ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥ ଧାଡ଼ି ପହଣ୍ଡିରେ ବିଜେ ହୋଇଥାନ୍ତି । ନାଟ ମଣ୍ଡପରେ ପ୍ରଥମେ କାହାଳୀ ବାଜିବା ପରେ ଘଣ୍ଟ, ପଖାଉଜ, ବାଦ୍ୟ ବାଜି ପହଣ୍ଡି ହୋଇଥାଏ । ଏହି ସମୟରେ ବିଭିନ୍ନ ମଠର ମହନ୍ତ, ମଠାଧୀଶ, ଅଧିକାରୀ ଓ ଅନ୍ୟାନ୍ୟ ସ୍ୱୀକୃତି ପ୍ରାପ୍ତ ବ୍ୟକ୍ତିବିଶେଷମାନେ ଚାମର, ଆଲଟ ସେବା କରିବା ସହିତ କେତେକ ସ୍ଥାନରେ ପାରମ୍ପରିକ ଭାବେ ପନ୍ତି ଭୋଗ ହୋଇଥାଏ । ଶ୍ରୀବିଗ୍ରହମାନେ ସାତ ପାହାଚ ଉପରେ ପହଞ୍ଚିବା କ୍ଷଣି ରାଘବ ଦାସ ମଠ ପ୍ରଦତ୍ତ ଟାହିଆ ଶ୍ରୀମସ୍ତକରେ ଲଗାଯାଇଥାଏ । ପହଣ୍ଡି ବିଜେ ସମୟରେ ବେହେରା ଖୁଣ୍ଟିଆ ସେବକ 'ମଣିମା' ଡ଼ାକ ଦେଇ ଠାକୁରମାନଙ୍କ ଆଗେ ଆଗେ ଚାଲିଥାନ୍ତି । ଶ୍ରୀବିଗ୍ରହମାନେ ରଥାରୂଢ଼ ହେବାପରେ ଦଇତାପତିମାନେ ରୁନ୍ଧା କାର୍ଯ୍ୟ ବଢ଼ାଇଥାନ୍ତି । ମହାଜନ (ପୁଷ୍ପାଳକ ଶ୍ରେଣୀୟ ସେବକ)ମାନେ ଏକ ପଟୁଆର ଶୋଭାଯାତ୍ରାରେ ଘଣ୍ଟ, କାହାଳୀ ଓ ଘସା ବାଦ୍ୟ ସମେତ ଶ୍ରୀମନ୍ଦିରର ଦକ୍ଷିଣ ଘରୁ ମଦନମୋହନଙ୍କୁ ନନ୍ଦିଘୋଷ ରଥରେ ଏବଂ ରାମ, କୃଷ୍ଣ ବିଗ୍ରହଙ୍କୁ ତାଳଧ୍ୱଜ ରଥ ଉପରେ ଅଧିଷ୍ଠିତ କରାଇଥାନ୍ତି । ପୂର୍ବରୁ ପରମ୍ପରା ଅନୁଯାୟୀ ଶ୍ରୀମନ୍ଦିରର ବଣିଆ ସେବକମାନଙ୍କ ଘରୁ ଶୋଲଚିତା ତିନୋଟି ଅଣାଯାଇ ସିଂହଦ୍ୱାର ସମ୍ମୁଖସ୍ଥ ଛାଉଣୀ ମଠରେ ରଖାଯାଇଥାଏ । ରଥ ଉପରେ ରୁନ୍ଧା, ମାଳଫୁଲ ବେଶ, ଶୋଲଚିତା ଇତ୍ୟାଦି ଲାଗି ହେବା ପରେ ଗୋବର୍ଦ୍ଧନ ପୀଠର ପୀଠାଧୀଶ ଜଗଦ୍‌ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟ ତିନି ରଥ ଉପରେ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରିଥାନ୍ତି ।

**ଛେରାପହଁରା–** ଶ୍ରୀଗୁଣ୍ଡିଚା ଉତ୍ସବର ଅନ୍ୟତମ ମୁଖ୍ୟ ଆକର୍ଷଣ ହେଲା ତିନି ରଥ ଉପରେ ଛେରା ପହଁରା । ଶ୍ରୀଗୁଣ୍ଡିଚା ଦିନ ଗଜପତି ମହାରାଜା ବ୍ରତାଚରଣ ପୂର୍ବକ ରାଜଗୁରୁଙ୍କ ଉପସ୍ଥିତିରେ ଶ୍ରୀନଅରରେ ଥିବା ଈଷ୍ଟ ଦେବୀ କନକ ଦୁର୍ଗାଙ୍କ ସମେତ ପଞ୍ଚଦେବତାଙ୍କ ଉପାସନା କରିଥାନ୍ତି । ଏହାପରେ ଦଶବିଧ ଉପଚାରରେ ମଙ୍ଗଳାରୋପଣ କର୍ମ ସମାହିତ ହୁଏ । ବିଧିବଦ୍ଧ ଭାବେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଛେରାପହଁରା ସେବା ନିମିତ୍ତ ନିମନ୍ତ୍ରଣ କରାଯିବା ପରେ ଗଜପତି ଶୁକ୍ଳ ରଙ୍ଗର ଚୂଡ଼ିଦାର, କୁର୍ତ୍ତା, ନୀଳ କମରପଟି, ଲାଲ ପଇତାପଟୀ, ଲାଲବର୍ଣ୍ଣର ଉତ୍ତରୀୟ ଓ ଅଣ୍ଟାରେ ରାଜଦଣ୍ଡ ଝୁଲାଇ ମୁଣ୍ଡରେ ପରଚୂଳ ସଂଯୋଜିତ ଜରିଧଡ଼ି ଲଗା ଶୁଭ୍ର ପାଗ ପିନ୍ଧିବା ସହିତ ଗଳାରେ କୌସ୍ତୁଭ ରତ୍ନହାର ପରିଧାନ କରିଥାନ୍ତି । ଶ୍ରୀନଅର କାହାଳିଆ ବିଜେ କାହାଳୀ ବଜାଇବା ପରେ ଏକ ସୁସଜ୍ଜିତ ତାମଯାନରେ ଶ୍ରୀନଅର ସେବକ ଓ ରାଜଗୁରୁଙ୍କ ସହ ବର୍ଣ୍ଣାଢ଼୍ୟ ପଟୁଆରରେ ଗଜପତି ରଥ ନିକଟକୁ ବିଜେ କରିଥାନ୍ତି । ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥ ସମ୍ମୁଖରେ ଗଜପତି ଉପଗତ ହେବାପରେ ତାଙ୍କୁ ଚାରମାଳ ଦେଇ ରଥ ଉପରକୁ ପାଛୋଟି ନିଆଯାଏ । ଏହି ସମୟରେ ପ୍ରଭୁଙ୍କ ନିକଟରେ ବିଭିନ୍ନ ପ୍ରକାର ସେବା କରିସାରି ଶେଷରେ ଗଜପତି ସୁନାବେଣ୍ଟ ଯୁକ୍ତ ଖଡ଼ିକାରେ ରଥ ଉପର ଚତୁଃପାର୍ଶ୍ୱକୁ ମାର୍ଜନା କରିଥାନ୍ତି । ଏହାପରେ ଘୋରାଚନ୍ଦନ ଜଳ ସିଞ୍ଚନ କରାଯାଏ । ଚତୁର୍ଦ୍ଧା ବିଗ୍ରହଙ୍କୁ ଗଜପତି ମହାରାଜା ଦଣ୍ଡପ୍ରଣାମ କରିବା ପରେ ମହାପ୍ରଭୁଙ୍କ ଶ୍ରୀପୟରମାଳା ଗ୍ରହଣ ପୂର୍ବକ ଶ୍ରୀନଅରକୁ ଫେରିଥାନ୍ତି ।

**ରଥଟଣା–** ଛେରା ପହଁରା ନୀତି ସରିବା ପରେ ରଥରୁ ଚାରମାଳ ଖୋଲାଯାଇ ପ୍ରତ୍ୟେକ ରଥରେ ଚାରୋଟି ଲେଖାଏଁ ଅଶ୍ୱ ଯୋଚା ଯାଇଥାଏ ଏବଂ ଚାରୋଟି ସୁଦୃଢ଼ କତା ଦଉଡ଼ି ରଥରେ ବନ୍ଧା ଯାଇଥାଏ । ପ୍ରତ୍ୟେକ ରଥଟଣାର ମୁଖ୍ୟଙ୍କ ସମେତ ରଥ ନିର୍ଦ୍ଦେଶକଙ୍କ ଦଳରେ ଶ୍ରୀମନ୍ଦିରର ଅଭିଜ୍ଞ ପଦାଧିକାରୀ, ପୁଲିସ ଅଫିସର, ଅଭିଜ୍ଞ ଭୋଇ, ମହାରଣାଙ୍କ ଉପସ୍ଥିତିରେ ରଥଟଣା କାର୍ଯ୍ୟର ଶୁଭାରମ୍ଭ ହୋଇଥାଏ । ପ୍ରତ୍ୟେକ ରଥ ଟଣା ହେବା ପୂର୍ବରୁ ସଂପୃକ୍ତ ରଥ ଉପରେ କାହାଳିଆ ସେବକ ପ୍ରଥମେ ବିଜେ କାହାଳୀ ବଜାଇଥାନ୍ତି । ତତ୍ପରେ ଉଭୟ ପୁରୀ ଓ ଭଡ଼ିମୁଣ୍ଡାର ଘଣ୍ଟୁଆ ସେବକମାନେ ରଥ ଉପରେ ଦୁଇ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ସମତାଳରେ ଘଣ୍ଟ ବଜାଇଥାନ୍ତି । ରଥ କୋର୍ଡ ଅନୁଯାୟୀ ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥ ଦାୟିତ୍ୱରେ ଜିଲ୍ଲା ଆରକ୍ଷୀ ଅଧିକ୍ଷକ, ଦେବୀ ସୁଭଦ୍ରାଙ୍କ ଦେବଦଳନ ରଥ ଦାୟିତ୍ୱରେ ଅତିରିକ୍ତ ଜିଲ୍ଲାପାଳ, ପୁରୀ ଏବଂ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଟଣା ଦାୟିତ୍ୱରେ ଜିଲ୍ଲାପାଳ ରହିଥାନ୍ତି । ପରମ୍ପରା ଅନୁଯାୟୀ ପ୍ରଥମେ ତାଳଧ୍ୱଜ, ଦ୍ୱିତୀୟରେ ଦେବଦଳନ ଏବଂ ଶେଷରେ ନନ୍ଦିଘୋଷ ରଥଟଣା ହୋଇଥାଏ । ରଥଗୁଡ଼ିକ ଟଣା ହୋଇ ଶ୍ରୀଗୁଣ୍ଡିଚା ମନ୍ଦିରରେ ଲାଗିବା ପରେ ରଥ ଉପରେ ଅନ୍ୟାନ୍ୟ ନୀତି, ମହାପ୍ରଭୁମାନଙ୍କ ପହଣ୍ଡି ବିଜେରେ ଗୁଣ୍ଡିଚା ମଣ୍ଡପକୁ ବିଜେ, ହେରାପଞ୍ଚମୀ ନୀତି, ସନ୍ଧ୍ୟାଦର୍ଶନ, ବାହୁଡ଼ା ଯାତ୍ରା, ଲକ୍ଷ୍ମୀନାରାୟଣ ଭେଟ ନୀତି, ଏକାଦଶୀରେ ରଥ ଉପରେ ସୁନାବେଶ, ଦ୍ୱାଦଶୀରେ ଅଧର ପଣା, ତ୍ରୟୋଦଶୀରେ ନୀଳାଦ୍ରି ବିଜେ ପହଣ୍ଡି, ଲକ୍ଷ୍ମୀଙ୍କ ଚାହାଁଣୀ ନୀତି, ନାଟ ମଣ୍ଡପରେ ବିଭୀଷଣ ବନ୍ଦାପନା, ଜୟବିଜୟ ଦ୍ୱାରଠାରେ ଲକ୍ଷ୍ମୀନାରାୟଣ କଳି ତତ୍ପରେ ତାଙ୍କୁ ରସଗୋଲା ଭୋଗ ହୋଇ ଶ୍ରୀବିଗ୍ରହମାନେ ପହଣ୍ଡି ବିଜେରେ ରତ୍ନ ସିଂହାସନରେ ଅଧିଷ୍ଠିତ ହୋଇଥାନ୍ତି । ଏହିପରି ଭାବରେ ମହାପ୍ରଭୁଙ୍କର ଶ୍ରୀଗୁଣ୍ଡିଚା ମହୋତ୍ସବର ସମାପନ ହୋଇଥାଏ ।

ଓ.ଏସ୍.ଡ଼ି (ଶ୍ରୀମନ୍ଦିର ପ୍ରଶାସନ)
ବିଧି ବିଭାଗ, ପୁରୀ

# ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂଲୀଳା ଯାର

ପ୍ରଭାତ କୁମାର ନନ୍ଦ

ଉତ୍କଳୀୟମାନଙ୍କର ସାଂସ୍କୃତିକ ଓ ସାମାଜିକ ଜୀବନର ମୁଖ୍ୟଧାରା ହେଉଛି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲୀଳା । ଓଡ଼ିଆମାନଙ୍କର ସମସ୍ତ ଧାର୍ମିକ, ସାମାଜିକ ଓ ବାଣିଜ୍ୟିକ କାର୍ଯ୍ୟରେ ପ୍ରଥମେ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରାଯାଏ । ତେଣୁ ଓଡ଼ିଆମାନଙ୍କର ଜୀବନଚର୍ଯ୍ୟାର ପ୍ରତ୍ୟେକ ସୋପାନରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଲୀଳା ମାଧୁରୀର ପ୍ରଭାବ ରହିଛି । ମହାପ୍ରଭୁଙ୍କର ଅନ୍ୟ ଏକ ନାମ ହେଉଛି ଲୀଳା ପୁରୁଷୋତ୍ତମ । ଏକ ଉନ୍ନତ ମାନବର ଲୀଳା ହିଁ ତାଙ୍କ ସଂସ୍କୃତିର ନିର୍ଯ୍ୟାସ ।



ସାହିତ୍ୟ ଦର୍ପଣ ଚରୟିତା ଶ୍ରୀ ବିଶ୍ୱନାଥ କବିରାଜଙ୍କ ଦୃଷ୍ଟିରେ, 'ଅଙ୍ଗୈର୍ବେଷୈରଳଙ୍କାରୈଃ ପ୍ରେମିଭିର୍ବଚନୈରପି, ପ୍ରୀତି ପ୍ରୟୋଜିତୈ ଲୀଳାଂ ପ୍ରିୟସ୍ୟାନୁକୃତଂ ବିଦୁ ।' ଅର୍ଥାତ୍ କୌତୁକରେ ପଦ୍ମନାଭଙ୍କୁ ସର୍ବପରି, ବେଣୀକୁ ଲଟାପରି କରି ପାର୍ବତୀ ଶିବଙ୍କୁ ଯେପରି ଅନୁକରଣ କରିଥିଲେ, ସେହିପରି ଭଙ୍ଗୀ ହେଉଛି ଲୀଳା । ଶବ୍ଦର ବିଶ୍ଳେଷଣ ଅନୁସାରେ, 'ଲୀ'ର ଅର୍ଥ ଆଲିଙ୍ଗନ କରିବା ଓ 'ଳା'ର ଅର୍ଥ ଗ୍ରହଣ କରିବା । ତେଣୁ ସ୍ନେହପୂର୍ଣ୍ଣ ଭାବର କାର୍ଯ୍ୟ ହିଁ ଲୀଳା ପଦଯୋଗ୍ୟ । ଶ୍ରୀଜଗନ୍ନାଥାଷ୍ଟକମ୍‌ର ଦ୍ୱିତୀୟ ପଦରେ ବର୍ଣ୍ଣିତ ହୋଇଛି–

'ସଦା ଶ୍ରୀମଦ୍ ବୃନ୍ଦାବନବସତି ଲୀଳା ପରିଚୟୋ
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।'

ତେଣୁ ଜଗନ୍ନାଥ ହେଉଛନ୍ତି ଲୀଳା ପୁରୁଷୋତ୍ତମ ଓ ବିଭିନ୍ନ ଲୀଳାର ସୋପାନରେ ଭକ୍ତମାନଙ୍କ ସହିତ ଭାବର ଆଦାନ ପ୍ରଦାନ ପୂର୍ବକ ସେମାନଙ୍କର ମନୋରଞ୍ଜନ, ବୌଦ୍ଧିକ ଚିନ୍ତାଧାରା ଉଦ୍ରେକ ଓ ଉଚ୍ଚସ୍ତରୀୟ ଜୀବନ ଯାପନ ନିମିତ୍ତ ପ୍ରେରଣା ପ୍ରଦାନ ହିଁ ଲୀଳାର ଲକ୍ଷ୍ୟ । ଲୀଳାର ବିଭିନ୍ନ ସ୍ତରର ନିର୍ଯ୍ୟାସ ହେଉଛି ଯାତ୍ରା । ଚଳଚଞ୍ଚଳ କାର୍ଯ୍ୟାବଳୀର ବିଭିନ୍ନ ସୋପାନ ମଧ୍ୟରେ ଯାତ୍ରା ଅତି ଗୁରୁତ୍ୱପୂର୍ଣ୍ଣ । ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ ଗମନର ଅନ୍ୟନାମ ହେଉଛି ଯାତ୍ରା । ତାହାହିଁ ମାନସିକ ଭାବର ବାସ୍ତବିକ ରୂପାନ୍ତର କକ୍ଷେ ପ୍ରଚେଷ୍ଟା । ଶ୍ରୀଜଗନ୍ନାଥ ମହାପ୍ରଭୁ ଏ ଜଗତରେ ଉନ୍ନତ ମାନବ ଜାତିର ପ୍ରତିଷ୍ଠା ନିମିତ୍ତ ଲୀଳା କରୁଛନ୍ତି । ସେହି ଲୀଳାର ମାଧୁର୍ଯ୍ୟ ପରିପ୍ରକାଶ ହୋଇଛି ଭିନ୍ନ ଯାତ୍ରାରେ । ମହାପ୍ରଭୁ ପ୍ରତ୍ୟେକ ଦିନ ପ୍ରତ୍ୟୁଷରେ ପହଡ଼ ଖୋଲିବାଠାରୁ ରାତ୍ରିରେ ବଡ଼ସିଂହାର ବେଶପରେ ପହଡ଼ ପଡ଼ିବା ଯାଏଁ, ପୁରୁଷୋତ୍ତମ ଲୀଳା କରିଥାଆନ୍ତି । ଲୀଳାର ସ୍ତରସ୍ତରେ ଦୈବିକ ଓ ମାନବୀୟ ଚିନ୍ତନ ଓ କ୍ରିୟା ସମାହିତ ହୋଇଥାଏ । ସେହି ସମସ୍ତ କ୍ରିୟାର

ବୈଶିଷ୍ଟ୍ୟ, ଯାତ୍ରା ମାଧ୍ୟମରେ ରୂପାୟୀତ ହୋଇଥାଏ । ତେଣୁ ମହାପ୍ରଭୁଙ୍କର ବିଭିନ୍ନ ଯାତ୍ରା ତାଙ୍କର ଲୀଳାମାଧୁରୀ ସର୍ବୋତ୍ତମ ଓ ସହଜ ପରିପ୍ରକାଶ ।

ଲୀଳାତତ୍ତ୍ୱକୁ ପଣ୍ଡିତମାନେ ସହଜରେ ହୃଦୟଙ୍ଗମ କରିପାରନ୍ତି । ବେଦ, ଉପନିଷଦ ଓ ବିଭିନ୍ନ ପୁରାଣର ତଥ୍ୟକୁ ପଣ୍ଡିତମାନେ ଜାଣିଥିବାରୁ, ଲୀଳାର ବୌଦ୍ଧିକ ଭାବକୁ ସେମାନେ ଗ୍ରହଣ କରିପାରନ୍ତି । ଲୀଳାର ଗୁହ୍ୟାର୍ଥକୁ ସାତ୍ତ୍ୱିକ ଓ ବିଜ୍ଞ ବ୍ୟକ୍ତିମାନେ ଜାଣିପାରି ଆନନ୍ଦ ସାଗରରେ ଅବଗାହନ କରିଥାଆନ୍ତି । ମାତ୍ର ସ୍ୱଳ୍ପ ଜ୍ଞାନ ଅର୍ଜନକାରୀ ରାଜସିକ ଓ ତାମସିକ ଭାବରେ ଜୀବନ ବିତାଉଥିବା ସାଧାରଣ ମାନବ, ଲୀଳାର ଗୁହ୍ୟ ଅର୍ଥକୁ ବୁଝିବା ସମ୍ଭବପର ନୁହେଁ । ଯାତ୍ରା ମାଧ୍ୟମରେ ଲୀଳାର ସରଳ ଅର୍ଥ ପ୍ରକାଶିତ ହୁଏ । ଲୀଳାର ବୌଦ୍ଧିକ ଓ ଜଟିଳ ଭାବରାଶି, ଯାତ୍ରାରେ ସାଧାରଣ ଓ ସରଳ ଭାବ ବହନ କରି ରୂପାୟିତ ହୁଏ । ଫଳରେ ଏଥିରେ ଅଧିକ ମନୋରଞ୍ଜନ ଧର୍ମୀ ଓ ସାଧାରଣ ମାନବର ଭାବକୁ ଆକର୍ଷଣ କରିପାରୁଥିବା ଦ୍ରବ୍ୟ ଓ କ୍ରିୟାର ସଂଯୋଜନା କରାଯାଇଥାଏ ।

ଯାତ୍ରାର ମୂଳ ଉଦ୍ଦେଶ୍ୟ ସାଧାରଣ ଭକ୍ତଙ୍କର ମନୋରଞ୍ଜନ ହୋଇଥିଲେ ମଧ୍ୟ ତହିଁରେ ତାଙ୍କର କଲ୍ୟାଣ ନିହିତ ହୋଇଛି । ଜୀବର ମନନ ଓ ଚିନ୍ତନ କ୍ଷେତ୍ରରେ ବିକାଶ ଘଟାଇ ଉନ୍ନତ ଜୀବନଧାରାକୁ ଉତ୍ତୀର୍ଣ୍ଣ କରିବା ଯାତ୍ରାର ଲକ୍ଷ୍ୟ । ଯାତ୍ରାର ସହଜିଆ ମନୋରଞ୍ଜନପୂର୍ଣ୍ଣ ବିଭିନ୍ନ ରଙ୍ଗ, ଆଲୋକ, ସଂଗୀତ, ନୃତ୍ୟ ଓ ସମବେତ କ୍ରିୟାରେ ଆକର୍ଷିତ ହୋଇ ଅଂଶ ଗ୍ରହଣ କରୁଥିବା ସାଧାରଣ ମାନବ କ୍ରମଶଃ ତାହାର ବୌଦ୍ଧିକ ଭାବକୁ ଅନୁଭବ କରି ସାତ୍ତ୍ୱିକ ଭକ୍ତିରେ ପରିଣତ ହୋଇଥାଏ । ଏହି ଭାବକୁ ଅନୁଶୀଳନ କଲେ ଲୀଳାମୟ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ବୌଦ୍ଧିକ ଓ ସାଧାରଣ ଭାବର ତୁଳନା ନାହିଁ ।

ବିଶ୍ୱ ପ୍ରସିଦ୍ଧ ରଥଯାତ୍ରାର ବିଶେଷତ୍ୱକୁ ଆଧାର କରି ବହୁତ ମତ ରହିଛି । ଏହି ରଥଯାତ୍ରାକୁ ପତିତପାବନ ଯାତ୍ରା, ଦଶାବତାର ଯାତ୍ରା, ମହାଦେବୀ ଯାତ୍ରା, ଘୋଷ ଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ନବଦିନାତ୍ମକ ଯାତ୍ରା ପ୍ରଭୃତି କୁହାଯାଏ । ଶ୍ରୀମନ୍ଦିରରେ ବାର ମାସରେ ତେର ପର୍ବ ପାଳନ କରାଯିବାର ଜନଶ୍ରୁତି ରହିଛି । ଅନ୍ୟ କୌଣସି କ୍ଷେତ୍ରରେ ଏତେ ପରିମାଣର ପର୍ବ ପାଳନ ହେଉ ନଥିବାରୁ ଏଭଳି ପ୍ରବାଦ ପୁରୀ ସମ୍ପର୍କରେ ରହିଆସିଛି । ପ୍ରକୃତରେ ହିସାବ କଲେ ଛୋଟ ବଡ଼ ହୋଇ ଶ୍ରୀମନ୍ଦିରରେ ଚାଳିଶଟି ଯାତ୍ରା ଆୟୋଜିତ ହୋଇଥାଏ । ଏହି ଚାଳିଶଟି ଯାତ୍ରା ମଧ୍ୟରୁ ବାରଟି ପର୍ବ ପ୍ରଧାନ । ଯଥା ସ୍ନାନ ପୂର୍ଣ୍ଣିମା, ରଥଯାତ୍ରା, ଶୟନ ଯାତ୍ରା, ଅୟନ ଯାତ୍ରା, ପାଶ୍ୱପରିବର୍ତ୍ତନ, ଉତଥାନ ଯାତ୍ରା, ପାର୍ବଣ ଯାତ୍ରା, ପୁଷ୍ୟପୂଜା ଯାତ୍ରା, ଦୋଳକେଳି ଯାତ୍ରା, ଦମନକ ଚତୁର୍ଦ୍ଦଶୀ ଯାତ୍ରା, ଅକ୍ଷପୂର୍ଣ୍ଣିମୀ ଯାତ୍ରା ଓ ଅକ୍ଷୟତୃତୀୟା ଯାତ୍ରା । କେତେକ ଧର୍ମ ଗ୍ରନ୍ଥରେ ଅନ୍ୟ କେତେକ ପର୍ବକୁ ମୁଖ୍ୟ ପର୍ବ ଭାବରେ ଗ୍ରହଣ କରାଯାଇଥିଲେ ମଧ୍ୟ ପାରମ୍ପରିକ ଦୃଷ୍ଟିରୁ ଉପରୋକ୍ତ ଦ୍ୱାଦଶ ଯାତ୍ରା ହିଁ ମୁଖ୍ୟ ପର୍ବ ଭାବରେ ଗ୍ରହଣ କରାଯାଇଛି ।

ସମସ୍ତ ଯାତ୍ରା ମଧ୍ୟରୁ ରଥଯାତ୍ରା ହିଁ ଶ୍ରେଷ୍ଠ ପର୍ବ ରୂପେ କେବଳ ଭାରତରେ ନୁହେଁ ସମସ୍ତ ବିଶ୍ୱରେ ଗ୍ରହଣ କରାଯାଇଛି । ସମଗ୍ର ବିଶ୍ୱର ବିଭିନ୍ନ ବିଭିନ୍ନ ସ୍ଥାନରେ ରଥଯାତ୍ରା ପାଳନ ହେଉଥିବାର ପ୍ରମାଣ ରହିଛି । ଅତୀତରେ ସିସିଲି ଦ୍ୱୀପରେ ରଥଯାତ୍ରା ପାଳନ ହେଉଥିବାର ବର୍ଣ୍ଣନା ରହିଛି । ସୁସଜ୍ଜିତ ରଥରେ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟାନ୍ୟ ଗ୍ରହମାନଙ୍କର ପ୍ରତିମା ରଖାଯାଇ ମଇଁଷିମାନଙ୍କ ଦ୍ୱାରା ଟଣା ଯାଉଥିବାର ପ୍ରମାଣ ଇତିହାସରେ ମିଳୁଛି । ଜୈନ ଧର୍ମରେ ତୀର୍ଥଙ୍କର ମୂର୍ତ୍ତିକୁ ରଥରେ ସ୍ଥାପନ କରି ସହର ପରିକ୍ରମା କରାଯାଉଥିବା ଉଜ୍ଜୟିନୀ ନଗରର ଇତିହାସରୁ ଜଣାଯାଏ । ବୌଦ୍ଧ ଧର୍ମରେ ରଥଯାତ୍ରାର ବହୁଳ ପ୍ରମାଣ ରହିଛି । ଚୀନ୍ ଦେଶର ପରିବ୍ରାଜକ ଫାୟିଆନ୍ ପଞ୍ଚମ ଶତାବ୍ଦୀରେ ପାଟଳୀପୁତ୍ରରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ମୂର୍ତ୍ତିମାନ ରଖି ରଥଯାତ୍ରା ଆୟୋଜନ କରୁଥିବା ବିଷୟରେ ନିଜର ଭ୍ରମଣ କାହାଣୀରେ ବର୍ଣ୍ଣନା କରିଛନ୍ତି । ମଧ୍ୟଏସିଆର ଖୋଟାନ୍ ଅଞ୍ଚଳରେ ବୌଦ୍ଧ ତ୍ରିରତ୍ନର ରଥଯାତ୍ରା ବିଷୟରେ ଫାହିୟାନ ସୂଚନା ଦେଇଛନ୍ତି । ଅନ୍ୟତମ ପରିବ୍ରାଜକ ହୁଏନ୍‌ସାଂ ସପ୍ତମ ଶତବ୍ଦୀରେ କଙ୍ଗୋଦରେ ବୌଦ୍ଧମାନଙ୍କ ଦ୍ୱାରା ରଥାଯାତ୍ରା ହେଉଥିବା ବିଷୟରେ ବର୍ଣ୍ଣନା କରିଛନ୍ତି । ପ୍ରତିବର୍ଷ ସିଂହଳରେ ଆୟୋଜିତ ହେଉଥିବା ବୁଦ୍ଧଦେବଙ୍କର ଦନ୍ତର ରଥଯାତ୍ରା ପୃଥିବୀ ପ୍ରସିଦ୍ଧ ଓ ବୌଦ୍ଧମାନଙ୍କର ଅନ୍ୟତମ ପ୍ରଖ୍ୟାତ ଯାତ୍ରା । ନେପାଳର ଭୈରବ ଓ ଭୈରବୀଙ୍କ ବୈଶାଖ ମାସର ଭୈରବ ରଥଯାତ୍ରା ଓ ଲିଙ୍ଗରଥଯାତ୍ରା ପ୍ରସିଦ୍ଧି ଲାଭ କରିଥିଲା । ପୁନଶ୍ଚ ନେପାଳରେ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ନେତଦେବୀ ବା ଦେବୀଙ୍କ ରଥଯାତ୍ରା ନେପାଳର ଅନ୍ୟତମ ଶ୍ରେଷ୍ଠଯାତ୍ରା । ଏହି ଯାତ୍ରାରେ ଦୁଇଟି ବାଳକ ଓ ଗୋଟିଏ କୁମାରୀଙ୍କୁ ରଥାରୂଢ଼ କରି ସହର ପରିକ୍ରମା କରାଯାଏ । ଦୁଇଟି ବାଳକ କାର୍ତ୍ତିକ ଓ ଗଣେଶଙ୍କର ପ୍ରତୀକ ଓ ଏକ କୁମାରୀ, ଦେବୀଙ୍କ ରୂପେ ନେପାଳର ଅଧିବାସୀମାନେ ଗ୍ରହଣ କରିଥାନ୍ତି । ନେପାଳରେ ହିନ୍ଦୁ ଓ ବୌଦ୍ଧମାନଙ୍କ ଦ୍ୱାରା ମିଳିତ ଭାବେ ମହେନ୍ଦ୍ର ରଥଯାତ୍ରା

ଆୟୋଜିତ ହୋଇଆସୁଛି । ପ୍ରାବନ୍ଧିକ ଓଇନ୍‌ଫିଲ୍ଡ ନିଜର ଗ୍ରନ୍ଥ 'ସ୍କେଚେସ୍ ଫ୍ରମ ନେପାଳ'ରେ ନେପାଳର ରଥଯାତ୍ରାକୁ ହିନ୍ଦୁମାନଙ୍କର ଜଗନ୍ନାଥଙ୍କର ରଥଯାତ୍ରାର ଅନୁକରଣ ବୋଲି ବର୍ଣ୍ଣନା କରିଛନ୍ତି ।

ଭାରତରେ ବିଭିନ୍ନ ଧର୍ମ କ୍ଷେତ୍ରରେ ରଥଯାତ୍ରା ହେଉଥିବାର ପ୍ରମାଣ ରହିଛି । ଜମ୍ମୁରେ ଦେବୀଙ୍କର ରଥଯାତ୍ରା, ହିମାଚଳ ପ୍ରଦେଶର ମନାଲି ନିକଟରେ ମନସାଦେବୀଙ୍କ ରଥଯାତ୍ରା, କୋରାପୁଟର କୋୟା, ଗଣ୍ଡ, ଗଦବା ଆଦିବାସୀମାନଙ୍କର ରଥଯାତ୍ରା, ମାଲକାନାଗିରିରେ ପ୍ରତି ଦୁଇବର୍ଷରେ ଅନୁଷ୍ଠିତ ହେଉଥିବା କୋରାଜୁ, ଜଗାରାଜୁ ଓ ସୁଭଦ୍ରାମ୍ମାଙ୍କ ରଥଯାତ୍ରା, କୋଣାର୍କରେ ପୂର୍ବେ ଅନୁଷ୍ଠିତ ସୂର୍ଯ୍ୟଦେବଙ୍କର ରଥଯାତ୍ରା, ଭୁବନେଶ୍ୱର ଖଣ୍ଡଗିରିର ଅନନ୍ତ ବାସୁଦେବ ଓ କିଶୋରୀଙ୍କ ରଥଯାତ୍ରା, ସମ୍ରାଟ ଖାରବେଳଙ୍କ ସମୟରେ ଜୈନମାନଙ୍କର ଚୈତ୍ରଯାତ୍ରା, ମହାପ୍ରଭୁ ଲିଙ୍ଗରାଜଙ୍କ ରଥଯାତ୍ରା ପ୍ରଭୃତିର ଐତିହାସିକ ପ୍ରମାଣ ରହିଛି ।

ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ରଥଯାତ୍ରାକୁ ପୌରାଣିକ ଓ ଐତିହାସିକ ଭାବରେ ବିଭକ୍ତ କରାଯାଇ ପାରେ । ପୌରାଣିକ ବର୍ଣ୍ଣନା ଅନୁଯାୟୀ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଅନୁଷ୍ଠିତ ରଥଯାତ୍ରା ଓ ବୌଦ୍ଧମାନଙ୍କ ଦ୍ୱାରା ହେଉଥିବା ରଥଯାତ୍ରାର ବର୍ତ୍ତମାନ କୌଣସି ପ୍ରତ୍ନତାତ୍ତ୍ୱିକ ପ୍ରମାଣ ନାହିଁ । ମାତ୍ର ମାଦଳାପାଞ୍ଜି ଓ ବିଭିନ୍ନ ଐତିହାସିକମାନଙ୍କର ବର୍ଣ୍ଣନା ଅନୁସାରେ ମହାରାଜା ତୃତୀୟ ଅନଙ୍ଗଭୀମ ଦେବଙ୍କର ରାଜତ୍ୱ କାଳରେ (ପ୍ରାୟ ୧୨୩୦ ଖ୍ରୀଷ୍ଟାବ୍ଦରେ) ମନ୍ଦିର ପ୍ରତିଷ୍ଠା ହେବା ପରେ ରଥଯାତ୍ରା ଆୟୋଜନ ହୋଇଥିବା ଜଣାଯାଏ । ସେତେବେଳେ ଶ୍ରୀମନ୍ଦିର ଓ ଗୁଣ୍ଡିଚା ମନ୍ଦିର ମଧ୍ୟରେ ମାଳିନୀ ନଦୀ ପ୍ରବାହିତ ହୋଇଥିବାରୁ, ଛଅଟି ରଥ ନିର୍ମାଣ କରାଯାଉଥିବାର ବର୍ଣ୍ଣନା ରହିଛି । ଦ୍ୱିତୀୟ ନରସିଂହ ଦେବ ୧୨୭୮ ରୁ ୧୩୦୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ମାଳିନୀନଦୀକୁ ପୋତି ଦେବାରୁ ତିନୋଟି ରଥରେ ରଥଯାତ୍ରା କାର୍ଯ୍ୟ ସମାହିତ ହେଲା ।

ବିଜାତୀୟମାନଙ୍କର ବାରମ୍ବାର ଜଗନ୍ନାଥ ମନ୍ଦିର ଆକ୍ରମଣ ଯୋଗୁଁ ବିଗ୍ରହମାନଙ୍କୁ ରତ୍ନସିଂହାସନରୁ ସୋନପୁର, ଚିଲିକା, ଗଡ଼ଗୁଜଙ୍ଗ ପ୍ରଭୃତି ସ୍ଥଳକୁ ନେଇ ପାତାଳୀ କରାଯାଉଥିଲା । ତେଣୁ ସେହି ସମୟରେ ରଥଯାତ୍ରା ଅନୁଷ୍ଠିତ ହେଉଥିବା ଜଣାଯାଇଛି ।

ଆଧୁନିକ ଯୁଗରେ ରଥଯାତ୍ରା, ଜଗନ୍ନାଥଙ୍କ ପ୍ରତି ଭକ୍ତି, ବହୁ ଜନସମାଗମ ମଧ୍ୟରେ ମନୋରଞ୍ଜନ ଓ ପର୍ଯ୍ୟଟନ କ୍ଷେତ୍ର ଦର୍ଶନ ଭାବର ପରିପ୍ରକାଶ କରୁଛି । ପ୍ରଥମତଃ ଜଗନ୍ନାଥଙ୍କ ପ୍ରତି ଆତ୍ମନିବେଦନ ହିଁ ଭକ୍ତନିମିତ୍ତ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ । ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ମାନବର ପୁର୍ନଜନ୍ମ ହୁଏ ନାହିଁ ଓ ସେ ମୋକ୍ଷପ୍ରାପ୍ତି ହୁଏ । ଦୋଳରେ ଶ୍ରୀଜଗନ୍ନାଥଙ୍କୁ ଗୋବିନ୍ଦ, ଚାପ ଖେଳବେଳେ ମଧୁସୂଦନ ଓ ରଥ ଉପରେ ଥିବାବେଳେ ବାମନ ନାମରେ ନାମିତ କରିବା ପଛରେ ତାତ୍ତ୍ୱିକ ଭାବ ରହିଛି ।

କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ସ୍ୱରଚିତ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପ୍ରଥମ ଛାନ୍ଦରେ ଶ୍ରୀଜଗନ୍ନାଥଙ୍କର ଅଦ୍ଭୁତପୂର୍ବ ବର୍ଣ୍ଣନା କରିଛନ୍ତି । ସଂକ୍ଷିପ୍ତରେ ସେ ମହାପ୍ରଭୁ ଓ ଶ୍ରୀକ୍ଷେତ୍ର ମାହାତ୍ମ୍ୟର ଏଭଳି ସୂଚନା ଦେଇଛନ୍ତି ଯେ, ଗବେଷକମାନଙ୍କ ନିମିତ୍ତ ଅତି ଉପାଦେୟ ହୋଇପାରିଛି ।

ଉପରୋକ୍ତ ପଦରେ 'ସ୍ୱୟଂ ଲୀଳା' ଓ 'ପତିତପାବନ ଅର୍ଥେ'ର ତାତ୍ପର୍ଯ୍ୟ ଅତି ଗୁରୁତ୍ୱପୂର୍ଣ୍ଣ । ପୂର୍ବେ ଜଗନ୍ନାଥ ମହାପ୍ରଭୁ ସ୍ୱବିଗ୍ରହରେ ରତ୍ନସିଂହାସନ ଛାଡ଼ି ସମସ୍ତ ଯାତ୍ରାରେ ଭକ୍ତମାନଙ୍କୁ ଦର୍ଶନ ଦେଉଥିଲେ । ପରେ ବିଗ୍ରହଙ୍କର ଅବୟବ ସୁରକ୍ଷା ଦୃଷ୍ଟିରୁ ସମସ୍ତ ଯାତ୍ରାରେ ରତ୍ନସିଂହାସନରୁ ଯାତ୍ରାସ୍ଥଳୀକୁ ଆଣିବା ସମ୍ଭବପର ହୋଇପାରିଲା ନାହିଁ । ତେଣୁ କେବଳ ସ୍ନାନ ଯାତ୍ରା ଓ ଶ୍ରୀଗୁଣ୍ଡିଚା ଯାତ୍ରାରେ ବିଗ୍ରହମାନଙ୍କର ପହଣ୍ଡି କରାଗଲା । ଅନ୍ୟ ଯାତ୍ରାରେ ମହାପ୍ରଭୁଙ୍କର ପ୍ରତିନିଧି ମଦନମୋହନ ଅଂଶ ଗ୍ରହଣ କଲେ ।

ସମସ୍ତ ଯାତ୍ରା ମଧ୍ୟରେ ଶ୍ରୀଗୁଣ୍ଡିଚା ଯାତ୍ରାର ତାତ୍ପର୍ଯ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ । ଶ୍ରୀଜଗନ୍ନାଥ ମହାପ୍ରଭୁ ରାଣୀ ଗୁଣ୍ଡିଚାଙ୍କୁ ମନ୍ଦିର ପ୍ରତିଷ୍ଠାପରେ ପ୍ରତ୍ୟେକ ବର୍ଷ ନଅଦିନ ପାଇଁ ଶ୍ରୀମନ୍ଦିର ଛାଡ଼ି ନିଜର ଜନ୍ମ ସ୍ଥାନରେ ରହିବା ପାଇଁ ସ୍ୱୀକୃତି ଦେଇଥିଲେ । ସେହି ଭାବରେ ପ୍ରସିଦ୍ଧ ରଥଯାତ୍ରାକୁ ଶ୍ରୀଗୁଣ୍ଡିଚାଯାତ୍ରା କୁହାଯାଏ । ମାତ୍ର ପ୍ରକୃତ ପକ୍ଷେ ନିଜର ପତିତପାବନ ନାମକୁ ସାର୍ଥକ କରିବା ପାଇଁ ମହାପ୍ରଭୁଙ୍କର ଏହି ଲୀଳାର ଅଧିକ ଆଲୋଚନା ହୁଏ ।

ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ନାମ ମଧ୍ୟରୁ ପତିତପାବନ ନାମଟି ଅଧିକ ଗ୍ରହଣୀୟ । କଳିଯୁଗରେ ପତିତମାନଙ୍କୁ ଦୁଃଖରୁ ରକ୍ଷା କରିବା ନିମିତ୍ତ ମହାପ୍ରଭୁ ଲୀଳା କରୁଛନ୍ତି । ଗଜପତି ମହାରାଜାଙ୍କ ନିର୍ଦ୍ଦେଶ ଅନୁସାରେ ହିନ୍ଦୁଧର୍ମ ବ୍ୟତୀତ ଅନ୍ୟ କୌଣସି ଧର୍ମର ବ୍ୟକ୍ତି ମନ୍ଦିର ମଧ୍ୟରେ ପ୍ରବେଶ କରିପାରିବେ ନାହିଁ । ମହାପ୍ରଭୁଙ୍କ ନାମ ହିଁ ଜଗନ୍ନାଥ । ଜଗତର ସେ ସ୍ୱାମୀ ଓ ରକ୍ଷାକର୍ତ୍ତା । ଜାତି, ଧର୍ମ, ବର୍ଣ୍ଣ, ବିଶ୍ୱାସ ନିର୍ବିଶେଷରେ ସେ ସମସ୍ତଙ୍କର ନାଥ । ତେଣୁ ଏ ଜଗତରେ ସମସ୍ତେ ତାଙ୍କର ଆଶ୍ରିତ । ବର୍ଷର ଅନ୍ୟ ସମୟରେ ଅଣହିନ୍ଦୁମାନେ ମନ୍ଦିର ମଧ୍ୟକୁ ପ୍ରବେଶ

କରିପାରୁନଥିବାରୁ ମହାପ୍ରଭୁଙ୍କର ବିଗ୍ରହ ସ୍ୱଚକ୍ଷୁରେ ଦର୍ଶନ କେବଳ ବଡ଼ଦାଣ୍ଡରେ ରଥଯାତ୍ରା ବେଳେ ସେମାନଙ୍କ ପକ୍ଷେ ସମ୍ଭବ ହୋଇପାରିଥାଏ । ଏହି ସମୟରେ ଜଗତର ଯେକୌଣସି ବ୍ୟକ୍ତି ମହାପ୍ରଭୁଙ୍କ ଦର୍ଶନ ଲାଭ କରିବା ସହିତ ବିଗ୍ରହଙ୍କୁ ସ୍ପର୍ଶ କରିପାରିବ । ଯାହାଫଳରେ ପତିତ ମାନବ ନିଜକୁ ଧନ୍ୟ ମନେକରେ ଓ ତାର ସମସ୍ତ ପାପ କ୍ଷାଳିତ ହୋଇ ସେ ମୋକ୍ଷପ୍ରାପ୍ତି ନିମନ୍ତେ ଯୋଗ୍ୟତା ଲାଭ କରେ । ଆମ ସଂସ୍କୃତିରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ଲୀଳାକୁ ପତିତପାବନ ଲୀଳା କୁହାଯାଏ ଓ ରଥଯାତ୍ରାକୁ ପତିତପାବନ ଯାତ୍ରା ନାମରେ ଅଭିହିତ କରାଯାଏ ।

ସୂକ୍ଷ୍ମ ଦର୍ଶନରେ ମାନବ ଶରୀର ଓ ମନ ମଧ୍ୟରେ ଥିବା ସମସ୍ତ ନକରାତ୍ମକ ଭାବ ବା ପତିତ ଭାବକୁ ଦୂର କରି ସାତ୍ତ୍ୱିକ ଓ ଆଧ୍ୟାତ୍ମିକ ଭାବର ଉଦ୍ରେକ ପ୍ରକ୍ରିୟାକୁ ପତିତପାବନ ରଥଯାତ୍ରା କୁହାଯାଇପାରେ । କଠୋପନିଷଦରେ ପ୍ରମାଣ ରହିଛି ଯେ, ଶରୀର ଏକ ରଥ ଏବଂ ଆତ୍ମା ହେଉଛି ତାର ଅଧିରୂଢ଼ ଶକ୍ତି । ରଥରେ ବୁଦ୍ଧି ହେଉଛି ସାରଥି ଏବଂ ମନ ହେଉଛି ଘୋଡ଼ା । ତେଣୁ ବୁଦ୍ଧି ରୂପକ ଶାଣିତ ଶକ୍ତିରେ ପଞ୍ଚମନ ପଚିଶ ପ୍ରକୃତିକୁ ସୁନିୟନ୍ତ୍ରିତ କଲେ ମାନବର ପତିତ ଭାବ ଦୂର ହୋଇ ପାରିବ ଏବଂ ଆତ୍ମାର ପାବନ ଶକ୍ତି ଅଧିକ ବଳଶାଳୀ ହେବ । ତେଣୁ ମାନବର ପତିତ ସ୍ଥିତି କେବେ ରହିବ ନାହିଁ । ବ୍ୟାବହାରିକ ଓ ଦର୍ଶନ ତତ୍ତ୍ୱ ଦୃଷ୍ଟିରୁ ବିବେଚନା କଲେ, ମହାପ୍ରଭୁ ପରମାତ୍ମା ଜଗନ୍ନାଥ, ସମଗ୍ର ମାନବ ଜାତିର କଲ୍ୟାଣ ତଥା ଅଭିବୃଦ୍ଧି ନିମନ୍ତେ ରଥଯାତ୍ରା ବା ପତିତପାବନ ଯାତ୍ରା ରୂପକ ଲୀଳା ପ୍ରବର୍ତ୍ତନ କରିଛନ୍ତି ।

ଏମ୍.ଆଇ.ଜି.– ୧/୨୨୭,
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍–୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦

# ରଥରୁ ଦେଖୁଛି କାଳିଆ

ଗଣେଶ ଚନ୍ଦ୍ର ଦାଶ



ରଥରୁ ଦେଖୁଛି କାଳିଆ
ଭକତଙ୍କୁ କହେ ଧାଇଁ ଆ ।
ଲକ୍ଷ ଲକ୍ଷ ଭକ୍ତ ଆସନ୍ତି
ତା ରଥ ଦଉଡ଼ି ଧରନ୍ତି ।
ସୁନ୍ଦର ଦିଶେ ତା ବଦନ
ଅଙ୍ଗରେ କର୍ପୂର ଚନ୍ଦନ ।
ମାଳ ଲମ୍ବେ ତା ପାଦ ତଳ
ଚନ୍ଦନେ ହୁଏ ସେ ଶୀତଳ ।
ହାତ ଠାରି ସେ ତ ଡାକଇ
ଭକତଙ୍କୁ ପାଖୁ ଦେଖିବା ପାଇଁ ।
ସାଙ୍ଗରେ ଧରି ଭଉଣୀ ଭାଇ
ବଡଦାଣ୍ଡେ ସେ ଉଭା ହୁଅଇ ।

ତାହାର ଟିକେ କରୁଣା ପାଇଁ
ଭକତ ତା ପାଖ ଆସନ୍ତି ଧାଇଁ ।
ସଂସାରେ ଯେ କରଇ ଆଶ
ନକରେ ତାଙ୍କୁ ସେ ନିରାଶ ।
ତା' ବଡ ପଣ ସଦା ଥାଉ
ଦୁଃଖୀ ଜନଙ୍କୁ ସେ ଆଶ୍ରା ଦେଉ ।
ମାଗୁ ନାହିଁ ମୁଁ ଧନ ଜନ
ନିଅ ଅକିଞ୍ଚନ ପ୍ରଣାମ ।



କ୍ୱାର୍ଟର ନଂ. ଇ–୨୨
ୟୁନିଟ୍–୭ ଭୁବନେଶ୍ୱର–୭୫୧୦୦୩

# ମାନବବାଦର ଠାକୁର ଶ୍ରୀଜଗନ୍ନାଥ

ଡକ୍ଟର ହରିହର କାନୁନ୍‌ଗୋ

ଜଗତର ନାଥ – ଜଗନ୍ନାଥଙ୍କ ପାଖରେ ଜାତି ବଡ଼ ନୁହେଁ- ଜଗତ ବଡ଼, ମଣିଷ ବଡ଼ ବା ମଣିଷ ପଣିଆ ବଡ଼। ସେଇଥିପାଇଁ ସେ ଶ୍ରୀଜଗନ୍ନାଥ। କଳିଯୁଗର ସିଏ ଏକମାତ୍ର ଠାକୁର, ଯିଏ କି ସତ୍ୟ-ସନାତନ-ପରମବ୍ରହ୍ମ-ପୂର୍ଣ୍ଣବ୍ରହ୍ମ-ଦାରୁବ୍ରହ୍ମ-ମାନବବ୍ରହ୍ମର ପ୍ରତୀକ। ଯୁଗଯୁଗ ଧରି ତାଙ୍କର ମହିମା ଏ ମାନବ ସମାଜରେ ପ୍ରକଟିତ। ସତ୍ୟ ଯୁଗରେ ଶ୍ରୀହରି-ନୃସିଂହନାଥ, ତ୍ରେତୟା ଯୁଗରେ ଶ୍ରୀରାମ-ରଘୁନାଥ, ଦ୍ୱାପରରେ ଶ୍ରୀକୃଷ୍ଣ-ଗୋପୀନାଥ ଓ କଳିଯୁଗରେ ନାମବ୍ରହ୍ମ ସ୍ୱରୂପ – ହରେ ରାମ କୃଷ୍ଣଙ୍କ ସମ୍ମିଶ୍ରିତ ରୂପ ଦାରୁଦେବତା ଶ୍ରୀଜଗନ୍ନାଥ । ସେ ହେଉଛନ୍ତି ଅବତାରୀ ଓ ତାଙ୍କଠାରୁ ସବୁ ଜୀବଜଗତ, ଅବତାର ଓ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି । ସେଇଥିପାଇଁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଆ କବି ଶ୍ରୀଜୟଦେବ ଗୀତଗୋବିନ୍ଦର ଦଶାବତାର ବର୍ଣ୍ଣନା କଲାବେଳେ ଜଗନ୍ନାଥଙ୍କୁ ଅବତାରୀ ଓ ଅନ୍ୟ ଦେବତାଙ୍କୁ ଅବତାର ରୂପେ ବର୍ଣ୍ଣନା କରିଛନ୍ତି। ତାଙ୍କଠାରେ ଏଭଳି ମାନବୀୟ ଗୁଣ ଭରି ରହିଛି ସ୍ୱଦେଶୀ, ବିଦେଶୀ, ଧନୀ-ଗରିବ ସାମାଜିକ ଓ ଅସାମାଜିକ ସମସ୍ତେ ଧାଇଁ ଆସୁଛନ୍ତି ଟିକେ ଦର୍ଶନ ଓ ଆଶିଷ ପାଇବା ପାଇଁ । କାରଣ ତାଙ୍କର ରୂପ ସାକାର-ନିରାକାର ଏବଂ ପ୍ରତୀକ-ପ୍ରତିମାଧର୍ମୀ । ଯେତେବେଳେ ଯିଏ



ଯେଉଁ ରୂପରେ-ଗୁଣରେ ଭାବରେ ଭକ୍ତିରେ ତାଙ୍କୁ ଶ୍ରଦ୍ଧାର ସହିତ ମନପ୍ରାଣ ଦେଇ ଡାକେ, ସେ ତାହାଙ୍କ ନିକଟକୁ ଅଚିରେ ମଣିଷ ବା ଅନ୍ୟ ରୂପ ଧରି ଚାଲିଯାଆନ୍ତି । ମାନବ ରୂପ ଓ ଜନ୍ମ ହେଉଛି ଏ ଜୀବଜଗତରେ ଶ୍ରେଷ୍ଠ ଜୀବ ଓ ଦୁର୍ଲଭ ଜନ୍ମ । ସେ ମଣିଷକୁ ତିଆରି କରିଛନ୍ତି ନିଜ ଲୀଳାଖେଳା ପାଇଁ । ଉଦ୍ଦେଶ୍ୟ ହେଉଛି ଏ ମଣିଷ ନିଜ ବିବେକ-ଜ୍ଞାନ-ପ୍ରଜ୍ଞା ଓ ବିଚାର ବୁଦ୍ଧି ବଳରେ ଭଲ-ମନ୍ଦ, ନୀତି-ଅନୀତି, ନ୍ୟାୟ-ଅନ୍ୟାୟ, ଧର୍ମ-ଅଧର୍ମ, ପାପ-ପୁଣ୍ୟ ଓ ଠିକ୍-ଭୁଲର ବିଚାର କରି ନିଜ ମଣିଷ ପଣିଆକୁ ସାବ୍ୟସ୍ତ କରିବ। ସେଥିପାଇଁ ଏ ମାନବକୁ ସକଳ ଜୀବଜଗତର ସୃଷ୍ଟି ଭିତରେ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ଅନ୍ୟ ଅର୍ଥରେ କହିଲେ ଏ ମଣିଷ ହେଉଛି ଦେବତା । ଦୈବୀ ଶକ୍ତି ତା'ଭିତରେ ପୂରି ରହିଛି । ମଣିଷ ଭିତରେ ତିନି ପ୍ରକାର ଶକ୍ତି ଅଛି-ଶରୀରଶକ୍ତି, ଇଚ୍ଛାଶକ୍ତି ଓ ଐଶ୍ୱରିକ ଶକ୍ତି । ତେଣୁ ମଣିଷ ଭିତରେ ସତ୍ ଚିନ୍ତା, ସତ୍ ଭାବନା, ସତ୍ କର୍ମ, ସତ୍ ବିଚାର, ସତ୍ ଉପଦେଶ ରହିଥିବାରୁ ବିଧାତା ଏ ମଣିଷକୁ ଶ୍ରେଷ୍ଠ ଜୀବର ମାନ୍ୟତା ଦେଇଛି । ସେଇଥିପାଇଁ ଭାଗବତ କହେ- 'ମାନବ ଦେହେ ଦିବ୍ୟ ଜ୍ଞାନ, ଦେଖି ସନ୍ତୋଷ ଭଗବାନ'। ମାନବ ଜନ୍ମର ଆଉ ଏକ କାରଣ ହେଉଛି ଏଇ ମଣିଷକୁ ସୃଷ୍ଟି କରି ତା'ରି ମାଧ୍ୟମରେ ସ୍ୱୟଂ

ଲୀଳାଖେଳା କରିବା ସହିତ ଜଗତର କଲ୍ୟାଣ ଓ ମଣିଷପଣିଆର ବିକାଶ ସାଙ୍ଗକୁ ମୂଲ୍ୟବୋଧର ପ୍ରତିଷ୍ଠା କରିବା । ମହାପ୍ରଭୁ ଜଗନ୍ନାଥ ଏଇ ଭାବ ନେଇ ମଣିଷ ରୂପରେ ସଂସାରକୁ ଆସନ୍ତି । ସେତେବେଳେ ସେ ହୁଅନ୍ତି ଭକ୍ତର ଭଗବାନ । ମର୍ତ୍ତ୍ୟର ମଣିଷ ମାଧ୍ୟମରେ ଜଗତର କଲ୍ୟାଣ ସହିତ ଧର୍ମ, ନୀତି ଓ ନ୍ୟାୟର ପ୍ରତିଷ୍ଠା ନିମନ୍ତେ ମାନବ ରୂପ ଧାରଣ କରିଥାନ୍ତି । ମଣିଷ ଭଳି ସେ ସକାଳୁ ଉଠନ୍ତି, ଦାନ୍ତ ଘଷନ୍ତି, ସକାଳ ବେଶ ଓ ଧୂପ, ମଧ୍ୟାହ୍ନ ଧୂପ ଓ ରାତ୍ର ବଡ଼ସିଂହାର ବେଶ ଓ ଧୂପରେ ମହାପ୍ରସାଦ ସେବନ କରି ରତ୍ନ ପଲଙ୍କରେ ଶୟନ କରନ୍ତି । ଏହିଭଳି ହୁଏ ତାଙ୍କର ଦୈନନ୍ଦିନ ବେଶ, ଧୂପ ଓ ନୀତି । ଜ୍ୱର ହେଲେ ଔଷଧ ସେବନ କରି ସୁସ୍ଥ ହୁଅନ୍ତି । ସାଧାରଣ ମଣିଷକୁ ଯେପରି ଜ୍ୱର ହୁଏ, ସେହିପରି ପ୍ରଭୁ ଶ୍ରୀଜଗନ୍ନାଥ ସ୍ନାନଯାତ୍ରାରେ ଅତ୍ୟଧିକ ଜଳରେ ସ୍ନାନ କରିଥିବାରୁ ପ୍ରତିପଦା ଠାରୁ ନେତ୍ରୋତ୍ସବ ପର୍ଯ୍ୟନ୍ତ ପନ୍ଦର ଦିନ ଜ୍ୱରରେ ପୀଡ଼ିତ ଥାନ୍ତି । ସେତେବେଳେ ମହାପ୍ରଭୁଙ୍କ ନିତ୍ୟ ନୈମିତ୍ତିକ ମହାପ୍ରସାଦରୁ ତାଙ୍କୁ ବାରଣ ରଖାଯାଇ କେବଳ ଦୁଗ୍ଧସର, ଆମ୍ବ, ପଣସ, ସପୁରୀ, ଆତ ଆଦି ଫଳମୂଳ ଲାଗି କରାଯାଏ । ସେତେବେଳେ ଅନ୍ନ ମହାପ୍ରସାଦ ତାଙ୍କ ଚଳନ୍ତି ପ୍ରତିମା ମଦନମୋହନଙ୍କ ପାଖରେ ଲାଗି ହୁଏ । ଜ୍ୱରରୁ ଆରୋଗ୍ୟ ପାଇଁ ଦଶମୂଳ ମୋଦକ, ବୃହତ୍ ଓ ଲଘୁ ପଞ୍ଚମୂଳ ଆଦି ମିଶାଇ ପାଚନ ପାଣି ସେବନ କରିବାକୁ ଦିଆଯାଏ । ରାଶିତେଲ, ଚୁଆ ଓ କର୍ପୂରରେ ପ୍ରସ୍ତୁତ ଫୁଲରି ତେଲ, ଯାହା ବର୍ଷେ ପୂର୍ବରୁ ମାଟିରେ ପୋତା ହୋଇ ରହିଥାଏ, ତାହାକୁ ଅଣସର ପିଣ୍ଡିରେ ପଞ୍ଚମ ଦିନ ମହାପ୍ରଭୁଙ୍କୁ ଲାଗି ହୁଏ । ତେଲର ଏହି ଔଷଧୀୟ ଗୁଣ ଯୋଗୁ ପ୍ରଭୁ ଧୀରେଧୀରେ ସୁସ୍ଥ ହୁଅନ୍ତି । ଦଶ ମୂଳରୁ ପ୍ରସ୍ତୁତ ମୋଦକ (ପାଚନ) ଖାଇବା ପରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଆରୋଗ୍ୟ ହୋଇ ପୁଣି ନୂଆ ରୂପ ଓ ଭେକରେ ଅର୍ଥାତ୍ ନବଯୌବନ ବେଶରେ ସମସ୍ତଙ୍କୁ ଦର୍ଶନ ଦେଇ ରଥରେ ଚଢ଼ି ସଂସାର ପଥରେ ଗୁଣ୍ଡିଚା ଘରକୁ ଯାତ୍ରା କରନ୍ତି । ଏ ଯାତ୍ରା କର୍ମଭୂମିରୁ ଜନ୍ମଭୂମିକୁ ଯାତ୍ରା । ଏହାକୁ କହନ୍ତି ରଥଯାତ୍ରା, ଗୁଣ୍ଡିଚାଯାତ୍ରା, ଘୋଷଯାତ୍ରା, ନବଦିନାତ୍ମିକା ଯାତ୍ରା ଓ ସର୍ବୋପରି ମାନବବାଦର ଯାତ୍ରା । ସଂସାର ପଥରେ ଯାତ୍ରା କରି ନଅ ଦିନ ନିଜ ଜନ୍ମ ସ୍ଥାନ ଜନକପୁରୀରେ ଅବସ୍ଥାନ ପୂର୍ବକ ପୁଣି ବାହୁଡ଼ି ଆସନ୍ତି ନିଜ କର୍ମଭୂମି ଶ୍ରୀମନ୍ଦିରକୁ । ଏହିଭଳି ଚାଲେ ତାଙ୍କର ନିୟମିତ ଲୀଳାର ଯାତ୍ରା । କର୍ମମୟ ଜୀବନରେ ସଂସାରର ସମସ୍ତ କର୍ମ ସମାପନ ପରେ ଯେଉଁ ବର୍ଷ ଦୋଆଷାଢ଼ ମାସ ପଡ଼େ, ସେହିବର୍ଷ ତାଙ୍କର ହୁଏ ମହାଯାତ୍ରା ବା ନବକଳେବର । ସମଗ୍ର ବିଶ୍ୱରେ କେବଳ ମହାପ୍ରଭୁ ହିଁ ମାନବ ରୂପ ଧାରଣ କରିଥିବାରୁ ପରଂବ୍ରହ୍ମ ପୁରୁଣା କଳେବର ଛାଡ଼ି ନୂଆ କଳେବର ସେ ଧାରଣ କରନ୍ତି । ତେଣୁ ଭାଗବତ କହେ–

‘ମର୍ତ୍ତ୍ୟମଣ୍ଡଳେ ଦେହ ବହି, ଦେବତା ହେଲେ ବି ମରଇ’

ଜନ୍ମମୃତ୍ୟୁର ଦୁଇଟି ନିଆଁ–ଦୁନିଆଁରେ ଆତଯାତ ସମସ୍ତେ ମୃତ୍ୟୁ ପଥର ଯାତ୍ରୀ । ଏ ଜଗତର ମହାଦେବତା ହେଲେ ମଧ୍ୟ ଶ୍ରୀଜଗନ୍ନାଥ ମୃତ୍ୟୁର ସତ୍ୟପଥରୁ ବିଚ୍ୟୁତ ହୋଇନାହାନ୍ତି । କାରଣ ‘ଜାତସ୍ୟ ହି ଧ୍ରୁବ ମୃତ୍ୟୁ’– ଏଠି ମଣିଷ ଦେବତା ଓ ଦେବତା ମଣିଷ ଭଳି ଉଚ୍ଚାରଣ ଓ ଆଚରଣ କରେ । ତେଣୁ ମଣିଷ ରୂପରେ ଓ ମଣିଷ ଦେହରେ ବିରାଜମାନ ପୂର୍ବକ ଭକ୍ତର ଭଗବାନ ଭଳି କାର୍ଯ୍ୟ କରି ଚାଲିଛି ମହାପ୍ରଭୁ ଶ୍ରୀଜଗନ୍ନାଥ । ଶ୍ରଦ୍ଧା ଭକ୍ତି ଓ ବିଶ୍ୱାସର ଠାକୁର ମହାପ୍ରଭୁ ଏ କଳିଯୁଗରେ ଯେ ଏକମାତ୍ର ସତ୍ୟ ଓ ଏଭଳି ଦେବତା ଯେ ସମଗ୍ର ବିଶ୍ୱରେ ବିରଳ, ଏହା ହିଁ ଧ୍ରୁବ ସତ୍ୟ ।

ମନରେ ପ୍ରଶ୍ନ ଉଠେ ମାନବବାଦର ଠାକୁର ଶ୍ରୀଜଗନ୍ନାଥ ମର୍ତ୍ତ୍ୟମଣ୍ଡଳରେ ଏଭଳି ରୂପ ଧାରଣ କଲେ କାହିଁକି ? ରାମ–କୃଷ୍ଣ–ବୁଦ୍ଧଙ୍କ ଭଳି ଅତି କମନୀୟ ସୁନ୍ଦର ମାନବ ଶରୀର ଧାରଣ କରିବାରେ କୌଣସି ଅସୁବିଧା କି ପ୍ରତିବନ୍ଧକ ଥିଲା କି ? ତାଙ୍କର ଏଭଳି ରୂପ ସ୍ୱତନ୍ତ୍ର ଓ ଅନ୍ୟତ୍ର ବିରଳ । ମାନବ ଜାତିର ଇତିହାସକୁ ଅବଲୋକନ କଲେ ଜଣାଯାଏ ଯେ ଭୟ, ବିସ୍ମୟ ଓ ଭାବବିହ୍ୱଳତାରୁ ମାନବର ଅନୁସନ୍ଧିତ୍ସୁ ମନ ସଜୀବ ଓ ନିର୍ଜୀବ ପ୍ରତ୍ୟେକ ବସ୍ତୁ ଭିତରେ ଆତ୍ମସତ୍ତାର ଉପଲବ୍ଧି କଲା । ଆତ୍ମାର ସନ୍ଧାନ ବା ଆତ୍ମସନ୍ଧାନ ହିଁ ତା’ ଆଧ୍ୟାତ୍ମିକ ଚେତନାର ମୂଳଭିତ୍ତି । ମଣିଷର ଧର୍ମ ଧାରଣାକୁ ଆଧାର କରି ଏ ସମାଜରେ ପ୍ରଚଳିତ ହେଲା ବୃକ୍ଷ ଉପାସନା । ବୃକ୍ଷର କୋରଡ଼ ଭିତରେ ଲୁକ୍କାୟିତ ଦିବ୍ୟସତ୍ତାକୁ ବିଶ୍ୱାସକରି ଏ ମଣିଷ ଭିତରେ ଦେବତାର ପରିକଳ୍ପନା ପୂର୍ବକ ପୂଜା ଉପାସନା ଆରମ୍ଭ ହେଲା । ଏହି ବୃକ୍ଷ ଉପାସନା ହିଁ ବିବର୍ତ୍ତନଧାରାରେ ଏକ ବଳିଷ୍ଠ ଧାର୍ମିକ ପୃଷ୍ଠଭୂମି ସୃଷ୍ଟି କଲା । ଏବେ ମଧ୍ୟ ଏହି ବୃକ୍ଷପୂଜା ପରମ୍ପରାରୁ ଆମେ ବିଚ୍ୟୁତ ହୋଇନାହୁଁ । ଅଶ୍ୱତ୍ଥ, ବର, ନିମ୍ବ, ବେଲ, ବରୁଣ, ସାହାଡ଼ା, କର, ଶାଳ, ଅଁଳା ଓ ତୁଳସୀ ଆଦି ଜୀବନ୍ତ ବୃକ୍ଷକୁ ଦେବଦେବୀ ରୂପେ ମନ୍ଦିର ବେଢ଼ାରେ କିମ୍ବା ମନ୍ଦିର ବାହାରେ ରଖି ଆମେ ପୂଜା ଉପାସନା କରି ଆସୁଛୁ । ଅତଏବ ଏହି ବୃକ୍ଷ ଉପାସନା କାଳର ଗତିରେ ବିବର୍ତ୍ତିତ ହୋଇ ଖମ୍ବ ବା ଦାରୁ ଉପାସନା ମଧ୍ୟ ଦେଇ କଳିଯୁଗରେ ଶ୍ରୀଜଗନ୍ନାଥ ମୂର୍ତ୍ତି କଳ୍ପନାରେ ପୂର୍ଣ୍ଣତା ଲାଭ କରିଛି ।

ଶ୍ରୀଜଗନ୍ନାଥଙ୍କର ଏଇ ମୂର୍ତ୍ତିକଳ୍ପନା ଅତି ବିଚିତ୍ର । ଇତିହାସ ଦୃଷ୍ଟିରୁ ବିଚାର କଲେ ଶ୍ରୀଜଗନ୍ନାଥଙ୍କର ସର୍ପାକୃତି ମୁଖମଣ୍ଡଳ, ନାଗଚକ୍ଷୁ– ଅପଲକ ନେତ୍ର ଓ ମୂର୍ତ୍ତି ଗଠନରେ ଏହି ସର୍ପ ମୁଖାକୃତିର ପ୍ରତିବିମ୍ବ ଅନୁଭୂତ ହୁଏ । ମୁଖମଣ୍ଡଳ ତଳେ ରହିଥିବା ଗଣ୍ଡି ଆଦିମ ଶବରମାନଙ୍କ ଖମ୍ବପୂଜାର ପ୍ରତୀକ । ଅତଏବ ମୂର୍ତ୍ତି କଳ୍ପନାରେ ଶବରମାନଙ୍କ ଖମ୍ବ ବା ଗଣ୍ଡି ପୂଜା ସହିତ ନାଗମାନଙ୍କ ଲାଞ୍ଛନ ସର୍ପାକୃତି ମୁଖମଣ୍ଡଳର ସମନ୍ୱୟ ରକ୍ଷାକରି ସମ୍ପୂର୍ଣ୍ଣ ଜଗନ୍ନାଥ ମୂର୍ତ୍ତି ଗଠନ କରାଗଲା । ଫଳରେ ପ୍ରାଚୀନ ଓଡ୍ରଦେଶର ଦୁଇ ପ୍ରଧାନ ଅଧିବାସୀ ନାଗ ଓ ଶବରମାନଙ୍କ ଐକ୍ୟର ପ୍ରତୀକ ରୂପେ ଶ୍ରୀଜଗନ୍ନାଥ ମହାପ୍ରଭୁ ଆବିର୍ଭୂତ ହେଲେ । ଏହିପରି ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିକଳ୍ପନା ବୌଦ୍ଧମାନଙ୍କ ଦ୍ୱାରା ହିଁ ସମ୍ଭବପର ହୋଇଥିଲା । ବୌଦ୍ଧମାନେ ଏହିଭଳି ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିର କଳ୍ପନା ମାଧ୍ୟମରେ ନାଗ ଓ ଶବରମାନଙ୍କ ଭାବଗତ ଓ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରି ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ହିଁ ପୂଜା କରୁଥିଲେ । ଅତଏବ ଆଦିମ ଅଧିବାସୀ ଶବରମାନଙ୍କ ଖମ୍ବ (ଜଗନ୍ତ/କିତୁଙ୍ଗ), ନାଗମାନଙ୍କର ସର୍ପ, ନାଥ ଓ ଶୈବମାନଙ୍କର ଖମ୍ବ (ନିରାକାର–ଲିଙ୍ଗ) ମଧ୍ୟରେ ସମନ୍ୱୟ ରକ୍ଷା କରାଯାଇ ସମ୍ପୂର୍ଣ୍ଣ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିର ପରିକଳ୍ପନା କରାଗଲା । ଫଳରେ ଓଡ୍ରର ଜନଜାତିମାନଙ୍କୁ ସମଗ୍ର ପୃଥିବୀରେ ଏକ ଐକ୍ୟବଦ୍ଧ ଜାତି ରୂପେ ଚିହ୍ନିତ କରାଇବା ସଙ୍ଗେସଙ୍ଗେ ଜଗନ୍ନାଥ ରୂପୀ ବୁଦ୍ଧଙ୍କୁ ସର୍ବଜନମାନ୍ୟ ରାଷ୍ଟ୍ରଦେବତାର ସ୍ୱୀକୃତି ଓ ସମ୍ମାନ ଆଣିଦେଲା ।

ଏହି ଶ୍ରୀଜଗନ୍ନାଥ ମୂର୍ତ୍ତି ଅଧାଗଢ଼ା କି ଅସମ୍ପୂର୍ଣ୍ଣ ବୋଲି କହିବା ଠିକ୍ ନୁହେଁ – କାରଣ ସମୁଦ୍ରରେ ଭାସିଭାସି ଆସିଥିବା ଦାରୁରେ ନିର୍ଦ୍ଧାରିତ ସମୟରେ ମୂର୍ତ୍ତି ଗଠନର ସଂକଳ୍ପ ଥିଲେ ମଧ୍ୟ ଅଘଟଣ ଆଶଙ୍କାରେ ରାଣୀ ଗୁଣ୍ଡିଚାଙ୍କ ଅନୁରୋଧକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିରର ଦ୍ୱାର ଖୋଲିଦେଲେ । ଫଳରେ ବିଶ୍ୱକର୍ମା ଗଢ଼ୁଥିବା ମୂର୍ତ୍ତି ଅଧାରେ ରହିଗଲେ । ଏସବୁ ମଣିଷର ଭ୍ରମ–କଳ୍ପନା । ଏଥିପାଇଁ ବିଭିନ୍ନ ପୁରାଣ ସବୁ ସୃଷ୍ଟି କରାଯାଇ ବହୁ କାଳ୍ପନିକ ଜନଶ୍ରୁତି ଓ କିଂବଦନ୍ତୀମାନ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିକଳ୍ପନା ପଛରେ ଯୋଡ଼ି ଦିଆଯାଇଛି । ଫଳରେ ମଣିଷର ଧାର୍ମିକ ଭାବାବେଗକୁ ସଂକୀର୍ଣ୍ଣ–ସଂକୁଚିତ–ସ୍ୱାର୍ଥକୈନ୍ଦ୍ରିକ ଓ ଉଦ୍ଦେଶ୍ୟ ପ୍ରଣୋଦିତ କରି ଦିଆଗଲା । ଜାତି ବର୍ଣ୍ଣ ଧର୍ମ ସଂପ୍ରଦାୟର ଊର୍ଦ୍ଧ୍ୱରେ ମହାପ୍ରଭୁ ଶ୍ରୀଜଗନ୍ନାଥ ପରିଚିତ ଓ ପୂଜିତ ହେଲେ । ସବୁ ଧର୍ମ ମତବାଦ ଓ ସମ୍ପ୍ରଦାୟ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ନିଜର କରିବା ପାଇଁ ଉଦ୍ୟମ କରିଥିଲେ ମଧ୍ୟ ଏ ସବୁର ଊର୍ଦ୍ଧ୍ୱରେ ମହାବାହୁ ଶ୍ରୀଜଗନ୍ନାଥ ଅସହାୟର ସହାୟ–ମାନବ ଧର୍ମର ରକ୍ଷାକବଚ ରୂପେ ମର୍ତ୍ତ୍ୟମଣ୍ଡଳରେ ବିରାଜମାନ କରିଛନ୍ତି । ସେଇଥିପାଇଁ ଖ୍ରୀଷ୍ଟୀୟ ସପ୍ତମ–ଅଷ୍ଟମ ଶତାବ୍ଦୀ ବେଳକୁ ଶ୍ରୀଜଗନ୍ନାଥ ସମଗ୍ର ଓଡ୍ର ଭୂଖଣ୍ଡର ରାଷ୍ଟ୍ରଦେବତାର ସ୍ୱୀକୃତି ଓ ମର୍ଯ୍ୟାଦା ଲାଭ କରି ସାରିଥିଲେ ।

ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥ ଓଡ୍ରର ଈଶ ବା ପ୍ରଭୁ ବା ଓଡ୍ରେଶ ରୂପେ ଓଡ୍ରଦେଶର ପଶ୍ଚିମ ଭାଗରେ ପୂଜା ପାଉଥିଲେ ବୋଲି କାଳିକା ପୁରାଣରେ ଉଲ୍ଲେଖ ଅଛି । କାଳିକା ପୁରାଣରୁ ଶ୍ରୀଜଗନ୍ନାଥଙ୍କର ଆଦିପୀଠ ସମ୍ପର୍କରେ ସୂଚନା ମିଳୁଥିବା ବେଳେ ସ୍କନ୍ଦପୁରାଣ, ଉତ୍କଳଖଣ୍ଡରୁ ଯେଉଁ ପୁରୁଷୋତ୍ତମ କ୍ଷେତ୍ରର ସୂଚନା ମିଳେ, ତାହା ଓଡ୍ରଦେଶର ଦକ୍ଷିଣ ଦିଗ ସମୁଦ୍ର ତଟରେ ଅବସ୍ଥିତ ଥିଲା । ତାହା ହିଁ ଥିଲା ପୁରୁଷୋତ୍ତମ ନୃସିଂହଙ୍କ କ୍ଷେତ୍ର–ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ନୁହେଁ । ଅତଏବ ଜଗନ୍ନାଥ ପୁରୀକୁ ସ୍ଥାନାନ୍ତରିତ ହେବା ପୂର୍ବରୁ ସେଠାରେ ପୁରୁଷୋତ୍ତମ ନୃସିଂହ ହିଁ ପ୍ରତିଷ୍ଠା ଲାଭ କରି ସାରିଥିଲେ । ସମ୍ଭବତଃ ସ୍କନ୍ଦପୁରାଣ, ଉତ୍କଳଖଣ୍ଡ ଗ୍ରନ୍ଥ ରଚିତ ହେବାବେଳେ ଶ୍ରୀଜଗନ୍ନାଥ ମହାପ୍ରଭୁ ପୁରୀ ଆସି ନଥିଲେ । କାରଣ ପୁରୀ କୌଣସି ସମୟରେ ଓଡ୍ରଦେଶର ଅନ୍ତର୍ଭୁକ୍ତ ନ ଥିଲା । ସେତେବେଳେ ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳକୁ କଳିଙ୍ଗ, କଙ୍ଗୋଦ (ତୋଷାଳି) ଓ ଉତ୍କଳ ବୋଲି କୁହାଯାଉଥିଲା ବେଳେ ମଧ୍ୟ ଓଡ଼ିଶାକୁ ଓଡ୍ର ବୋଲି କୁହାଯାଉଥିଲା । ଏହି ଓଡ୍ରର ପଶ୍ଚିମ ଭାଗ ଥିଲା କୋଶଳ ବା ଦକ୍ଷିଣ କୋଶଳ । ତେଣୁ ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳରେ ଶ୍ରୀଜଗନ୍ନାଥ ନ ଥିଲେ ବରଂ ଓଡ୍ରଦେଶର ପଶ୍ଚିମ ଭାଗରେ ଥିବା ଘଞ୍ଚ ଅରଣ୍ୟାନୀ ମଧ୍ୟରେ ସେ ପୂଜା ପାଉଥିଲେ ଓ ତାହା ହିଁ ଥିଲା ତାଙ୍କର ମୂଳ ପୀଠ ।

ଶ୍ରୀଜଗନ୍ନାଥଙ୍କ ଇତିହାସ ହିଁ ଏ ଓଡ଼ିଆ ଜାତିର ଇତିହାସ । ଜାତିଭେଦ ହୀନ ଓଡ଼ିଆ ଜାତିର ସଂସ୍କୃତି ହିଁ ଶ୍ରୀଜଗନ୍ନାଥ ସଂସ୍କୃତି । ଆର୍ଯ୍ୟୋତ୍ତର ଶାବରୀ ସଂସ୍କୃତିର ଭିତ୍ତିଭୂମି ଉପରେ ଗଢ଼ି ଉଠିଥିବା ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ ଆଦର୍ଶ ମାନବିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ।

କେହିକେହି ଶ୍ରୀଜଗନ୍ନାଥଙ୍କୁ ପତିତପାବନ ନାମରେ ସଂମ୍ବୋଧିତ କରିଥାନ୍ତି କିନ୍ତୁ ତାହା ଠିକ୍ ନୁହେଁ । ପୃଥିବୀର ସମଗ୍ର ଜନସମାଜକୁ ପତିତ ମଣି ସାରା ଜଗତରେ ସାମ୍ୟ ନିୟାମକ–ବିଶ୍ୱ ସତ୍ୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କଠାରେ ଏ ପତିତପାବନ ନାମଟି ଆରୋପ କରାଯାଇ ନ ପାରେ । କାରଣ ଗଣଦେବତା ଶ୍ରୀଜଗନ୍ନାଥଙ୍କଠାରେ କେହି ପତିତ ନୁହେଁ । ସେ କାହାକୁ ପତିତ କରନ୍ତି ନାହିଁ ବା ମଣନ୍ତି ନାହିଁ । ତାଙ୍କ ପାଖରେ ଦରିଦ୍ର–କାଙ୍ଗାଳ

ଅପବିତ୍ର ନୁହେଁ କି ବ୍ରାହ୍ମଣ, ଶିଳ୍ପୀ, ବଣିକ, ରାଜା, ମହାରାଜା, ଜମିଦାର, ମଠାଧୀଶ ଆଦି ଧନୀ ବା ପ୍ରଭାବଶାଳୀ ବା ପ୍ରତିପତ୍ତିଶାଳୀ ବ୍ୟକ୍ତି ବା ଜାତି ବୋଲି କେହି ବେଶୀ ପବିତ୍ର ନୁହେଁ । ଅତଏବ ଯାହାଙ୍କ ଦୃଷ୍ଟିରେ ପତିତ ନାହିଁ ବା ପତିତ ବୋଲି କେହି ଅପବିତ୍ର ନୁହେଁ, ସେ ପୁଣି ପତିତପାବନ ହେବେ କିପରି ? ତେଣୁ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ମୁକ୍ତିକାମୀ ପାପୀ (ପତିତ)ମାନଙ୍କୁ ଉଦ୍ଧାର କରିବା ପାଇଁ ମହାପ୍ରଭୁ ଦେଉଳ ବାହାରକୁ ବାହାରି ଥାନ୍ତି । କେତେକ ଗବେଷକ କହନ୍ତି ଯେ କେବଳ ଅଚ୍ଛବମାନଙ୍କୁ ଦର୍ଶନ ଦେବା ପାଇଁ ମହାପ୍ରଭୁ ବଡ଼ଦାଣ୍ଡକୁ ଓହ୍ଲାଇ ଆସନ୍ତି । ସାମ୍ୟ-ମୈତ୍ରୀ-ମାନବବାଦର ପ୍ରତୀକ ଶ୍ରୀଜଗନ୍ନାଥ ଯଦି କେବଳ ଅଚ୍ଛବମାନଙ୍କୁ ଦର୍ଶନ ଓ ଉଦ୍ଧାର ପାଇଁ ଘୋଷଯାତ୍ରା କରିଥାନ୍ତି, ତେବେ କ'ଣ ଯେଉଁ ଲକ୍ଷଲକ୍ଷ ଭକ୍ତ ଦର୍ଶକ ବଡ଼ଦାଣ୍ଡରେ ଘୋଷଯାତ୍ରାବେଳେ ସମବେତ ହୋଇଥାନ୍ତି, ସେମାନେ ସମସ୍ତେ ଅଚ୍ଛବ? – ନା....। ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଆବ୍ରାହ୍ମଣ ଚଣ୍ଡାଳ ସମସ୍ତ ମୁକ୍ତିକାମୀ ପାପୀଙ୍କର ଉଦ୍ଧାର ନିମନ୍ତେ ହିଁ ମହାପ୍ରଭୁ ଶ୍ରୀଜଗନ୍ନାଥ ଭାଇଭଉଣୀଙ୍କୁ ଧରି ଘୋଷଯାତ୍ରା କରିଥାନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ଠିକ୍ ଏଇ ଅର୍ଥରେ ହିଁ ପତିତ ଶବ୍ଦଟିକୁ ବୁଝିଛନ୍ତି । ତାଙ୍କ ମତରେ ଶ୍ରୀଜଗନ୍ନାଥ ପତିତପାବନ ନୁହଁନ୍ତି । ସେ ବିଶ୍ୱମୈତ୍ରୀର ପ୍ରତୀକ, ଶୁଦ୍ଧ-ବୁଦ୍ଧ-ଜଗନ୍ନାଥ । ବ୍ରାହ୍ମଣର ଉପାସ୍ୟ ଶବର ଦେବତା ଶ୍ରୀଜଗନ୍ନାଥଙ୍କଠାରେ ଯୁଗଯୁଗ ଧରି ରହି ଆସିଥିବା ଆରୋପ ଜନିତ ମଳିନତାକୁ ତୁଟାଇ ସେ ହେଲେ ମାନବବାଦର ଠାକୁର ଶ୍ରୀଜଗନ୍ନାଥ । ତାଙ୍କର ମହାପ୍ରସାଦ ଏ ଜାତିକୁ ମହାନ୍ କରିପାରିଛି । ପ୍ରଭୁଙ୍କ ଅନ୍ନ ମହାପ୍ରସାଦରେ ଜାତିଭେଦ ନାହିଁ । ନୈଷ୍ଠିକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଆଦି ସମସ୍ତ ଜାତିର ଲୋକେ ନିର୍ବିକାର ଚିତ୍ତରେ ମହାପ୍ରସାଦ ସେବନ ସାଙ୍ଗକୁ ଉଚ୍ଛିଷ୍ଟ ଗ୍ରହଣ କରି ନିଜକୁ ପରମ ଭାଗ୍ୟବାନ ମନେ କରନ୍ତି । କାୟ-ମନ-ବାକ୍ୟରେ ଜାତିଭେଦ ପ୍ରଥାକୁ ଭୁଲି ସମବେତ ଭକ୍ତ ଦର୍ଶକଙ୍କ ମେଳରେ ଆନନ୍ଦ ଓ ନିର୍ମଳ ହୃଦୟରେ ମହାପ୍ରସାଦ ସେବନ କରି ସେ ନିଜକୁ ଧନ୍ୟ ମନେ କରେ ଏବଂ ପରମୁଖରେ ମହାପ୍ରସାଦ ଅନ୍ନ ଦେଇ ତହିଁର ଉଚ୍ଛିଷ୍ଟ ଅଂଶ ନିଜେ ସେବନ କରି ସେ ନିଜକୁ ଅଧିକ ପବିତ୍ର ମଧ୍ୟ ମନେ କରେ । ଏହି ଏକାତ୍ମ ଭାବ-ଭ୍ରାତୃ ଭାବ ସାଙ୍ଗକୁ ମାନବଧର୍ମର ଉଦାରତା ଏଥିରୁ ପ୍ରତିପାଦିତ ହୁଏ ।

ଏତଦ୍‌ବ୍ୟତୀତ ପରିବାର ଭିତରେ ସ୍ୱାମୀ-ସ୍ତ୍ରୀ, ଭାଇ-ଭଉଣୀର ସମ୍ପର୍କକୁ ନେଇ ଗଢ଼ି ଉଠିଥିବା ରାଗ-ରୋଷ, ମାନ-ଅଭିମାନ ବର୍ତ୍ତମାନ ଯେଉଁଭଳି ଦେଖିବାକୁ ମିଳେ, ମାନବବାଦର ଠାକୁର ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବେଳେ ମଧ୍ୟ ଏହି ସମ୍ପର୍କର ଦୃଷ୍ଟାନ୍ତ ଆମର ଦୃଷ୍ଟିଗୋଚର ହୁଏ । ଭାଇଭଉଣୀଙ୍କୁ ଧରି ରଥରେ ମହାପ୍ରଭୁ ଗୁଣ୍ଡିଚା ଘରକୁ ନଅ ଦିନ ପାଇଁ ଯାଉଥିବାରୁ ପତ୍ନୀ ଲକ୍ଷ୍ମୀଠାକୁରାଣୀ ମହାପ୍ରଭୁଙ୍କ ଉପରେ ଅଭିମାନ କରନ୍ତି । ରଥଯାତ୍ରାର ଚତୁର୍ଥ ଦିନ ହେରା ପଞ୍ଚମୀରେ ପ୍ରଭୁଙ୍କୁ ସାକ୍ଷାତ କରି ବାହୁଡ଼ିବାର ପ୍ରସ୍ତାବ ଜଣାଇବା ପରେ ରାଗ-ଅଭିମାନରେ ରଥ କାଠ ଖଣ୍ଡେ ଭାଙ୍ଗି ଆଣନ୍ତି । ତା'ପରଦିନ ମହାପ୍ରଭୁଙ୍କ ରଥର ହୁଏ ଦକ୍ଷିଣ ମୋଡ଼ । ଆଷାଢ଼ ଶୁକ୍ଳ ଦଶମୀରେ ଶ୍ରୀମନ୍ଦିରକୁ ବାହୁଡ଼ିବାର ସୂଚନା ହିଁ ଏଥିରୁ ମିଳେ । ବାହୁଡ଼ା ଦଶମୀରେ ନନ୍ଦିଘୋଷ ରଥ ରାଜନଅର ସମ୍ମୁଖରେ ପହଞ୍ଚିଲେ ମା'ଲକ୍ଷ୍ମୀ ଠାକୁରାଣୀ ଶ୍ରୀମନ୍ଦିର ଚାହାଣି ମଣ୍ଡପରୁ ଦେଖି ସେଠାକୁ ଯାଆନ୍ତି ଓ ସେଠାରେ ଉଭୟଙ୍କ ଭିତରେ ମିଳନର ସୂତ୍ରପାତ ହୁଏ । ଅର୍ଥାତ୍ ଲକ୍ଷ୍ମୀନାରାୟଣ ବନ୍ଦାପନା ହୁଏ । ତା'ପରଦିନ ଏକାଦଶୀରେ ମହାପ୍ରଭୁ ରଥରେ ରାଜରାଜେଶ୍ୱର ବା ଐଶ୍ୱର୍ଯ୍ୟମୟ-ସୁନାବେଶରେ ମାନବ ଜାତିକୁ ଦର୍ଶନ ଦେଇ 'ଆଜି ଯେ ରାଜେନ୍ଦ୍ର ଆସନେ, କାଲି ସେ ଫକୀର' ଏଇ ବାର୍ତ୍ତା ପ୍ରଦାନ କରନ୍ତି । କାରଣ ମହାପ୍ରଭୁ ଶ୍ରୀମନ୍ଦିରରେ ଓ ରଥ ଉପରେ ଯେମିତି ସୁନାବେଶ ଧାରଣ କରି ଶ୍ରଦ୍ଧାଳୁ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି, ସେମିତି ସେ ସାଧାରଣ ମଣିଷ ଭଳି ଭାଦ୍ରବ ମାସରେ ବଣଭୋଜି ବେଶ ଓ କାର୍ତ୍ତିକ ମାସରେ ରାଧାଦାମୋଦର ବେଶରେ ଦର୍ଶନ ଦିଅନ୍ତି । ସେହିଭଳି ଦ୍ୱାଦଶୀରେ ଅନୁଷ୍ଠିତ ଅଧରପଣା ଉତ୍ସବରେ ଅଶରୀରୀ ଆତ୍ମା ଓ ଅନ୍ୟମାନଙ୍କ ପାଇଁ ଅଧରପଣା ହାଣ୍ଡି ରଥରେ ଭାଙ୍ଗି ତା'ପରଦିନ ତ୍ରୟୋଦଶୀରେ ନୀଳାଦ୍ରିକୁ ବିଜେ କରନ୍ତି । ସେଦିନ ରାଗ ଅଭିମାନରେ ଲକ୍ଷ୍ମୀଠାକୁରାଣୀ ନନ୍ଦିଘୋଷ ରଥରୁ ମହାପ୍ରଭୁଙ୍କୁ ଦେଖିବାମାତ୍ରେ ଶ୍ରୀମନ୍ଦିରର ଦ୍ୱାର ବନ୍ଦ କରି ଦିଅନ୍ତି । ତା'ପରେ ବୁଝାସୁଝା କରିବା ପରେ ଶ୍ରୀମନ୍ଦିରର ଦ୍ୱାର ଖୋଲେ ଏବଂ ମହାପ୍ରଭୁ ପହଣ୍ଡିରେ ଶ୍ରୀମନ୍ଦିର ଜଗମୋହନଠାରେ ବିଜେ ହେବା ପରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ କଳି ଲାଗେ । ଶେଷରେ ମହାପ୍ରଭୁ ଜଗନ୍ନାଥ ନିଜର ଦୋଷ ସ୍ୱୀକାର ପୂର୍ବକ ପତ୍ନୀଙ୍କ ରାଗରୋଷ ଓ ମାନଭଜନ ନିମନ୍ତେ ବଡ଼ ରସଗୋଲାଟିଏ ଖୁଆଇ ଦିଅନ୍ତି । ଅତଏବ ତାଙ୍କର ବିଭିନ୍ନ ପର୍ବ ଓ ଯାନିଯାତ୍ରାଠାରୁ ମହାଯାତ୍ରା ପର୍ଯ୍ୟନ୍ତ ଏହି ମାନବୀୟ ଲୀଳାର ପରିପ୍ରକାଶ ନିମନ୍ତେ ମହାପ୍ରଭୁ ଶ୍ରୀଜଗନ୍ନାଥ ଏ କଳିଯୁଗରେ ମାନବ ରୂପରେ ଭାଇଭଉଣୀଙ୍କୁ ଧରି ଶ୍ରୀମନ୍ଦିର ରତ୍ନବେଦିରେ କାଳକାଳ ଧରି ବିରାଜିତ ହୋଇ ପୂଜାପାଇ ଆସୁଛନ୍ତି ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ଫକୀରମୋହନ (ସ୍ୱୟଂଶାସିତ) ମହାବିଦ୍ୟାଳୟ,
ବାଲେଶ୍ୱର-୭୫୬୦୦୧

# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ ଶ୍ରୀକୃଷ୍ଣ

**ପୂର୍ଣ୍ଣେନ୍ଦୁ କୁମାର ନନ୍ଦ**

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକମାନେ ବହୁ ଗବେଷଣା କରି ମଧ୍ୟ ଶ୍ରୀଜଗନ୍ନାଥଙ୍କର ମୂଳସ୍ୱରୂପ ସମ୍ପର୍କରେ ସଠିକ୍ ତଥ୍ୟ ଦେଇ ପାରିନାହାନ୍ତି । ତେଣୁ ଯଥାର୍ଥରେ କୁହାଯାଇଛି–

‘ଅନାଦିଃ ଆଦି ଗୋବିନ୍ଦମ୍
ସର୍ବ କାରଣ କାରଣମ୍ ।’

ଏ ଜଗତର ସ୍ରଷ୍ଟା, ପରମପୁରୁଷ ପରଂବ୍ରହ୍ମଙ୍କର ପ୍ରକୃତ ସ୍ୱରୂପ ଦେବତାମାନେ ମଧ୍ୟ ନିର୍ଣ୍ଣୟ କରିବା ସମ୍ଭବ ହୋଇନାହିଁ । ଏଣୁ କୁହାଯାଇଛି ।

‘ସର୍ବ ରହସ୍ୟ ପୁରୁଷୋତ୍ତମସ୍ୟ
ଦେବା ନା ଜାନାନ୍ତି କୁତୋ ମନୁଷ୍ୟ ।’

ପ୍ରତ୍ନତାତ୍ତ୍ୱିକ, ଗବେଷକ ଓ ଐତିହାସିକମାନଙ୍କର ଅନୁଶୀଳନ ଓ ଶାସ୍ତ୍ରୀୟ ସମୀକ୍ଷା ବଳରେ ଶ୍ରୀଜଗନ୍ନାଥଙ୍କର ମୂଳ ସ୍ୱରୂପକୁ ନେଇ ଭିନ୍ନ ଭିନ୍ନ ମତ ଦିଆଯାଇଛି । ତନ୍ମଧ୍ୟରେ ଡକ୍ଟର କନିଂହାମ, ଉଇଲିୟମ ହଣ୍ଟର ଓ ଡକ୍ଟର ହରେକୃଷ୍ଣ ମହତାବ ପ୍ରଭୃତି କେତେକ ଐତିହାସିକ ଶ୍ରୀଜଗନ୍ନାଥଙ୍କୁ ଆଦି ବୁଦ୍ଧଙ୍କର ଅବତାର ରୂପେ ପରିଚିତ କରାଇଥିଲେ । ସେମାନେ ମତ ଦେଇଛନ୍ତି ଯେ, ପ୍ରାଚୀନ ଭୌମକର ରାଜାମାନେ ଆସାମରୁ ଆସି କଳିଙ୍ଗରେ ରାଜତ୍ୱ କରିଥିଲେ । ସେମାନେ ଶବରମାନଙ୍କଠାରୁ ଦାରୁ ମୂର୍ତ୍ତିକୁ ନେଇ ଏକ ମନ୍ଦିର ନିର୍ମାଣ କରିଥିଲେ ଓ ଏହାର ନାମ ନୀଳାଚଳ ଦେଇଥିଲେ । ଏହାର କାରଣ ସେମାନଙ୍କର ଇଷ୍ଟଦେବୀ କାମାକ୍ଷା ମଧ୍ୟ ନୀଳାଚଳ ପାହାଡ଼ ଉପରେ ଅବସ୍ଥିତା । ଏହି ପ୍ରାଚୀନ ଭୌମକର ରାଜାମାନେ ବୌଦ୍ଧ ଧର୍ମର ମହାଯାନ ମତର ଅନୁଗାମୀ ଥିଲେ । ତେଣୁ ସେମାନେ ବୌଦ୍ଧ ଧର୍ମର ତ୍ରିରତ୍ନକୁ ରୂପ ଦେବାପାଇଁ ତିନିଗୋଟି ମୂର୍ତ୍ତି ନିର୍ମାଣ କରି ତାଙ୍କୁ ବୁଦ୍ଧ, ଧର୍ମ ଓ ସଂଘ ରୂପେ ଅଭିହିତ କରିଥିଲେ ।



ଆହୁରି ମଧ୍ୟ ଜଣାଯାଏ ଯେ, ଅଶୋକଙ୍କ ପୂର୍ବରୁ ଓଡ଼ିଶାରେ ବୌଦ୍ଧ ଧର୍ମ ପ୍ରଚଳିତ ଥିଲା । ଦାଥା ବଂଶ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ବୁଦ୍ଧଙ୍କର ପରିନିର୍ବାଣ ପରେ ତାଙ୍କର ବାମ କଳର ଏକ ଦାନ୍ତକୁ ଖେମା ନେଇ ଯାଇଥିଲେ ଓ କଳିଙ୍ଗର ରାଜା ବ୍ରହ୍ମଦତ୍ତ ଏହି ଦନ୍ତ ଉପରେ ଏକ ଚୈତ୍ୟ ନିର୍ମାଣ କରାଇଥିଲେ । ବ୍ରହ୍ମତତ୍ତ୍ୱ ପରେ ତାଙ୍କର ଉତ୍ତରାଧିକାରୀ କାଶୀ ରାଜା ସୁନନ୍ଦ ଓ ଗୁହଶିବ କଳିଙ୍ଗରେ ଶାସନ କରିଥିଲେ । ସେମାନେ ମଧ୍ୟ ପ୍ରତ୍ୟେକ ଏହି ଦନ୍ତକୁ ନେଇ ଗୋଟିଏ ଲେଖାଏଁ ଚୈତ୍ୟ ନିର୍ମାଣ କରାଇଥିଲେ । ଦାଥା ବଂଶର ବର୍ଣ୍ଣନାରୁ ପୁନର୍ବାର ଜଣାଯାଏ ଯେ ପାଟଳୀପୁତ୍ରର ରାଜା ପାଣ୍ଡୁ ତାଙ୍କର ଜଣେ ପାର୍ଷଦ ରାଜାଙ୍କୁ ପଠାଇ ଦନ୍ତପୁରରୁ ପବିତ୍ର ଦନ୍ତକୁ ନେଇ ଆସିଥିଲେ । ପାଟଳୀପୁତ୍ରରେ ଦନ୍ତ ପହଞ୍ଚିବା ପରେ ବହୁ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଥିଲା । ଗୁହଶିବଙ୍କ କନ୍ୟାର ଉଜ୍ଜୟିନୀର ଯୁବରାଜ

ଦନ୍ତକୁମାରଙ୍କ ସହ ବିବାହ ହୋଇଥିଲା । ପରିଶେଷରେ ରାଜା ଦନ୍ତକୁମାର ସେହି ପବିତ୍ର ଦନ୍ତକୁ ସିଂହଳକୁ ନେଇଯାଇଥିଲେ । ସେଠାରୁ ସେହି ପବିତ୍ର ଦନ୍ତ ଆଉ କଳିଙ୍ଗକୁ ଫେରି ନଥିଲା । ଏଣୁ ଏଥିରୁ ଜଣାଯାଏ, ଅଶୋକଙ୍କର ଶାସନ ପୂର୍ବରୁ କଳିଙ୍ଗର ପ୍ରାଚୀନ ଅଧିବାସୀମାନେ ସ୍ତୂପ ମଧ୍ୟରେ ବୁଦ୍ଧଙ୍କର ପବିତ୍ର ଦନ୍ତକୁ ପୂଜା କରୁଥିଲେ । କଳିଙ୍ଗ ବାଟଦେଇ ପବିତ୍ର ଦନ୍ତକୁ ସିଂହଳକୁ ପଠାଇ ଦିଆଯାଇ ଥିବାର ବର୍ଣ୍ଣନାକୁ ଭିତ୍ତି କରି କେହି କେହି ଜଗନ୍ନାଥଙ୍କର ରଥଯାତ୍ରାକୁ ବୁଦ୍ଧଙ୍କର ଦନ୍ତର ଯାତ୍ରାର ଅନୁରୂପ ବୋଲି ମତ ଦେଇଛନ୍ତି । କାଳିକା ପୁରାଣରେ ମଧ୍ୟ ଉଲ୍ଲିଖିତ ଅଛି ଯେ, ଜଗନ୍ନାଥ ଓଡ୍ରପୀଠର ସର୍ବଶ୍ରେଷ୍ଠ ଦେବତା ଓଡ୍ରେଶ ରୂପେ ଉପାସିତ ହେଉଥିଲେ । ଡକ୍ଟର ବିନୟତୋଷ ଭଟ୍ଟାଚାର୍ଯ୍ୟ ଓ ଶ୍ରୀ ହରିପ୍ରସାଦ ଶାସ୍ତ୍ରୀ ପ୍ରମୁଖ ବୌଦ୍ଧ ତାନ୍ତ୍ରିକ ଗ୍ରନ୍ଥରେ ବର୍ଣ୍ଣିତ ଉଡ୍ଡୀଆନ ପୀଠକୁ ଉଡ୍ରପୀଠ ରୂପେ ଓ ଏହାର ଆରାଧ୍ୟ ଦେବତାଙ୍କୁ ଶ୍ରୀଜଗନ୍ନାଥ ରୂପେ ବର୍ଣ୍ଣନା କରିଛନ୍ତି ।

ଇତିହାସରୁ ଜଣାଯାଏ ଯେ, ପଞ୍ଚମ ଓ ଷଷ୍ଠ ଶତାବ୍ଦୀ ବେଳକୁ ବିରଜା କ୍ଷେତ୍ର, ରତ୍ନଗିରି, ଲଳିତ ଗିରିର ବୁଦ୍ଧଙ୍କର ପ୍ରବର୍ତ୍ତିତ ବୌଦ୍ଧଧର୍ମ ପ୍ରଚଳିତ ଥିଲା ଓ ବହୁ ବୌଦ୍ଧପୀଠ ଓ ମନ୍ଦିର ନିର୍ମିତ ହୋଇଥିଲା । ହର୍ଷବର୍ଦ୍ଧନଙ୍କ ସମୟରେ ଓଡ଼ିଶାକୁ ଆଗମନ କରିଥିବା ଚୀନ୍ ପରିବ୍ରାଜକ ହୁଏନ୍ ସାଂ ଏହି ମତ ପ୍ରକାଶ କରିଛନ୍ତି । ଏଣୁ ଶ୍ରୀଜଗନ୍ନାଥ ବୌଦ୍ଧ ଧର୍ମର ତ୍ରିରତ୍ନ ଅର୍ଥାତ୍ ବୁଦ୍ଧ, ଧର୍ମ ଓ ସଂଘ ରୂପେ ଉପାସିତ ହେଉଥିବା ଅନୁମେୟ ।

ଶ୍ରୀଜଗନ୍ନାଥଙ୍କ ବୌଦ୍ଧ ସ୍ୱରୂପ ସମ୍ପର୍କରେ ଉଡ୍ଡୀୟାନ ପୀଠରେ ରାଜା ଇନ୍ଦ୍ରଭୂତି ଜ୍ଞାନସିଦ୍ଧି ଗ୍ରନ୍ଥରେ ଯେଉଁ ବର୍ଣ୍ଣନା ଦେଇଛନ୍ତି, ସେଥିରୁ ଜଣାଯାଏ ଯେ, ଶ୍ରୀଜଗନ୍ନାଥ ସାଧାରଣତଃ ବୁଦ୍ଧ ସ୍ୱରୂପରେ ଉପାସିତ ହେଉଥିଲେ । ଇନ୍ଦ୍ରଭୂତି ମହାଯାନ ବୌଦ୍ଧ ଧର୍ମର ଅନୁଗାମୀ ଥିଲେ ଓ ସେ ବୁଦ୍ଧଙ୍କୁ ଈଶ୍ୱର ରୂପେ ଗ୍ରହଣ କରିଥିଲେ । ଜ୍ଞାନସିଦ୍ଧିର ମଙ୍ଗଳାଚରଣରେ ସେ କହିଥିଲେ–

'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନବରାର୍ଚ୍ଚିତମ୍,
ସର୍ବବୁଦ୍ଧମୟଂ ସିଦ୍ଧିଂ ବ୍ୟାପିନୋ ଗଗନୋପମମ୍ ।'

ବାସ୍ତବରେ ସପ୍ତମ ଓ ଅଷ୍ଟମ ଖ୍ରୀଷ୍ଟାବ୍ଦ ବେଳକୁ କଳିଙ୍ଗରେ ବୌଦ୍ଧଧର୍ମ ସୁପ୍ରତିଷ୍ଠିତ ହୋଇଥିବା ବିଷୟରେ ଏଥିରୁ ଜଣାଯାଏ । ଏତଦ୍ ବ୍ୟତୀତଏହି ସମୟରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ସ୍ୱରୂପରେ ଉପାସନା କରାଯାଉଥିବା ସହଜରେ ଅନୁମେୟ ।

କିନ୍ତୁ ଏହାର ପରବର୍ତ୍ତୀ ସମୟରେ ଓଡ଼ିଶାର ସାଂସ୍କୃତିକ ପରମ୍ପରାରେ ପୁନର୍ବାର ବ୍ରାହ୍ମଣ୍ୟ ଧର୍ମର ପ୍ରଭାବ ଅନୁଭୂତ ହୋଇଥିଲା । ଭୌମକର ବଂଶର ରାଜା ଶୁଭକର ଦେବ ଓଡ଼ିଶାର ରାଜା ଥିଲେ । ସେସମୟରେ ଦାକ୍ଷିଣାତ୍ୟର ରାଷ୍ଟ୍ରକୂଟମାନେ ଓଡ଼ିଶା ଆକ୍ରମଣ କରିଥିଲେ । ମାଦଳା ପାଞ୍ଜିରେ ଏହାକୁ ରକ୍ତବାହୁର ଆକ୍ରମଣ ରୂପେ ବର୍ଣ୍ଣନା କରାଯାଇଛି । ଶୁଭକର ଦେବଙ୍କ ସମୟରେ ଜଗନ୍ନାଥଙ୍କୁ ସୋନପୁରର ଗୋପାଳି ନାମକ ସ୍ଥାନରେ ପାତାଳୀ କରି ରଖା ଯାଇଥିଲା । ବହିର୍ଶତ୍ରୁ ଆକ୍ରମଣରୁ ଶ୍ରୀଜଗନ୍ନାଥଙ୍କୁ ରକ୍ଷା କରିବା ପାଇଁ ଏପରି କରାଯାଇଥିବା ଅନୁମେୟ ।

ତାଙ୍କ ପରେ ସୋମବଂଶୀ ରାଜା ଯଯାତି ମଗଧରୁ ଆସି ଯାଜପୁରଠାରେ ବସତି ସ୍ଥାପନ କଲେ ଓ ବ୍ରାହ୍ମଣ୍ୟ ଧର୍ମର ସଂସ୍ଥାପନା କରି ଯଜ୍ଞାନୁଷ୍ଠାନ କଲେ । ସେ ପ୍ରଥମେ ବୈଷ୍ଣବ ଥିଲେ ଓ ତତ୍‌ପରେ ଶୈବଧର୍ମ ଗ୍ରହଣ କରିଥିଲେ । ଶ୍ରୀକ୍ଷେତ୍ରରେ ସେ ପହଞ୍ଚି ଦେଖିଲେ ଯେ, ଶ୍ରୀକ୍ଷେତ୍ରରେ ମନ୍ଦିର ଶୂନ୍ୟ ହୋଇଛି ଓ ଶ୍ରୀଜଗନ୍ନାଥ ରକ୍ତବାହୁର ଆକ୍ରମଣ ଭୟରେ ସୋନପୁରଠାରେ ପାତାଳି ହୋଇଛନ୍ତି । ଏଣୁ ସେ ସୋନପୁରଠାରୁ ଶ୍ରୀଜଗନ୍ନାଥଙ୍କର ଜୀର୍ଣ୍ଣଶୀର୍ଣ୍ଣ ବିଗ୍ରହକୁ ଉଦ୍ଧାର କରିଥିଲେ । ଏହି ସମୟରେ ହିନ୍ଦୁ ସଂସ୍କୃତିର ପୁନରୁଦ୍ଧାର ପାଇଁ ଶଙ୍କର ଆଦି ଶ୍ରୀକ୍ଷେତ୍ରରେ ପହଞ୍ଚିଥିଲେ ଓ ପୁରୀରେ ଭୋଗବର୍ଦ୍ଧନ ବା ଗୋବର୍ଦ୍ଧନ ମଠ ସ୍ଥାପନ କରିଥିଲେ । ସେ ନିଜ ଶିଷ୍ୟ ଭାରତୀ ଆଚାର୍ଯ୍ୟଙ୍କୁ ନେପାଳର ରାଜା ଶଙ୍କରଦେବଙ୍କ ନିକଟକୁ ପଠାଇ ଦୁଇଗୋଟି ଜୀବନ୍ତ ଶାଳଗ୍ରାମ ଅଣାଇ ଥିଲେ ଓ ଦାରୁବ୍ରହ୍ମଙ୍କର ବ୍ରହ୍ମ ପରିବର୍ତ୍ତନ କରାଯାଇ ନୂତନ ବିଗ୍ରହ ସ୍ଥାପନ କରାଇଥିଲେ । ବହୁ ପ୍ରତୀକ୍ଷା ପରେ ଶ୍ରୀଜଗନ୍ନାଥ ଭକ୍ତମାନଙ୍କୁ ଦର୍ଶନ ଦେଉଥିବାର ଦେଖି ଆଦିଶଙ୍କର ଭାବବିହ୍ୱଳ ହୋଇ ଉଚ୍ଚସ୍ୱରରେ ଗାଇ ଉଠିଥିଲେ–

'ଜଗନ୍ନାଥ ସ୍ୱାମି ନୟନ ପଥଗାମୀ ଭବତୁ ମେ ।'

ଆଦିଶଙ୍କର ତାଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କୁ ପୁରୀ ମଠର ପ୍ରଥମ ଆଚାର୍ଯ୍ୟ ଭାବେ ଅବସ୍ଥାପିତ କରିଥିଲେ । ମାଦଳା ପାଞ୍ଜିରେ ବର୍ଣ୍ଣନା ରହିଛି ଯେ, ରତ୍ନ ସିଂହାସନ ଉପରେ ବହୁ ବର୍ଷ ପର୍ଯ୍ୟନ୍ତ ଆଦିଶଙ୍କର ଓ ପଦ୍ମପାଦଙ୍କର ମୂର୍ତ୍ତି ଉପାସିତ ହୋଇଥିଲେ । ଖୋର୍ଦ୍ଧା ରାଜା ଶ୍ରୀ ଦିବ୍ୟସିଂହ ଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଏହା ବଳବତ୍ତର ଥିଲା । ଏହା ପରେ ବୈଷ୍ଣବ ଧର୍ମର ପ୍ରଭାବରେ ମୂର୍ତ୍ତି ଦୁଇଟିକୁ ଅପସାରିତ କରା ଯାଇଥିଲା ବୋଲି ଐତିହାସିକମାନେ ମତ ପ୍ରଦାନ କରିଛନ୍ତି ।

ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାର ଆଦିକବି ଶାରଳା ଦାସ ଶ୍ରୀଜଗନ୍ନାଥଙ୍କର ବୌଦ୍ଧ ସ୍ୱରୂପକୁ ଉପଲବ୍ଧି କରି ଓଡ଼ିଆ ମହାଭାରତରେ ଲେଖିଥିଲେ–

'ସେ ଜଗନ୍ନାଥ ଯେ ସଂସାର ଉଦ୍ଧାରଣ,
ମ୍ଳେଚ୍ଛ ଜନ ଉଦ୍ଧାରଣ ବୌଦ୍ଧ ରୂପେଣ ।'

ସମୟର ପ୍ରଭାବରେ ଶ୍ରୀଜଗନ୍ନାଥ ସଂସ୍କୃତିରେ କ୍ରମଶଃ ଶୈବଧର୍ମ, ବୈଷ୍ଣବଧର୍ମ, ଶାକ୍ତମତ ଓ ଗାଣପତ୍ୟ ମତର ପ୍ରଭାବ ପରିଲକ୍ଷିତ ହୋଇଥିଲା । ପୂର୍ବରୁ ଅଷ୍ଟମ ଓ ନବମ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ମା ବିମଳାଙ୍କୁ ଭୈରବୀ ରୂପେ ଗ୍ରହଣ କରି କୁହାଯାଉଥିଲା–

'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ।'

ଏପରିକି ରତ୍ନସିଂହାସନ ଭୈରବୀ ଚକ୍ର ଉପରେ ପ୍ରତିଷ୍ଠିତ ହୋଇଥିଲା ବୋଲି ଭକ୍ତମାନେ ମତ ଦେଇଛନ୍ତି । ସ୍ଥଳ ବିଶେଷରେ ଆଦି ଶଙ୍କର ବଳଭଦ୍ରଙ୍କୁ ଶିବ, ଜଗନ୍ନାଥଙ୍କୁ ବିଷ୍ଣୁ ଓ ସୁଭଦ୍ରାଙ୍କୁ ଶକ୍ତି ସ୍ୱରୂପେ ଉପଲବ୍ଧି କରି ତାଙ୍କ ମତ ପ୍ରଚାର କରିଥିଲେ । କିନ୍ତୁ ରାମାନୁଜଙ୍କର ଶ୍ରୀକ୍ଷେତ୍ର ଆଗମନ ବେଳକୁ ଜଗନ୍ନାଥ ସଂସ୍କୃତିରେ ପଞ୍ଚରାତ୍ର ମତର ପ୍ରଚଳନ ପାଇଁ ଉଦ୍ୟମ ହୋଇଥିଲା । ଶ୍ରୀ ରାମାନୁଜାଚାର୍ଯ୍ୟଙ୍କର ଶ୍ରୀ ସମ୍ପ୍ରଦାୟ ମତର ପ୍ରଭାବରେ ଜଗନ୍ନାଥ ମନ୍ଦିର ମଧ୍ୟରେ ମହାଲକ୍ଷ୍ମୀଙ୍କ ପାଇଁ ଏକ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା । କିନ୍ତୁ ଉତ୍କଳୀୟ ସଂସ୍କୃତିରେ ପଞ୍ଚରାତ୍ର ମତ ଗ୍ରହଣ ହୋଇ ନଥିଲା । ଠିକ୍ ଏହାପରେ ପରେ ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ରାଜତ୍ୱ ସମୟରେ ଚୋଡଗଙ୍ଗଦେବ ନିଜକୁ ପ୍ରଥମେ ବଳଭଦ୍ର, ଜଗନ୍ନାଥଙ୍କ ଭକ୍ତ ରୂପେ ମନ୍ଦିରର ବହୁ ସଂସ୍କାର କରାଇଥିଲେ । ଏହି ଗଙ୍ଗବଂଶର ଶାସନ ସମୟରେ ଦାକ୍ଷିଣାତ୍ୟର ଦେବଦାସୀ ନୃତ୍ୟ ପ୍ରଥା ମନ୍ଦିରରେ ପ୍ରଚଳନ ହେଲା । ଦେବଦାସୀ ନୃତ୍ୟ ଶୃଂଗାର ଓ ଭକ୍ତିରସର ଏକ ଅପୂର୍ବ ସମନ୍ୱୟ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା କେବଳ ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଭକ୍ତି ନିବେଦନ । ଦାକ୍ଷିଣାତ୍ୟର ମନ୍ଦିରଗୁଡ଼ିକରେ ଏହି ପ୍ରଥାଟି ପ୍ରଚଳନ ହେଉଥିବାରୁ ଚୋଡଗଙ୍ଗଦେବ ଏହାକୁ ଶ୍ରୀମନ୍ଦିରରେ ପ୍ରଚଳନ କରାଇଥିଲେ । ଠିକ୍ ଏହି ସମୟରେ ଉତ୍କଳୀୟ କବି ଜୟଦେବ, ନିମ୍ବାର୍କଙ୍କର ଦଶଶ୍ଳୋକୀର ପ୍ରଭାବରେ ଗୀତିକାବ୍ୟ 'ଶ୍ରୀଗୀତଗୋବିନ୍ଦ' ରଚନା କରିଥିଲେ । ଆଦି ଶଙ୍କରଙ୍କର 'ଭଜଗୋବିନ୍ଦ' କାବ୍ୟରେ ଗୋବିନ୍ଦଙ୍କୁ ଉପାସନା କରିବାକୁ ଉପଦେଶ ଦିଆଯାଇଥିଲା କିନ୍ତୁ ଜୟଦେବଙ୍କର ଗୀତଗୋବିନ୍ଦ ଶ୍ରୀରାଧାମାଧବଙ୍କର ଅମର ଦିବ୍ୟ ପ୍ରେମର ରସାଳ ବର୍ଣ୍ଣନାରେ ରଦ୍ଧିମନ୍ତ ଥିଲା । ବହୁ ତର୍କ ଓ ସମାଲୋଚନା ସତ୍ତ୍ୱେ ଗବେଷକମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ, ଜୟଦେବ ବାସ୍ତବରେ ଉତ୍କଳୀୟ ଥିଲେ ଓ ଶ୍ରୀ ରାଧାକୃଷ୍ଣଙ୍କର ଅମର, ଅପ୍ରାକୃତ ପ୍ରେମରସ ବହନକାରୀ ଦିବ୍ୟ କାବ୍ୟଟିକୁ ରଚନା କରିଥିଲେ ।

ଆଶ୍ଚର୍ଯ୍ୟର ବିଷୟ, ଗଙ୍ଗବଂଶର ଶାସନ ସମୟରେ ପ୍ରଥମ କରି ଶ୍ରୀଜଗନ୍ନାଥଙ୍କ ନିକଟରେ ଏହି 'ଗୀତଗୋବିନ୍ଦ' ପାଠ ସହ ଦେବଦାସୀଙ୍କର ନୃତ୍ୟ ଆରମ୍ଭ ହୋଇଥିଲା । ଗୀତଗୋବିନ୍ଦ ରଚନା କାଳରେ ଶ୍ରୀଜଗନ୍ନାଥ ଜୟଦେବଙ୍କ ରୂପରେ କେତେକ ପଦ ପଦ୍ମାବତୀଙ୍କୁ ସାକ୍ଷୀ ରଖି ରଚନା କରିଥିଲେ ବୋଲି ପ୍ରବାଦ ରହିଛି । ବାସ୍ତବରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଶ୍ରୀରାଧାକୃଷ୍ଣ ସ୍ୱରୂପରେ ପ୍ରାୟ ଦ୍ୱାଦଶ ଶତାବ୍ଦୀ ବେଳେ ପୂଜିତ ହେଉଥିଲେ ।

ଏଣୁ ବୈଦିକ ବ୍ରହ୍ମଦାରୁ ସମୁଦ୍ରରେ ଭାସମାନ ଅବସ୍ଥାରେ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିବା ପରେ କ୍ରମଶଃ ତାଙ୍କ ଉପରେ ବୌଦ୍ଧ ପ୍ରଭାବ ଓ ବୈଷ୍ଣବ ପ୍ରଭାବ ପଡ଼ିଥିଲା ବୋଲି ଏଥିରୁ ଜଣାଯାଏ । ବୈଷ୍ଣବ ଧର୍ମର ପ୍ରଭାବ ଫଳରେ ସମଗ୍ର ଉତ୍କଳରେ ଜଗନ୍ନାଥଙ୍କୁ କେନ୍ଦ୍ର କରି ଶ୍ରୀରାଧା ମାଧବଙ୍କର ଯୁଗଳ ମୂର୍ତ୍ତି ଉପାସନା ଓ ଗୀତଗୋବିନ୍ଦ ଗାନ ପ୍ରବଳ ଭାବରେ ପ୍ରଚଳନ କରାଗଲା । ଠିକ୍ ଏହା ପରେ ଷୋଡଶ ଶତାବ୍ଦୀରେ ଶ୍ରୀ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ ଉତ୍କଳରେ ପଞ୍ଚ ବୈଷ୍ଣବ 'ପଞ୍ଚସଖା' ନାମରେ ପରିଚିତ ହେଲେ । ନିରାକାର ତତ୍ତ୍ୱ, ଶୂନ୍ୟବାଦ, ଅଜପାମନ୍ତ୍ର, ଅଣାକାର ତତ୍ତ୍ୱ, ଜ୍ୟୋତି ସ୍ୱରୂପ ଇତ୍ୟାଦି ବହୁ ଦର୍ଶନ ଓ ତତ୍ତ୍ୱର ବର୍ଣ୍ଣନା କରିଥିବା ଏହି ପଞ୍ଚସଖାମାନେ କିନ୍ତୁ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ନିଜର ପରମ ଉପାସ୍ୟ ପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପେ ମାନି ନେଇଥିଲେ । ଜ୍ଞାନମିଶ୍ରା ଭକ୍ତିମାର୍ଗ ପ୍ରବର୍ତ୍ତନ କରିଥିବା ଏହି ପଞ୍ଚସଖା ଯଥା–ଅଚ୍ୟୁତାନନ୍ଦ, ଜଗନ୍ନାଥ, ଯଶୋବନ୍ତ, ବଳରାମ ଓ ଅନନ୍ତ ପ୍ରଭୃତି ଜଗନ୍ନାଥଙ୍କର ପରମ ଭକ୍ତ ରୂପେ ସମଗ୍ର ଉତ୍କଳରେ ଜଗନ୍ନାଥ ସଂସ୍କୃତିର ବାର୍ତ୍ତା ପ୍ରଚାର କରି ପାରିଥିଲେ । ପ୍ରତାପରୁଦ୍ର ଦେବ ଏହି ପଞ୍ଚସଖାଙ୍କ ମତ ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ବଙ୍ଗଦେଶରୁ ଆସିଥିବା ଶ୍ରୀ କୃଷ୍ଣଙ୍କର ପ୍ରେମାବତାର ଶ୍ରୀ ଚୈତନ୍ୟଙ୍କର ସମ୍ମିଳିତ ପ୍ରଚେଷ୍ଟା ଫଳରେ ସମଗ୍ର ଉତ୍କଳରେ ଦିବ୍ୟ ପ୍ରେମର ଉଦ୍‌ବେଳନ ସୃଷ୍ଟି ହୋଇଥିଲା । ଏଣୁ ଜନୈକ ବୈଷ୍ଣବାଚାର୍ଯ୍ୟଙ୍କ ଭାଷାରେ–

'ମହାଭାବ ରସରାଜ ନିତ୍ୟ ଖେଳେ ଧୁଲେ,
ବୃନ୍ଦାବନେ ଛିଲେନ୍ କୃଷ୍ଣ ଆଛେ ନୀଲାଚଲେ ।'

ବାସ୍ତବରେ ଶ୍ରୀଚୈତନ୍ୟ ଶ୍ରୀକୃଷ୍ଣଙ୍କର ପ୍ରେମାବତାର ରୂପରେ ଦାରୁବ୍ରହ୍ମଙ୍କୁ ରାଧାକୃଷ୍ଣଙ୍କର ସମ୍ମିଳିତ ବିଗ୍ରହ ରୂପେ ଗ୍ରହଣ କରି ସର୍ବଦା ପ୍ରେମରେ ତଲ୍ଲୀନ ରହୁଥିଲେ । ପଞ୍ଚସଖାଙ୍କ ଜ୍ଞାନମିଶ୍ରା

ଭକ୍ତି ଓ ଶ୍ରୀଚୈତନ୍ୟଙ୍କ ପ୍ରେମଭକ୍ତିର ପ୍ରଚାର ଫଳରେ ସମଗ୍ର ଉତ୍କଳରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଏକ ଅପୂର୍ବ ଭକ୍ତି ଆନ୍ଦୋଳନ ସୃଷ୍ଟି ହୋଇଥିଲା ।

ସମୟର ପ୍ରବାହରେ ସନ୍ଥ ତୁଳସୀ ଦାସ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ରୂପେ ମାନି ନେଇଥିଲେ । ତାଙ୍କର ଅନୁଗାମୀ ଭାବରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ 'ନୀଳାଦ୍ରି ଚଉତିଶା' ରଚନା କରି ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ସ୍ୱରୂପରେ ପ୍ରତିଷ୍ଠା କରିଥିଲେ । ଏପରିକି ତାଙ୍କ ରଚିତ ବହୁ ଜଣାଣରେ ଶ୍ରୀଜଗନ୍ନାଥଙ୍କ ଭକ୍ତି ଓ ଜଗନ୍ନାଥ ପ୍ରାଣତାର ଅମୂଲ୍ୟ ଝଲକ ଦେଖାଯାଏ ।

'ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ,
ଚଉବର୍ଣ୍ଣେ ଚାରିବର୍ଗ ଦେବାକୁ ସମର୍ଥ ।'

ମୁକ୍ତିର ଅଜସ୍ର ସ୍ଫୁଲିଙ୍ଗରେ ପରିପୂର୍ଣ୍ଣ ଶ୍ରୀକ୍ଷେତ୍ରରେ ବାସ୍ତବରେ ଶ୍ରୀଜଗନ୍ନାଥଙ୍କ ନାମ, ଜପ ଓ କୀର୍ତ୍ତନ ଦ୍ୱାରା ମୁକ୍ତିଲାଭ ସହଜ ହୋଇଥାଏ । ଏଣୁ ମୁକ୍ତି ଚିନ୍ତାମଣି ଗ୍ରନ୍ଥରେ ଯଥାର୍ଥରେ କୁହାଯାଇଛି–

'ପଥିଶ୍ମଶାନେ ଗୃହମଣ୍ଡପେ ବା,
ଅଥ୍ୱାପ୍ରଦେଶେ ଭୁବି ଯତ୍ରତତ୍ର,
ଇଚ୍ଛନ୍ ଅନିଚ୍ଛନ୍ ପୁରୁଷୋତ୍ତମାଖ୍ୟେ,
ଦେହାବସାନେ ଲଭତେ ତ ମୋକ୍ଷମ୍ ।'

ଏହାକୁ ଲକ୍ଷ୍ୟ କରି ଉତ୍କଳର ସମଗ୍ର ଜନତା ଜୀବନର ଅନ୍ତିମ କାଳରେ ମୁକ୍ତିଲାଭ ଉଦ୍ଦେଶ୍ୟରେ ସ୍ୱର୍ଗଦ୍ୱାରରେ ନିଜର ଅନ୍ତିମ ସଂସ୍କାର ପାଇଁ ଅଭିଳାଷ ରଖିଥାନ୍ତି । ଏହିପରି ଭାବରେ ଶ୍ରୀଜଗନ୍ନାଥ ବୌଦ୍ଧ, ଗାଣପତ୍ୟ, ଶାକ୍ତ, ଶୈବ, ବୈଷ୍ଣବ, ଅଣଆର୍ଯ୍ୟ ଓ ଆର୍ଯ୍ୟ ମତର ପ୍ରତୀକ ରୂପେ ଉପାସିତ ହୋଇ ଆସିଛନ୍ତି ।

ପ୍ରଣବରୂପୀ ଦାରୁବ୍ରହ୍ମଙ୍କ ଉପରେ ଅବଶ୍ୟ ବୌଦ୍ଧ ପ୍ରଭାବ ପଡ଼ିଥିଲା । କିନ୍ତୁ ଦାରବ୍ରହ୍ମ ଅନ୍ୟ ପ୍ରଭାବଗୁଡ଼ିକ ନିଜ ମଧ୍ୟରେ ଯେପରି ସମନ୍ୱୟ କରି ନେଇଥିଲେ, ସେହିପରି ବୌଦ୍ଧ ପ୍ରବାବକୁ ମଧ୍ୟ ନିଜ ମଧ୍ୟରେ ଗ୍ରହଣ କରି ନେଇଥିଲେ । କିନ୍ତୁ ତାର ଅର୍ଥ ନୁହେଁ ଯେ, ସେ କେବଳ ବୁଦ୍ଧ ଥିଲେ କିମ୍ବା ମୂଳତଃ ବୁଦ୍ଧାବତାର ଥିଲେ ।

ସୂକ୍ଷ୍ମ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ସକଳ ପ୍ରକାର ପ୍ରଭାବ ସତ୍ତ୍ୱେ ଶ୍ରୀଜଗନ୍ନାଥ ମୂଳତଃ ପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପେ ଏଯାବତ୍ ପୂଜିତ ହୋଇ ଆସୁଛନ୍ତି । ଏଣୁ ତାଙ୍କର ଦୈନିକ ଉପାସନା ଶ୍ରୀ ଗୋପାଳାର୍ଚ୍ଚନ ପଦ୍ଧତିରେ କରାଯାଏ ଓ ନୈବେଦ୍ୟ ସମର୍ପଣ 'କ୍ଲୀଁ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା' ମନ୍ତ୍ରରେ ସମାହିତ ହୋଇଥାଏ । ଏଣୁ ଏହା କୁହାଯାଇପାରେ ଯେ, ସକଳ ମତକୁ ସମନ୍ୱୟ କରି ପାରିଥିବା ଦାରୁବ୍ରହ୍ମ ମୂଳତଃ ପୁରୁଷୋତ୍ତମ ଶ୍ରୀକୃଷ୍ଣ ରୂପେ ଉତ୍କଳୀୟ ଜନସାଧାରଣଙ୍କୁ ଦର୍ଶନ ଦେଇ ଆସୁଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତିରେ ପ୍ରଚଳିତ ପ୍ରତ୍ୟେକ ନୀତି, ଯାତ୍ରା, ବେଶ ପ୍ରଭୃତି ତାଙ୍କର ପୁରୁଷୋତ୍ତମ ଶ୍ରୀକୃଷ୍ଣ ସ୍ୱରୂପ ସ୍ୱତଃ ପ୍ରକାଶିତ ହୋଇଥାଏ ।

ଏଣୁ ଗୋପାଳାର୍ଚ୍ଚନ ପଦ୍ଧତିରେ ଉଲ୍ଲିଖିତ ତାଙ୍କର ଧ୍ୟାନ ହେଲା–

ଫୁଲ୍ଲେନ୍ଦୀ ବରକାନ୍ତି ମିଂଦୁ ବଦନଂ
ବର୍ହାବତଂସ ପ୍ରିୟମ୍,
ଶ୍ରୀ ବତ୍ସାଙ୍କ ମୁଦାର କୌସ୍ତୁଭ ଧରଂ
ପୀତାମ୍ବରଂ ସୁନ୍ଦରମ୍ ।
ଗୋପୀନାଂ ନୟନୋତ୍ପଳାର୍ଚ୍ଚିତ ତନୁଂ
ଗୋ ଗୋପ ସଙ୍ଗାବୃତମ୍
ଗୋବିନ୍ଦଂ କଳବେଣୁ ବାଦନ ପରଂ
ଦିବ୍ୟାଙ୍ଗଭୂଷଂ ଭଜେ ।

ଏପରିକି ବହୁ ଜଗନ୍ନାଥ ପ୍ରେମୀ ଉତ୍କଳୀୟ ଭକ୍ତ ତାଙ୍କୁ ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ଶ୍ରୀକୃଷ୍ଣ ସ୍ୱରୂପରେ ମଧ୍ୟ ଧ୍ୟାନ କରିଥାନ୍ତି ।

ଏହି ପରିପ୍ରେକ୍ଷୀରେ, ଶ୍ରୀଜଗନ୍ନାଥ ମୁଖ୍ୟତଃ ଗୀତାରେ ବର୍ଣ୍ଣିତ ପୁରୁଷୋତ୍ତମ ଓ ଭାଗବତରେ ବର୍ଣ୍ଣିତ ନଟବର କୃଷ୍ଣ ରୂପେ ଜନମାନସରେ ଗୃହୀତ ହୋଇ ପାରିଛନ୍ତି । ବିରାଟ ସ୍ୱରୂପ ବା ବିଶ୍ୱରୂପ ଦର୍ଶନରେ ସେ ଯେପରି ପରମ ବିଷ୍ଣୁଙ୍କ ସକଳ ମହିମା ପ୍ରଦର୍ଶନ କରିଥିଲେ, ଦାରୁବ୍ରହ୍ମ ପୁରୁଷୋତ୍ତମ ରୂପେ ସେ ଭକ୍ତମାନଙ୍କୁ ଭାରତୀୟ ସନାତନ ସଂସ୍କୃତିର ସକଳ ମହିମା ପ୍ରଦର୍ଶନ କରି ବାସ୍ତବରେ ତାଙ୍କର ସର୍ବେଶ୍ୱର, ସର୍ବଶକ୍ତିମାନ ଓ ସର୍ବଜ୍ଞ ସ୍ୱରୂପର ମହିମା ପ୍ରଦର୍ଶନ କରି ଆସୁଛନ୍ତି । ଏଣୁ ଜଗନ୍ନାଥଙ୍କ ଦର୍ଶନରେ ତାଙ୍କର ଅଗଣିତ ଭକ୍ତ ଓ ଭକ୍ତାଗଣ ପରମ ଆନନ୍ଦ ପ୍ରାପ୍ତ କରି ଭଗବତ୍ ସାନିଧ୍ୟ ଲାଭ କରି ଆସୁଛନ୍ତି ।

ପ୍ରାକ୍ତନ ସ୍ୱତନ୍ତ୍ର ଶାସନ ସଚିବ
ସ୍ୱରାଷ୍ଟ୍ର ବିଭାଗ, ଓଡ଼ିଶା

# ଶଙ୍କା ପଞ୍ଚକମ୍

**ସୂର୍ଯ୍ୟନାରାୟଣ ରଥଶର୍ମା**

ଶ୍ରୀଜଗନ୍ନାଥ ଧାମର ଅନ୍ୟନାମ ପୁରୀ ବା ପୁରୁଷୋତ୍ତମ । ଏହି ପରମ ପାବନ ପୀଠରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ସୁଦର୍ଶନ ମୁଖ୍ୟ ଭାବରେ ପ୍ରତିଷ୍ଠିତ ଓ ଉପାସୀତ । ଏହି ଚତୁର୍ଦ୍ଧା ତତ୍ତ୍ୱର ନାମ ପୁରୁଷୋତ୍ତମ ତତ୍ତ୍ୱ ଓ କ୍ଷେତ୍ରର ନାମ ପୁରୁଷୋତ୍ତମ କ୍ଷେତ୍ର ଅଟେ । ପୁରୁଷୋତ୍ତମ ଚେତନା ଓ ପ୍ରଭୁ ଜଗନ୍ନାଥ ଏପରି ରହସ୍ୟମୟ ଯେ କୌଣସି ଗୋଟିଏ ଶାସ୍ତ୍ର ବା ମତକୁ ମୂଳାଧାର କରି ତାଙ୍କ ବିଷୟରେ କିଛି କୁହାଯାଇ ନପାରେ । ଜଗନ୍ନାଥ ଚେତନା ସମସ୍ତ ମାର୍ଗର ଏକ ମିଶ୍ରିତ ସମନ୍ୱୟତାର ପ୍ରତୀକ । ସମନ୍ୱୟ ସେହିଠାରେ ସମ୍ଭବ 'ଯେ କି ମୌଳିକ ଓ ଗୂଢ଼ ସିଦ୍ଧାନ୍ତର ପ୍ରତୀକ ହୋଇଥିବେ । ସବୁ ମତକୁ ଏକ ସମନ୍ୱୟ ମାର୍ଗରେ ସଂଯୋଗ ନକଲେ ଜଗନ୍ନାଥ ଚେତନା ବା ତତ୍ତ୍ୱର କ୍ରମପରିଣତି ବିଷୟରେ ଧାରଣା ଆଣିବା କଠିନ ବ୍ୟାପାର ଅଟେ । ଆଜିର ପବିତ୍ର ଘୋଷଯାତ୍ରା ଅବସରରେ ଉତ୍କଳର ଆରାଧ୍ୟ ଦେବତାଙ୍କର ପ୍ରାସଙ୍ଗିକ ଶଙ୍କାକୁ ଉତ୍କଳ ପ୍ରସଙ୍ଗ ମାଧ୍ୟମରେ ମୋଚନ କରିବାର ମୁଖ୍ୟ ଲକ୍ଷ୍ୟ ଅଟେ ।



ଶଙ୍କା ପଞ୍ଚକମ୍

୧-ଜଗନ୍ନାଥ ଅବତାରି ନା ଅବତାର ।
୨-ଓଁକାର ମୂର୍ତ୍ତି ଜଗନ୍ନାଥ ଏକରୁ ତିନି କିପରି ହେଲେ !
୩-ଚାରିମୂର୍ତ୍ତିରୁ ସାତମୂର୍ତ୍ତି କେବେହେଲେ ।
୪-ବୌଦ୍ଧମାନଙ୍କର କିଛି ସମ୍ବନ୍ଧ ଅଛି କି ?
୫-ଜୈନମାନଙ୍କ ମାନ୍ୟତା ଥିଲା କି ?

**ଜଗନ୍ନାଥ ଅବତାରି ନା ଅବତାର**

ବ୍ରହ୍ମ ଅବତାରି, ତାଙ୍କର ଅଂଶରୁ ସୃଷ୍ଟ ଅବତାର ପୁରୁଷ । ବ୍ରହ୍ମ ନିର୍ଗୁଣ, ଅବତାରଗଣ ସଗୁଣ । ତେବେ ପ୍ରଶ୍ନଉଠେ ନିର୍ଗୁଣ ଓ ସଗୁଣ ମଧ୍ୟରେ କିଛି ଅଛି ନା ନିର୍ଗୁଣ ତୁରନ୍ତ ସଗୁଣ ହୋଇଗଲେ ? ପ୍ରଥମେ ଅନୁଭୂତି ମାଧ୍ୟମରେ ବ୍ରହ୍ମ ଅନୁଭବରେ ଆସୁଥିଲେ ତେଣୁ ସେ ନିର୍ଗୁଣ ଥିଲେ । ଅନୁଭୂତିକୁ ଯେତେ ବେଳେ ଋଷିଗଣ ସଙ୍କେତ ମାଧ୍ୟମରେ ସୂଚିତ କରାଇଲେ, ତାହା ପ୍ରତୀକ ହେଲା । ତାଙ୍କୁ ପରେ ରୂପ ଦିଆଗଲା । ତେଣୁ ବ୍ରହ୍ମ ନିର୍ଗୁଣ, ପ୍ରଥମ ପ୍ରକାଶନ ପ୍ରତୀକବାଦ ପରେ ରୂପବାଦ ହେଲା । ନିର୍ଗୁଣ ଓ ରୂପବାଦ ମଝିରେ ଥିବା ଅବସ୍ଥାର ଏହି ମୂର୍ତ୍ତିମାନେ କେତେ ପ୍ରାଚୀନ ଜାଣୁଥିବେ । ନୀଳମଣି ପୁରାଣରେ ପରିଷ୍କାର ଇନ୍ଦ୍ରଦ୍ୟୁମ୍ନଙ୍କୁ ବ୍ରହ୍ମା କହିଛନ୍ତି ।

ନିର୍ଗୁଣ ପ୍ରଣବ ବ୍ରହ୍ମଂ ନିର୍ବିକଳ୍ପ ନିରଞ୍ଜନଂ
ଦ୍ୱିତୀୟ ପ୍ରତୀକାଭାସ ପାବନ ପୁରୁଷୋତ୍ତମଂ

ସର୍ଗୁଣ ଦେବତାସର୍ବେ ନରଲକ୍ଷଣଲାଞ୍ଛିତମ୍
ଶୂନ୍ୟାଦୌଚ ପରାଭାସ ଚାନ୍ତେରୂପ ପ୍ରଚୋଦିତଃ

ତେଣୁ ଜଗନ୍ନାଥ ବ୍ରହ୍ମଙ୍କର ଦ୍ୱିତୀୟସ୍ତର ଅବତାରୀ, ଅବତାର ଏହାଙ୍କର ପରବର୍ତ୍ତୀ କ୍ରମ ଅଟେ ।

ତେଣୁ ଜଗନ୍ନାଥଙ୍କ ମନ୍ଦିରରେ ଜଗନ୍ନାଥଙ୍କୁ ପ୍ରସାଦମାଳା ଲାଭକଲେ ନୃସିଂହ ରାମ, ବାମନ, କୃଷ୍ଣ ସେହି ସେହି ନାମରେ ଜଗ୍ନମଣ୍ଡପକୁ ଯାଆନ୍ତି । ଏହି କାରଣରୁ ପରବର୍ତ୍ତୀ କାଳରେ ନିର୍ଗୁଣ ବ୍ରହ୍ମକୁ ନାନା ବେଶରେ ସଜାଇ ସେ ଅବତାରି ଓ ଅବତାରର ରୂପ ଗ୍ରହଣ କରନ୍ତି । ଏହା ପ୍ରମାଣ କରାଯାଇଛି, ବେଶର ପ୍ରଚଳନଦ୍ୱାରା ।

## ଓଁକାର ମୂର୍ତ୍ତି ଜଗନ୍ନାଥ ଏକରୁ ତିନି କିପରି ହେଲେ !

ଓଁକାର ହିଁ ବ୍ରହ୍ମ ବୋଲି ସମସ୍ତ ଉପନିଷଦ ସମସ୍ୱରରେ କହିଛନ୍ତି । ସେ ଓଁକାର ଗୋଟିଏ ବର୍ଣ୍ଣ ଆଲ୍‌ଫାବେଟ୍ ନୁହେଁ । ଏହା ଗୋଟିଏ ଆଲ୍‌ଫାବେଟିକାଲ୍ ସିମ୍ବଲ୍ ଅଟେ । ସେଥିରେ 'ଅ' 'ଉ' ମ ନାଦ ଓ ବିନ୍ଦୁ ଏହିପରି ପାଞ୍ଚଗୋଟି ମାତ୍ରା ଅଛି । ତା ମଧ୍ୟରୁ

ହଳୀ ଅକାରଃ ଶ୍ଚଉକାର ଭଦ୍ରାଃ
ମକାର ସାକ୍ଷାତ ପୁରୁଷୋତ୍ତମ ସ୍ୱୟମ ।।
ନାଦାକ୍ଷ୍ୟ ଚକ୍ରଃ ସହି କାଳନେମୀ
ବିନ୍ଦୁପରଂ ମାଧବଂ ଚିନ୍ତୟିତ୍ୱା
ପୂଜୟା ପ୍ରଣବଚିନ୍ତନ ମନ୍ତ୍ର କାରୀକା

ଅ – ବଳଭଦ୍ର  ଉ– ସୁଭଦ୍ରା

ମ – ଜଗନ୍ନାଥ  ନାଦ– ସୁଦର୍ଶନ

ଓ ବିନ୍ଦୁ ବା ମୂଳମୂର୍ତ୍ତି ମାଧବ । ଗୀତା ପ୍ରଭୃତି ତତ୍ତ୍ୱ ଗ୍ରନ୍ଥରେ କୁହାଯାଇଛି, ବ୍ରହ୍ମ ଯେତେବେଳେ ରୂପବନ୍ତ ହୁଏ, ସେତେବେଳେ ଏକ ତତ୍ତ୍ୱ ତିନିରେ ପରିଣତ ହୁଏ । ଅର୍ଥାତ୍ ଓଁ ତତ୍‌ସତ୍‌ରେ ବିଭକ୍ତ ହୋଇଯାଏ । ସେହି ସୂତ୍ରରେ ଅନନ୍ତ ସତ୍, ତତ୍ ଶକ୍ତି ଓ ଓଁକାର ବ୍ରହ୍ମ ଅଟନ୍ତି ।

## ଚାରିମୂର୍ତ୍ତିରୁ ସାତମୂର୍ତ୍ତି କେବେହେଲେ

ସ୍କନ୍ଦ ପୁରାଣର କିଛି ଅଂଶ ଚୋଡ଼ଗଙ୍ଗଙ୍କ ସମୟରେ ନିଶ୍ଚିତ ରଚିତ । ତଥାପି ସ୍କନ୍ଦ ପୁରାଣରୁ ଜଣାଯାଇଛି ପ୍ରଥମେ ମାଧବ ଯେପରି ଥିଲେ ସେପରି ବିଷ୍ଣୁଙ୍କ ... ଖାର ମୂର୍ତ୍ତିମାନେ ହେଲେ । ଅର୍ଥାତ୍ ଛୋଟ ଥିଲେ, ଚତୁର୍ବ୍ୟୁହାନୁସାରେ ବଡ଼ ହେଲେ ।

୯ ଅଧ୍ୟାୟ

ଯଥା ହିଁ ମାଧବ ପୂର୍ବେ ତଥାତଂ ବିଷ୍ଣୁସାଖିନଃ

ନୀଳମାଧବରୁ ଶଙ୍କରାଚାର୍ଯ୍ୟଙ୍କ ବେଳେ ୪ ହେଲେ ଚକ୍ର ଯୂପ ରୂପରେ ରହିଲେ । ଏହାପରେ ନାରାୟଣ ପୂଜାବାଦ ଆସିଲା ଓ ଶେଷ, ଏକନାଂଶା, କୃଷ୍ଣ ରୂପରେ ୪ ହେଲେ । ସୁଭଦ୍ରା ଶକ୍ତି ରୂପରେ ସୁଦର୍ଶନ ଚକ୍ରଯନ୍ତ୍ର ଉପରେ ପ୍ରତିଷ୍ଠିତ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ।

ନିବୃତ୍ତେ ଭଗବଦ୍ ରୂପେ ଚତୁର୍ଦ୍ଧା ଦିବ୍ୟ ରୂପିଣୀ

ଏହା ୪ ରହିଲେ, ୭ମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ । ଦ୍ୱାଦଶ ଶତାବ୍ଦୀରେ ଲକ୍ଷ୍ମୀ ଓ ସରସ୍ୱତୀ ଯାତ୍ରା ପର୍ବର ଉତ୍ସବ ମୂର୍ତ୍ତି ନିମନ୍ତେ ବସିଲେ । ଏପରି ଶ୍ରୀ.ଭଳ. (ସରସ୍ୱତୀ) ମୂଳମୂର୍ତ୍ତି ମାଧବ, ସୁଦର୍ଶନ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ମିଶି ସାତ ହେଲେ । ଉତ୍ସବ ମୂର୍ତ୍ତି ୧୩୨୪ରୁ ଆଚାଯର୍‌ୟ ରାଜଦେବ ପରମ ହଂସ ବାଜପେୟୀଙ୍କ ସମୟରେ ୭ ମୂର୍ତ୍ତି ହେଲେ । ପୂର୍ବରୁ ଉତ୍ସବ ମୂର୍ତ୍ତି ରୂପେ କେବଳ ମଦନ ମୋହନ ଓ ରାମକୃଷ୍ଣ ଥିଲେ ।

## ବୌଦ୍ଧମାନଙ୍କର କିଛି ସମ୍ବନ୍ଧ ଅଛି କି ?

ବୌଦ୍ଧଧର୍ମ ବୈଦିକ ଧର୍ମରୁ ଅତିରିକ୍ତ ନୁହେଁ । କିନ୍ତୁ କେବଳ ଜନ୍ମାନ୍ତର ବାଦନେଇ ସାମାନ୍ୟ ବିରୋଧ ରହିଅଛି ମାତ୍ର । ଜଗନ୍ନାଥଙ୍କ ଦେଶର ବା କଳିଙ୍ଗର ବସ୍ତସଜାତି ଯେଉଁମାନେ କି ପାରମ୍ପରିକ କ୍ରମେ ଓଡ଼ିଶା ରାଜାଙ୍କର ରାଜଗୁରୁ ରୂପେ ଓ ସମ୍ଭ୍ରାନ୍ତ ରୂପେ ରହି ଆସିଛନ୍ତି, ସେମାନଙ୍କର ପୂର୍ବ ପୁରୁଷଗଣ ବୌଦ୍ଧଧର୍ମର କିଛି ସଂସ୍କାର ସମର୍ଥିତ ଧର୍ମକୁ ଗ୍ରହଣ କରିଥିଲେ । ସେମାନେ ମୁଖ୍ୟତଃ ଜଗନ୍ନାଥକୁ ମହାଭାରତ ଭୀଷ୍ମଙ୍କ ସ୍ତବ ଅନୁସାରେ ବୁଦ୍ଧଙ୍କୁ ଆଦିବୁଦ୍ଧ ଭାବେ ମାନିଥିଲେ । ସେମାନଙ୍କ ବିଷୟ ଡକ୍ଟର ନବୀନ କୁମାର ସାହୁଙ୍କ ଓଡ଼ିଶାରେ ବୌଦ୍ଧଧର୍ମ 'ପୁସ୍ତକର ପ୍ରାରମ୍ଭରୁ' ଦେଖିବାକୁ ମିଳେ । ବୁଦ୍ଧଦେବଙ୍କ ପରମପଦ ପରେ ମୁକୁଟ ବନ୍ଧନ ସ୍ଥାନରେ ତାଙ୍କର ମର ଶରୀରକୁ ଦାହ କରି ତାଙ୍କ ପବିତ୍ର ଅସ୍ଥି ଓ ଭସ୍ମ ଆଠ ଭାଗରେ ବଣ୍ଟା ହୋଇଥିଲା । ତାହା ହିଁ ଭାରତୀୟ ସ୍ତୂପ ଉପାସନାର ମୂଳବସ୍ତୁ ହେଲା । ମାରୀୟ କ୍ଷତ୍ରୀୟମାନେ ସେହିଥିରୁ କିଛି ଅଂଶ ଆଣିଥିଲେ । ସେମାନେ ହିଁ କଳିଙ୍ଗବାସୀ ଥିବା ଅନୁମାନ । ମେରିଆ ଆଦିବାସୀ ସଂସ୍କୃତିର ଏକ ବିଶିଷ୍ଟ ଶବ୍ଦ ଓ ମଢ଼ିଆ ନାମଧାରୀ ବ୍ରାହ୍ମଣମାନେ ସେହି ଗୋଷ୍ଠୀର ହେବା ଅନୁମିତ ହୁଏ । ସେମାନେ ବୁଦ୍ଧଙ୍କ ବାମପଟ ବିଶି ଦନ୍ତର ଉପାସକ ଥିଲେ । ସେହି ପବିତ୍ର ଦନ୍ତ ଦନ୍ତପୁରୀ ବା ପୁରୀରେ ଉପାସିତ

ହେଉଥିବା ମତ ଦେଖାଯାଏ । ବ୍ରହ୍ମଦତ୍ତଙ୍କ ଦ୍ୱାରା ତାହା ନୀଳଗିରିରେ ଉପାସିତ ହେଉଥିବା ମତ ଦେଖାଯାଏ । ବ୍ରହ୍ମଦତ୍ତଙ୍କ ଦ୍ୱାରା ନୀଳଗିରିରେ ଉପାସିତ ହେଉଥିଲା, ଯାହା ନୀଳାଚଳ ଅଟେ । ତାହାର ନାମ ଥିଲା କଳିଙ୍ଗ ବୋଧି, ପାଲୁରଠାରୁ ରତ୍ନଗିରିର ପର୍ଯ୍ୟନ୍ତ ମହାନ ଭୂଖଣ୍ଡରେ ବାଣପୁର ଘଣ୍ଟେଶ୍ୱର ବିହାର, ଐରଗଡ଼ ବିହାର, ଡ଼େଲାଙ୍ଗ ଯମଧର୍ମ ବିହାର, ରତ୍ନଗିରି ପ୍ରଭୃତି ବୌଦ୍ଧ ଯୁଗରେ ପ୍ରସିଦ୍ଧ ଥିଲା । କିନ୍ତୁ ପୁରୀରେ ପରମବୁଦ୍ଧ ବା ସବୁ ରୂପ ସହିତ ସମାନ ସମସ୍ତଙ୍କୁ ମୋହିତ କରୁଥିବା ମହାବୁଦ୍ଧଙ୍କର ଉପାସନା ଥିଲା ତାହାହିଁ ଜଗନ୍ନାଥ ।

ସର୍ବରୂପ ସମାସ୍ଥାୟ ସର୍ବରୂପ ପରାୟଣେ ।
ମୋହୟନ୍ ସର୍ବଭୂତାନି ତସ୍ମୈ ବୁଦ୍ଧାମ୍ନେ ନମଃ ।।

ଭୀଷ୍ମଦେବ ସେହି ପରମ ବୁଦ୍ଧ ଜଗନ୍ନାଥଙ୍କୁ ବନ୍ଦନା କରିଛନ୍ତି ଖ୍ରୀ. ୭୧୭ ଖ୍ରୀଷ୍ଟାବ୍ଦରେ । 'ଜ୍ଞାନସିଦ୍ଧି'ର ରଚୟିତା ଇନ୍ଦ୍ରମୂତି କହିଛନ୍ତି ସେହି ବୁଦ୍ଧଙ୍କୁ ପ୍ରଣାମ ପୂର୍ବକ –

ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନବରାର୍ଚ୍ଚିତଂ
ସର୍ବ ବୁଦ୍ଧମୟ ସିଦ୍ଧଂ ବ୍ୟାପିନୋ ଗଗନୋପମ୍

ଭୀଷ୍ମଦେବ ଓ ପରବର୍ତ୍ତୀ ଇନ୍ଦ୍ରଭୂତି ଏହି ଶୂନ୍ୟବାଦର ପ୍ରତୀକ ଜଗନ୍ନାଥଙ୍କୁ ମାନିଛନ୍ତି । ଯାହାକୁ ସୁପପ୍ ବୁଦ୍ଧଙ୍କ ପୁତ୍ର ବେଦବରଙ୍କ ପ୍ରଭାବରେ ବୌଦ୍ଧତନ୍ତ୍ର ମାନି ଆସିଥିଲେ ।

ତେଣୁ ଯେ ଯେଉଁଠାରେ ମହାଯାନ, ହୀନଯାନ, ସହଜଯାନ ଧର୍ମାବଲମ୍ବୀ ଥିଲେ, ସେମାନେ ଜଗନ୍ନାଥଙ୍କୁ ପ୍ରବୁଦ୍ଧ ବୋଲି ମାନୁଥିଲେ । ସେ କେଉଁ ମୂର୍ତ୍ତିଙ୍କୁ ମାନୁଥିଲେ, ତାହା କୁହାଯାଇ ନପାରେ । କିନ୍ତୁ ଜଗନ୍ନାଥ ପ୍ରତୀମାଙ୍କ ସହ ସାଂଚି ସ୍ତୂପର ତ୍ରିରତ୍ନ ସାଙ୍କେତର ସମ୍ବନ୍ଧ ରହିବା ଅନୁମାନ ନିରର୍ଥକ ନୁହେଁ ।

## ଜୈନମାନଙ୍କ ମାନ୍ୟତା ଥିଲା କି ?

ନାଥ ଶବ୍ଦ ଜୈନ ଦର୍ଶନର ପରିଚିତ ଶବ୍ଦ । ସମସ୍ତ ତୀର୍ଥଙ୍କର ନାଥ ପଦବୀରେ ଭୂଷିତ । ଏହି ୪ ତୀର୍ଥଙ୍କର ମୂର୍ତ୍ତି ମଧ୍ୟରେ ର–ଷ–ଭ ନାଥ ହିଁ ଜଗନ୍ନାଥ । କଳିଙ୍ଗଜୀନାସନ ତାଙ୍କର ଅପର ନାମ ଥିଲା । କଳିଙ୍ଗ କୋଟୀଶୀଳାରେ ଉପାସିତ ହେଉଥିଲେ । ଏହା ଅନ୍ତର୍ବେଦୀ ବା ମୂଳାସନର ଅନ୍ୟନାମ ଥିଲା । ତାହାର ଆକାର ଜଗନ୍ନାଥଙ୍କ ସହିତ ପ୍ରାୟ ସମାନ ଥିଲା । ଖାରବେଳ ସେହି ନିରାକାର ବସ୍ତୁଙ୍କୁ ଉଦ୍ଧାର କରି ପୁନଃ ପ୍ରତିଷ୍ଠା କରିଥିଲେ । ଡେଲାଙ୍ଗ ଷ୍ଟେସନ ନିକଟରେ ଐରଗଡ଼ ନାମରେ କ୍ଷୁଦ୍ର ପାହାଡ଼ ଅଛି । ତାହା ସମ୍ଭବତଃ ଐରଖାରବେଳଙ୍କର ଅଧୀନସ୍ଥ କୀର୍ତ୍ତିଥିଲା । ତାହା ଉପରେ ଏକ ଗୁମ୍ଫାକାର ଦେଉଳ ଅଛି, ତାହାର ଦ୍ୱାର ଦେଶରେ ଜୀନାସନ ନାମ ଓ ସେହି ମୂର୍ତ୍ତିର ସାଙ୍କେତ ଖୋଦିତ ହୋଇଛି ଯାହା ଜଗନ୍ନାଥଙ୍କ ମୌଳିକ ଆକାରର ଅନୁରୂପ । ତେଣୁ ଜୈନମାନେ ଜଗନ୍ନାଥଙ୍କୁ କାଳିଙ୍ଗଜୀନ ରୂପରେ ମାନୁଥିଲେ, ପରେ ୩ ମୂର୍ତ୍ତି ହେବାପରେ ପରବର୍ତ୍ତୀ ଉତ୍କଳୀୟ ଜୈନମାନେ ବଳଭଦ୍ରଙ୍କୁ ପାର୍ଶ୍ୱନାଥ, ସୁଭଦ୍ରାଙ୍କୁ ଜୈନସରସ୍ୱତୀ ଓ ଜଗନ୍ନାଥଙ୍କୁ ଋଷଭନାଥ ଭାବେ ମାନନ୍ତି । ରାୟବାହାଦୁର ସଖିଚାନ୍ଦ ଜୈନଥାଇ ଭଣ୍ଡାରରେ ଥିବା ପାର୍ଶ୍ୱନାଥ ବିଗ୍ରହକୁ କଢ଼ାଇ ଦେହରଣ ଦକ୍ଷିଣ ଦ୍ୱାରରେ ରଖାଇଲେ । ଜୈନମାନେ ତାଙ୍କୁ ଦର୍ଶନ କରନ୍ତି । ଜୈନମାନଙ୍କର ପୁରୁଷୋତ୍ତମ ଶଳାକା ପୁରୁଷଙ୍କର ଅନୁରୂପ ସାଙ୍କେତ ବିଗ୍ରହ ରୂପରେ ଜଗନ୍ନାଥ ଜୈନଦେବତା ରୂପରେ ନାଥ ସମ୍ପ୍ରଦାୟ ଦ୍ୱାରା ଗୃହୀତ ଅଟନ୍ତି ।

ଜଗନ୍ନାଥ ସଂସ୍କୃତି ପ୍ରଚାରକ,
ନୀଳାଦ୍ରି ସତସଙ୍ଗ ଶ୍ରୀମନ୍ଦିର, ପୁରୀ

# ଓଡ଼ିଆ କବି କବିତାରେ ଶ୍ରୀଜଗନ୍ନାଥ

ଡକ୍ଟର ନୀଳମଣି ପରିଡ଼ା

ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଉତ୍କଳ ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶ ଭଳି ସ୍ଥିତି ଓ ଗତିଶୀଳ । ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଭାବରେ ପୁରୀର ଠାକୁର ରାଜା ଅବତୀର୍ଣ୍ଣ । ଉତ୍କଳର ସୁରକ୍ଷା ନିମନ୍ତେ ଏକଦା ବଳଭଦ୍ର ଓ ଜଗନ୍ନାଥ ରାଜାଙ୍କ ସହିତ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିବାର ଜନଶ୍ରୁତି ରହିଅଛି । ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଉତ୍କଳ ଜ୍ଞାନ, ବିଶ୍ୱାସ, ଶିକ୍ଷା, ଦୀକ୍ଷା, କୃଷି, ବାଣିଜ୍ୟ, ମାଙ୍ଗଳିକ ଅନୁଷ୍ଠାନ, ପରମ୍ପରା, ନୌବାଣିଜ୍ୟ, ପ୍ରଜ୍ଞା, ପ୍ରଗତି ଓ ପୁରୋଦୃଷ୍ଟି ସବୁର କେନ୍ଦ୍ରବିନ୍ଦୁ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ଉତ୍କଳୀୟ ସାଧାରଣ ଜନଜୀବନର ମୂଳଉତ୍ସ ଏବଂ ପ୍ରାଣକେନ୍ଦ୍ର । ଶ୍ରୀଜଗନ୍ନାଥ ଯେଉଁ ପ୍ରଦେଶର ଧର୍ମ, ସଂସ୍କୃତି ଏବଂ ଜନଜୀବନର ପ୍ରତୀକ ଓ ଆତ୍ମ ସ୍ୱରୂପ ବିଦ୍ୟମାନ ସେ ଦେଶର କବିମାନେ ନିଶ୍ଚିତ ଭାବରେ ଶ୍ରୀଜଗନ୍ନାଥ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ କାବ୍ୟ ଓ କବିତା ରଚନା କରିବା ସ୍ୱାଭାବିକ । ଶ୍ରୀଜଗନ୍ନାଥ ମାନବ ଧର୍ମର ପ୍ରତୀକ ସ୍ୱରୂପ ଯୁଗ ଯୁଗ ଧରି ଉତ୍କଳୀୟ କବିମାନଙ୍କୁ ଚିନ୍ତା ଚେତନା ଓ ପ୍ରେରଣା ଦେଇ ଆସୁଛନ୍ତି । କବି ଲେଖନୀରେ ଶ୍ରୀଜଗନ୍ନାଥ ମାନବ ସଂସ୍କୃତିର ସଂରକ୍ଷକ ଓ ପ୍ରାଣକେନ୍ଦ୍ର ପାଲଟିଛନ୍ତି । ଉତ୍କଳୀୟ ସଂସ୍କୃତ କବିମାନଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ କାଳରେ ବିଶୁଦ୍ଧ ଓଡ଼ିଆ କବି ସାରଳା ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ, ଜଗନ୍ନାଥ, ଯଶୋବନ୍ତ, ଅନନ୍ତ ଓ ସାଲବେଗ ଆଦି ଆଧୁନିକ ଯୁଗର କାଳୀଚରଣ ପଟ୍ଟନାୟକ, ବୈକୁଣ୍ଠନାଥ ବ୍ରହ୍ମଚାରି, କିଶୋର କବି ଶ୍ୟାମ ସୁନ୍ଦର, ବ୍ରହ୍ମୋତ୍ରି ମହାନ୍ତି, କ୍ଷୀରୋଦଚନ୍ଦ୍ର ପୋଥାଳ, ତୁଳସୀ ଦାସ, ସାରଦା ପ୍ରସନ୍ନ ନାୟକ, ପ୍ରଫୁଲ୍ଲ କର, ଅଲେଖ ବିଶ୍ୱାଳଙ୍କ ଲେଖନୀରେ ଶ୍ରୀଜଗନ୍ନାଥଙ୍କର ଭାବ ବନ୍ଦନା ପରିସ୍ଫୁଟ ହୋଇଅଛି ।



ଓଡ଼ିଆ ସାହିତ୍ୟର ଆଦି ଓ ମହାକବି ସାରଳା ଦାସ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ତାଙ୍କର ଭକ୍ତିଭାବନାକୁ 'ଜୟ ନୀଳାଚଳନାଥ' ଜଣାଣରେ ପରିପ୍ରକାଶ କରିଛନ୍ତି । ସାରଳା ଦାସ ଲେଖିଛନ୍ତି ' ଜୟ ନୀଳାଚଳ ନାଥ ଅଗତି ତାରଣ, ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ, ଆହେ କଳାକାର ମୁଖ ପାଣ୍ଡବ ରକ୍ଷକ । ସେ ମୁଖ ଦର୍ଶନେ ପାପ ନ ରହଇ ପାଖ, ବଡ଼ ଦେଉଳରେ ବସିଛ ହୋଇ ବଜ୍ର ସେହ୍ନା, ପତିତ ପାବନ ବୋଲି ଉଡ଼ାଉଛ ବାନା । ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ/ ଅଜାମିଳଠାରୁ ମୁଁ କି ଅଟଇ ଅଧମ ? ତାହାକୁ ତାରିଲ ପ୍ରଭୁ ଅଟାକ୍ଷ ମାତ୍ରରେ/ ସେହିପରି ଦୃଷ୍ଟିପଡୁ ମୋ ଉପରେ ଥରେ । ବାଟ ଖରଚକୁ ମୋର କିଛି ନାହିଁ ଧନ, ତୁମେ ହିଁ ସମ୍ବଳ ମୋର ରଙ୍କର ରତନ । ଅଣଚାଷ ବେଳକୁ ଭରସା କେହି ନାହିଁ/ ତୁମ୍ଭେ ଉଦ୍ଧାରନ୍ତା ଅଟ ପ୍ରଭୁ ଭାବଗ୍ରାହୀ ।

ସାରଳା ଦାସ ବିଭିନ୍ନ ପ୍ରସଙ୍ଗରେ ଶ୍ରୀଜଗନ୍ନାଥଙ୍କୁ ନୀଳଗିରି ପତି ଶରଣ ବତ୍ସଳ, ଦେବାଧି ଦେବ, ଚକ୍ରପାଣି ଓ ଜନହିତ କାରୀ ରୂପେ ବର୍ଣ୍ଣନା କରିବା ସହିତ ନୀଳଗିରିର ସ୍ଥିତି ଓ ଅବସ୍ଥିତି, ରତ୍ନସିଂହାସନ, କଳ୍ପବଟ ଓ ବିଶେଷ କରି ଚତୁର୍ଦ୍ଧାମୂର୍ତ୍ତିର କାବ୍ୟ–

ଚିତ୍ର ପ୍ରଦାନ କରି ଭକ୍ତି ଗଦ ଗଦ ଚିତ୍ତରେ ବର୍ଣ୍ଣନା କରିଛନ୍ତି– 'ଗତି ମୁକ୍ତିଦିଅ ମୋତେ ଶଙ୍ଖଚକ୍ର ହସ୍ତ/ ଶୁଦ୍ର ମୁନି ମୁଁ ସାରଳା ଦାସ ଚିନ୍ତେ ନିତ୍ୟ ।' ସାରଳା ଦାସ ମୂଳଳୀ ପର୍ବରେ ଶ୍ରୀକୃଷ୍ଣଙ୍କ ଦେହାବସାନ ବର୍ଣ୍ଣନା କଲାବେଳେ ମହାକବି ସାରଳା ଦାସ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନବ କଳେବରର ବର୍ଣ୍ଣନା କରି ଅଛନ୍ତି । ସାରଳା ଦାସଙ୍କ ପରେ ପଞ୍ଚ ସଖା ଯୁଗର କବିମାନଙ୍କ ଲେଖନୀରେ ଶ୍ରୀଜଗନ୍ନାଥ ଭଜନ ଓ ଜଣାଣରେ ପ୍ରକୀର୍ତ୍ତିତ ହୋଇ ଅଛନ୍ତି । ବଳରାମ ଦାସ 'ଜଗମୋହନ ରାମାୟଣ'ରେ ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ ପ୍ରକଟନ କରି ନିଜ ଭକ୍ତିର ପାରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି । 'ଜଗମୋହନ ରାମାୟଣ'ର ଏକ ସ୍ୱତନ୍ତ୍ର ଅଧ୍ୟାୟ ଶ୍ରୀଜଗନ୍ନାଥଙ୍କ ରୂପ ଆଲେଖ୍ୟ ସହିତ ସେ କିପରି ଅବତାରୀ ଏବଂ ପରବ୍ରହ୍ମ ସେ ସମ୍ପର୍କରେ ବିଶଦ ବର୍ଣ୍ଣନା କରିଛନ୍ତି ।

ପଞ୍ଚସଖା ଯୁଗର କବି ଜଗନ୍ନାଥ ଦାସଙ୍କ ଓଡ଼ିଶାର ଘରେ ଘରେ ପୂଜିତ 'ଭାଗବତ'ରେ ଶ୍ରୀଜଗନ୍ନାଥଙ୍କୁ ଦଶ ଅବତାରୀ ରୂପେ ବର୍ଣ୍ଣନା କରି ଶ୍ରୀଜଗନ୍ନାଥ ଯେ ଭଗବାନ ସ୍ୱୟମ୍ ତାହା ପ୍ରତିପାଦିତ କରିଅଛନ୍ତି । କବି ଲେଖିଛନ୍ତି– 'ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ।/ ନମସ୍ତେ ପ୍ରଭୁ ବାସୁଦେବ । ଭକତ ଜନଙ୍କ ବାନ୍ଧବ ।/ ନମସ୍ତେ ପ୍ରଭୁ ହୃଷିକେଶ । ଭକତ ଜନଙ୍କ ବିଶ୍ୱାସ ।/ନମସ୍ତେ ପ୍ରଭୁ ବିଶ୍ୱରୂପୀ । ସକଳ ହୃଦେ ଅଛୁ ବ୍ୟାପୀ ।/

ଯବନ କବି ସାଲବେଗଙ୍କ ଶ୍ରୀଜଗନ୍ନାଥ ଭକ୍ତି ଭାବନା ସମ୍ପର୍କିତ ଜଣାଣ ଓ ଭଜନ ଖୁବ୍ ଉଚ୍ଚକୋଟୀର । 'ଦୀନ ବନ୍ଧୁ ହୋ' ସାର୍ଥକ ଭଜନରେ ଯବନ କବି ଲେଖିଛନ୍ତି–

'ଦୀନ ବନ୍ଧୁ ହେ ।
ତୁମ୍ଭେ ନଡାକିଲେ ନ ଶୁଣ କାହିଁକି ?
କୃପାସିନ୍ଧୁ ହେ
ତୁମେ ଡାକିଲେ ନଶୁଣ କାହିଁକି ।'

ସାଲବେଗଙ୍କ ସବୁଠୁ ଭଲ ଜଣାଣ ହେଉଛି 'ଆହେ ନୀଳ ଶଇଳ ।' ଭାବ, ଭାଷା ଏବଂ ଭାବର ସମନ୍ୱୟରେ ସେ ଏହି ଜଣାଣ ରଚନା କରି ଯାଇଛନ୍ତି । ତାହା କୋଟି କୋଟି ଓଡ଼ିଆଙ୍କର ଅଦ୍ୟାବଧି ଅତ୍ୟନ୍ତ ପ୍ରିୟ ହୋଇ ରହିପାରିଛି ଯଥା:–

ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳନୀ ବନକୁ କର ଦଳନ । (ଘୋଷା)
ଗଜରାଜ ଚିନ୍ତାକଲା ଥାଇ ଘୋର ଜଳେଣ
ଚକ୍ର ପେଶି ଗ୍ରାହନାଶି ଉଦ୍ଧରିଲ ଆପଣ ।

ଏତଦ୍ ବ୍ୟତୀତ ସାଲବେଗ 'ଚାଲ ସଖୀ ଆମ୍ଭେ ଦର୍ଶନ କରିବା', 'କେଣେ ଘେନି ଯାଉଛ', 'ଏକା ତୋ ଭକତ ଜୀବନ', 'ଜଗବନ୍ଧୁ ହେ ଗୋସାଇଁ' ଆଦି ଉଚ୍ଚକୋଟୀର ଜଣାଣ ରଚନା କରି ଓଡ଼ିଆ ଜଗନ୍ନାଥ ଭକ୍ତି ସାହିତ୍ୟକୁ ଋଦ୍ଧିମନ୍ତ କରିଅଛନ୍ତି ।

ଓଡ଼ିଆ ସାହିତ୍ୟର ଆଦିକବି ଓ ମହାକବି ସାରଳା ଦାସ ଶ୍ରୀଜଗନ୍ନାଥ ଉଦ୍ଦେଶ୍ୟରେ 'ଜୟ ନୀଳାଚଳନାଥ' ନାମକ ଭଜନ ରଚନା କରି ନିଜର ଭକ୍ତିମତ୍ତାର ପରିଚୟ ଦେଇଅଛନ୍ତି ।

ଗୋପାଳ କୃଷ୍ଣ ପଟ୍ଟନାୟକଙ୍କ ଅନୁସରିତ ପ୍ରଭୁ ! କାଳଯାକ ଗଲା ସରିତ । ବନମାଳୀ ଦାସଙ୍କର ଜଗନ୍ନାଥ ହୋ ଶୀର୍ଷକରେ ଜଗନ୍ନାଥ ହୋ... କିଛି ମାଗୁନାହିଁ ମୁଁ ତୋତେ, ଧନ ମାଗୁ ନାହିଁ ଜନ ମାଗୁନାହିଁ, ମାଗୁଛି ଶରଧା ବାଲିରୁ ହାତେ । ଏତଦ୍ ବ୍ୟତୀତ ଚନ୍ଦନ ହଜୁରୀଙ୍କ 'ଚକାନୟନକୁ ପତିତ କେହି', ଚଣ୍ଡୀ ଦାସଙ୍କର 'ଭଜମନ ଜଗନ୍ନାଥଙ୍କୁ, ବିକ୍ରମ ନରେନ୍ଦ୍ରଙ୍କ 'ଜୟ ଜୟ ଜଗନ୍ନାଥ, ନିତ୍ୟାନନ୍ଦ ଦାସଙ୍କ 'ପତିତ ଜନଙ୍କୁ', ଗୌର ଚରଣ, ଅଧିକାରୀଙ୍କ 'ନୀଳ ଚକ୍ରେ ହୋ ଦେଖ ଉଡୁଛି ବାନା' ଓ ଦୁଃଖନାଶନ ଶୀର୍ଷକ ଜଣାଣ, ନିତ୍ୟାନନ୍ଦ ଦାସଙ୍କ 'ପତିତ ଜନଙ୍କୁ', ବୃନ୍ଦାବନ ଦାସଙ୍କ 'ଚାହିଁବାରେ ମନ ଚକା ଡୋଳାକୁ', ବଲ୍ଲଭ ଦାସଙ୍କ 'ମନ ଭଜରେ ଚିତ୍ତ', କଳ୍ପଲତା ଜେମାଙ୍କର 'ଜଗବନ୍ଧୁ ନାଥଙ୍କୁ', ଆର୍ତ୍ତ ଦାସଙ୍କର 'ପ୍ରଭୁକି ସୁନ୍ଦର ଦିଶ', ଗଜପତି ମୁକୁନ୍ଦ ଦେବଙ୍କର 'ଆହେ ନୀଳାଦ୍ରି ବିହାରୀ', ସାନନ୍ଦ ଦ୍ୱିଜଙ୍କର 'କାହାକୁ କରିବଇଁ ସାକ୍ଷୀ' ଜଣାଣଗୁଡ଼ିକ ଭକ୍ତି ରସାତ୍ମକ ଏବଂ ଶ୍ରୀଜଗନ୍ନାଥ ଭାବାଶ୍ରୟୀ । ଆଧୁନିକ ଯୁଗର ଲୋକ କବି ବୈଷ୍ଣବ ପାଣି 'ମିଛେ ନୀଳାଚଳ ନାଥ', କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର 'ସବୁଥିରୁ ବଞ୍ଚିତ କରି' ଗୋପାଳଚନ୍ଦ୍ର ପ୍ରହରାଜ 'ଅପରାଧ ବନ୍ଧୁ', କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, 'ନାହିଁ କରିଦେଲ' ଏବଂ 'ବଡ଼ ଦେଉଳେ ବଡ଼ ଦିଅଁ' ଶୀର୍ଷକ ସଫଳ ଗୀତି କବିତାମାନ ରଚନା କରି ଓଡ଼ିଆ ଭଜନ ଓ ଜଣାଣ ସାହିତ୍ୟକୁ ସୁସମୃଦ୍ଧ କରିଅଛନ୍ତି । ଭାବ, ଭାଷା, ଉପଲବ୍ଧି ଏବଂ ଭକ୍ତର ଆକୁଳ ଆବେଦନର ଅନ୍ୱେଷାରେ ଭାବ ଉଦ୍‌ବେଳିତ ହୋଇ ଅମର ସ୍ୱାକ୍ଷରରେ ଅଳିଭା ହୋଇ ରହିଛି । ଉତ୍କଳୀୟ କବି କାବ୍ୟ ଓ କବିତାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଚିତ୍ର ଓ ଚରିତ୍ର, ଏହା ଚିରଦିନ ଭାସ୍ୱର ହୋଇ ରହିବା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ରଖିବ ।

ପ୍ରାକ୍ତନ ପ୍ରଧ୍ୟାପକ (୧) କେନ୍ଦ୍ରାପଡ଼ା ସ୍ୱୟଂଶାସିତ
ମହାବିଦ୍ୟାଳୟ
୪୭, ନୟନ ବିହାର, ପୋ– ପାଣ୍ଡିରୀ,
କେନ୍ଦ୍ରାପଡ଼ା–୫୦

# ଶ୍ରୀଜଗନ୍ନାଥଙ୍କ ନୀଳାଦ୍ରି ବିଜେ

ଡକ୍ଟର ସର୍ବେଶ୍ୱର ସେଣ

ଶ୍ରୀଜଗନ୍ନାଥ, କମ୍ବୁକ୍ଷେତ୍ର ଅଧିଶ୍ୱର । ସେହି ହିଁ ବଡ଼ ଠାକୁର । ଓଡ଼ିଆର ଅତି ଆପଣାର କାଳିଆ ଦିଅଁ । ଲୀଳାମୟ ସେ । କିଏ ବା ବୁଝିବ ତା'ର ମହିମା, ବିଭୂତିକୁ ? ସ୍ୱୟଂ ବ୍ରହ୍ମା, ଶିବଙ୍କଠାରୁ ଆରମ୍ଭ କରି ଦେବଦେବୀ, ଋଷି, ମୁନି, ନର, କିନ୍ନର ସଭିଁଙ୍କ ନିକଟରେ ସେ ଅବ୍ୟକ୍ତ, ଅଣାକାର । କେବେ ସାକାର ତ' ପୁନଶ୍ଚ ନିରାକାର, କେବେ ଶୂନ୍ୟ, ପରଂବ୍ରହ୍ମ । ସେଇ କୋଠଭୋଗ ଖିଆ, ଚକାଆଖିଆର ତମାମ ବର୍ଷ ଶ୍ରୀମନ୍ଦିରରେ । ମନ ଉଣା ପଡ଼େ, ବରଷକେ ଥରେ ବାହାରେ ମାଉସୀ ମା' ଘରକୁ ଥାଟ ସାଜ ସରଞ୍ଜାମ ନେଇ, ରଥମାନେ ମଧ୍ୟ ପ୍ରସ୍ତୁତ ଥାନ୍ତି । ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଜଗା ବାହାରେ ଘୋଷଯାତ୍ରାକୁ । ପହଞ୍ଚେ ମାଉସୀ ମା'ଘରେ । ଗୁଣ୍ଡିଚା ମନ୍ଦିରରେ ରହଣି ସାତଦିନ, ପୁନଶ୍ଚ ପ୍ରତ୍ୟାବର୍ତ୍ତନ ନୀଳ କନ୍ଦରକୁ । ବାଟରେ ଦୁଇ ଦିନ, ଏମିତି ସର୍ବମୋଟ୍ ନଅଦିନର ଅବଧି ଜଗାର ଘୋଷଯାତ୍ରା । ରତ୍ନବେଦୀରୁ ଜନ୍ମ ବେଦୀ, ପୁନଶ୍ଚ ଜନ୍ମବେଦୀରୁ ରତ୍ନ ବେଦୀ । ପ୍ରତ୍ୟାବର୍ତ୍ତନ ଦିନଟି ଦଶମୀ ତିଥି । ସେଇ ଦିନ ଶ୍ରୀଜୀଉମାନଙ୍କର ବାହୁଡ଼ା ଯାତ୍ରା, ଶ୍ରୀଗୁଣ୍ଡିଚା ପରି ବାହୁଡ଼ା ଯାତ୍ରା ମଧ୍ୟ ସମାନ ଭାକ୍ତିକ ପରିବେଶ ତଥା ଆନନ୍ଦ ଉଦ୍ଦୀପନାରେ ସମାପନ ହୁଏ ।



ରଥମାନେ ଉତ୍କଣ୍ଠାର ସହ ବିଦ୍ୟମାନ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ । ଚାଲିଛି ପହଣ୍ଡି ବିଜେ, ଫାଟି ପଡୁଛି ବଡ଼ଦାଣ୍ଡ । ଜଗା ଆସୁଛି, ହଲୁଛି ଟାହିଆ, ଭକ୍ତ ମନ ବିଭୋର । ଅନୁରୂପ ଭାବେ ଆସୁଛନ୍ତି ବଡ଼ଭାଇ ବଳଭଦ୍ର, ଭଗିନୀ ସୁଭଦ୍ରା, ସାଥିରେ ଅଛନ୍ତି ସୁଦର୍ଶନ । ରଥାରୂଢ଼ ହେବେ ଚତୁର୍ଦ୍ଧା ମୂରତି । ଆଗମନ ଶ୍ରୀମନ୍ଦିରକୁ । ଭକ୍ତମାନେ ରଥ ଦଉଡ଼ି ଟାଣିଟାଣି ଆଣିବେ ଘରବାହୁଡ଼ା ଦିଅଁମାନଙ୍କୁ ।

ଅପୂର୍ବ ଆମ ଜଗନ୍ନାଥ ସଂସ୍କୃତି ! ସାରା ସଂସାରରେ କାହିଁ ଦେଖିବାକୁ ମିଳେନା ! ସାମ୍ୟବାଦର ନମୁନା ପ୍ରତିଟି କ୍ଷେତ୍ରରେ, ବିଧିବିଧାନ ପରମ୍ପରା ବଡ଼ଭାଇଙ୍କ ସମ୍ମାନରେ ବଳଭଦ୍ରଙ୍କ ରଥ ଚାଲେ ସର୍ବାଗ୍ରେ । ମାତ୍ର ନେତ୍ରୋତ୍ସବ ଦିନ ନନ୍ଦିଘୋଷ, ମହାଖଳା (ଶ୍ରୀମନ୍ଦିର) ଠାରୁ ସିଂହଦ୍ୱାରକୁ ପ୍ରଥମେ ଆସେ । ବାହୁଡ଼ାରେ ବଳଭଦ୍ରଙ୍କ ତାଳଧ୍ୱଜ ଆଗ ଯାଏ । ସେହିପରି ଦକ୍ଷିଣମୋଡ଼ ଦିନ ମାତା ସୁଭଦ୍ରାଙ୍କ ଦର୍ପଦଳନ ରଥ ଆଗେ ଗଡ଼େ । ଏଣୁ କେହି ଆଗ, ପଛ ନୁହଁନ୍ତି, ସଭିଏଁ ସମାନ । ରଥ ପଥ, ମାଟି, ଶାଳଭଞ୍ଜିକା, ବଡ଼ଦାଣ୍ଡ ସବୁ ପୂତ, ପବିତ୍ର ।

ବିଚିତ୍ର ସେ ଜଗାର ପୂଜାବିଧି । ଶ୍ରୀମନ୍ଦିର, ଗୁଣ୍ଡିଚା ମନ୍ଦିର, ପ୍ରତିଟିରେ ଏକ ଏକ ଭିନ୍ନ ପରମ୍ପରା । ମନ୍ଦିର ଏକ, ସମାନ ଦିଅଁ କିନ୍ତୁ ସଂସ୍କୃତି ଭିନ୍ନ । ରତ୍ନବେଦୀରେ ଶ୍ରୀଜୀଉମାନଙ୍କ ଅନୁପସ୍ଥିତିରେ ପୂଜା ପାଆନ୍ତି ଜଗନ୍ନାଥଙ୍କ ବିଜେ ପ୍ରତିମା ମଦନମୋହନ । ପୂଜକ ବ୍ରାହ୍ମଣ, ପୂଜାପଣ୍ଡା ମାତ୍ର ଗୁଣ୍ଡିଚା ଘରେ ପୂଜକ ଦଇତାପତି ସେବକମାନେ । ସେଠି ଶବର ସଂସ୍କୃତି ମୁତାବକ ଉପାସନା, ଧୂପଦୀପ ନୈବେଦ୍ୟ ସମର୍ପିତ ହୁଏ ପ୍ରଭୁଙ୍କୁ । ଶ୍ରୀମନ୍ଦିରରେ ଯୋଗ, ପ୍ରାଣାୟାମ, ଧ୍ୟାନ, ମନ୍ତ୍ରତତ୍ତ୍ୱ ରେ ପୂଜା ବିଧାନ ରହିଥିବା ସ୍ଥଳେ ଗୁଣ୍ଡିଚା ଘରେ ପୂଜା ପଦ୍ଧତି ଅତି ସରଳ ।

ସତେ ଯେମିତି ଶବର ବିଶ୍ୱାବସୁଙ୍କ ପରି ଝିଅ ଲଳିତାଙ୍କର ଉତ୍ତର ପିଢ଼ି ଦଇତାପତିମାନେ ଆପଣେଇ ନିଅନ୍ତି ତାଙ୍କ ପ୍ରାଣର ଠାକୁରଙ୍କୁ । ସେଠି କ୍ଳିଷ୍ଟତା ନାହିଁ, ପରନ୍ତୁ ଏକ ଭାବସାରଲ୍ୟର ଉଦ୍‌ବେଳନ ସମସ୍ତଙ୍କ ମନପ୍ରାଣ ଭରିଯାଏ ଅପୂର୍ବ ସାତ୍ତ୍ୱିକ ଭାବରେ। ଶ୍ରୀମନ୍ଦିରରେ ପ୍ରବେଶ, ରତ୍ନବେଦୀରେ ଜୀଉମାନଙ୍କ ପଦସ୍ପର୍ଶର ସୁଯୋଗ ସମସ୍ତଙ୍କର ନାହିଁ ମାତ୍ର ଗୁଣ୍ଡିଚା ମନ୍ଦିରରେ ସ୍ପୃଶ୍ୟାସ୍ପୃଶ୍ୟର ନାହିଁ ଭେଦଭାବ । ତାହା ହିଁ ଶବର ସଂସ୍କୃତିର ଏକ ମହାନ ନିଦର୍ଶନ । ଶ୍ରୀମନ୍ଦିରରେ ଜଗାକୁ ଦର୍ଶନ କଲେ, ସତେ ଯେମିତି ଲାଗେ ସେ ଟିକେ ଦୂରରେ, ତେଣୁ ଊର୍ଦ୍ଧ୍ୱବାହୁ ହୋଇ ଭକ୍ତଟିର ମାଗୁଣି ଆଶିଷ ଟିକକ ପାଇଁ ମାତ୍ର ଗୁଣ୍ଡିଚା ମନ୍ଦିରରେ ଆଡ଼ପ ଦର୍ଶନରେ ସତେ ଯେମିତି ଭକ୍ତ ଭଗବାନ କୋଳାକୋଳି । କାରଣ ଶବର ସଂସ୍କୃତିରେ ନୀଳମାଧବକୁ ଆପଣାର ବନ୍ଧୁ, ପରିଜନ, ସୁହୃଦ ପରି, ବିଶ୍ୱାବସୁ କୋଳେଇ ନେଇଥିଲେ । ଆଜି ସେଇ ଆବେଗ, ଭାବବିହ୍ୱଳ ପରିବେଶ । ତେଣୁ ଜୀବ ପରମ ଆଜି ବେଶ୍ ଲଗାଲଗି, ଘେନାଘେନି, ନାହିଁ ଦୂରତ୍ୱ । ଏମିତି ମାହେନ୍ଦ୍ର ମୁହୂର୍ତ୍ତ ଆସେ ବରଷକେ ଥରେ । ସେଇତ' କାଳିଆର ଅପୂର୍ବ ଲୀଳାମାନଙ୍କ ମଧ୍ୟରୁ ଗୋଟିଏ !

କାଳିଆ ରାଜା ଭାରି ରସିକ, ରଙ୍ଗ ଅଧରରେ ମନ୍ଦମନ୍ଦ ହସ, ତ୍ରିଭଙ୍ଗୀ ଠାଣି, ବାଙ୍କ ଚାହାଣୀ, ହାତରେ ବଂଶୀ, ମଧୁର ଧ୍ୱନିରେ ବାଂଶୁରୀ ବଜାଇ ଦେଲେ, କେଉଁ ଗୋପିକାର ବା ଧୈର୍ଯ୍ୟବନ୍ଧ ନଭାଙ୍ଗୁଥିଲା । ଏତଦ ଦ୍ୱାପର ଯୁଗର କଥା ରସିକ ନାଗର କହ୍ନେଇ ରୂପରେ ତା'ର ଲୀଳାଖେଳା । ଅନୁରୂପ ଭାବେ କଳିରେ ଦାରୁବ୍ରହ୍ମ ରୂପରେ ମଧ୍ୟ ତା'ର ରସିକ ପଣରେ ଊଣା ନାହିଁ। ଚନ୍ଦନଲାଗି, ଦୟଣାମାଳ, ଦିନତମାମ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ବେଶଭୂଷା, ସାଜସଜ୍ଜା ସାଙ୍ଗକୁ ଷାଠିଏ ପଉଟି ଭୋଗ ଲାଗେ। ଏତଦ କାଳିଆ ରାଜାର ନିତିଦିନିଆ କଥା । ତତ୍ ସହିତ କ୍ଷୀର, କ୍ଷୀରିସା, ଆମ୍ବିଳ, ଦହିପଖାଳ, ବେଶର, ମହୁର, ଜାତିଜାତିକା ପିଷ୍ଟକ, ଖଜା, ଲଡୁ, ସରପୁଳି ପାଇଁ ତା'ର ଭାରି ଆଦର । ସଜମଲ୍ଲୀ ଫୁଲ ରସିଆ ସେ। ଦେବଦାସୀ ନାଚ ନଦେଖିଲେ କି ତା'ର ନିଦ ହୁଏ ? ଏମିତି ବିଳାସୀ ଠାକୁର ଆଜି ଗୁଣ୍ଡିଚା ମନ୍ଦିରରେ ସେ ସମସ୍ତ ପାଇଁ ନାହିଁ ଆକର୍ଷଣ । ପରନ୍ତୁ ମାଉସୀ ମା' ହାତ ପାଉଁଶିଆ ପୋଡ଼ପିଠା ଖଣ୍ଡକ ପାଇଁ ଜଗାର ରଙ୍କପଣ। ଏଇଠି ରାଜା ରାଜେଶ୍ୱର, ସାଧାରଣ ଓଡ଼ିଆଟିର ଚାଲିଚଳଣି ଉଭୟ ଜଗନ୍ନାଥ ସଂସ୍କୃତି ସହ ଓତପ୍ରୋତ ଭାବେ ସଂଶ୍ଲିଷ୍ଟ। ସେଇଥିପାଇଁ ସେ ଓଡ଼ିଆ ଜାତିର ପ୍ରାଣଦେବତା !

ଗୁଣ୍ଡିଚା ମନ୍ଦିରରେ ରହଣି କାଳରେ ଆସେ ଆଷାଢ଼ ଶୁକ୍ଳ ପଞ୍ଚମୀ । ତାହା ହେରା ପଞ୍ଚମୀ ରୂପେ ବିଦିତ। ଗୁଣ୍ଡିଚା ଯାତ୍ରାର ଏହା ପଞ୍ଚମ ଦିନ । ଶ୍ରୀଜଗନ୍ନାଥ ଦିନଟିଏରେ ବଡ଼ଭାଇ, ଭଗିନୀ ସହ ମାଉସୀ ମା' ଘରୁ ଫେରି ଆସିବାର ପ୍ରତିଶ୍ରୁତି ରକ୍ଷାକରି ପାରନ୍ତିନି । ତେଣୁ ନିଜେ ଲକ୍ଷ୍ମୀ ଠାକୁରାଣୀ ବାହାରନ୍ତି ଗୁଣ୍ଡିଚା ମନ୍ଦିର ଏହି ହେରାପଞ୍ଚମୀରେ । ଏକ ଭାବବିହ୍ୱଳ ବାତାବରଣ, ବହୁ ଭକ୍ତ ସାଧୁସନ୍ଥଙ୍କ ଗହଣରେ, ଅପୂର୍ବ ଶୋଭାଯାତ୍ରାରେ ସେ ଯା'ନ୍ତି ମାଉସୀ ମା' ଘରଯାଏ । ଏକ ସୁନ୍ଦର ରଥରେ ବିଜେ କରିଥାନ୍ତି ମା' ଲକ୍ଷ୍ମୀ ସାଆନ୍ତାଣୀ । ଗୁଣ୍ଡିଚା ମନ୍ଦିରରେ ଲକ୍ଷ୍ମୀଙ୍କର ଉପସ୍ଥିତି ଜଗନ୍ନାଥଙ୍କ ପାଇଁ ଏକ ଅସ୍ୱାଭାବିକ ପରିସ୍ଥିତିର କାରଣ ପାଲଟେ । ଫଳରେ ଜଗା ବନ୍ଦ କରି ଦିଅନ୍ତି ମନ୍ଦିର ଫାଟକ । ଏତାଦୃଶ ଆଚରଣରେ ମର୍ମାହତ ମା'ଲକ୍ଷ୍ମୀ କ୍ରୋଧରେ ମଧ୍ୟ ଜଗନ୍ନାଥଙ୍କୁ ମୃଦୁ ଭର୍ତ୍ସନା କରନ୍ତି। ପତ୍ନୀ ଅପେକ୍ଷା ଭଗିନୀ ସୋହାଗ ଜଗନ୍ନାଥଙ୍କର ଅଧିକ ବୋଲି ମଧ୍ୟ ଆକ୍ଷେପ କରନ୍ତି । ଶେଷରେ ନନ୍ଦିଘୋଷ ଚକରୁ ଖଣ୍ଡେ ଭାଙ୍ଗିଦେଇ ମା' ଲକ୍ଷ୍ମୀ ଫେରନ୍ତି ଶ୍ରୀମନ୍ଦିର । ହିନ୍ଦୁ ଧର୍ମଦର୍ଶନରେ ଥିବା ପତିପତ୍ନୀଙ୍କର ଅନାବିଳ ପ୍ରେମ ବନ୍ଧନର ଚିତ୍ରଟିଏ ଏଠାରେ ବେଶ୍ ପରିସ୍ଫୁଟ। କ୍ରୋଧ ନୁହେଁ ପରନ୍ତୁ ଆତ୍ମୀୟତା ଏହାର ପ୍ରାଣସତ୍ତା । ବାହ୍ୟତଃ ଏହା ଲକ୍ଷ୍ମୀ ଠାକୁରାଣୀଙ୍କର ଘୋଷାରୁଷା ପରି ପ୍ରତୀୟମାନ ହେଲେ ମଧ୍ୟ ଅନ୍ତଃସ୍ଥଳରେ ଯେଉଁ ଦାମ୍ପତ୍ୟ ଓଡ଼ିଆ ଜୀବନର ରସ–ସରସ–ନିର୍ମଳ ପ୍ରେମ ପ୍ରବାହ ରହିଛି, ଏହା ତା'ର ପ୍ରତୀକଚିତ୍ର ମାତ୍ର । ଏଣୁ କଳହ ନୁହେଁ, ପରନ୍ତୁ ହେରାପଞ୍ଚମୀ ଏକ ଉପଭୋଗ୍ୟ ଭକ୍ତିକ ଉତ୍ସବ ।

ଶ୍ରୀଜୀଉମାନେ ବିଜେ ତିନି ରଥରେ, ଦିନଟି ଆଷାଢ଼ ଶୁକ୍ଳ ଏକାଦଶୀ । ଯାହା ବଡ଼ ଏକାଦଶୀ ନାମେ ଖ୍ୟାତ । ରଥରେ ପ୍ରଭୁଙ୍କର ସୁନାବେଶ ଯାହା ବଡ଼ ତଡ଼ାଉ ବେଶ ନାମେ ବିଦିତ । ଦିଅଁମାନଙ୍କର ସୁନାବେଶ ବିଜୟା ଦଶମୀ (ଦଶହରା), କାର୍ତ୍ତିକ ପୂର୍ଣ୍ଣିମା, ଦୋଳ ପୂର୍ଣ୍ଣିମା, ପୌଷପୂର୍ଣ୍ଣିମା (ପୁଷ୍ୟାଭିଷେକ)ରେ ଅନୁଷ୍ଠିତ ହେଉଥିଲେ ହେଁ, ରଥ ଉପରେ ଏହି ବର୍ଣ୍ଣାଢ଼୍ୟ ମହିମା ଅବର୍ଣ୍ଣନୀୟ । ସଚରାଚର ବିଶ୍ୱ ବ୍ରହ୍ମାଣ୍ଡ ଏଭଳି ଅନନ୍ୟ ଦୃଶ୍ୟରେ ବିହ୍ୱଳିତ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଭିଏଁ ରଥରେ ଦିଅଁମାନଙ୍କ ସୁନାବେଶକୁ ଉପଭୋଗ କରିଥାନ୍ତି, ଯାହା ଶ୍ରୀମନ୍ଦିରରେ ସମ୍ଭବ ହୋଇ ନଥାଏ । ପତିତପାବନଙ୍କର ସର୍ବଜନ–ମନ–ମୋହନ ପାଇଁ ଏହି ରାଜା ରାଜେଶ୍ୱର ବେଶ । ପ୍ରଭୁଙ୍କ ଚାରିପଟେ ସ୍ୱର୍ଣ୍ଣ କମଳ, ଆପାଦ ମସ୍ତକ ସ୍ୱର୍ଣ୍ଣାଳଙ୍କାରରେ ବିଭୂଷିତ। ସ୍ୱର୍ଣ୍ଣ କିରୀଟ, ସୁବର୍ଣ୍ଣର ମୟୂର ଚନ୍ଦ୍ରିକା, କିରୀଟ, ତିଳକ, ସୁବର୍ଣ୍ଣ ଚନ୍ଦ୍ର ସୂର୍ଯ୍ୟ,

ସୁନାପାତ ରାହୁରେଖା, ସୁନାଚିତା ତତ୍ ସହିତ ଓଡ଼ିଆଣୀର ଅଳଙ୍କାର, ଗୋଠ, ନାକଚଣା, କଟିମେଖଳା ଆଦି ୧୩୮ କିସମର ରତ୍ନଚିତ ଅଳଙ୍କାର ଧାରଣ ପୂର୍ବକ ଶ୍ରୀଜୀଉମାନେ ପତିତ ଜନଙ୍କୁ ଦର୍ଶନ ଦିଅନ୍ତି । ସାରାଜଗତ ଅଭିଭୂତ । କାଳିଆ ରାଜାର ସୁନାବେଶ ଦେଖିଲେ କିଏ ବା କହିବ ଓଡ଼ିଆଟିଏ ଦରିଦ୍ର ! ତା' ପ୍ରାଣଦେବତା ଦେହରେ ମହଣ ମହଣ ସୁନା, ଏମିତି ଏକ ବିତ୍ତଶାଳୀ ବେଶଭୂଷା ଓଡ଼ିଆର ଆର୍ଥନୀତିକ ସବଳତା ନୁହେଁ ପରନ୍ତୁ କାଳିଆ ରାଜା ରାଜେଶ୍ୱର, ସେ ସାଧାରଣ ମଣିଷଟି ସହିତ ଯେ ଏକୀଭୂତ ଏହା ହିଁ ସୂଚାଇ ଦିଏ ।

ଓଡ଼ିଆକୁ ଦରିଦ୍ରମଣି, ଧନର ଅମହିମା ସିଂହାସନରେ ବସିଥିବା ଗର୍ବ-ମତ୍ତ ଏମିତି କେଉଁ ଜାତିଟି ଅଛି ଯେ ଯୋଗାଇ ଦେବ ଜଗାର ବିଡ଼ିଆ ପାନ ପାଇଁ ଗଜମୋତି ଚୂନ ଟିକକ ? ସେହି ଚୂର୍ଣ୍ଣ ଲକ୍ଷେ ଗଜଙ୍କ ମୁଣ୍ଡରୁ ମିଳିବା ମଧ୍ୟ ସମ୍ଭବ ହୋଇ ନପାରେ । ସେମିତି ଭରଣଭରଣ ଡାଲି ଚାଉଳରେ ଜଗାର ଆନନ୍ଦ ବଜାର ପରିପୂର୍ଣ୍ଣ ହୁଏନା ମାତ୍ର ତା'ରି ଇଚ୍ଛାର ଇଚ୍ଛା ଏ ଜଗତ । ଇଚ୍ଛାମୟଙ୍କ ଇଚ୍ଛାରେ ଗୋଟିଏ ଚାଉଳରେ ଆନନ୍ଦବଜାର ପରିପୂର୍ଣ୍ଣ ହେବ ! ମନୁଷ୍ୟ ପ୍ରଚେଷ୍ଟାରେ କୋଟିଏ ଭରଣରେ ନୁହେଁ । ଏହାତ ନିତିଦିନିଆ ଜଗାର ବିଭୂତି । ସେହି ମହାପ୍ରସାଦ ପାଇଁ ସାରା ବିଶ୍ୱ ରଙ୍କ । ଜଗା ମାଉସୀ ମା'ଙ୍କ ଘରୁ ବାହୁଡ଼ିଲେ ପୁଣି ଭକ୍ତଟିଏ ସୁଯୋଗ ପାଇବ ମହାପ୍ରସାଦ କଣିକାଏ ପାଇଁ । ତେଣୁ ସେ ଆକୁଳରେ ଚାହିଁ ବସିଛି ଦିଅଁଙ୍କର ବାହୁଡ଼ା ପଥକୁ ।

ବଡ଼ ଠାକୁରଙ୍କ ବାହୁଡ଼ା ଯାତ୍ରାକୁ ଦକ୍ଷିଣାଭିମୁଖୀ ଯାତ୍ରା ମଧ୍ୟ କୁହାଯାଏ । ଶ୍ରୀଗୁଣ୍ଡିଚାରେ ଉତ୍ତରାଭିମୁଖୀ ଯାତ୍ରା ଗୁଣ୍ଡିଚା ମନ୍ଦିରକୁ । ବାହୁଡ଼ାରେ ଦକ୍ଷିଣାଭିମୁଖୀ ଯାତ୍ରା ଦିଅଁମାନଙ୍କର ଶ୍ରୀମନ୍ଦିରକୁ । ଉଭୟ ଦର୍ଶନରେ ଭକ୍ତ ମନୋବାଞ୍ଛା ପୂର୍ଣ୍ଣ ହୁଏ । କୋଟି ଜନ୍ମର ପାତକ କ୍ଷୟ ହୋଇଯାଏ । ବଇକୁଣ୍ଠ ପ୍ରାପ୍ତି ହୁଏ । କୈବଲ୍ୟ, ମୋକ୍ଷ ମିଳେ । ଏଣୁ କବି ଦୀନକୃଷ୍ଣ ବିହ୍ୱଳ ହୋଇ ଗାଇଥିଲେ ।

କରଇ ପବିତ୍ର ଆନ ତୀର୍ଥ ଜଳେ କଲେ ସ୍ନାନ<br>
ଏ ତୀର୍ଥ ନାମରେ ନାନା ଦୁରିତ ନାଶ<br>
କଇବଲ୍ୟ ଲଭି ହେଳେ ନପଡ଼ିଲେ ଜଠର ଜଳେ<br>
ବଇକୁଣ୍ଠେ ବସି ବଇକୁଣ୍ଠ ସନ୍ତୋଷ<br>
କରି ଏଇ କଥା କୀର୍ତ୍ତନ<br>
କରୁଥାଉ ଦୀନକୃଷ୍ଣ ସୁଖେ ନର୍ତ୍ତନ।

ରଥରେ ବିଜେ ଦିଅଁମାନଙ୍କ ଦର୍ଶନରେ ଭକ୍ତ-ମନ- ଚାତକ ତୃଷ୍ଣା ମେଣ୍ଟିଯାଏ ।

ଏକ ଆବେଗମୟ ପରିବେଶରେ ସମାପନ ହୁଏ ବାହୁଡ଼ା ଯାତ୍ରା । ରଥଯାତ୍ରା ପରି ବାହୁଡ଼ା ଯାତ୍ରା ମଧ୍ୟ ଉତ୍କଳର ଗଜପତି ରାଜାଙ୍କ ଶ୍ରୀଛାମୁଙ୍କ ପୟରେ ଭକ୍ତିପୂତ ପ୍ରଣତି ପୂର୍ବକ ଛେରାପହଁରା ସେବା ବିଶ୍ୱପ୍ରାଣକୁ ବିମୋହିତ କରେ । ଏଇତ ଓଡ଼ିଆ ପୁଅର ତା' ପ୍ରାଣ ଦେବତାଙ୍କ ପାଖରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କାଳୀନ ବର୍ଣ୍ଣାଢ଼୍ୟ ଦୃଶ୍ୟ !

ଏଣିକି ଜଗାର ନୀଳାଦ୍ରି ବିଜେ, ଗହଳ, ଚହଳରେ ଶ୍ରୀଜୀଉମାନଙ୍କର ପହଣ୍ଡି ନୀଳକନ୍ଦରକୁ । ପୁନଶ୍ଚ ଆମ ସାମାଜିକ ଜନଜୀବନର କଥା । ଆରମ୍ଭ ହୁଏ ମା' ଲକ୍ଷ୍ମୀଙ୍କର ଅଭିମାନ, ବନ୍ଦ ସିଂହଦ୍ୱାର, ଶ୍ରୀଜଗନ୍ନାଥ ତାଙ୍କ ଅଙ୍କଲକ୍ଷ୍ମୀଙ୍କ କରନ୍ତି ମାନଭଞ୍ଜନ। ସମ୍ପୂର୍ଣ୍ଣ ଓଡ଼ିଆଣୀଟି ପରି ପତିବ୍ରତା ଲକ୍ଷ୍ମୀ ଠାକୁରାଣୀ କ'ଣ କଠୋର ହୋଇପାରିବେ ? ଫିଟେ ସିଂହଦ୍ୱାର, ଦିଅଁମାନେ ରତ୍ନ ସିଂହାସନକୁ ବିଜେ କରନ୍ତି ଗୋଟି ପହଣ୍ଡିରେ ମାତ୍ର ରଥାରୂଢ଼ ସମୟରେ ହୋଇଥାଏ ଧାଡ଼ିପହଣ୍ଡି । ଶ୍ରୀଗୁଣ୍ଡିଚା ଦିନ ରଥରୁ ଗୁଣ୍ଡିଚା ମନ୍ଦିର, ବାହୁଡ଼ା ପରେ ରଥରୁ ଠାକୁରମାନଙ୍କ ରତ୍ନବେଦୀକୁ ବିଜେ ହୁଏ ଗୋଟିପହଣ୍ଡିରେ । ଏହି ପହଣ୍ଡିରେ ଗୋଟିଏ ଦିଅଁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ଅନ୍ୟ ଦିଅଁମାନେ ଯାନ୍ତି ସେଇ ଶୈଳୀରେ । ମାତ୍ର ଦିଅଁମାନେ ଧାଡ଼ିରେ ଯାଇ ରଥାରୂଢ଼ ହୁଅନ୍ତି ଧାଡ଼ି ପହଣ୍ଡିରେ । ଏହା ମଧ୍ୟ ଏକ ସ୍ୱତନ୍ତ୍ର ବିଧି ।

ଚାଲିଛି ନୀଳାଦ୍ରି ବିଜେ ପର୍ବ । ନବଦିନ ବ୍ୟାପୀ ରଥଯାତ୍ରାର ଅନ୍ତିମ ପର୍ଯ୍ୟାୟ । ଏକ ଅଭୂତପୂର୍ବ ଭାକ୍ତିକ ପରିବେଶରେ କୋଠଭୋଗଖିଆ ବିରାଜମାନ ରତ୍ନ ସିଂହାସନରେ । ପୂରି ଉଠୁଛି ଶ୍ରୀମନ୍ଦିର। ଭକ୍ତଟିଏ ଅଧିରେ ଗାଉଛି:

କାନପତାଇ ଶୁଣୁଥା ମୋ କଳାହାତୀରେ,<br>
କାଳ କାଳକୁ ନଥିବ ଭୀତିରେ,<br>
ଶୂନ୍ୟପୁରେ ଶବଦ ହେଉଛି ନିତିରେ ।

ଅମରାବତୀରେ ଦେବଗଣ ଆଜି ଉଲ୍ଲସିତ । ଇନ୍ଦ୍ର ପୁଷ୍ପବୃଷ୍ଟି କରୁଛନ୍ତି । ନାରଦଙ୍କ ବୀଣାବାଦନ, ଏଣେ ରତ୍ନବେଦୀ ପରିପୂର୍ଣ୍ଣ । ଗୁଣ୍ଡିଚା ମନ୍ଦିର, ଜନ୍ମବେଦୀ ଚାହିଁଛନ୍ତି ରତ୍ନବେଦୀକୁ, ପ୍ରତୀକ୍ଷା ଆରସନ ଆଷାଢ଼ ଶୁକ୍ଳ ଦ୍ୱିତୀୟାକୁ, ପତିତପାବନଙ୍କର ଘୋଷ ଯାତ୍ରାକୁ !

ସା/ ପୋ – ପୁରୁଷୋତ୍ତମପୁର,<br>
କେନ୍ଦ୍ରାପଡ଼ା–୭୫୪୨୨୩

# ଜଗନ୍ନାଥ ଭକ୍ତିରେ ପ୍ରମତ୍ତ କବି ବଳରାମ ଦାସ

**ଡକ୍ଟର ହେମନ୍ତ କୁମାର ଛୋଟରାୟ**

ଉତ୍କଳର ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳ ଅର୍ଥାତ୍ ୧୪୯୭–୧୫୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଯେଉଁ ପଞ୍ଚସିଦ୍ଧ ସାଧକମାନଙ୍କର ଆବିର୍ଭାବ ହୋଇଥିଲା, ସେମାନଙ୍କ ମଧ୍ୟରେ ବଳରାମ ଦାସ ଅନ୍ୟତମ । ତାଙ୍କ ସାରସ୍ୱତ ସାଧନା ଓ ପାଣ୍ଡିତ୍ୟ ବଳରେ ସେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଯେମିତି ଋଦ୍ଧିମନ୍ତ କରିଛନ୍ତି, ସେମିତି ଭକ୍ତିମତ୍ତା ବଳରେ ଆଧ୍ୟାତ୍ମିକ ଓ ଧାର୍ମିକ ଉତ୍ସାହର ଉତ୍ସ ହୋଇ ସମାଜକୁ ଦିଗ୍‌ଦର୍ଶନ ଦେବାରେ ନିଜକୁ ନିୟୋଜିତ କରିଛନ୍ତି । ଜଣେ ପରମ ବିଷ୍ଣୁଭକ୍ତ ସୋମନାଥ ମହାପାତ୍ରଙ୍କ ଔରସରୁ ଜନ୍ମିତ ବଳରାମଙ୍କ ଅନ୍ତରରେ କୋମଳ ବୟସରୁ ଭକ୍ତିଭାବ ଉଦ୍ରେକ ହୋଇଥିଲା । ଜଗମୋହନ ରାମାୟଣରେ ସେ ଉଲ୍ଲେଖ କରିଛନ୍ତି–

''ସୋମନାଥ ମହାପାତ୍ର କୁଳରେ ସମ୍ଭୂତ
ଜନ୍ମେ ଜନ୍ମେ ପିତା ମୋର ବିଷ୍ଣୁର ଭକତ ।''

ପିତାଙ୍କ ଭକ୍ତିଭାବରେ ଅନୁପ୍ରାଣିତ ହୋଇ ସେ ଭଗବାନଙ୍କ ପାଦପଦ୍ମରେ ନିଜକୁ ଉତ୍ସର୍ଗ କରିଥିଲେ । ପୁରୁଷୋତ୍ତମ କ୍ଷେତ୍ରବାସୀ ପ୍ରଭୁ ନୀଳାଦ୍ରିନାଥ– ଜଗନ୍ନାଥ ହେଉଛନ୍ତି ତାଙ୍କର ଆରାଧ୍ୟ ଦେବତା । ଜଗମୋହନ ରାମାୟଣର ଲଙ୍କାକାଣ୍ଡରେ ନାରାୟଣ ପୁରୁଷ ନୀଳଗିରିବାସୀ ଜଗନ୍ନାଥଙ୍କ ଚରଣରେ ଦାସୀ ହୋଇ ରହିଥିବା ବିଷୟକୁ ସେ ଉଲ୍ଲେଖ କରିଛନ୍ତି । ପ୍ରଭୁ ଜଗନ୍ନାଥଙ୍କ ଭକ୍ତିରସରେ ବୁଡ଼ି ରହିଥିବା ଜଣେ ଅସାଧାରଣ ଭକ୍ତ ଭାବରେ ତାଙ୍କର ପ୍ରସିଦ୍ଧି ରହିଛି । ଅହରହ କାୟମନୋବାକ୍ୟରେ ଜଗନ୍ନାଥଙ୍କ ଚିନ୍ତା ଛଡା ଅନ୍ୟ କୌଣସି ଚିନ୍ତା ତାଙ୍କୁ ସ୍ପର୍ଶ କରିନାହିଁ । ତାଙ୍କ କଣ୍ଠରେ ବସି ପ୍ରଭୁ ଜଗନ୍ନାଥ ସ୍ୱୟଂ ପଦ କହି ଦେଉଥିବା ବିଷୟ ସେ ସ୍ୱୀକାର କରିଛନ୍ତି । ପ୍ରଭୁ ଜଗନ୍ନାଥଙ୍କୁ ବଳରାମ ଗଭୀର ଭାବେ ଭକ୍ତି କରୁଥିଲେ । ଅନୁରୂପ ଭାବେ ପ୍ରଭୁ ଜଗନ୍ନାଥ ବଳରାମଙ୍କୁ ଜଣେ ପରମ ଭକ୍ତ ଭାବରେ ନିଜ ହୃଦୟରେ ସ୍ଥାନ ଦେଇଥିଲେ । ଏହାର ନିଦର୍ଶନ ସ୍ୱରୂପ ବହୁ ଅଲୌକିକ ଘଟଣା ତାଙ୍କ ରଚନାବଳୀରୁ ଜଣାଯାଏ ।

ବଳରାମଙ୍କ ଖ୍ୟାତି ଓଡ଼ିଶା ମଧ୍ୟରେ ସୀମାବଦ୍ଧ ନଥିଲା । ନିଜ ରାଜ୍ୟ ସମେତ ପଡ଼ୋଶୀ ରାଜ୍ୟରେ ତାଙ୍କ ପ୍ରସିଦ୍ଧିର ଜୟଗାନ ହୋଇଥିଲା । ପଶ୍ଚିମବଙ୍ଗର ବୈଷ୍ଣବ କବି ଦେବକୀନନ୍ଦନ ତାଙ୍କ ବୈଷ୍ଣବ ବନ୍ଦନା ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି –

''ବନ୍ଦେ ଉଡ଼ିଆ ବଳରାମ ଦାସ ମହାଶୟ,
ଜଗନ୍ନାଥ ବଳରାମ ଯା'ର ବଶ ହୟ ।''

ଏଥିରୁ ଜଣାଯାଏ – ପଶ୍ଚିମବଙ୍ଗବାସୀ ଜାଣିଥିଲେ ଯେ, ପ୍ରଭୁ ଜଗନ୍ନାଥ ଓ ବଳଭଦ୍ର ବଳରାମ ଦାସଙ୍କ ଭକ୍ତିରେ ବଶ ହୋଇ ରହିଥିଲେ ।

ବଳରାମଙ୍କ ଜୀବନ ଥିଲା ସଂଗ୍ରାମ ଓ ସଂଘର୍ଷମୟ । ସ୍ୱାଭିମାନ ତାଙ୍କ ଗୁଣାବଳୀର ଅନ୍ୟତମ ବୈଶିଷ୍ଟ୍ୟ । ବେଦ, ପୁରାଣ, ଦର୍ଶନ ଓ ଯୋଗ କ୍ଷେତ୍ରରେ ସେ ଥିଲେ ଜଣେ ପ୍ରଚଣ୍ଡ ପ୍ରତିଭା । ସେ ଦୃଢ଼ ଭାବରେ ପ୍ରଭୁ ଜଗନ୍ନାଥଙ୍କ ଧର୍ମ ତତ୍ତ୍ୱକୁ ବିଶ୍ୱାସ କରୁଥିଲେ। ଏହି ଧର୍ମତତ୍ତ୍ୱର ମୁଖ୍ୟ ପଟ୍ଟଭୂମି ସାମ୍ୟ ଓ ମୈତ୍ରୀ ତାଙ୍କୁ ଆକୃଷ୍ଟ କରିଥିଲା । ସମାଜରେ ଜାତି ଓ ବର୍ଣ୍ଣଗତ ବୈଷମ୍ୟ ବିରୁଦ୍ଧରେ ସେ ଅହରହ ସ୍ୱର ଉତ୍ତୋଳନ କରି ଆସୁଥିଲେ । ଧର୍ମ କ୍ଷେତ୍ରରେ ବ୍ରାହ୍ମଣମାନଙ୍କ ଆଧିପତ୍ୟ ତାଙ୍କ ପକ୍ଷେ ଅସହ୍ୟ ଥିଲା । ଅସାଧାରଣ ପାଣ୍ଡିତ୍ୱ ଓ ଶାସ୍ତ୍ରଜ୍ଞାନର ଅଧିକାରୀ ବଳରାମ ବ୍ରାହ୍ମଣମାନଙ୍କ ଏକଚାଟିଆ ମନୋଭାବ ଲାଗି ଅନେକ ସମୟରେ ଅପମାନିତ ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ନିଜର ଅଲୌକିକ ଶକ୍ତି ବଳରେ ସେମାନଙ୍କୁ ପରାଜିତ କରିଥିବା ତାଙ୍କର ଭିନ୍ନ ଭିନ୍ନ ରଚନାବଳୀରୁ ସୂଚନା ମିଳେ । ସେ ଥିଲେ ପ୍ରଭୁ ଜଗନ୍ନାଥଙ୍କ ଭକ୍ତିରେ ପ୍ରମତ୍ତ

ଜଣେ ବିଶିଷ୍ଟ ଭକ୍ତ । ସେ ଥିଲେ ଓଡ଼ିଆ ପଞ୍ଚସଖା ସାହିତ୍ୟ ଯୁଗର ଜଣେ ଧୂରୀଣ ସ୍ରଷ୍ଟା । ତାଙ୍କର ରଚନାବଳୀ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଗୋଟିଏ ଗୋଟିଏ ଅମୂଲ୍ୟ ସମ୍ପଦ ।

**ଭାବ ସମୁଦ୍ର**

ବଳରାମ ଦାସଙ୍କ ଭକ୍ତିଭାବର ଚରମ ଉଚ୍ଛ୍ୱାସ ହେଉଛି 'ଭାବ ସମୁଦ୍ର' ଗ୍ରନ୍ଥ । ଏଥିରେ ଭଗବାନ ଜଗନ୍ନାଥଙ୍କଠାରେ ଭକ୍ତର ଅଭିମାନ ପସରାକୁ ଉଜାଡ଼ି ଦେଇଥିବାର ଚିତ୍ର ପ୍ରଦତ୍ତ । ଗୁଣ୍ଡିଚା ଯାତ୍ରା ଦିନ ନନ୍ଦିଘୋଷ ଉପରେ ପ୍ରଭୁଙ୍କୁ ଦର୍ଶନ କରିବାକୁ ଗଲାବେଳେ ସେବକମାନଙ୍କ ଦ୍ୱାରା ବଳରାମ ଅପମାନିତ ଓ ଲାଞ୍ଛିତ ହେଲେ । ଅପମାନ ସହ୍ୟ କରି ନପାରି ବଳରାମ ବାଙ୍କି ମୁହାଣ ସମୁଦ୍ର ତଟରେ ବାଲିରଥ ନିର୍ମାଣ କରି ପ୍ରଭୁଙ୍କୁ ତହିଁରେ ବିଜେ କରିବାପାଇଁ ଆକୁଳ କଣ୍ଠରେ ପ୍ରାର୍ଥନା କଲେ । ପ୍ରଭୁ ଜଗନ୍ନାଥ ଭକ୍ତ ମନର ଆକୁଳ ପ୍ରାର୍ଥନାରେ ଅଥୟ ହୋଇପଡ଼ିଲେ । ନନ୍ଦିଘୋଷ ରଥ ତ୍ୟାଗ କରି ବଳରାମଙ୍କ ବାଲିରଥରେ ବିଜେ ହେଲେ । ଅନ୍ୟପକ୍ଷରେ ଶତଚେଷ୍ଟା କରି ବଡ଼ଦାଣ୍ଡରେ ନନ୍ଦିଘୋଷ ରଥକୁ ଚକେ ଗଡ଼େଇବାକୁ ସମର୍ଥ ହୋଇପାରି ନଥିବା ଗଜପତି ରାଜାଙ୍କ ସମେତ ଅସଂଖ୍ୟ ଭକ୍ତଗଣ ନିରାଶ ହୋଇପଡୁଥାନ୍ତି । ଏତିକିବେଳେ କାତର ରାଜା ପ୍ରତାପରୁଦ୍ର ଦେବଙ୍କୁ ସ୍ୱପ୍ନବାଣୀ ହେଲା, ବଳରାମଙ୍କ ପାଖକୁ ଯାଇ କ୍ଷମାଭିକ୍ଷା କରିବା ନିମନ୍ତେ । ପ୍ରଭୁଙ୍କ ଆଦେଶକୁ ଅବଜ୍ଞା ନକରି ନିମିଷକ ମଧରେ ରାଜା ଯାଇ କ୍ଷମାପ୍ରାର୍ଥନା କରିବାରୁ ପ୍ରଭୁ ଜଗନ୍ନାଥ ଫେରି ଆସିଲେ ନନ୍ଦିଘୋଷକୁ । ନନ୍ଦିଘୋଷ ରଥ ଘିଡ଼ି ଘିଡ଼ି ଗଡ଼ିବା ଆରମ୍ଭ କଲା ଭକ୍ତ ବଳରାମଙ୍କ ଜୟଧ୍ୱନିରେ ।

ବଳରାମ ଏହି ଗ୍ରନ୍ଥରେ ପ୍ରଭୁ ଜଗନ୍ନାଥଙ୍କ ପ୍ରତି ମନର ଅଭିମାନକୁ ଚମତ୍କାର ଭାବରେ ପରିପ୍ରକାଶ କରିଛନ୍ତି । ସେ ପ୍ରଭୁଙ୍କୁ ଭର୍ତ୍ସନା କରିଛନ୍ତି । ତାଙ୍କ ହୃଦୟର ଭାବ ସମୁଦ୍ର ଉଚ୍ଛୁଳି ଉଠିଛି । ସେ ଲେଖିଛନ୍ତି –

''ହରି ହୋ ତୋତେ ଆଶ୍ରା କରି କ୍ଷେତ୍ରେ ରହିଲି ।
ତୋତେ ଆଶ୍ରେ କରି ଫଳ ପାଇଲି ।।
ହରି ତୁ ବିଶ୍ୱାସଘାତକତା କଲୁ ।
ହରି ହୋ ନୃପତି ହାତେ ମାଡ଼ ମରାଇଲୁ ।।''

**ବଟ ଅବକାଶ**

ଏହା ଗୋଟିଏ କ୍ଷୁଦ୍ର ଭକ୍ତି ରସାତ୍ମକ ପୁସ୍ତିକା, ଯେଉଁଥିରେ ନୀଳାଚଳ ପତି ଶ୍ରୀଜଗନ୍ନାଥଙ୍କୁ ପ୍ରଭୁ ଶ୍ରୀରାମ ରୂପେ କଳନା କରିବା ସହ ଶ୍ରୀଜଗନ୍ନାଥଙ୍କ ଅବକାଶ ବର୍ଣ୍ଣନା ଏବଂ ସୁବର୍ଣ୍ଣଝରି ଧରି ବଳରାମଙ୍କ ଲଙ୍କାଯାତ୍ରା ପ୍ରଭୃତି ଘଟଣା ନାଟକୀୟ ଭାବେ ଦାଣ୍ଡି ବୃତ୍ତିରେ ବର୍ଣ୍ଣନା କରାଯାଇଛି । ପ୍ରଭୁ ଜଗନ୍ନାଥଙ୍କ କଳ୍ପବଟ ପାଖରେ ଅବକାଶ ନୀତି ନିମିତ୍ତ ମାର୍କଣ୍ଡେୟ ଖଟ ବୋହି ଆଣିବା, ଯମେଶ୍ୱର ଶେଯ ପାରିବା, ଲୋକେଶ୍ୱର ମୁତୁକାମାନ ଆଣିବା, ରାମେଶ୍ୱର କର୍ପୂର ରଜ ସିଞ୍ଚିବା, ହଟକେଶ୍ୱର ବଟେଶ୍ୱର ଓ ପଞ୍ଚମୁଖୀ ତ୍ରିଲୋଚନ ଚାନ୍ଦୁଆ ଟାଣିବା ଆଦି ବର୍ଣ୍ଣନା ପ୍ରଭୁ ଜଗନ୍ନାଥଙ୍କ ପ୍ରାଧାନ୍ୟ ବୃଦ୍ଧି କରିବାପାଇଁ ସମର୍ଥ ହୋଇପାରିଛି । ଖାଲି ସେତିକି ନୁହେଁ, ପ୍ରଭୁଙ୍କ ଲଙ୍କା ଯାତ୍ରାର ଆୟୋଜନ ଅବସରରେ ଋଷି ମହର୍ଷି, ସ୍ୱର୍ଗର ଗନ୍ଧର୍ବ, ଅପ୍ସରା, ବିଭିନ୍ନ ନଦନଦୀ ଓ ଜଗତର ସର୍ବ ଦେବଦେବୀ ଏହି ସେବାକୁ ପରମ ସୌଭାଗ୍ୟ ଭାବି ନିଜକୁ ସାମିଲ୍ କରିଛନ୍ତି । ଭଗବାନ ଜଗନ୍ନାଥଙ୍କୁ ସାରା ଜଗତର ନମସ୍ୟ ରୂପେ କବି ଉକ୍ତ ପୁସ୍ତକରେ ପ୍ରତିପାଦିତ କରିଛନ୍ତି ।

ପାହାନ୍ତି ଅବକାଶ ବେଳେ ସୁବର୍ଣ୍ଣଝରି ନଥିବା ଜାଣିପାରି ବଳରାମ ଦାସ ନିଜ ମଠକୁ ଯାଇ ଝରିଟିକୁ ଧରି ଆଣିଛନ୍ତି । ଏହା ଦେଖି ପାଳିଆ ସେବକମାନେ ତାଙ୍କୁ ଚୋର ବୋଲି ଭର୍ତ୍ସନା କରିବା ସହ ରାଜାଙ୍କ ନିକଟରେ ଦଣ୍ଡ ଦେବାପାଇଁ ଉପସ୍ଥିତ କରାଇଛନ୍ତି । ବଳରାମ ପୂର୍ବ ରାତିରେ ପ୍ରଭୁଙ୍କ ସହ ଲଙ୍କା ଭ୍ରମଣ କରିଥିବା ଓ ଏହାର ପ୍ରମାଣ ପ୍ରଭୁଙ୍କ ଗଳାରେ ଲମ୍ବିଥିବା କଳା ମଲ୍ଲୀଫୁଲ ହାର, ମୁକ୍ତାମାଳ ବୋଲି ପ୍ରକାଶ କରିବା ଫଳରେ ରାଜା ଏସବୁ ସ୍ୱଚକ୍ଷୁରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କବି ନିଜର ଅଲୌକିକ ଶକ୍ତି ପ୍ରଦର୍ଶନ ଅପେକ୍ଷା ଜଗନ୍ନାଥ ମହିମା କୀର୍ତ୍ତନକୁ ଉକ୍ତ ପୁସ୍ତିକାରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେଥିପାଇଁ କବିଙ୍କ ଲେଖନୀରୁ ଝରିଛି –

''ଏହି ଜଗନ୍ନାଥଟି ସର୍ବରୂପଧାରୀ ।
ଧର୍ମରକ୍ଷା ଅର୍ଥେ ଏ ଯେ ଦାରୁ କଳେବର ଧରି
ଶରଣ ସୋଦର ଯେ ଉଡୁଅଛି ବାନା ।
ଆରତ ଜନମାନଙ୍କୁ ଅଟନ୍ତି ବଜ୍ର ସେହ୍ନା ।।''

**ବେଦାନ୍ତ ସାର ଗୁପ୍ତ ଗୀତା**

ଜୀବ ପରମତତ୍ତ୍ୱ, ଆତ୍ମଜ୍ଞାନ, ପିଣ୍ଡ–ବ୍ରହ୍ମାଣ୍ଡ ତତ୍ତ୍ୱ, ଷଟ୍‌ଚକ୍ର ନିରୂପଣ ଇତ୍ୟାଦି ବହୁ ଗୂଢ଼ତତ୍ତ୍ୱର ଆଲୋଚନା ଏହି ଗ୍ରନ୍ଥରେ ରହିଛି ବୈଷ୍ଣବ ଧର୍ମର ଏହା ଗୋଟିଏ ମୂଲ୍ୟବାନ ସମ୍ପଦ । ଭକ୍ତିର ଉଦୟ ପାଇଁ ଆତ୍ମାକୁ ଚିହ୍ନିବା ନିହାତି ଆବଶ୍ୟକ । ଭକ୍ତିକୁ ଆୟତ କଲେ ଯୋଗକୁ ଆୟତ କରିହେବ । କବି ବଳରାମ ଭକ୍ତି ଓ ଯୋଗର ଗୁଣ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

''ଆତ୍ମା ଚିହ୍ନିଲେ ଭକ୍ତି ହୋୟେ ।
ଭକ୍ତିରୁ ଯୋଗ ଯେ ଉଦୟେ ।।
ଯେ ଭକ୍ତି ଯୋଗ ଯେ ଜାଣଇ ।
ସକଳ ଆତ୍ମା ସେ ଦେଖଇ ।।''

'ବେଦାନ୍ତ ସାରଗୁପ୍ତ ଗୀତା'ରେ ବଳରାମଙ୍କ ଭକ୍ତିଭାବର ଏକ ଅଲୌକିକ ଚିତ୍ର ଦେଖିବାକୁ ମିଳେ । ଜାତିରେ ଶୂଦ୍ର ହୋଇଥିବାରୁ ତାଙ୍କ ମୁଖରେ ବେଦାନ୍ତ ବ୍ୟାଖ୍ୟା ଶୁଣି ପଣ୍ଡିତମାନେ କ୍ରୋଧାନ୍ୱିତ ହୋଇପଡ଼ିଲେ । ରାଜା ପ୍ରତାପରୁଦ୍ର ଦେବ ଏହାଶୁଣି ବଳରାମଙ୍କୁ ଭର୍ତ୍ସନା କଲେ । ବଳରାମ ଏଥିରେ ଆତଙ୍କିତ ନ ହୋଇ ଉତ୍ତର ଦେଲେ, ଏପରିକି ସେ ଯାହା ମଥାରେ ହାତ ଦେବେ ସେ ମଧ୍ୟ ବେଦାନ୍ତ ଗାଇବ । ପରଦିନ ଏଥିପାଇଁ ସେ ପରୀକ୍ଷାରେ ଅବତୀର୍ଣ୍ଣ ହେଲେ । ପ୍ରଭୁ ଜଗନ୍ନାଥଙ୍କ କରୁଣା ଲାଭ କରି ମୂର୍ଖ ହରି ଦାସ ମଥାରେ ବଳରାମ ହାତ ଦେବାରୁ ସେ ଅନର୍ଗଳ ବେଦାନ୍ତ ଗାଇଲା । ଏଭଳି ଏକ ଅଲୌକିକ ଘଟଣା ପ୍ରଭୁ ଜଗନ୍ନାଥଙ୍କ ପ୍ରତି ବଳରାମଙ୍କ ହୃଦୟରେ ଥିବା ପ୍ରଗାଢ଼ ଭକ୍ତିର ଫଳ ବୋଲି ସେ ଉକ୍ତ ଗ୍ରନ୍ଥରେ ପ୍ରମାଣିତ କରିଛନ୍ତି ।

**ଲକ୍ଷ୍ମୀ ପୁରାଣ**

ବଳରାମ ଦାସଙ୍କର 'ଲକ୍ଷ୍ମୀ ପୁରାଣ' ଗୋଟିଏ ଅମୂଲ୍ୟ ପୁସ୍ତକ । ଦୀର୍ଘ ପାଞ୍ଚଶତ ବର୍ଷ ତଳେ ରଚିତ ଏହି ପୁରାଣ ଏବେ ମଧ୍ୟ ଅମଳିନ । ଏହାର ଉପଯୋଗିତା ଉତ୍କଳର ଘରେ ଘରେ । ଗୁରୁବାର ଦିନ ମା' ଲକ୍ଷ୍ମୀଙ୍କ ପୂଜା–ଆରାଧନା ପାଇଁ ଏହି ପୁରାଣ ପାଠ କରି କୁଳବଧୂ ଆଶୀର୍ବାଦ ଭିକ୍ଷା କରିଥାଏ । ତା' ସଂସାର ସୁଖମୟ ହେଉ । ଧନ୍ୟଧାନ୍ୟରେ ପୂରି ଉଠୁ । ଅଭାବ କଷଣ ଦୂର ହେଉ – ଏହି କାମନା କରି ନାରୀଟିଏ ଲକ୍ଷ୍ମୀଙ୍କ ପାଇଁ ବ୍ରତ କରେ । ଜନପ୍ରିୟ ଏହି ପୁସ୍ତକରେ ଜାତିଭେଦ ବିରୁଦ୍ଧରେ ପ୍ରଚଣ୍ଡ ଭାବେ ସ୍ୱର ଉତ୍ତୋଳନ କରାଯାଇଛି । ଚଣ୍ଡାଳୁଣୀ ଘରେ ନୈବେଦ୍ୟ ଗ୍ରହଣ କରିଥିବାରୁ ବଳଭଦ୍ରଙ୍କ ଆଦେଶରେ ପ୍ରଭୁ ଜଗନ୍ନାଥ ଲକ୍ଷ୍ମୀଙ୍କ ଶ୍ରୀମନ୍ଦିରରେ ପ୍ରବେଶ କରିବାକୁ ବାରଣ କରିଥିଲେ । ପରେ ଲକ୍ଷ୍ମୀଙ୍କୁ ତ୍ୟାଗ କରି ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ନାନା ଦୁଃଖ କଷ୍ଟ ଓ ଯାତନା ଭୋଗ କଲେ । ଲକ୍ଷ୍ମୀଛଡ଼ା ଦୁଇଭାଇ କ୍ଷୁଧାତୁର ଅବସ୍ଥାରେ ଅସହାୟ ହୋଇ ସମୁଦ୍ର ତଟରେ ନିର୍ମିତ ଲକ୍ଷ୍ମୀଙ୍କ ଉଆସରେ ସୁସ୍ୱାଦୁ ବ୍ୟଞ୍ଜନ ଭକ୍ଷଣ କରିଥିଲେ । ନିଜର ଭୁଲ୍ ବୁଝିପାରି ଦୁଇଭାଇ ଲକ୍ଷ୍ମୀଙ୍କୁ ଶ୍ରୀମନ୍ଦିର ଫେରାଇ ନେବାକୁ ଇଚ୍ଛାପ୍ରକାଶ କଲେ । ଚାଣ୍ଡାଳ ବ୍ରାହ୍ମଣ ଭେଦକୁ ପ୍ରଶୟ ନଦେବା ପାଇଁ ଜଗନ୍ନାଥ ସତ୍ୟ କରିବାରୁ ଲକ୍ଷ୍ମୀ ଶ୍ରୀମନ୍ଦିର ଫେରିଲେ । ଲକ୍ଷ୍ମୀଙ୍କର ସର୍ତ୍ତ ସଂପର୍କରେ କବି ଉଲ୍ଲେଖ କରିଛନ୍ତି –

''ଚଣ୍ଡାଳ୍କୁ ବ୍ରାହ୍ମଣ ଯାଏ ଖୁଆଖୋଇ ହେବେ ।  
ସମସ୍ତେ ଖାଇଣ ହସ୍ତେ ଜଳେ ନ ଧୋଇବେ ।।  
ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ ।  
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।।''

ଏହାବ୍ୟତୀତ କବିଙ୍କ ସର୍ବୋତ୍କୃଷ୍ଟ ଗ୍ରନ୍ଥ 'ଜଗମୋହନ ରାମାୟଣ'ରେ ପୂର୍ବଜନ୍ମରେ ସେ ଶ୍ରୀରାମ ଭକ୍ତ ଥିବା ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ ରାମଚନ୍ଦ୍ର ଯିଏ, ଜଗନ୍ନାଥ ସିଏ । ଦିହୁଡ଼ି ଧରି ସେ ରାମାୟଣର ଆମୂଳଚୂଳ ଘଟଣା ଦେଖିଛନ୍ତି । ପ୍ରଭୁ ଶ୍ରୀରାମଙ୍କ ଆଜ୍ଞାରେ ସେ କଳିଯୁଗରେ ଶୂଦ୍ରମୁନି ବଳରାମ ଦାସ ଭାବରେ ଜନ୍ମଗ୍ରହଣ କରିଛନ୍ତି । ଲଙ୍କାକାଣ୍ଡରେ ସେ ଏହାର ସୂଚନା ଦେଇଛନ୍ତି –

''ମୁହିଁ ବଳରାମ ଦାସ ରାମାୟଣ ଅବତାରେ ଥିଲି  
ଦିହୁଡ଼ି ଧରିଣ ମୁଁ ସମସ୍ତ ଦେଖିଲି ।  
ମତେ ଆଜ୍ଞା କଲେ ମର୍ତ୍ତ୍ୟପୁର ଯିବୁ ।  
ଶୂଦ୍ର ମୁନି ହୋଇଣ ଜନମିବୁ ।।''

ଏହି ଗ୍ରନ୍ଥଟି ଓଡ଼ିଆରେ ସର୍ବପ୍ରଥମ ପୂର୍ଣ୍ଣାଙ୍ଗ ରାମାୟଣ । ଓଡ଼ିଆ ସାହିତ୍ୟ ଭଣ୍ଡାରର ଏହି ଅମୂଲ୍ୟ କୃତି ସାରଳା ଦାସଙ୍କ ମହାଭାରତ ଓ ଜଗନ୍ନାଥ ଦାସଙ୍କ ଭାଗବତ ଭଳି ବେଶ୍ ଲୋକପ୍ରିୟ । ବାଲ୍ମିକୀଙ୍କ ସଂସ୍କୃତ ରାମାୟଣର କଥାବସ୍ତୁକୁ ନେଇ ଓଡ଼ିଆରେ ରଚିତ ଏହି ମହାକାବ୍ୟ ଲାଗି କବି ବଳରାମ ମହିମାମଣ୍ଡିତ ହୋଇଛନ୍ତି ।

ସେହିପରି 'କାନ୍ତ କୋଇଲି', 'କାକପୋଇ', 'ଛ ଚଉପଦୀ', 'ଅମରକୋଷ ଗୀତା', 'ଜ୍ଞାନ ଚୂଡ଼ାମଣି', 'ପାଦ ବର୍ଣ୍ଣନା', 'ବ୍ରହ୍ମ ପୁରାଣ', 'ବେଢ଼ା ପରିକ୍ରମା', 'ଦୀପ୍ତିସାର ଗୀତା', 'ବ୍ରହ୍ମାଣ୍ଡ ଭୂଗୋଳ', 'ମନୁଗୀତା', 'ଶ୍ରୀମଦ୍ ଭାଗବତ ଗୀତା', 'ହନୁମାନ ଚଉତିଶା', 'ସପ୍ତାଙ୍ଗ ଯୋଗ ସାରଟୀକା', 'ପଣସ ଚୋରି', 'ମୃଗୁଣୀ ସ୍ତୁତି', 'ଟୀକା ମହାଭାରତ', 'ଗଣେଶ ବିଭୂତି ଟୀକା', 'ବିରାଟ ଗୀତ', 'ଉଦ୍ଧବ ଗୀତା', 'କର୍ଣ୍ଣଦାନ', 'କମଳଲୋଚନ ଚଉତିଶା', 'ଛତ୍ରିଶ ଗୁପ୍ତଗୀତା' ଆଦି ବଳରାମଙ୍କ ଅମର କୃତି । ପ୍ରତ୍ୟେକ କୃତିରେ କବି ଯୋଗ ଓ ଧର୍ମ ଦର୍ଶନର ବ୍ୟାଖ୍ୟା କରି ସମାଜକୁ ଆଧ୍ୟାତ୍ମିକ ଦିଗ୍‌ଦର୍ଶନ ଦେଇଛନ୍ତି । ଭକ୍ତି ଓ ଭଗବାନଙ୍କ ଜୟଗାନ ହୋଇଛି କବି ବଳରାମଙ୍କ ସବୁ ସୃଷ୍ଟିର ମୂଳ ଲକ୍ଷ୍ୟ । ହରି ଭକ୍ତିରେ ତନ୍ମୟ କବିଙ୍କୁ ଶ୍ରୀଚୈତନ୍ୟ 'ମତ୍ତ ବଳରାମ' ଆଖ୍ୟା ପ୍ରଦାନ କରିଥିଲେ । ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଭାବରେ ପରିଚିତ ବଳରାମ ଦାସ ଜଣେ କାଳଜୟୀ କବି ଭାବରେ ସର୍ବଜନ ସ୍ୱୀକୃତ । ତାଙ୍କ ଭକ୍ତି ଓ କୃତିର ପଟ୍ଟାନ୍ତର ନାହିଁ ।

ନାଗା ବଗିଚା,  
ପ୍ରଥମ ଗଳି,  
ମଧୁବନ, ପୁରୀ–୨

# ସାଧୁସନ୍ଥଙ୍କ ଲୀଳାକ୍ଷେତ୍ର ଶ୍ରୀକ୍ଷେତ୍ର

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ଭାରତର ମୁଖ୍ୟ ଚାରି ଧାମ ମଧ୍ୟରୁ ଶ୍ରୀକ୍ଷେତ୍ର ବା ଜଗନ୍ନାଥ ଧାମ ଅନ୍ୟତମ । ସୁତରାଂ ଯୁଗେ ଯୁଗେ ଶ୍ରୀଜଗନ୍ନାଥଙ୍କ ଚିନ୍ତା ଓ ଚେତନାରେ ପ୍ରଭାବିତ ବହୁ ବିଦ୍ୱାନ୍ ସିଦ୍ଧ ସାଧକ ଶ୍ରୀକ୍ଷେତ୍ରକୁ ଆଗମନ କରିଛନ୍ତି । କେବଳ ଓଡ଼ିଶା କାହିଁକି ସମଗ୍ର ବିଶ୍ୱରେ ମଧ୍ୟ ଶ୍ରୀଜଗନ୍ନାଥ ପ୍ରସିଦ୍ଧି ଲାଭ କରିଛନ୍ତି । ଆଚାର୍ଯ୍ୟ ଶଙ୍କର, ରାମାନୁଜ, ଶ୍ରୀଚୈତନ୍ୟ, ନାନକ ଓ କବୀର ଆଦି ବହୁ ସାଧୁ ସନ୍ଥ ପୁରୀଧାମକୁ ଆସିଛନ୍ତି ଏବଂ ଶ୍ରୀଜଗନ୍ନାଥଙ୍କର ମହିମାରେ ମହିମାନ୍ୱିତ ହୋଇଛନ୍ତି । ଏପରିକି କେହି କେହି ଆଲୋଚକ ପ୍ରଭୁ ଯୀଶୁ ମଧ୍ୟ ଓଡ଼ିଶାକୁ ଆସିଥିଲେ ବୋଲି ମତବ୍ୟକ୍ତ କରିଛନ୍ତି । ଏହି ଉକ୍ତିର ସତ୍ୟତା ଥାଉ ବା ନଥାଉ, ଏକଥା ସ୍ୱୀକାର୍ଯ୍ୟ ଯେ, ଜଗନ୍ନାଥ ଧର୍ମର ଉଦାରବାଦ ଦ୍ୱାରା ବହୁ ସାଧୁସନ୍ଥ ପ୍ରଭାବିତ ହୋଇଛନ୍ତି । ଭାଗବତକାର ଜଗନ୍ନାଥ ଦାସ ଯଥାର୍ଥରେ ଏହି କଥା କହିଛନ୍ତି–



‘ଦେଖ ଏ ଯେତେ ନଦନଦୀ
ପ୍ରବାହେ ମିଳନ୍ତି ଜଳଧି ।
ଲବଣ ଜଳେ ସେ ମିଶନ୍ତି
ନିଜ ସ୍ୱଗୁଣ ପାଶୋରନ୍ତି ।’

ବାସ୍ତବରେ ସାଗରାଭିମୁଖୀ ନଦୀ ସାଗର ସହ ମିଳିତ ହେଲାପରେ ଯେପରି ସାଗରର ଲବଣାକ୍ତ ଜଳ ମଧ୍ୟରେ ନିଜର ସତ୍ତା ହରାଇ ବସେ, ସେହିପରି ଭାରତର ସକଳ ପ୍ରାନ୍ତରର ଧର୍ମୀୟ ଚେତନା ଶ୍ରୀଜଗନ୍ନାଥ ଧର୍ମ ବା ସଂସ୍କୃତି ମଧ୍ୟରେ ନିଜ ସତ୍ତା ହରାଇ ବସିଛି । ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତ, ରାମାନୁଜଙ୍କର ବିଶିଷ୍ଟାଦ୍ୱୈତ, ଶ୍ରୀଚୈତନ୍ୟଙ୍କର ଅଚିନ୍ତ୍ୟ ଭେଦାଭେଦ ଓ ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧାଦ୍ୱୈତ ଚିନ୍ତାଧାରାର ମହାମିଳନ ଘଟିଛି ଶ୍ରୀଜଗନ୍ନାଥ ଧର୍ମ ବା ସଂସ୍କୃତି ଭିତରେ । ଶ୍ରୀଜଗନ୍ନାଥ ଧର୍ମ ଉପରେ ନିଜର ମତବ୍ୟକ୍ତ କରି ପଣ୍ଡିତ ଗୋପବନ୍ଧୁ ଦାସ କହନ୍ତି– ‘ବଦ୍ରିନାଥ, ରାମନାଥ, ଦ୍ୱାରିକାନାଥ ସ୍ଥାନ ବିଶେଷର ନାଥ ମାତ୍ର ଜଗତର ନାଥ ନୁହନ୍ତି । ପ୍ରାଚୀନ କାଶୀଧାମରେ ବିଶ୍ୱନାଥ ଅଛନ୍ତି କିନ୍ତୁ ସମଗ୍ର ବିଶ୍ୱକୁ ଆଲିଙ୍ଗନ କରିବାର ଉଦାରତା ସେଠାରେ ନାହିଁ । ଏହି ଉଦାର ମାନବିକତା ଓ ମହାଭାରତ ଜାତୀୟତାର ବୀଜ ନୀଳାଚଳ ଧାମରେ ରହିଛି ବୋଲି ତ କାଳେ କାଳେ ଭାରତର ଦିଗଦିଗନ୍ତରୁ ସିଦ୍ଧ ସାଧକ ଓ ମହାପୁରୁଷମାନେ ଆକୃଷ୍ଟ ହୋଇ ଆସିଛନ୍ତି ।’

♦ ♦ ♦

ବର୍ତ୍ତମାନ ଆମେ ବିଭିନ୍ନ ପର୍ଯ୍ୟାୟରେ ଶ୍ରୀକ୍ଷେତ୍ରକୁ ଆଗମନ କରିଥିବା ସାଧୁସନ୍ଥଙ୍କ ବିଷୟରେ ଆଲୋଚନା କରିବା।

### ଆଦି ଶଙ୍କରାଚାର୍ଯ୍ୟ

ବିଶ୍ୱ ପ୍ରସିଦ୍ଧ ଭାରତୀୟ ଦାର୍ଶନିକ, ଅଦ୍ୱୈତବାଦର ବିଶିଷ୍ଟ ପ୍ରବକ୍ତା ଶଙ୍କରାଚାର୍ଯ୍ୟ ତାଙ୍କ ଗୁରୁଙ୍କ ଆଦେଶରେ ଆକୁମାରୀ ହିମାଚଳ ପଦବ୍ରଜରେ ଭ୍ରମଣ କରି ବୌଦ୍ଧ ଓ ପୂର୍ବ ମୀମାଂସା ମତ ଖଣ୍ଡନ କରି ବେଦାନ୍ତ ତଥା ଔପନିଷିଦିକ ବିଶୁଦ୍ଧ ବ୍ରହ୍ମଜ୍ଞାନର ମହିମା ପ୍ରଚାର ପୂର୍ବକ ବୈଦିକ ଧର୍ମ ଓ ଅଦ୍ୱୈତବାଦର ପ୍ରଚାର କରିବାରେ ସମର୍ଥ ହୋଇଥିଲେ। ଏହି ପଦବ୍ରଜ ବେଳେ ସେ ନୀଳାଚଳ ଧାମରେ ଉପସ୍ଥିତ ହୋଇ ସେଇ ଜଗନ୍ନାଥଙ୍କ ମହତ୍ତ୍ୱ ଉପଲବ୍ଧି କରି ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିଲେ।

ଭାରତୀୟ ଧାର୍ମିକ ବିବର୍ତ୍ତନରେ ଶଙ୍କରାଚାର୍ଯ୍ୟଙ୍କ ସ୍ଥାନ ଅଦ୍ୱିତୀୟ। ଐତିହାସିକମାନେ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ସପ୍ତମ ଶେଷଭାଗ ବା ଅଷ୍ଟମ ଶତାବ୍ଦୀର ଆରମ୍ଭ ବୋଲି କହୁଥିଲା ବେଳେ ଏକଥା ଶୁଣାଯାଏ ଯେ, ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ସ୍ଥାପିତ ଗୋବର୍ଦ୍ଧନ ମଠରୁ ପ୍ରାପ୍ତ 'ମଠାମ୍ନାୟ ଗ୍ରନ୍ଥ'ରେ ଏକଥା ଉଲ୍ଲେଖ ଅଛି ଯେ, ଆଦି ଶଙ୍କରାଚାର୍ଯ୍ୟ ୪୮୪ ମସିହାରେ ତାଙ୍କ ପ୍ରଥମ ଶିଷ୍ୟ ପଦ୍ମପାଦଙ୍କୁ ଆଚାର୍ଯ୍ୟ ରୂପେ ଅଭିଷିକ୍ତ କରି ପୁରୀ ଗୋବର୍ଦ୍ଧନ ମଠର ଦାୟିତ୍ୱ ଦେଇଥିଲେ।

ଶଙ୍କରଙ୍କ ରଚିତ 'ଶ୍ରୀଜଗନ୍ନାଥାଷ୍ଟକମ୍' ଜଗନ୍ନାଥଙ୍କ ସ୍ତୁତି। ଏହାର ଭାବ, ଭାଷା ଓ ଛନ୍ଦରେ ମୁଗ୍ଧ ହୋଇ ଶ୍ରୀଚୈତନ୍ୟଦେବ ଭାବ ବିହ୍ୱଳ ହୋଇ ଏହାକୁ ପ୍ରତ୍ୟହ ଗାନ କରୁଥିଲେ।

### ପଦ୍ମପାଦ

ପୂର୍ବରୁ ଆମେ ଉଲ୍ଲେଖ କରିଛୁ ଯେ, ଶଙ୍କରଙ୍କର ପ୍ରଥମ ଶିଷ୍ୟ ହେଉଛନ୍ତି ପଦ୍ମପାଦ। ସେ ହେଉଛନ୍ତି ଗୋବର୍ଦ୍ଧନ ପୀଠର ପ୍ରଥମ ଆଚାର୍ଯ୍ୟ । ମାଦଳାପାଞ୍ଜି ଅନୁଯାୟୀ ଶଙ୍କରାଚାର୍ଯ୍ୟ ଓ ତାଙ୍କର ପ୍ରଥମ ଶିଷ୍ୟ ପଦ୍ମପାଦାଚାର୍ଯ୍ୟ ବା ପଦ୍ମବାଦଙ୍କ ପ୍ରତିକୃତି ଶ୍ରୀଜଗନ୍ନାଥଙ୍କ ରତ୍ନ ସିଂହାସନରେ ସ୍ଥାପନା କରାଯାଇ ଗଜପତି ରାଜା ଦିବ୍ୟସିଂହ ଦେବ (୧୭୮୨–୧୭୯୩)ଙ୍କ ପର୍ଯ୍ୟନ୍ତ ପୂଜିତ ହେଉଥିଲା ।

### ରାମାନୁଜ

ବିଶିଷ୍ଟ ଦ୍ୱୈତବାଦର ପ୍ରଚାରକ ଶ୍ରୀ ରାମାନୁଜ ସମ୍ଭବତଃ ୧୧୧୨ ମସିହାରେ ପୁରୀକୁ ଆଗମନ କରିଥିଲେ। ଶଙ୍କରାଚାର୍ଯ୍ୟ ବୌଦ୍ଧ ବିରୋଧୀ ଥିବାବେଳେ ରାମାନୁଜ ଜୈନ ବିରୋଧୀ ଥିଲେ। ସେହିପରି ଶଙ୍କର ଅଦ୍ୱୈତବାଦୀ ଥିବାବେଳେ ରାମାନୁଜ ତାଙ୍କ ମତବାଦକୁ ବିରୋଧ କରି ବେଦାନ୍ତ, ଗୀତା ଓ ଭାଗବତର ସମନ୍ୱୟ ମୂଳକ ଭାଷ୍ୟ ରଚନା ଯୁକ୍ତ ବିଶିଷ୍ଟ ଦ୍ୱୈତବାଦର ପ୍ରଚାରକ ଥିଲେ। ଶଙ୍କର ଉପନିଷଦର ପ୍ରୟୋଗାତ୍ମକ ଦିଗ ଉପରେ ଆଲୋକପାତ କରି ନିଜ ସିଦ୍ଧାନ୍ତକୁ ପ୍ରତିପାଦିତ କରିବାକୁ ଚେଷ୍ଟିତ ଥିବାବେଳେ ରାମାନୁଜ ଆଧ୍ୟାତ୍ମିକତା ତଥା ଧର୍ମକୁ ହୃଦୟ ସ୍ପର୍ଶୀ କରିବାକୁ ପ୍ରୟାସ କରିଥିଲେ। ଶ୍ରୀମନ୍ଦିରରେ ନାନା ସଂସ୍କାର ଆଣିବା ପାଇଁ ରାମାନୁଜ ପ୍ରଚେଷ୍ଟା କରିଥିଲେ ଏବଂ ଏଥିପାଇଁ ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ। ଏସବୁ ସତ୍ତ୍ୱେ ତାଙ୍କ ପ୍ରଭାବରେ ବିମଳା ଓ ଲକ୍ଷ୍ମୀଙ୍କ ସ୍ୱତନ୍ତ୍ର ମନ୍ଦିର ପ୍ରତିଷ୍ଠା ହେଲା। ଏମାର ମଠ ସମେତ ସେ ଶ୍ରୀକ୍ଷେତ୍ରରେ ଛୋଟ ବଡ଼ ପଚାଶଟି ମଠ ପ୍ରତିଷ୍ଠା କରାଇଥିବା ଜଣାଯାଏ। ସେ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ରୂପେ ଜ୍ଞାନ କରୁଥିଲେ। ରାଜା ଚୋଡଗଙ୍ଗ ଦେବ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ।

### ନିମ୍ବାର୍କାଚାର୍ଯ୍ୟ

ରାଧାକୃଷ୍ଣ ଭକ୍ତିଧାରା ପ୍ରବାହରେ ନିମ୍ବାର୍କାଚାର୍ଯ୍ୟଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ। ମଥୁରା ଅଞ୍ଚଳରେ ସନକ ଜାତିର ପ୍ରଚାର ଓ ପ୍ରସାର ପରେ ତାଙ୍କର ପୁରୀ ଆଗମନ। ସେ ରାଧାବଲ୍ଲଭ ମଠ ସ୍ଥାପନ କରିଥିଲେ।

### ମାଧବାଚାର୍ଯ୍ୟ

ମାଧବାଚାର୍ଯ୍ୟ ଶୁଦ୍ଧ ଦ୍ୱୈତାଦ୍ୱୈତ୍ୟ ବାଦର ପ୍ରବକ୍ତା। ଶ୍ରୀକ୍ଷେତ୍ରରେ ବଳଭଦ୍ର ଛତାମଠ ଏହାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା। ସେ ଏହି ମଠରେ ଅବସ୍ଥାନ କରୁଥିବା ବେଳେ 'ଭକ୍ତି ରତ୍ନାବଳୀ' ନାମକ ଏକ ଉତ୍କୃଷ୍ଟ ଗ୍ରନ୍ଥ ରଚନା କରିଥିଲେ।

### ମାଧବେନ୍ଦ୍ର ପୁରୀ

ମାଧବେନ୍ଦ୍ର ପୁରୀ ବଙ୍ଗଳାର ଜଣେ ସନ୍ନ୍ୟାସୀ ଥିଲେ। ସେ ପ୍ରଥମେ ବୃନ୍ଦାବନରେ ଗୋପାଳଜୀଙ୍କ ପୂଜା ଆରାଧନାରେ ନିମଗ୍ନ ଥିଲେ। ପରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ଦାରୁବ୍ରହ୍ମ ଜଗନ୍ନାଥଙ୍କଠାରେ ନିଜର ପ୍ରିୟ ବୃନ୍ଦାବନ ଚନ୍ଦ୍ରଙ୍କ ସାନ୍ନିଧ୍ୟ ପାଇ ବିହ୍ୱଳିତ ହୋଇଥିଲେ। ପୁରୀରେ ଅବସ୍ଥାନ ସମୟରେ ସେ ଏକ ମଠ ସ୍ଥାପନ କରି ଶ୍ରୀଜଗନ୍ନାଥଙ୍କ ସେବା ପୂଜାରେ ନିଜକୁ ନିୟୋଜିତ କରିଥିଲେ। ଏହା ଆଜି ବଡ଼ଛତା ମଠ ଭାବେ ଗୌଡୀୟ ବୈଷ୍ଣବ ପୀଠ ରୂପେ ଖ୍ୟାତ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶ୍ରୀଚୈତନ୍ୟଦେବ ମାଧବେନ୍ଦ୍ର ପୁରୀଙ୍କ ପ୍ରବର୍ତ୍ତିତ ଭକ୍ତିବାଦର ଏକ ପ୍ରମୁଖ ପ୍ରଚାରକ ଥିଲେ। ମାଧବେନ୍ଦ୍ର ପୁରୀଙ୍କ ଚାରିଜଣ ପ୍ରଧାନ ଶିଷ୍ୟଙ୍କ ନାମ ହେଲା– (୧) ଈଶ୍ୱର ପୁରୀ, (୨) କେଶବ ଭାରତୀ, (୩) ଅଦ୍ୱୈତ ଏବଂ (୪) ନିତ୍ୟାନନ୍ଦ। ଏକଥା ସମସ୍ତେ ଜାଣନ୍ତି ଯେ ସ୍ୱୟଂ ନିତ୍ୟାନନ୍ଦ ଶ୍ରୀଚୈତନ୍ୟଙ୍କର ସହୋଦର ଥିଲେ। ଶ୍ରୀଚୈତନ୍ୟ ଈଶ୍ୱରପୁରୀ ଓ କେଶବ ଭାରତୀଙ୍କଠାରୁ ଯଥାକ୍ରମେ ଦୀକ୍ଷା ଓ ସନ୍ନ୍ୟାସ ଗ୍ରହଣ କରିଥିଲେ।

**ଶ୍ରୀଚୈତନ୍ୟଦେବ**

ନାମ ସଂକୀର୍ତ୍ତନର ମୁଖ୍ୟ ପ୍ରବକ୍ତା ଶ୍ରୀଚୈତନ୍ୟ ଦେବ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ମାୟାବାଦ ପରଂପରାର ଜଣେ ଆଦର୍ଶ ଅନୁଗାମୀ ଥିଲେ। ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀଚୈତନ୍ୟ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ଶ୍ରୀକ୍ଷେତ୍ରରେ ପଦାର୍ପଣ କଲେ। ଶ୍ରୀକ୍ଷେତ୍ରରେ ଜଗନ୍ନାଥ ଦର୍ଶନ କରୁ କରୁ ଭାବ ବିହ୍ୱଳ ହୋଇ ଅଚେତ ହୋଇଗଲେ।

ଶ୍ରୀଚୈତନ୍ୟ ତାଙ୍କ ଶେଷ ଜୀବନର ୧୮ ବର୍ଷ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ। ଏହି ଅଠର ବର୍ଷ ମଧ୍ୟରୁ ୧୨ ବର୍ଷ ତାଙ୍କର ଜାଗରଣ ଓ ସୁସୁପ୍ତି ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା। ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥଙ୍କୁ ପରମ ପୁରୁଷ ଶ୍ରୀକୃଷ୍ଣ ରୂପେ ଗ୍ରହଣ କରିଥିଲେ। ଅହୋରାତ୍ର ଧ୍ୟାନରତ ଶ୍ରୀଚୈତନ୍ୟ ମାତ୍ର ୪୮ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ। କେତେକଙ୍କ ମତରେ ସେ ସ୍ୱୟଂ ଜଗନ୍ନାଥଙ୍କଠାରେ ଲୀନ ହୋଇଗଲେ। ମାତ୍ର ଆଉ କେହି କେହି କହନ୍ତି ଯେ, ଶ୍ରୀଚୈତନ୍ୟ ଶ୍ରୀମନ୍ଦିରସ୍ଥ ୨୨ ପାହାଚରେ ନୃତ୍ୟ କରି ଯାଉ ଯାଉ ତାଙ୍କ ଗୋଡର ବୁଢ଼ା ଆଙ୍ଗୁଠି କ୍ଷତବିକ୍ଷତ ହୋଇଗଲା ଏବଂ ସେ ଧନୁଷ୍ଟଙ୍କାର ରୋଗରେ ପୀଡିତ ହୋଇ ଇହଲୀଳା ସମ୍ବରଣ କଲେ। ତେବେ ସେ ଯାହା ହେଉନା କାହିଁକି ଏକଥା ସତ୍ୟ ଯେ ସେ ଜଗନ୍ନାଥଙ୍କ ଦର୍ଶନରେ ଜପ, ତପ, ଆରାଧନା ଓ କୀର୍ତ୍ତନରେ ସମୟ ବିତାଇ ଦେଉଥିଲେ।

ଶ୍ରୀକ୍ଷେତ୍ରରେ ରାୟ ରାମାନନ୍ଦ ଓ ଓଡ଼ିଆ ଭାଗବତର ସ୍ରଷ୍ଟା ଜଗନ୍ନାଥ ଦାସ ତାଙ୍କ ପରମ ବନ୍ଧୁ ଥିଲେ। ଶ୍ରୀମନ୍ଦିରରେ ବଟଗଣେଶଙ୍କ ସମ୍ମୁଖରେ ଜଗନ୍ନାଥ ଦାସ ଭାଗବତ ପାଠ କରୁଥିବା ସମୟରେ ତାଙ୍କୁ ଦେଖି ଶ୍ରୀଚୈତନ୍ୟ ମୁଗ୍ଧ ହୋଇ ଜଗନ୍ନାଥ ଦାସଙ୍କୁ ଅତିବଡୀ ବୋଲି ସମ୍ବୋଧନ କରିଥିଲେ। ଏହା ଶ୍ରୀଚୈତନ୍ୟଙ୍କ ସହ ଆଗତ କିଛି ଗୌଡୀୟ ବୈଷ୍ଣବଙ୍କୁ ଭଲ ଲାଗିଲା ନାହିଁ। କବି ଏ ବିଷୟରେ ସୂଚନା ଦେଇ କହନ୍ତି, 'ଅତିବଡୀ ବୋଲି ଡାକନ୍ତେ, ବୈଷ୍ଣବେ ଦୁଃଖ କଲେ ଚିତ୍ତେ।' କହିବା ବାହୁଲ୍ୟ ଯେ, ଏହି ବୈଷ୍ଣବମାନେ ଶ୍ରୀଜଗନ୍ନାଥଙ୍କୁ ଛାଡି ପଳାଇ ଯାଇଥିଲେ ମଧ୍ୟ ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସଙ୍କ ବନ୍ଧୁତାରେ କୌଣସି ଭଙ୍ଗା ପଡି ନଥିଲା।

**ବଲ୍ଲଭାଚାର୍ଯ୍ୟ**

ମୁଷ୍ଟିମାର୍ଗୀୟ ସମ୍ପ୍ରଦାୟର ପ୍ରଖ୍ୟାତ ସନ୍ଥ ତଥା ପ୍ରତିଷ୍ଠାତା ବଲ୍ଲଭାଚାର୍ଯ୍ୟ ପୁରୀକୁ ଆଗମନ କରିଥିଲେ। ଶ୍ରୀକ୍ଷେତ୍ର ବଡ଼ଦାଣ୍ଡର ଅନତି ଦୂରରେ ଅବସ୍ଥିତ ଗୋକୁଳ ମଠ ବା ଗୁଜୁରାଟୀ ମଠ ବଲ୍ଲଭାଚାର୍ଯ୍ୟଙ୍କ ବୈଠକୀ ଥିଲା।

**ସନ୍ଥ କବୀର**

କବୀର ନିର୍ଗୁଣ ପରଂବ୍ରହ୍ମବାଦୀ ଥିଲେ। ଶିଷ୍ୟ ବଲ୍ଲଭ ଦାସଙ୍କର ନିମନ୍ତ୍ରଣକ୍ରମେ ସନ୍ଥ କବୀର ପୁରୀକୁ ପଦବ୍ରଜରେ ଆସିଥିଲେ। କବୀର ଭାରତବର୍ଷର ଗୁରୁବାଦରେ ବିଶ୍ୱାସୀ ଥିଲେ। ତାଙ୍କ ନିଜ ଭାଷାରେ କହିବାକୁ ଗଲେ 'ଗୁରୁ ଗୋବିନ୍ଦ ଦୌ ଖଡେ, କାକେ ଲାଗୁ ପାଏ, ବଲିହାରୀ ଗୁରୁ ଆପ୍‌ନେ, ଗୋବିନ୍ଦ ଦିୟା ବତାୟ।' ଏହାର ଅର୍ଥ ହେଲା– 'ଗୁରୁ ଓ ଗୋବିନ୍ଦ ଅର୍ଥାତ୍ ଭଗବାନ ଉଭୟ ଦଣ୍ଡାୟମାନ। କାହାକୁ ଆମେ ପ୍ରଣାମ କରିବା ? ଗୁରୁଙ୍କୁ ହିଁ ପ୍ରଥମେ ପ୍ରଣାମ କରିବା କାରଣ ସିଏ ହିଁ ଗୋବିନ୍ଦଙ୍କୁ ଚିହ୍ନାଇ ଦିଅନ୍ତି।'

ନିର୍ଗୁଣ ପରଂବ୍ରହ୍ମବାଦୀ କବୀର ଆସିଥିଲେ ସଗୁଣ ଦାରୁବ୍ରହ୍ମଙ୍କ ପୀଠକୁ। କୁହାଯାଏ ଯେ, କବୀର ନିଜ ଧ୍ୟାନ ବଳରେ ମାଡି ଆସୁଥିବା ସମୁଦ୍ରକୁ ଅଧକୋଶ ପର୍ଯ୍ୟନ୍ତ ଘୁଞ୍ଚାଇ ଦେଇଥିଲେ।

କବୀରଙ୍କ ଅବସ୍ଥାନ ସମୟରେ ରାଜା ଏକ ଆଶ୍ରମ ନିର୍ମାଣ କରି ପ୍ରତ୍ୟହ ଭୋଗର ବ୍ୟବସ୍ଥା କଲେ। ସେହି ଆଶ୍ରମ ଏବେ କବୀର ଚୌରା ମଠ ନାମରେ ପରିଚିତ। ଏହି ମଠରେ ଟଙ୍କ ତୋରାଣୀ ମିଳେ। ଏହି ତୋରାଣୀ ଶ୍ରୀମନ୍ଦିରର ମହାପ୍ରସାଦରୁ ପ୍ରସ୍ତୁତ ହୋଇଥାଏ। ନେମାଳରେ କବୀରଙ୍କ ଗାଦି ଅଛି। ଏକଥା କୁହାଯାଏ ଯେ, ସମ୍ଭବତଃ ଅଚ୍ୟୁତାନନ୍ଦଙ୍କ ନିମନ୍ତ୍ରଣକ୍ରମେ କବୀର ନେମାଳ ଯାଇଥିଲେ।

**ଶଙ୍କରଦେବ**

ଆସାମର ସନ୍ଥ କବି ଶଙ୍କରଦେବ ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ। ଶ୍ରୀକ୍ଷେତ୍ରରେ ସେ ପ୍ରାୟ ୩ବର୍ଷ ଓ ୬ମାସ ଅବସ୍ଥାନ କରିଥିଲେ। ଏହି ସମୟରେ ସେ ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷା

କରିବା ସହ ଜଗନ୍ନାଥ ସଂସ୍କୃତି ଉପରେ ବହୁ ଉପାଦେୟ ଗ୍ରନ୍ଥ ଅଧ୍ୟୟନ କରି 'ଓରେଷା ବର୍ଣ୍ଣନ' ନାମକ ଏକ କୀର୍ତ୍ତନ ଗ୍ରନ୍ଥ ପ୍ରଣୟନ କଲେ । ଏହା ଆଜି ଆସାମ ବୈଷ୍ଣବ ସାହିତ୍ୟରେ ଏକ ଉପାଦେୟ ଗ୍ରନ୍ଥ ଅଟେ । ଏହି ଗ୍ରନ୍ଥରେ ଜଗନ୍ନାଥଙ୍କ ମହାତ୍ମ୍ୟ କୀର୍ତ୍ତନ କରାଯାଇ ଥିଲେ ମଧ୍ୟ ଏହା ଜଗନ୍ନାଥ ଭକ୍ତି ଓ ଉତ୍କଳୀୟ ପ୍ରୀତିର ଏକ ନିଦର୍ଶନ ।

ଏକଥା କୁହାଯାଏ ଯେ, ଜଗନ୍ନାଥ ଦାସଙ୍କ ଭାଗବତ ଟୁଙ୍ଗୀ ଦ୍ୱାରା ଶଙ୍କର ଦେବ ପ୍ରଭାବିତ ହୋଇ ଆସାମରେ ନାମଘର ପ୍ରତିଷ୍ଠା କରିଗଲେ ।

### ନାନକ

କବୀରଙ୍କ ପରି ନାନକ ମଧ୍ୟ ଉଭୟ ହିନ୍ଦୁ ଓ ମୁସଲମାନ ଧର୍ମରେ ଥିବା ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ନିଜର ସ୍ୱର ଉତ୍ତୋଳନ କରିଥିଲେ । ଉଭୟ ଧର୍ମର ସାରତତ୍ତ୍ୱ ବା ନିର୍ଯ୍ୟାସକୁ ନେଇ ସେ ନିଜସ୍ୱ ମତରେ ପ୍ରଚାର ଓ ପ୍ରସାର କରିଥିଲେ । ଉପନିଷଦର ସାରମର୍ମ ତାଙ୍କ ଧର୍ମରେ ସ୍ଥାନ ପାଇଥିଲା । ସେ ହେଉଛନ୍ତି ଶିଖ୍ ଧର୍ମର ପ୍ରତିଷ୍ଠାତା ।

ଶ୍ରୀକ୍ଷେତ୍ରର ଆଗମନ ସମୟରେ ଶ୍ରୀଚୈତନ୍ୟ ଦେବଙ୍କ ସହ ନାନକଙ୍କର ସାକ୍ଷାତ୍ ହୋଇଥିଲା ଏବଂ ନାନକ ମଧ୍ୟ ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନରେ ଯୋଗ ଦେଉଥିଲେ ।

### ତୁଳସୀ ଦାସ

ରାମ ଭକ୍ତ ତୁଳସୀ ଦାସ ମଧ୍ୟ ସମସ୍ତ ବିଷ୍ଣୁ ତୀର୍ଥ ସ୍ଥାନ ଭ୍ରମଣ ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ର ଆଗମନ କରିଥିଲେ । ଶ୍ରୀମନ୍ଦିରରେ ଉପସ୍ଥିତ ହେଲା ମାତ୍ରେ ଏ କ'ଣ ହେଲା ! ତୁଳସୀ ଦାସ ପ୍ରଭୁ ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ପରିବର୍ତ୍ତେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଦେଖୁଛନ୍ତି । ତେଣୁ ସେ ନିରାଶ ହୋଇ ସେଦିନ ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ମାଳତୀପାଟପୁର ଗ୍ରାମରେ ରାତ୍ରି ଯାପନ କଲେ । ସେତେବେଳେ ତାଙ୍କୁ ସ୍ୱପ୍ନାଦେଶ ହେଲା ଯେ ରାମ ସେ ହିଁ ଜଗନ୍ନାଥ । ତୁଳସୀ ଦାସ ଆଉ କାଳ ବିଳମ୍ବ ନ କରି ଶ୍ରୀମନ୍ଦିର ଧାଇଁଲେ । ଭାବାବିଷ୍ଟ ହୋଇ ଗାଇ ଉଠିଲେ ଜୟ ଜଗନ୍ନାଥ ଜଗଦେବା । ଶିବ ବିରଞ୍ଚି ନାରଦ କରେ ସେବା । ଏହା ଆଜି ମଧ୍ୟ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କ ପହୁଡ ସମୟରେ ଗାନ କରାଯାଏ ।

### ଗଣପତି ଭଟ୍ଟ

ସେଦିନ କାହିଁ କେତେ ଦୂରରୁ ମହାରାଷ୍ଟ୍ର ବାସୀ ଗଣପତି ଭଟ୍ଟ ଶ୍ରୀମନ୍ଦିରକୁ ଧାଇଁ ଆସିଥିଲେ । ଗଣେଶ ଭକ୍ତ ଗଣପତି ଭଟ୍ଟ ଶ୍ରୀଜଗନ୍ନାଥଙ୍କୁ ଗଣେଶ ଭାବେ ହିଁ ଅନୁଭବ କରିଛନ୍ତି । ଏଣୁ ଏହି ମତକୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ସ୍ନାନ ପୂର୍ଣ୍ଣମୀ ଦିନ ମହାପ୍ରଭୁ ଗଜାନନ ବେଶ ଧାରଣ କରନ୍ତି ।

### କରମାବାଈ

କିଏ କହେ କରମାବାଈ ମୁମ୍ବାଇର ତ ଆଉ କିଏ କହେ ସେ ହେଉଛନ୍ତି ଗାଜିଆବାଦର । ତେବେ ସେ ଯାହା ହେଉନା କାହିଁକି, ବିବାହର ମାତ୍ର ଅଳ୍ପ ଦିନ ପରେ ବୈଧବ୍ୟ ଯନ୍ତ୍ରଣାରେ ଜର୍ଜରିତ ଏହି ନାରୀ ଗୁରୁ ଇନ୍ଦ୍ରସ୍ୱାମୀଙ୍କ ସହ ପୁରୀରେ ପହଞ୍ଚି ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ଅଭିଭୂତ ହୋଇଗଲେ । ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ନିଜକୁ ସମର୍ପି ଦେଇ ସେ ହେଲେ ସନ୍ନ୍ୟାସିନୀ ।

### ସାରଦାଦେବୀ

ଶ୍ରୀରାମକୃଷ୍ଣଙ୍କ ପତ୍ନୀ ସାରଦା ଦେବୀ ଦୁଇଥର ପୁରୀ ଆସିଥିଲେ । ପ୍ରଥମେ ୧୮୮୮ ମସିହାରେ ଏବଂ ପରେ ୧୯୦୫ ମସିହାରେ ସେ ରେଳ ଯୋଗେ ଆସି ପୁରୀରେ ପହଞ୍ଚି ଥିଲେ । ତାଙ୍କସହ ସ୍ୱାମୀ ଯୋଗାନନ୍ଦ, ବ୍ରହ୍ମାନନ୍ଦ ଓ ସାରଦାନନ୍ଦ ଶ୍ରୀମନ୍ଦିରରେ ମହାପ୍ରସାଦ ସେବନ କରିଥିଲେ ।

ଶ୍ରୀରାମକୃଷ୍ଣଙ୍କ ଦେହାବସାନ ପରେ ସେ ବୃନ୍ଦାବନଠାରୁ ବୈଦ୍ୟନାଥ, କାଶୀ ଏବଂ ଅଯୋଧ୍ୟା ପରେ ପୁରୀକୁ ଆସିଥିଲେ । କିନ୍ତୁ ପୁରୀର ଅନୁଭୂତି ତାଙ୍କ ପାଇଁ ଭିନ୍ନ ଥିଲା । ତାଙ୍କ ନିଜ ଭାଷାରେ କହିବାକୁ ଗଲେ– 'ଯେତେବେଳେ ମୁଁ ପୁରୀ ଗଲି, କାନ୍ଦିଲି ଅନେକ । ଅନେକ ଲୋକ ତ ମୁକ୍ତି ହେବେ । ଶେଷରେ ସ୍ଥିର କଲି ଯେ ନା ତାହା ନୁହେଁ । ଯେଉଁମାନେ ବାସନା ଶୂନ୍ୟ ହେବେ, ସେମାନେ ହିଁ ମୁକ୍ତି ହେବେ । ଜୀବ, ବାସନା ଓ କର୍ମାନୁସାରେ ପୃଥିବୀରେ ଆସି ଜନ୍ମଲଭେ । ଏଠାରୁ କିଏ ମୁକ୍ତି ଲାଭ କରେ, କିଏ ଅବା ପାଏନାହିଁ । ହେଲେ ଯେଉଁ ଜନ୍ମରେ ବାସନା ଶୂନ୍ୟ ହୁଏ ଓ ନୀଳାଦ୍ରି ଦର୍ଶନ କରେ ସେଇଟା ହିଁ ତା'ର ଶେଷ ଜନ୍ମ ।'

### ସନ୍ଥ ତୁକାରାମ

ତୁକାରାମ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଲାଗି ଆସି କିଛିଦିନ ଜଗନ୍ନାଥ ବଲ୍ଲଭ ମଠରେ ଅବସ୍ଥାନ କରିଥିଲେ । ଦେଉଳ ବେଢା ଭିତରେ କୀର୍ତ୍ତନ ମଣ୍ଡଳୀରେ ଯୋଗ ଦେଇ ସେ ନାମ ସଂକୀର୍ତ୍ତନ କରୁଥିଲେ । ଗଜପତି ମହାରାଜା ତାଙ୍କୁ ସମ୍ମାନିତ କରିବା ସହ ଏକ ସ୍ୱତନ୍ତ୍ର ମଠ ପ୍ରଦାନ କରିଥିଲେ । ଏହା ତନ୍ତୀମଠ ଭାବେ ପରିଚିତ ।

### ପ୍ରଭୁପାଦ ବିଜୟ କୃଷ୍ଣ

୧୮୯୮ ମସିହାରେ ପ୍ରଭୁପାଦ ବିଜୟ କୃଷ୍ଣ ଶ୍ରୀକ୍ଷେତ୍ରରେ ଦଳବଳ ସହ ପଦାର୍ପଣ କରିଥିଲେ। ସେ ଜଗନ୍ନାଥଙ୍କର ଭକ୍ତ ଭାବେ ଏକ ସମନ୍ୱୟ ଧର୍ମ ପରଂପରା ସୃଷ୍ଟି କରି ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ୍‌କୁ ନେଇ ନିଜ ଧର୍ମରେ ଦୀକ୍ଷିତ କଲେ। ସେ ଶ୍ରୀଜଗନ୍ନାଥ ମନ୍ଦିର ପୂଜାବିଧିରେ ଅନେକ ପରିବର୍ତ୍ତନ ଆଣିବାରେ ପ୍ରୟାସ କରିଥିଲେ। ସେ କହୁଥିଲେ ଜଗନ୍ନାଥଙ୍କଠାରେ ନିବେଦିତ ଅନ୍ନାଦି ମହାପ୍ରସାଦରେ ଜାତି, ଧର୍ମ ବା ଉଚ୍ଚନୀଚର ବିଚାର ନାହିଁ।

### ଠାକୁର ନିଗମାନନ୍ଦ ସରସ୍ୱତୀ

ଠାକୁର ନିଗମାନନ୍ଦ ୧୯୨୧ ମସିହାରେ ପୁରୀ ଆସିଥିଲେ । ସେ ପୁରୀଠାରେ ସ୍ଥାୟୀ ଭାବେ ଅବସ୍ଥାନ କରି ଭକ୍ତମାନଙ୍କ ସହ ଆଲୋଚନା କରିଥିଲେ। ୧୯୩୪ ମସିହାରେ ଝୁଲଣ ପୂର୍ଣ୍ଣିମା ଦିନ ସେ ନୀଳାଚଳ ସାରସ୍ୱତ ସଂଘ ପ୍ରତିଷ୍ଠା କରିଥିଲେ। ତାଙ୍କର ବହୁ ଅନୁଗାମୀ ଏବେ ମଧ୍ୟ ଓଡ଼ିଶାରେ ଅଛନ୍ତି ଏବଂ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ନୀଳାଚଳ ସାରସ୍ୱତ ସଂଘ ଏବେ ମଧ୍ୟ କାର୍ଯ୍ୟରତ।

### ବାଳକ ରାମଦାସ

ବାଳକ ରାମଦାସ ନିଜ ଶିଷ୍ୟମାନଙ୍କ ସହ ଗୋପ, ମଥୁରା, ବୃନ୍ଦାବନ, ଚିତ୍ରକୁଟ, କାଶୀ ଓ ରାମେଶ୍ୱର ଆଦି ବିଭିନ୍ନ ତୀର୍ଥକ୍ଷେତ୍ର ପରିଭ୍ରମଣ କରି ପରିଶେଷରେ ଶ୍ରୀକ୍ଷେତ୍ରରେ ପଦାର୍ପଣ କରିଥିଲେ। ସେସମୟରେ ଶାକ୍ତ ସାଧକମାନେ ପଞ୍ଚମାକାର ଉପାସନାରେ ମଦ୍ୟ ଓ ମାଂସକୁ ବିଶେଷ ପ୍ରାଧାନ୍ୟ ଦେବା ସଂଗେ ସଂଗେ ମେଷ ଓ ମଇଁଷି ବଳି ଦେଉଥିଲେ ।

ବାଳକ ରାମଦାସ ସେମାନଙ୍କୁ ଏସବୁରୁ କ୍ଷାନ୍ତ ରହିବାକୁ ଉପଦେଶ ଦେବା ସଂଗେ ସଂଗେ ଜୀବେଦୟା ସାଧୁସନ୍ଥଙ୍କ ସେବା, ଦରିଦ୍ରଙ୍କୁ ଅନ୍ନବସ୍ତ୍ର ଦାନ, କଣ୍ଠରେ ତୁଳସୀମାଳ ଧାରଣ, ଲଲାଟରେ ଉର୍ଦ୍ଧ୍ୱପୁଣ୍ଡରୀକ ତିଳକ ଧାରଣ, ନିର୍ମାଲ୍ୟ ସେବା ଓ ରାମନାମ ଜପ ଉପରେ ଗୁରୁତ୍ୱାରୋପ କଲେ। ଏହା ଦ୍ୱାରା ସେ ଶାକ୍ତ ସାଧକଙ୍କ ବିରାଗଭାଜନ ହେଲେ। ଏକଥା ଶୁଣାଯାଏ ଯେ, ସେମାନେ ବାଳକ ରାମଦାସଙ୍କ ମହିମା ପରୀକ୍ଷା କରିବା ପାଇଁ ଏକ ମୃତ ଶରୀରରେ ଜୀବନ୍ୟାସ ଦେବାପାଇଁ ଅନୁରୋଧ କଲେ। ବାଳକ ରାମଦାସ ଶବ କର୍ଣ୍ଣରେ 'ଶ୍ରୀରାମ ତାରକ ମନ୍ତ୍ର' ଉଚ୍ଚାରଣ କରିବା ମାତ୍ରେ ଶବ ଜୀବନ ଲାଭ କରିଥିଲା। ଏହା ପରେ ସମସ୍ତେ ବାଳକ ରାମଦାସଙ୍କ ମହିମାକୁ ସ୍ୱୀକାର କରି ତାଙ୍କ ଦ୍ୱାରା ଦୀକ୍ଷିତ ହୋଇଥିଲେ।

କେବଳ ଉପର ଲିଖିତ ସାଧୁ ସନ୍ଥ ନୁହଁନ୍ତି, ଏମାନଙ୍କ ବ୍ୟତୀତ ବହୁ ସାଧୁ ସନ୍ଥ ପୁରୀ ପରିଭ୍ରମଣରେ ଆସି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କ (ଶ୍ରୀଜଗନ୍ନାଥ) ଚିନ୍ତା ଓ ଚେତନାରେ ନିଜକୁ ହଜାଇ ଦେଇଛନ୍ତି। ଆଲେଖ୍ୟର କଳେବର ବୃଦ୍ଧି ଆଶଙ୍କାରେ ସମସ୍ତଙ୍କ ବିଷୟରେ ସୂଚନା ଦେବା ସମ୍ଭବ ହେଉ ନଥିବାରୁ, ସେଥିରୁ କ୍ଷାନ୍ତ ରହିଲି। ଏଥିପାଇଁ ଏକ ବିଶେଷ ସନ୍ଦର୍ଭର ଆବଶ୍ୟକତା ଅଛି ବୋଲି ମନେ ହୁଏ।

ଯୁଗ୍ମ ଶାସନ ସଚିବ
ଅର୍ଥ ବିଭାଗ, ସଚିବାଳୟ, ଭୁବନେଶ୍ୱର

# ଶ୍ରୀଜଗନ୍ନାଥଙ୍କ ପ୍ରଥମ ନିର୍ବାସନ

**ଡକ୍ଟର ଜଗନ୍ନାଥ ପ୍ରସାଦ ଉଦ୍‌ଗାତା**

ଓଡ଼ିଶାର କୋମଳ ମୃତ୍ତିକାରେ, ଜଳରେ ଏବଂ ବାୟୁରେ ରହିଛି ଏକ ବିଶେଷ ଆକର୍ଷଣ । ତା' ନହେଲେ କ'ଣ ସନାତନ ଧର୍ମର ପୁନଃ ପ୍ରତିଷ୍ଠାତା, ପ୍ରଭୁ ମହାଦେବଙ୍କର ଅବତାର ଭଗବାନ୍ ଆଦିଶଂକର କେବେ କହିଥାନ୍ତେ–

ବର୍ଷେ ତୁ ଭାରତବର୍ଷ, ଦେଶେସୁ ଉତ୍କଳ ଶ୍ରେଷ୍ଠଃ ?



ପୁନଶ୍ଚ, ପ୍ରାତଃସ୍ମରଣୀୟ ଶଙ୍କରାଚାର୍ଯ୍ୟର ଭାରତ ଭୂଖଣ୍ଡର ସର୍ବତ୍ର ଦିଗ୍‌ବିଜୟ କରି ସେ କାଳର ନେତିବାଦୀ ବୌଦ୍ଧ ଦାର୍ଶନିକମାନଙ୍କୁ ହରାଇ ଯେଉଁ ଚତୁର୍ଦ୍ଧାମ ପ୍ରତିଷ୍ଠା କଲେ, ତାହାର ଅଧିପତିମାନେ ହେଲେ ଉତ୍ତରରେ ବଦ୍ରୀନାଥ, ଦକ୍ଷିଣରେ ରାମନାଥ, ପଶ୍ଚିମରେ ଦ୍ୱାରକାନାଥ କିନ୍ତୁ ପୂର୍ବରେ ସେ ମହାପ୍ରଭୁ ହେଲେ ଜଗନ୍ନାଥ । ସମସ୍ତ ଜଗତର ଅଧିପତି । ଶଙ୍କରାଚାର୍ଯ୍ୟ ତାଙ୍କ ଜଗନ୍ନାଥାଷ୍ଟାକଂରେ ଉଦାତ୍ତ କଣ୍ଠରେ ଗାଇଛନ୍ତି–

'ମହାମ୍ଭୋଧେସ୍ତିରେ କନକରୁଚିରେ ନୀଳଶିଖରେ<br>
ବସନ୍ ପ୍ରାସାଦାନ୍ତ ବଳେ ଉଦ୍ରେଣ ବଳୀଣା<br>
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରସେବା ବସରଦୋ<br>
ଜଗନ୍ନାଥ ସ୍ୱାମୀ, ନୟନପଥଗାମୀ ଭବତୁମେ ।'

ସାରା ଭାରତବର୍ଷରେ ପବିତ୍ର ତୀର୍ଥର, ପବିତ୍ର ସ୍ଥାନର, ପବିତ୍ର ନଦୀମାନଙ୍କର ଅଭାବ ତ ନାହିଁ । ତେବେ କଳି ଯୁଗରେ ମହାମ୍ଭୋଧେସ୍ତିରେ ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ ଏବଂ ପ୍ରତିଷ୍ଠାନର ମହତ ଉଦ୍ଦେଶ୍ୟ କ'ଣ ହୋଇପାରେ ?

କାଳକ୍ରମେ ଯେଉଁ ସଂକୀର୍ଣ୍ଣ ଜାତିଆଣ ଭାବ ମନୁଷ୍ୟ ମନୁଷ୍ୟ ମଧ୍ୟରେ ବର୍ଷାଦ୍ ଗଢ଼ି ଉଠିଥିଲା, ତାହାର ମୂଳୋତ୍ପାଟନ କରିବା ନିମନ୍ତେ ବୁଦ୍ଧଙ୍କର ଆବିର୍ଭାବର ଅନେକ ଆଗରୁ, ମହାପ୍ରଭୁ ଭଗବତ ଗୀତାରେ ଅର୍ଜୁନଙ୍କୁ ଉପଦେଶ ଛଳରେ ଏହି ମହାସତ୍ୟର ଉଲ୍ଲେଖ କରିଥିଲେ ।

'ଚତୁର୍ବର୍ଣ୍ଣଂ ମୟା ସୃଷ୍ଟଂ, ଗୁଣ କର୍ମ ବିଭାଦ୍ୟସ୍ୟ'

ଏହି ଉକ୍ତିର ପରାକାଷ୍ଠା ପ୍ରମାଣ କରିବାକୁ ଯାଇ ପୁରୁଷୋତ୍ତମ ଧାମରେ ମହାପ୍ରଭୁଙ୍କର ପ୍ରକଟ । ଅନାର୍ଯ୍ୟ ବିଶ୍ୱାବସୁଙ୍କ ସହିତ ବ୍ରାହ୍ମଣ ବିଦ୍ୟାପତିଙ୍କର ସାକ୍ଷାତ ଏବଂ ତାଙ୍କର କନ୍ୟା ସହିତ ପ୍ରେମ, ପ୍ରଣୟ ଓ ମିଳନ । ବିଶ୍ୱାବସୁଙ୍କର ଆର୍ଯ୍ୟ ଅବନ୍ତୀରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଅକାଟ୍ୟ ବନ୍ଧୁତା ସ୍ଥାପନ ଏବଂ ଦୁଇଜଣଙ୍କର ଯୁକ୍ତ ଉଦ୍ୟମରେ ଶଙ୍ଖ କ୍ଷେତ୍ରରେ, କୂର୍ମବେଢ଼ାରେ ମହାପ୍ରଭୁଙ୍କର ସ୍ଥାପନ ପ୍ରମାଣ କରେ ଯେ ବିଶ୍ୱମାନବତାବାଦର ପଟାନ୍ତର ନାହିଁ ।

କିନ୍ତୁ ବିଡମ୍ବନା ଯେ, ମହାପ୍ରଭୁଙ୍କର ଆସ୍ଥାନ ସବୁ ଯୁଗରେ ସଂକୀର୍ଣ୍ଣ ମନୋଭାବ ଦ୍ୱାରା ଆକ୍ରାନ୍ତ ହୋଇଛି । ପ୍ରାଗ୍ ଐତିହାସିକ ଯୁଗର ରକ୍ତବାହୁ ଯବନଠାରୁ ଆରମ୍ଭ କରି, ବ୍ରିଟିଶ ଶାସନତନ୍ତ୍ର ପର୍ଯ୍ୟନ୍ତ ସମସ୍ତେ ଜଗନ୍ନାଥଙ୍କ କ୍ଷେତ୍ରକୁ ଆୟତ୍ତ କରିବା ନିମନ୍ତେ ଆପ୍ରାଣ ଚେଷ୍ଟା କରିଛନ୍ତି, କିନ୍ତୁ କେବେ ବି ସଫଳୋଦ୍ୟମ ହୋଇ ପାରି ନାହାନ୍ତି । ଓଡ଼ିଆ, ତା'ର ଇଷ୍ଟଦେବଙ୍କୁ କେତେବେଳେ

ବୋହି ନେଇଛି ଚିଲିକା ଭିତରେ ନାମ ଅଜଣା ଅସଂଖ୍ୟ ଦ୍ୱୀପପୁଞ୍ଜକୁ, କେତେବେଳେ ବାଙ୍କୀ ଓ ଖୋର୍ଦ୍ଧାର ଦୋସୀମାଳିରେ ରଣନଦୀ କୂଳରେ ଶୂନ୍ୟଗିରି ମୁଣ୍ଡିଆକୁ । କେତେବେଳେ ଆଠଗଡ଼ (ଗଞ୍ଜାମ)ର କଣ୍ଟାବାଇଁଶୀ ଜଙ୍ଗଲ ଭିତରକୁ ତ କେତେବେଳେ ସୋନପୁରରେ ମହାନଦୀ କୂଳରେ ପଥର ଗୁହା ଭିତରକୁ । ଶାନ୍ତିରେ ଇଷ୍ଟ ଜଗନ୍ନାଥ ଓ ଓଡ଼ିଆ କ୍ଷିରୀପୁରୀ ଖାଇ ହେଣ୍ଡି ମାରିଛନ୍ତି, ଆକ୍ରମଣ ବେଳେ ପେଟରେ ଓଦାକନା ଦେଇ ଜଙ୍ଗଲ ଭିତରେ ଶୋଇଛନ୍ତି । କିନ୍ତୁ କୌଣସି ଶକ୍ତି ଇଷ୍ଟଦେବ ଜଗନ୍ନାଥଙ୍କୁ କିମ୍ବା ପ୍ରାଣ ପାଚୁର୍ଯ୍ୟ ଭରା ଓଡ଼ିଆକୁ କେବେ ଆଚମ୍ବିତ କରିପାରି ନାହାନ୍ତି ।

ଏଠାରେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି ଯେ, ଆଜିର ଓଡ଼ିଆ ନିଜର ପରାକ୍ରମ ଭୁଲି, ମେରୁଦଣ୍ଡହୀନ, କ୍ଲେଦମୟ ଶରୀରଧାରୀ ଏକ ପ୍ରାଣୀରେ ନିଜକୁ ରୂପାନ୍ତରିତ କରି ସାରିଛୁ । ଓଡ଼ିଶାର ଇତିହାସ ମଧ୍ୟ ଅନେକ ବିଷୟରେ ଅଜ୍ଞ ।

ଐତିହାସିକମାନଙ୍କ ମତରେ ଖ୍ରୀ.ପୂ.୨୬୧ରେ ମଗଧ ଅଧିପତି ଚଣ୍ଡାଶୋକ ଓଡ଼ିଶା (କଳିଙ୍ଗ) ଆକ୍ରମଣ କଲେ । ଧଉଳିଗିରିଠାରେ ଯୁଦ୍ଧ ହେଲା, ଲକ୍ଷ ଲକ୍ଷ ଓଡ଼ିଆ ସୈନ୍ୟ ପ୍ରାଣବଳି ଦେଲେ । ସେମାନଙ୍କର ରକ୍ତରେ ଦୟାନଦୀରେ ସ୍ରୋତ ଲାଲ ହୋଇଗଲା ଇତ୍ୟାଦି ଇତ୍ୟାଦି । କିନ୍ତୁ ସେସମୟରେ ଓଡ଼ିଶାରେ ଶାସକ (ରାଜା) ଥିଲେ କିଏ ? ସମସ୍ତ ଇତିହାସ ଏ ବିଷୟରେ ନିରବ ।

ଏହାର କିଛି ତଥ୍ୟ ମିଳେ । ମହାନ ଐତିହାସିକ, ଏନ୍.କେ.ଜେନ୍‌ଙ୍କ ମତରେ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ପୁସ୍ତକ 'ଦି କ୍ଲାଉଡ଼ କ୍ୟାରିଅରସ ଅଫ କଳିଙ୍ଗ'ର ଉଲ୍ଲେଖରୁ । ପୁସ୍ତକଟି, ମହାମେଘବାହନ ଐର ଖାରବେଳଙ୍କର ସଂପର୍କରେ ରଚିତ । ଏଥିରେ ଉଲ୍ଲେଖ ରହିଛି, ଚେଦୀ ବଂଶ ସମ୍ଭୁତ ଖାରବେଳ ପ୍ରଥମ ଶତାବ୍ଦୀରେ ସିଂହାସନ ଆରୋହଣ କରି ଭାରତବର୍ଷର ଅଖଣ୍ଡତ୍ୱ, ମୌଳିକତ୍ୱ ଏବଂ ବିଶ୍ୱପ୍ରେମର ଦର୍ଶନରୁ ବଜାୟ ରଖିବା ପାଇଁ ଗ୍ରୀକ୍ ଯୋଦ୍ଧା ଡିମିଟ୍ରିଅସଙ୍କୁ ଗାନ୍ଧାର ଦେଶ ପରେ ହିନ୍ଦୁକୁଶ୍ ପର୍ବତମାଳାର ପଶ୍ଚିମ ପାର୍ଶ୍ୱ ପର୍ଯ୍ୟନ୍ତ ତଡ଼ି ଦେଇଛନ୍ତି । ଯଦି ଚ ସେ ଚିର ଶତ୍ରୁ ମଗଧ ଉପରେ ଆକ୍ରମଣ କରିବା ନିମନ୍ତେ ସମସ୍ତ ସାହାଯ୍ୟ ଯୋଗାଇବା ନିମନ୍ତେ ପ୍ରସ୍ତାବ ଦେଇଥିଲେ । ମାତ୍ର ୧୪ ବର୍ଷ ଶାସନ ଅବଧିରେ ଖାରବେଳ ଉତ୍କଳ କଳିଙ୍ଗର ଯୁଗଯୁଗ ବ୍ୟାପି ଗରିମାର ମହତ୍ତ୍ୱର ଉତ୍କର୍ଷତା ପ୍ରମାଣ କରି ପାରିଛନ୍ତି ।

ଅଶୋକଙ୍କ ଆକ୍ରମଣ ସମୟରେ କିନ୍ତୁ ଓଡ଼ିଶାରେ ଶାସନ କରୁଥିବା କୌଣସି ରାଜାଙ୍କ ଉଲ୍ଲେଖ ନାହିଁ । ସେସମୟରେ ମଧ୍ୟ ଓଡ଼ିଶା ଥିଲା ଏକ ରିପବ୍ଲିକ ଏବଂ ପୁରୀ ନଗରରେ ନିର୍ବାଚିତ କତିପୟ ଶ୍ରେଷ୍ଠୀ ସମସ୍ତ ରାଜ୍ୟର ଶାସନଭାର ଗଣତାନ୍ତ୍ରିକ ରୀତିରେ ପରିଚାଳନା କରୁଥିଲେ । କିନ୍ତୁ ସେଥିରେ ନଥିଲା ଶାସନର ଶୃଙ୍ଖଳା କିମ୍ବା ରାଜ୍ୟରେ ନଥିଲା ଶୃଙ୍ଖଳିତ, ସୁସଜ୍ଜିତ, ସୈନ୍ୟବାହିନୀ । ସମସ୍ତେ ତ ସମୃଦ୍ଧିରେ ଉନ୍ମତ୍ତ । ଯୁଦ୍ଧ କରିବ କିଏ, କାହିଁକି ? ଏହା ହେଲା କଳିଙ୍ଗର ଚଣ୍ଡାଶୋକଙ୍କ ନିକଟରେ ବିପର୍ଯ୍ୟୟର କାରଣ । ଅବଶ୍ୟ ସେ ପରବର୍ତ୍ତୀ ସମୟରେ ଧର୍ମାଶୋକ ହୋଇ ଜଗତର ଶ୍ରେଷ୍ଠ ଆଦର୍ଶବାଦୀ ଶାସକ ହୋଇଥିଲେ । ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ହୋଇଥିଲେ– ତାହା ଅନ୍ୟକଥା । ଅଶୋକଙ୍କ ଆକ୍ରମଣର ବହୁ ପୂର୍ବରୁ ଅର୍ଥାତ୍ ଉତ୍କଳ କଳିଙ୍ଗରେ ବୌଦ୍ଧଧର୍ମର ପ୍ରଚାର, ପ୍ରସାରର କିଛି ଶତାବ୍ଦୀ ଆଗରୁ ଜୈନ ମତବାଦରେ ଉଦ୍‌ବୁଦ୍ଧ ଥିଲା ଓଡ଼ିଶା । ଅବଶ୍ୟ ଚିରନ୍ତନ ସନାତନ ଧର୍ମର ପ୍ରତିପତ୍ତି ମଧ୍ୟ ରହିଥିଲା ଅକ୍ଷୁଣ୍ଣ । ଏହି ସମନ୍ୱୟର କାରଣ ଥିଲେ ପ୍ରଭୁ ଜଗନ୍ନାଥ । ମହାପ୍ରଭୁଙ୍କର ଏକ ଅବିକଳ ପ୍ରତିମା ସମୁଦ୍ରରୁ ବେଳାଭୂମିରେ ଅବସ୍ଥାପିତ ହୋଇଥିଲା ଏବଂ ତାହାଙ୍କୁ ଜୈନ ଧର୍ମାବଲମ୍ବୀ ଭକ୍ତମାନେ ଉପାସନା କରୁଥିଲେ ତୀର୍ଥଙ୍କର କେତୁଭଦ୍ର ଜୀନ ନାମରେ । ମହାରାଜ ଅଶୋକ କଳିଙ୍ଗ ବିଜୟ ପରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ କୌଣସି ଆକ୍ରମଣ କରି ନଥିଲେ । କିନ୍ତୁ କେତୁଭଦ୍ର ଜୀନଙ୍କର ଅବୟବ ତାଙ୍କ ଦ୍ୱାରା ଅପସାରିତ ହୋଇଥିଲା ମଗଧର ରାଜଧାନୀ ପାଟଳିପୁତ୍ରକୁ । ନଗରର ଏକ ପ୍ରମୁଖ କେନ୍ଦ୍ରରେ ପ୍ରତିମାଙ୍କୁ ପ୍ରତିଷ୍ଠା କରାଯାଇ, ମଗଧୀମାନେ କଳିଙ୍ଗ ଉପରେ ତାହାଙ୍କର ପରମ ବିଜୟର ଗୌରବ ପ୍ରଦର୍ଶନ କରୁଥିଲେ, ବହୁ ଶତାବ୍ଦୀ ଧରି । ମହାରାଜ ଅଶୋକଙ୍କର ସୁଶାସନ ଏବଂ ଲୋକମଙ୍ଗଳକାରୀ ଯୋଜନା ସବୁ କଳିଙ୍ଗବାସୀଙ୍କ ମନରୁ ତାହାଙ୍କର ଅତ୍ୟାଚାରର ଜର୍ଜରିତ ଅନୁଭବ କିୟଦ୍ ଅଂଶରେ ଲିଭି ଯାଇଥିଲେ ମଧ୍ୟ ଜାତୀୟବାଦୀ, ସ୍ୱାଧୀନଚେତା କଳିଙ୍ଗମାନେ ସବୁବେଳେ କ୍ଷୁବ୍ଧ ହେଉଥିଲେ ତାଙ୍କର ଇଷ୍ଟଦେବଙ୍କ ମଗଧ ଅପସାରଣ ବିଷୟରେ ଅନ୍ତରର ନିଆଁ କୁହୁଳୁଥିଲା ସବୁବେଳେ ।

ମହାରାଜ ଖାରବେଳ ସିଂହାସନ ଆରୋହଣ କରିବା ପରେ ତାହାଙ୍କର ପ୍ରଥମ ଲକ୍ଷ୍ୟ ଥିଲା ପରାଜୟର ଦୁଃଖରେ ଜର୍ଜରିତ ଏକ ନିର୍ବୀର୍ଯ୍ୟ ଜାତିର ହୃଦୟରେ ବୀରତ୍ୱର ସଞ୍ଚାର କରାଇବା ଏବଂ ସେସମୟକୁ ବୌଦ୍ଧଧର୍ମର ପ୍ରଭାବ ଏବଂ ସନାତନ ଧର୍ମର

ରକ୍ଷଣଶୀଳ ମନୋବୃତ୍ତି ଯୋଗୁଁ, ରାଜ୍ୟବାସୀଙ୍କର ବିଭିନ୍ନ ଗୋଷ୍ଠୀ, ଉପଗୋଷ୍ଠୀ ମଧ୍ୟରେ ଥିବା ବିଭାଜନକୁ ଅତିକ୍ରମ କରି ସମଗ୍ର ଜାତିକୁ ସଂଘବଦ୍ଧ କରାଇବା ।

ଉଲ୍ଲେଖ ଥାଉ, ମହାମେଘବାହାନ ଥିଲେ ଏକମାତ୍ର କଳିଙ୍ଗ ଉତ୍କଳାଧିପତି ଯେ ଉତ୍ତର ଭାରତରୁ ବଙ୍ଗ ରାଜକୁମାରୀ ଦ୍ୟୁତିଙ୍କର ପାଣିଗ୍ରହଣ କରିଥିଲେ । ଅନ୍ୟଥା, ରାଜ୍ୟର ଅନ୍ୟ ସମସ୍ତ ନରପତିମାନଙ୍କର ବୈବାହିକ ସଂପର୍କ ଥିଲା ଦକ୍ଷିଣ ଭାରତର ରାଜକନ୍ୟାମାନଙ୍କ ସହିତ । ମହାମେଘବାହନ ସିଂହାସନ ଆରୋହଣ କରି ପ୍ରଥମେ ପ୍ରଚେଷ୍ଟା ଆରମ୍ଭ କଲେ । ରାଜ୍ୟବାସୀଙ୍କ ବୌଦ୍ଧିକ ଚିନ୍ତାଧାରାର ଉନ୍ନତି ଏବଂ ପରିପ୍ରକାଶ ତାହାଙ୍କ ଉଦ୍ୟମରେ ଖଣ୍ଡଗିରି ଏବଂ ଉଦୟଗିରିରେ ଅନେକ ସାଧନାସ୍ଥଳ ଜୈନ ମନିଷୀମାନଙ୍କ ନିମନ୍ତେ । ସାଧନାର ଉତ୍କର୍ଷତାରେ ବାୟୁମଣ୍ଡଳ ଗୁଂଜି ଉଠୁଥିଲା ଜୈନ ମହାମନ୍ତ୍ରରେ–

ଓଁ ନମୋ ଅରିହନ୍ତାଣଂ
ଓଁ ନମୋ ସିଦ୍ଧାଣାଂ
ଓଁ ନମୋ ପ୍ରାଚାର୍ଯ୍ୟାଣାଂ

ତଦୁପରି ମହାରାଜ, ବୈଦିକ ବ୍ରାହ୍ମଣମାନଙ୍କୁ ସନାତନ ଧର୍ମର ବିଶ୍ୱ ଭ୍ରାତୃତ୍ୱ ପରମ୍ପରା ପୁନଃସ୍ଥାପିତ କରିବା ନିମନ୍ତେ ଉଦ୍‌ବୁଦ୍ଧ କଲେ–

ନାନା ପନ୍ଥାନି ଶ୍ରେୟାଂସି, ଇତି ରୋହିତ ଶ୍ମଶ୍ରୁ
ଚରୈବତି ଚରୈବତି

ଅତଃପର, ମହାରାଜଙ୍କର ପ୍ରଚେଷ୍ଟାରେ ପ୍ରତିଷ୍ଠା କରାଗଲା ଅନେକଗୁଡ଼ିଏ ପାଇକାଳୀ ଗ୍ରାମ ଏବଂ ଗ୍ରାମ ମଧ୍ୟରେ ପାଇକ ଆଖଡ଼ା । ରାତ୍ରିର ନିରନ୍ଧ୍ର ଅନ୍ଧକାରରେ ବାଜିବାକୁ ଲାଗିଲା ନାଗରା

ତାକ୍ ଧିନାଧିନ୍, ତାକ୍ ଧିନାଧିନ୍ ।

ସର୍ବୋତ୍କୃଷ୍ଟ ପ୍ରଚେଷ୍ଟା ଥିଲା ମହାରାଜାଙ୍କର । ରାଜ୍ୟର ଅସଂଖ୍ୟ ବନବାସୀମାନଙ୍କୁ ମୁଖ୍ୟ ସ୍ରୋତରେ ଅନୁଗାମୀ କରି, ସେମାନଙ୍କର ବୀରତ୍ୱ ଓ ରଣକୌଶଳକୁ ରାଷ୍ଟ୍ରୀୟ ଲାଭ ପ୍ରାପ୍ତି ନିମନ୍ତେ ନିୟୋଗ କରିବା । ସମ୍ରାଟଙ୍କର ଏହି ପ୍ରଚେଷ୍ଟା ସର୍ବଶ୍ରେଷ୍ଠ ପୃଷ୍ଠପୋଷକ ଥିଲେ ପର୍ବତ ଲଳନା ଆଦିବାସୀ ରାଜକୁମାରୀ ସରସ୍ୱତୀ । ସେ ମଧ୍ୟ ଥିଲେ ଅନ୍ତରରେ ମହାରାଜଙ୍କୁ ସମର୍ପିତା । ମହାରାଜଙ୍କର ଅନ୍ତରଙ୍ଗତା ମଧ୍ୟ ତାହାଙ୍କ ପ୍ରତି ଥିଲା ଅତୁଳନୀୟ । କିନ୍ତୁ ସେ ଯୁଗର ସମାଜ ଆର୍ଯ୍ୟ–ଅନାର୍ଯ୍ୟଙ୍କ ପ୍ରଣୟ ସ୍ୱୀକାର କରିବ ତ ? ଜୈନମାନେ ହିନ୍ଦୁମାନଙ୍କର ଜ୍ଞାନର ଦେବୀଙ୍କୁ ଗ୍ରହଣ କରିବେ ତ ? ସମ୍ରାଟ ଖାରବେଳ କିନ୍ତୁ ଉଦ୍ଭାବନ କଲେ ଏକ ଅଭିନବ ପନ୍ଥା । ସେ ଦେବୀ ସରସ୍ୱତୀଙ୍କୁ ଧର୍ମମତର ଊର୍ଦ୍ଧ୍ୱରେ ରଖି ରାଷ୍ଟ୍ରୀୟ ଜ୍ଞାନ ଦେବୀ ଭାବରେ ଗଢ଼ି ତୋଳିଲେ ଏବଂ ଜୈନ ଓ ସନାତନମାନଙ୍କର ସେ ବିଷୟରେ କୌଣସି ଆପତ୍ତି ନଥିଲା । ପରୋକ୍ଷରେ ସମ୍ରାଟ ନିଜର ପ୍ରେୟସୀଙ୍କୁ ମଧ୍ୟ ଜନମାନସରେ ଦେବୀ ରୂପେ ପ୍ରତିଷ୍ଠାପିତ କଲେ । ତାଙ୍କ ପ୍ରତି ଅଭିମାନରେ, ସର୍ବାଗ୍ରେ ସରସ୍ୱତୀଙ୍କ ପ୍ରତିମା ଏକ ରଥରେ ଅବସ୍ଥାପିତ ହୋଇ ରଥ ପ୍ରଥମେ ଚାଲିବା ପରେ, ସୈନ୍ୟମାନେ ଅନୁଗମନ କରୁଥିଲେ ।

ସେପର୍ଯ୍ୟନ୍ତ ମଧ୍ୟ ଉତ୍କଳ କଳିଙ୍ଗ ସେନାନୀ ପ୍ରସ୍ତୁତ ନହେଲେ ମଗଧ ରାଜ୍ୟ ଉପରେ ଆକ୍ରମଣ କରି ଶତାବ୍ଦୀ ପୂର୍ବର ଅପମାନର ପ୍ରତିଶୋଧ ନେବା ନିମନ୍ତେ । ମହାରାଜ ଥିଲେ କିନ୍ତୁ ଅବଚେତନର ମହାନ ଆବିଷ୍କାରକ । ତାଙ୍କର ଯୋଜନା ଥିଲା ଯଦି ପ୍ରଭୁ ଜଗନ୍ନାଥ ଅର୍ଥାତ୍ କେତୁଭଦ୍ର ଜୀବଙ୍କର ପ୍ରତିମା ଓଡ଼ିଶାକୁ ଅଣାଯାଇପାରେ ତାହାହେବ ଜାତୀୟତାର ମହାନ୍ ପୁନରୁତ୍ଥାନ ।

ଏହି ଯୋଜନାକୁ ରୂପ ଦେବା ନିମନ୍ତେ, ମହାରାଜ ନିଜକୁ ପରିଣତ କଲେ ଏକ ଶାରୀରିକ ଅକ୍ଷମ (ବଙ୍କାଗୋଡ଼) ବାଦକ ରୂପେ ଏବଂ ପ୍ରେୟସୀ ପାର୍ବତ୍ୟ ରାଜକୁମାରୀ ସରସ୍ୱତୀ ହେଲେ ନର୍ତ୍ତକୀ । ଏହି ଦୁଇଜଣ ମର୍ଦଳ ବଜାଇ ଏବଂ ତାଳେ ତାଳେ ନାଚି ନାଚି ଅଗ୍ରସର ହେଲେ ପାଟଳୀପୁତ୍ର ଅଭିମୁଖେ । ରାସ୍ତାରେ ଚାଲୁଥିବା ଅସଂଖ୍ୟ ପଦଯାତ୍ରୀ ଏହି ଅଦ୍‌ଭୁତ ଯୋଡ଼ିର ବାଦ୍ୟ ଓ ନୃତ୍ୟରେ ଉଦ୍‌ବୁଦ୍ଧ ହୋଇ ନାଚିବାରେ ଲାଗିଲେ । ମଗଧ ରାଜ୍ୟର ଅସଂଖ୍ୟ ରକ୍ଷୀମାନଙ୍କ ପାଇଁ ଏହା ଥିଲା ଚିତ୍ତବିନୋଦନର ଏକ ବିନା ମୂଲ୍ୟର ଆମୋଦ ।

ପରିଶେଷରେ ଏହି ଆମୋଦ ଯୋଡ଼ି ପହଞ୍ଚିଲେ ରାଜଧାନୀ ପାଟଳୀପୁତ୍ରରେ । ଜ୍ୟୋତ୍ସ୍ନା ବିଧୌତ ରଜନୀ ପ୍ରମୁଖ କେନ୍ଦ୍ରରେ ତୀର୍ଥଙ୍କର କେତୁଭଦ୍ର ଜୀନଙ୍କର ପ୍ରତିମୂର୍ତ୍ତି । ସମ୍ରାଟଙ୍କର ଲକ୍ଷ୍ୟ କେତୁଭଦ୍ରଙ୍କୁ ତାଙ୍କର ଉଚ୍ଚତାସ୍ଥାନ ପୁରୀର ସମୁଦ୍ର ବେଳାଭୂମିରେ ପୁନଃସ୍ଥାପନ ।

ସମ୍ରାଟଙ୍କର ଭାବନା, ପରିକଳ୍ପନାକୁ ଶତଛିନ୍ନକରି ଦୂରରେ ଶୁଣାଗଲା ଅଶ୍ୱ ଟାପୁର ଶବ୍ଦ । ତାଙ୍କର ଓ ଦେବୀ ସରସ୍ୱତୀଙ୍କର ଛଦ୍ମବେଶ ସତ୍ତ୍ୱେ, ମଗଧ ରାଜ୍ୟର ଗୁପ୍ତଚର ବାହିନୀ ପ୍ରକୃତ ପରିଚୟ ଜାଣିପାରି, ସମ୍ବାଦ ଦେଇଛନ୍ତି ରାଜଧାନୀର ପ୍ରଧାନ ରକ୍ଷୀଙ୍କୁ ଏବଂ ତାଙ୍କ ନେତୃତ୍ୱରେ ଏକ ଦଳ ରକ୍ଷୀବାହିନୀ ଆଗେଇ ଆସୁଛନ୍ତି ନଗରର କେନ୍ଦ୍ର ସ୍ଥଳରୁ, କେତୁଭଦ୍ର ଜୀନଙ୍କର ଆସ୍ଥାନକୁ,

କଳିଙ୍ଗ ଅଧିପତିଙ୍କୁ ବନ୍ଦୀ କରିବା ନିମନ୍ତେ । ଖୁବ୍ ଶୀଘ୍ର ସମ୍ରାଟଙ୍କର ଚାରିପଟେ ଅଶ୍ୱାରୋହୀ ରକ୍ଷୀଦଳ । ସମସ୍ତଙ୍କ ହାତରେ ମାରାତ୍ମକ ଅସ୍ତ୍ରଶସ୍ତ୍ର । ବନ୍ଦୀତ୍ୱ ଆସନ୍ନ । ସମ୍ରାଟ ବୀରବିକ୍ରମରେ ହାତରୁ ଢ଼ୋଲକ ବହୁ ଜୋରରେ ଆଗରେ ଥିବା ନଗରରକ୍ଷୀଙ୍କର ପ୍ରଧାନଙ୍କ ମୁହଁକୁ ଲକ୍ଷ୍ୟ କରି ପ୍ରେକ୍ଷଣ କଲେ । ଅଭୁତ ଲକ୍ଷ୍ୟ ପ୍ରଧାନଙ୍କର ମୁହଁରୁ ରକ୍ତ ଝରିବା ଆରମ୍ଭ ହେଲା । ଏକ କ୍ଷଣ ପାଇଁ ପ୍ରଧାନରକ୍ଷୀଙ୍କର ସମସ୍ତ ଶୌର୍ଯ୍ୟ ଲିପ୍ତ ହୋଇଗଲା । ସମ୍ରାଟ ଏହି ଅବସରରେ ତାଙ୍କ ଉପରକୁ ଝାମ୍ପି, ହାତରୁ ଖଡ଼ଗ ଛଡ଼ାଇ ନେଇ ତାଙ୍କୁ ପ୍ରଚଣ୍ଡ ଆଘାତ ହାଣି ଭୂଲୁଣ୍ଠିତ କଲେ । ରକ୍ଷୀମାନେ ମଧ୍ୟ ସେତେବେଳକୁ ହତଚକିତ । ସମ୍ରାଟ ବିଦ୍ୟୁତ୍ ବେଗରେ ଖଡ଼୍ଗ ଚାଳନା କରି ପାଖରେ ଥିବା ଚାରିଜଣ ରକ୍ଷୀଙ୍କୁ ମଧ୍ୟ ହତ୍ୟାକଲେ ଏବଂ କ୍ଷିପ୍ର ହସ୍ତରେ ସରସ୍ୱତୀଙ୍କୁ ଉଠାଇନେଇ, ପ୍ରଧାନରକ୍ଷୀ ଅଶ୍ୱ ଉପରେ ପ୍ରେୟସୀଙ୍କ ସହିତ ଆରୋହଣ କରି ଅତିବେଗରେ ଆସିଥିବା ରାସ୍ତାରେ ପଳାୟନ କଲେ । ଅବଶିଷ୍ଟ ରକ୍ଷୀମାନେ ଘଟଣାର ତାତ୍ପର୍ଯ୍ୟ ଅନୁଭବ କରିବାର ବହୁ ଆଗରୁ ସମ୍ରାଟ ରାତ୍ରିର ଅନ୍ଧକାରରେ ଅଦୃଶ୍ୟ ହୋଇ ଯାଇଥିଲେ ।

ସାରା ରାତ୍ରି ଅଶ୍ୱ ପୃଷ୍ଠରେ ଯାତ୍ରା କରି ପ୍ରଭାତ ସମୟକୁ ସମ୍ରାଟ ଏବଂ ସରସ୍ୱତୀ ଦୁଇଜଣ କ୍ଲାନ୍ତ,ବିଧ୍ୱସ୍ତ, ଅଶ୍ୱ ମଧ୍ୟ ଦୁର୍ବଳ । ଏହି ସମୟରେ ସମ୍ରାଟ ଦେଖିଲେ ରାଜରାସ୍ତାରୁ ଅନ୍ୟ ଏକ ପଦାତି ରାସ୍ତା, ବାମ ପଟକୁ ଜଙ୍ଗଲ ଭିତରକୁ ଚାଲିଯାଇଛି । ଅନୁସନ୍ଧିତ୍ସୁ ମହାରାଜ, ସରସ୍ୱତୀଙ୍କ ସହ ସେହି ରାସ୍ତାରେ ଘୋଡ଼ା ଛୁଟାଇ ଆଗେଇ ଚାଲିଲେ । ବର୍ତ୍ତମାନ ସମୟରେ ଦରକାର ଆଶ୍ରୟ, ଖାଦ୍ୟ ଓ ବିଶ୍ରାମ । ଘୋଡ଼ା ପାଇଁ ମଧ୍ୟ ଆବଶ୍ୟକ ଖାଦ୍ୟ ଏବଂ ଜଳ । ଅନେକ ଦୂର ଆଗେଇବା ପରେ ସମ୍ମୁଖରେ ଏକ ନିର୍ଝରଣୀ ଏବଂ ତାହାର ତଟରେ ପର୍ଣ୍ଣକୁଟୀର ।

କୁଟୀର ସମ୍ମୁଖରେ ରୋହିତ ଶ୍ମଶ୍ରୁ ବୃଦ୍ଧ ସନ୍ନ୍ୟାସୀ ପଦ୍ମାସନରେ ଆସୀନ । ସମ୍ରାଟ ଅଶ୍ୱକୁ ନିର୍ଝରଣୀର ଜଳ ଆକଣ୍ଠ ପାନ କରାଇ ନିକଟବର୍ତ୍ତୀ ଗଛରେ ବାନ୍ଧି ରଖିଲେ । କିନ୍ତୁ ସନ୍ନ୍ୟାସୀଙ୍କର ତେଜସ୍ୱୀ ମୂର୍ତ୍ତି ଦେଖି ତାଙ୍କର ଧ୍ୟାନ ଭଗ୍ନ କରିବା ନିମନ୍ତେ ସାହସ କରିପାରିଲେ ନାହିଁ । ସରସ୍ୱତୀଙ୍କ ସହ ସେଠାରେ ବହୁକ୍ଷଣ ବସି ରହିଲେ ।

କିଛି ସମୟପରେ, ଲକ୍ଷ୍ୟ କଲେ ସନ୍ନ୍ୟାସୀଙ୍କର ଶରୀର ଭୂମିସ୍ପର୍ଶ ତ୍ୟାଗକରି, କ୍ଷୀଣବେଗରେ କ୍ରମେ କ୍ରମେ ଉପରକୁ ଉଠିବାରେ ଲାଗିଲା ଏବଂ କିଛି ସମୟରେ ସେହି ପଦ୍ମାସନ ବିଶିଷ୍ଟ ଶରୀର ଭୂମିଠାରୁ ଉପରେ ବାୟୁମଣ୍ଡଳରେ ଭାସମାନ ଅବସ୍ଥାରେ ଅବସ୍ଥାପିତ ହେଲା ।

ଏ କି ଆଶ୍ଚର୍ଯ୍ୟ ? ଚମତ୍କୃତ ହେଲେ ସମ୍ରାଟ ଏବଂ ଦେବୀ ସରସ୍ୱତୀ, ବୁଝିବା ପାଇଁ ସମୟ ଲାଗିଲା ନାହିଁ ଯେ ସନ୍ନ୍ୟାସୀ ଯୋଗ ସାଧନାର ପରାକାଷ୍ଠାରେ ଉପନୀତ ।

ପ୍ରାୟ ଏକ ପ୍ରହର ପରେ, ସନ୍ନ୍ୟାସୀଙ୍କ ଶରୀର ପୁନଶ୍ଚ ଭୂମି ସ୍ପର୍ଶ କଲା ଏବଂ ସେ ସମ୍ବିତ ଫେରିପାଇ ଆଶ୍ରମ ସମ୍ମୁଖରେ ଅତିଥିଙ୍କୁ ଦେଖି ଆନନ୍ଦରେ ବିହ୍ୱଳ ହୋଇଗଲେ । ସେହି ସମୟରେ ଜଣେ ମହିଳା, ସନ୍ନ୍ୟାସୀଙ୍କ ନିମନ୍ତେ କ୍ଷୀର ପ୍ରସାଦ ଆଣି ପହଞ୍ଚାଇଲେ, ଯେପରି ବହୁ ପୂର୍ବରୁ ଆଦିଷ୍ଟ । ସନ୍ନ୍ୟାସୀ ନିଜର କ୍ଷୁଧା ପିପାସା ଭୁଲି ପରସ ସ୍ନେହରେ ଆଗନ୍ତୁକ ଅତିଥି ଦୁଇଜଣଙ୍କୁ କ୍ଷୀର ପ୍ରସାଦ ଅର୍ପଣ କଲେ ଏବଂ ପାର୍ଶ୍ୱବର୍ତ୍ତୀ କୁଟୀରରେ ସେମାନଙ୍କର ଆଶ୍ରୟ ନେବାର ବ୍ୟବସ୍ଥା କଲେ ।

ବିଶ୍ରାମାନ୍ତେ ଆଗନ୍ତୁକ ଦ୍ୱୟ, ସନ୍ନ୍ୟାସୀଙ୍କର ଦର୍ଶନ କରିବା ସମୟକୁ ସେ ନିଜର ଦିବ୍ୟ ଦର୍ଶନରେ ଜାଣିପାରି ଥିଲେ ସମ୍ରାଟଙ୍କର ପରିଚୟ ଏବଂ ତାଙ୍କର ରାଷ୍ଟ୍ରପ୍ରେମର ପରାକାଷ୍ଠା । ଏହି ମହର୍ଷି ଥିଲେ ଅଷ୍ଟାଙ୍ଗ ଯୋଗର ପ୍ରଣେତା 'ପାତଞ୍ଜଳି' । କାଳକ୍ରମେ, ମହର୍ଷି ସମ୍ରାଟ ଖାରବେଳଙ୍କୁ ଏବଂ ସରସ୍ୱତୀଙ୍କୁ ମଗଧ ରାଜ୍ୟର ଗୁପ୍ତଚରମାନଙ୍କଠାରୁ ଗୋପ୍ୟ ଭାବରେ ନିଜ ଆଶ୍ରୟରେ ରଖାଇ, ଯୋଗ ଶିକ୍ଷାଦେଲେ ଏବଂ ତଦୁପରି ଶିକ୍ଷାଦେଲେ ଭାରତ ଭୂଖଣ୍ଡର ବିଶେଷତ୍ୱ । ଏହି ଭୂଖଣ୍ଡ ଯୁଗଯୁଗଧରି ସମସ୍ତ ସଭ୍ୟତାର ମନୁଷ୍ୟମାନଙ୍କୁ ନିଜର ଆଶ୍ରୟ ପ୍ରଦାନ କରିଛି । କିନ୍ତୁ କେବେ ବି ନିଜର ନିଜତ୍ୱ ହରାଇ ନାହିଁ ।

ସମ୍ରାଟ ଖାରବେଳ, ସରସ୍ୱତୀଙ୍କ ସହ ଏହି ମହାସତ୍ୟର ଉପଲବ୍ଧି କରି ଫେରି ଆସିଲେ ଉତ୍କଳ ରାଜ୍ୟକୁ ଏବଂ ତାହାପରେ ମଗଧ ଆକ୍ରମଣ କଲେ, ବିଶେଷ ଏବଂ ସୈନ୍ୟବାହିନୀ ସହ ଯେଉଁଥିରେ ବନବାସୀମାନେ ଥିଲେ ଅଗ୍ରଣୀ ଯୋଦ୍ଧା ।

ଏହି ଆକ୍ରମଣର ପ୍ରଧାନ ଉଦ୍ଦେଶ୍ୟ ଥିଲା ମହାପ୍ରଭୁ ଜଗନ୍ନାଥ ତଥା କେତୁଭଦ୍ର ଜୀନଙ୍କୁ ଉତ୍କଳକୁ ଫେରାଇ ଆଣିବା ଏବଂ ତିନି ଶତାବ୍ଦୀର ପରାଜୟର ପ୍ରତିଶୋଧ । ଏହାର ପରବର୍ତ୍ତୀ ଘଟଣାବଳୀ କାଳକ୍ରମେ ପ୍ରକାଶ କରାଯିବ । ଉତ୍କଳ କଳିଙ୍ଗ ନିବାସୀ ସମସ୍ତ ମନୁଷ୍ୟ କିନ୍ତୁ ନିଜ ଐତିହ୍ୟ ଅନୁଭବ କରନ୍ତୁ, ଏହା ଲେଖକର ଏକାନ୍ତ କାମନା ।

ନଂ–୧୨, ୧୦କ୍ରସ୍
ଅଞ୍ଜୁନାଥ ନଗର,
ବାଙ୍ଗାଲୋର–୫୬୦୦୨୩

# ତନ୍ତ୍ର ଉପାସ୍ୟର ଦେବତା ଶ୍ରୀଜଗନ୍ନାଥ

ଓମ୍ ପ୍ରକାଶ

କେତେ ମତ, କେତେ ତତ୍ତ୍ୱ , କେତେ ଧର୍ମ, କେତେ ଦର୍ଶନ, କେତେ ବୈଚିତ୍ର୍ୟ ପୁଣି କେତେ ବିରୋଧାଭାସର ବ୍ୟୂହ ଭିତରେ ତୁମେ ଆହୁରି ହୋଇ ଉଠିଚ । ଅବ୍ୟକ୍ତ, ଅସୀମ ଓ ଅଚିନ୍ତ୍ୟ। ତୁମ ପାଇଁ ସୃଷ୍ଟି ହୋଇଛି କେତେ ପୁରାଣ, ସାହିତ୍ୟ, ଇତିହାସ, ସଂସ୍କୃତି, କାବ୍ୟ, କବିତା, କାହାଣୀ, କିମ୍ବଦନ୍ତୀ । ଏପରିକି ମୁନି, ଋଷି ଓ ଦେବତାମାନେ ମଧ୍ୟ ତୁମର ଆଦି ଅନ୍ତ ଖୋଜି ପାଇ ନାହାଁନ୍ତି । ଏପରିକି ବେଦବ୍ୟାସ ବ୍ରହ୍ମା ତାଙ୍କର ଚତୁଃମୁଖରେ ତୁମର ଲୀଳାଗାନ କରି ଯୁଗର ଅବସାନ ଘଟିଛି, ଅଥଚ ତୁମେ ସେହିପରି ରହସ୍ୟାବୃତ୍ତ ହୋଇ ରହିଆସିଛ। ଛାର ମଣିଷ କାହୁଁ ଭେଦ କରିପାରିବ ସେ ଅଜ୍ଞାତ ରହସ୍ୟ। ଶ୍ରୀଜଗନ୍ନାଥ ତୁମେ ନିଖିଳ ବ୍ରହ୍ମାଣ୍ଡର ଅଧୀଶ୍ୱର, ତୁମେ ହିଁ ସମସ୍ତ ଶକ୍ତି, ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ମୂଳାଧାର ଏବଂ ସୃଷ୍ଟି–ସ୍ଥିତି ଓ ପ୍ରଳୟର କାରଣ। ବିବିଧତା ମଧ୍ୟରେ ଏକତ୍ୱ ତମ ଅନନ୍ତ ଲୀଳାର ବୈଶିଷ୍ଟ୍ୟ। ତମେ ତ ଆର୍ଯ୍ୟ–ଅନାର୍ଯ୍ୟର ପରମାରାଧ୍ୟ। ତୁମକୁ କିଏ କେତେ ରୂପରେ ଚାହଁଛି । କେତେ ଭାବ, ଭକ୍ତି ଉପଚାରରେ ଉପାସନା କରୁଛି। ସେ ସଦା



ଜାତି ପାଖରେ ନନ୍ଦନନ୍ଦନ ଗୋପାଳ ବାଳକ, ସେ ଗୋପୀନାଥ, ଗୋପିଜନବଲ୍ଲଭ, ରାଧାକାନ୍ତ। ତେଣୁ ସେ ଗୋପାଳ ମନ୍ତ୍ରରେ ପୂଜିତ ଶ୍ରୀକୃଷ୍ଣ ପୁରୁଷୋତ୍ତମ। ପୁଣି ସେ ଏ ଜାତି ପାଖରେ ଅତି ଆଦରର ବସୁଦେବ ନନ୍ଦନ ବାସୁଦେବ, ଦେବକୀ ସୁତ ଓ ଯଶୋଦା କୁମର ଭାବେ ପରିଚିତ। ଓଡ଼ିଶାର ଜନଜୀବନରେ ସେ ଜଗନ୍ନାଥ ଶ୍ରୀପୁରୁଷୋତ୍ତମ। ଜନତାଙ୍କର ତେଲ ଲୁଣ ସଂସାର ମଧ୍ୟରେ ସାଥୀ ଜୀବନର ସେ କଳାକାହ୍ନୁ । ଏ ଜାତି ସେ ଅସମ୍ପୂର୍ଣ୍ଣ ବିଗ୍ରହରେ ଦେଖେ କୋଟି କନ୍ଦର୍ପର ମଦନମୋହନ ରୂପ । ହାତରେ ତାହାର ବଂଶୀ ନାହିଁ ତଥାପି ସେ ଗୋପୀଜନ ମନୋହାରୀ, କରରେ ଆଙ୍ଗୁଳି ନାହିଁ ସେ ମାଣିକ ଗୋପାଳୁଣିଠାରୁ ଦହିଖାଇ ତାକୁ ଆଙ୍ଗୁଳିର ମୁଦ୍ରିକା ଦେଇଛି । ଦାସିଆ ବାଉରିର ନଡ଼ିଆକୁ ଶୂନ୍ୟ ହସ୍ତରେ ଗ୍ରହଣ କରି ସେ ମହାବାହୁ ବଳିଆର ଭୁଜ ଏବଂ ହସ୍ତରେ ସୁଦର୍ଶନ ଚକ୍ରକୁ ଧାରଣ କରି ସେ ଚକ୍ରଧାରୀ । ପୁଣି କୁହାଯାଇଛି ଜଗନ୍ନାଥଙ୍କର କୌଣସି ଆକାର ନାହିଁ, ସେ ନିରାକାର । ସେ ଓଁକାର ପୁରୁଷ । ସେ ଶୂନ୍ୟ ପୁରୁଷ । ଜଗନ୍ନାଥ ଅଜନ୍ମା ଓ ସ୍ୱୟଂ

ସୃଷ୍ଟି ହୋଇଥିବାରୁ ତାହାର ତ ଆଦି ନାହିଁ କି ଅନ୍ତ ନାହିଁ । ପୁଣି ସେ ସର୍ବତ୍ର ବିରାଜିତ ଏବଂ ସର୍ବକ୍ଷମ । ସେଥିପାଇଁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କୁ ସୃଷ୍ଟିର ଅଲୌକିକ ଦେବତା ବୋଲି ଅବିହିତ କରି ଏପରି କହିଛନ୍ତି –

ପାଦନାହିଁ ସେ ଯେ ଗମନ କରଇ
କର୍ଣ୍ଣ ନାହିଁ ସବୁ ଶୁଣେ ।
ଚକ୍ଷୁ ନାହିଁ ତାର ତିନିପୁର ଦିଶେ
ଜିହ୍ୱା ନାହିଁ ସ୍ୱାଦ ମଣେ ॥

ତେଣୁ ହେ ପ୍ରଭୁ ତୁମରି ଅମୃତମୟ ଚେତନାରେ ବିଶ୍ୱର ସବୁ ଧର୍ମର ଅଦ୍‌ଭୁତ ସମନ୍ୱୟ ଘଟିଛି ତୁମରି ଠାରେ । ଏଣୁ ତୁମର ସଂସ୍କୃତି ବିଶ୍ୱ ସଂସ୍କୃତି ଏବଂ ଧର୍ମ ମାନବ ଧର୍ମ ।ଏହା ବ୍ୟତୀତ ସେ ନିର୍ଗୁଣ, ନିରାକାର ସ୍ୱରୂପ ଭାବେ ପରିଚିତ ହୋଇ ଜଗତର ନାଥ ଶ୍ରୀଜଗନ୍ନାଥ ଯେ କି ବ୍ୟହ୍ୟତଃ ବୈଷ୍ଣବ ଭାବେ ଆରାଧ୍ୟ ହେଲେ ମଧ ଶକ୍ତି ଉପାସନା ସହିତ ପ୍ରତ୍ୟକ୍ଷ ସମ୍ପର୍କ ଓ ତାଙ୍କ ପୀଠସ୍ଥଳୀ ଶ୍ରୀମନ୍ଦୀରକୁ ତନ୍ତ୍ର ସାଧନାର ମୂଳ ପୀଠ କହିବା ହୁଏତ ଅବାସ୍ତବ ଲାଗିପାରେ । କିନ୍ତୁ ବ୍ୟବହାରିକ ଦୃଷ୍ଟିକୋଣରୁ ଓ ମହାପ୍ରଭୁଙ୍କର ରୀତିନୀତି ଉପାସନା ଶୈଳୀ ବିଭିନ୍ନ ତନ୍ତ୍ର ଓ ପ୍ରଚଳିତ ପାରମ୍ପରିକ ବିଧିବିଧାନରୁ ଗୃହୀତ । ତେଣୁ ଶ୍ରୀଜଗନ୍ନାଥଙ୍କର ଦୈନିକ ଉପାସନା ଶୈଳୀ ଓ ତନ୍ତ୍ରଶାସ୍ତ୍ରକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ– ସ୍ୱୟଂ ଶ୍ରୀଜଗନ୍ନାଥ ନିଜେ ଜଣେ ତନ୍ତ୍ରାଚାରୀ ଏବଂ ତାଙ୍କର ପୀଠ ଶ୍ରୀମନ୍ଦିର ଏକ ତନ୍ତ୍ର ପୀଠ । ଦକ୍ଷ ଯଜ୍ଞରେ ସତୀଙ୍କ ଦେହାବସାନ ପରେ ତାଙ୍କ ଅଧାପୋଡ଼ା ଶବକୁ ସ୍କନ୍ଧରେ ଧରି ଶିବ ଯେତେବେଳେ ତାଣ୍ଡବନୃତ୍ୟ କଲେ, ସେତେବେଳେ ସତୀଙ୍କର ଦଗ୍ଧ ଶରୀରରୁ ବିଭିନ୍ନ ଅଂଶ ପୃଥିବୀର ୬୪ ଗୋଟି ସ୍ଥାନରେ ପଡ଼ିଥିଲା, ଏଥିଯୋଗୁଁ ୬୪ ଗୋଟି ଶକ୍ତିପୀଠ ସୃଷ୍ଟି ହେଲା । ସେଥିମଧ୍ୟରୁ ଶ୍ରୀକ୍ଷେତ୍ରରେ ସତୀଙ୍କର ଯୋନି ଅଂଶ ପଡ଼ିଥିଲା ବୋଲି ପ୍ରମାଣ ରହିଛି । ତେଣୁ ତନ୍ତ୍ରଶାସ୍ତ୍ର ଅନୁସାରେ ଶ୍ରୀକ୍ଷେତ୍ରକୁ ଅନ୍ୟତମ ଶକ୍ତିପୀଠ ଭାବରେ ବର୍ଣ୍ଣନା କରାଯାଏ ।

ଓଡ଼ିଶାରେ ତନ୍ତ୍ରକୁ ମୁଖ୍ୟତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ସେଗୁଡ଼ିକ ହେଲା– ଆଦିବାସୀ ତନ୍ତ୍ର, ବୌଦ୍ଧତନ୍ତ୍ର ଓ ହିନ୍ଦୁ ତନ୍ତ୍ର । ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରରେ ଅଧିଷ୍ଠିତ ହେବା ପୂର୍ବରୁ ଶବର ରାଜା ବିଶ୍ୱାବସୁ ପାଖରେ ରହି ଶବର ସଂପ୍ରଦାୟ ମଧରେ ପୂଜିତ ହେଉଥିଲେ । ଯେଉଁ ସମୟରେ କି କୌଣସି ଉପଚାର, ମନ୍ତ୍ର ଓ ଯନ୍ତ୍ର ନଥିଲା ବରଂ ବାହ୍ୟ ଆଡ଼ମ୍ବର ଅପେକ୍ଷା ହୃଦୟର ଭକ୍ତି ହିଁ ଥିଲା ଶ୍ରେଷ୍ଠ ଉପଚାର । ତାଙ୍କର ଆହାର ବ୍ୟବହାର ମଧ ନିଶ୍ଚିତ ଶବର ସଂପ୍ରଦାୟର ହୋଇଥିବ । ଏପରିକି ଅରଣ୍ୟର ଫଳମୂଳ ଏବଂ ହୁଏତ ମାଂସାଦି ତାଙ୍କ ନିକଟରେ ଅର୍ପିତ ହୋଇଥିବ । ସେ କେବେହେଲେ ଆଜିର ଆର୍ଯ୍ୟସୁଲଭ ଢ଼ଙ୍ଗରେ ଉପାସିତ ହୋଇନଥିବେ ବା ତାଙ୍କ ପାଇଁ ଦୈନିକ ଷାଠିଏ ପୌଟି ଭୋଗର ବ୍ୟବସ୍ଥା ବା ଛତିଶା ନିଯୋଗ ସେବକ ନିଯୁକ୍ତି ହୋଇନଥିବେ । ଅତଏବ୍ ପ୍ରଭୂ ଶୀଜଗନ୍ନାଥ ଶ୍ରୀମନ୍ଦିରିରେ ଅଧିଷ୍ଠିତ ହେବା ପୁର୍ବରୁ ଶବର ବା ଅନାର୍ଯ୍ୟ ସଂପ୍ରଦାୟର ଠାକୁର ହିସାବରେ ଶାବରୀ ତନ୍ତ୍ରରେ ପୂଜିତ ହେଉଥିଲେ ।

ହିନ୍ଦୁତନ୍ତ୍ର ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ମନ୍ତ୍ର ପୂଜାରେ ଉପାସ୍ୟ କିନ୍ତୁ ଏହା ସହିତ ତନ୍ତ୍ର ମତରେ ମଧ୍ୟ ଏହି ଦେବତା ପୂଜିତ । ଅଷ୍ଟମ ନବମ ଶତାବ୍ଦୀ ବେଳକୁ ଶ୍ରୀଜଗନ୍ନାଥ ତନ୍ତ୍ରୋକ୍ତ ଭୈରବଙ୍କ ସହ ବିଚାର କରାଯାଇ ବୈଷ୍ଣବ ଉପାସନା ବିଧିରେ ତାନ୍ତ୍ରିକତା ପ୍ରବେଶ କଲା ଏବଂ ତନ୍ତ୍ରାଚାରିମାନେ ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ବୋଲି ଘୋଷଣା କରି ଜଗନ୍ନାଥଙ୍କୁ ଜଣେ ତନ୍ତ୍ର ଉପାସ୍ୟର ଦେବତା ବୋଲି ଗ୍ରହଣ କଲେ । ତନ୍ତ୍ରମତକୁ ପ୍ରମାଣକୁ ନେଲେ ଶ୍ରୀମନ୍ଦିରରେ ପଞ୍ଚମକାର ପୂଜା ଦେଖିବାକୁ ମିଳେ । ତେଣୁ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ପଞ୍ଚମକାର ପୂଜାର ମୂଳ ଆଧାର । ସେଥିପାଇଁ ଶାସ୍ତ୍ରରେ ଏପରି ଭାବରେ କୁହାଯାଇଛି ଯେ–

ନ ମାଂସ ଭକ୍ଷଣେ ଦୋଷ, ନ ମଦ୍ୟେ ନଚ଼ ମୈଥୁନେ
ପ୍ରବୃତ୍ତିରଷା ଭୂତାନାଂ ନିବୃତ୍ତଶ୍ଚ ମହାଫଳଃ ॥

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପୂଜାର୍ଚ୍ଚନା ବେଳେ ଯଦିଓ ପଞ୍ଚମକାର ପୂଜା ଉପଚାର ପ୍ରତ୍ୟକ୍ଷ ଭାବରେ କରାଯାଇନଥାଏ, ତେବେ ଅନୁରୂପ ଭାବେ କାଂସ୍ୟ ପାତ୍ରରେ ପଇଡ଼ ଜଳ ସହିତ କର୍ପୂର, ବିରିପିଠା, ଅଦାପକା ଖେଚେଡ଼ି ଆଦି ଲାଗି କରାଯାଏ । ଏତଦ୍ ବ୍ୟତୀତ ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଶ୍ରୀମନ୍ଦିରରେ ଆଶ୍ୱିନ ମାସ ଦଶହରା (ମହାଅଷ୍ଟମୀ, ମହାନବମୀ ଓ ବିଜୟା ଦଶମୀ)ରେ ବିମଳାଙ୍କ ପାଖରେ ମେଷ ବଳି ପଡ଼ିଥାଏ । ଦ୍ୱାଦଶ ଶତାବ୍ଦୀଠାରୁ ଶ୍ରୀଜଗନ୍ନାଥଙ୍କଠାରେ ବିଷ୍ଣୁତ୍ୱ ଆରୋପ ହେଲା ପରେ ଶ୍ରୀମନ୍ଦିରର ପହଡ଼ ପଡ଼ିଲା ପରେ ପଶ୍ଚିମ ଦ୍ୱାର ଦେଇ ବଳି ଆସି ମା' ବିମଳାଙ୍କ ପାଖରେ ଉତ୍ସର୍ଗ ହୋଇଥାଏ । ଅବଶ୍ୟ ଏହି ବଳି କାର୍ଯ୍ୟ ସମାହିତ ହେବା ପୂର୍ବରୁ ମା' ବିମଳା ଗଳାରେ ପରିଧାନ କରିଥିବା ବଳଦେବଙ୍କ ଅଧର ଓ ପଦକକୁ କାଢ଼ି ନିଆଯାଏ । ଯେଉଁଟାକି ବୈଷ୍ଣବ ଧର୍ମର ବିରୁଦ୍ଧାଚରଣ କରେ । କିନ୍ତୁ ଉକ୍ତ ବଳିକାର୍ଯ୍ୟ ବାମାଚାରୀ ତାନ୍ତ୍ରିକତା ଭାବେ ଗ୍ରହଣଯୋଗ୍ୟ ।

ବଳିକାର୍ଯ୍ୟ ସମାପନ ପରେ ଦେଉଳ ଶୋଧ ହେବା ଦ୍ୱାରା କ'ଣ ଦୋଷ ତୁଟିଗଲା ? ନାଦ ଶ୍ରୀଜୀଉଙ୍କର ପହଡ଼ ପକାଇ ଦେଇ ତାଙ୍କର ଆଖିତଳେ ଯାବତୀୟ ଅକାର୍ଯ୍ୟ କରିଗଲେ ତାକୁ ଦେବତା ଜାଣି ପାରୁ ନାହାଁନ୍ତି। ନା ବରଂ ସେହି କାର୍ଯ୍ୟକୁ ଦେବତାଙ୍କର ସମର୍ଥନ ମିଳିଯାଇଛି। ଏଣୁ ଏହାକୁ ଜୀବହିଂସା ବୋଲି ମନେ କରିବାରେ କୌଣସି କାରଣ ନାହିଁ। ସୃଷ୍ଟିର ଆରମ୍ଭରୁ ହିଁ ଉଦର ପୂର୍ତ୍ତି ନିମନ୍ତେ ମଣିଷ ଏହା କରିଆସିଛି। ଏପରିକି ବୈଦିକ ଯୁଗର ଆର୍ଯ୍ୟ ଋଷିମାନେ ମଧ୍ୟ ଏଥିରୁ ମୁକ୍ତି ନ ଥିଲେ। ଏହାଛଡ଼ା ପ୍ରକୃତିରେ ଭାରସାମ୍ୟ ବଜାୟ ରଖିବାରେ ମଧ୍ୟ ଏହା ସହାୟକ ହେଉଥିଲା।

ଏହା ବ୍ୟତୀତ ଶ୍ରୀଜୀଉଙ୍କଠାରେ ଲାଗି କରାଯାଉଥିବା ପ୍ରସାଦ ବିମଳାଙ୍କ ପାଖରେ ଅର୍ପିତ ହେବା ପରେ ଯାଇ ମହାପ୍ରସାଦରେ ପରିଣତ ହୁଏ । ଯେଁଉଥିରୁ ଅର୍ଣ୍ଣତ୍ୱ ଲୋପପାଇ ବ୍ରହ୍ମତ୍ୱ ପ୍ରବେଶ କରେ । ତେଣୁ ତନ୍ତ୍ର ମତରେ ମା' ପ୍ରସାଦରୁ ହିଁ ମହାପ୍ରସାଦର ସୃଷ୍ଟି । ଏହା ବ୍ୟତୀତ ଶ୍ରୀମନ୍ଦିରର ପାକଶାଳାରେ ପ୍ରସାଦ ପ୍ରସ୍ତୁତି ମଧ୍ୟ ତାନ୍ତ୍ରିକତା ପ୍ରୟୋଗର ପ୍ରମାଣ ଦିଏ । ଶ୍ରୀଜଗନ୍ନାଥଙ୍କ ପ୍ରସାଦ ପ୍ରସ୍ତୁତି ହେଉଥିବା ଚୁଲିକୁ ଷଟ୍ କୋଣାତ୍ମକ ଅଗ୍ନିଯନ୍ତ୍ର ବୋଲି କୁହାଯାଏ। କାରଣ ଚୁଲିରେ ୬ ଗୋଟି ଝିଙ୍କା ଥାଏ। ଏହା ବ୍ୟତୀତ ପ୍ରସାଦ ପାକ ହେବା ପରେ ଷଟ୍‌ଚକ୍ର ଆରୋପିତ କରାଯାଇ ଶ୍ରୀଜୀଉଙ୍କୁ ଅର୍ପଣ କରାଯାଏ । ଏହି ଚକ୍ରଗୁଡ଼ିକ ହେଲେ ଯଥାକ୍ରମେ– ଭୈରବୀଚକ୍ର, ବ୍ରହ୍ମଚକ୍ର, ପୀଠଚକ୍ର, ନୀଳଚକ୍ର ଓ ଦେବଚକ୍ର। ଏହି ଷଟ୍‌ଚକ୍ରର ସଂଯୋଗକାରିଣୀ ଭାବେ ସୁଭ୍ରମୟୀ ଦେବୀ ଶୁଭଦ୍ରାଙ୍କୁ ବିବେଚନା କରାଯାଏ । ତେଣୁ ଜଗନ୍ନାଥ ସଂସ୍କୃତି ବା ବୈଷ୍ଣବ ଧର୍ମ ସହିତ ଶାକ୍ତ ଧର୍ମର ନିଶ୍ଚିତ ସମନ୍ୱୟ ଘଟିଛି, ଏଥିରେ ଦ୍ୱିମତ ହେବାର ନାହିଁ । ସେଥିପାଇଁ ମା ବିମଳାଙ୍କୁ ଶ୍ରୀକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ବା ଶ୍ରୀକ୍ଷେତ୍ର ରାଜେଶ୍ୱରୀ ବୋଲି ଶ୍ରୀଦେବୀ ବନ୍ଦନାରେ କୁହାଯାଇଛି । ଏହା ବ୍ୟତୀତ ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ବୋଲି ଅବିହିତ କରାଯାଇ ପ୍ରାର୍ଥନାରେ ଏପରି କୁହାଯାଇଛି–

ବିମଳତ୍ୱଂ ଜଗତମାତା
ବିମଳତ୍ୱଂ ଜଗତ ପିତାଃ।
ବିମଳତ୍ୱଂ ଜଗଦ୍ଧାତ୍ରୀ
ବିମଳୟୈ ନମୋନମଃ॥

ଏହା ବ୍ୟତୀତ ପୁରୁଷୋତ୍ତମ କ୍ଷେତ୍ରସ୍ଥ ଦକ୍ଷୀଣକାଳୀଙ୍କ ପୀଠ ବହୁ ପ୍ରାଚୀନ । ଏହି ଦକ୍ଷିଣକାଳୀ ପୀଠ ହିଁ ଆଦିପୁରୁଷ ପରଂବ୍ରହ୍ମ ସ୍ୱରୂପ ଶ୍ରୀଜଗନ୍ନାଥ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ। ମନ୍ଦିରର ବେଢ଼ା ମଧ୍ୟରେ ତଥା ବିମଳାଙ୍କର ଜଗମୋହନର ଦକ୍ଷିଣ ଦିଗରେ ଯେଉଁ କାଳୀ ମୂର୍ତ୍ତି ପ୍ରତିଷ୍ଠିତ, ସେ ହିଁ ହେଉଛନ୍ତି ଦକ୍ଷିଣକାଳୀ। ଶ୍ରୀକ୍ଷେତ୍ରରେ ବିଷ୍ଣୁ (ଜଗନ୍ନାଥ) କାଳ ହେଲେ ମଧ୍ୟ ତାଙ୍କର ଶକ୍ତି ହେଉଛନ୍ତି କାଳୀ (ଦକ୍ଷିଣକାଳୀ ବା ବୈଷ୍ଣବୀ) । ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରରେ ବିଷ୍ଣୁ, ପୁରୁଷୋତ୍ତମ, କୃଷ୍ଣ ଓ ବାସୁଦେବ ରୂପେ ପୂଜିତ ହେଉଥିଲେ ମଧ୍ୟ ତନ୍ତ୍ର ମତରେ ଶ୍ରୀଜଗନ୍ନାଥଙ୍କୁ ସ୍ୱୟଂ ଦକ୍ଷିଣକାଳୀକା, ବଳଭଦ୍ରଙ୍କୁ ଶୁଭ୍ର ଜ୍ୟୋତିର୍ମୟୀ ତାରା ଓ ଦେବୀ ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ରୂପେ ବିବେଚନା କରାଯାଏ । ସେଥିପାଇଁ ଦେବୀ ଭାଗବତର ମହାନିର୍ବାଣ ମନ୍ତ୍ରରେ ଏପରି ଭାବରେ କୁହାଯାଇଛି –

ତାରା ସାକ୍ଷାତ୍ ଶୂଳ ପାଣିଃ ସୁଭଦ୍ରା ଭୁବନେଶ୍ୱରୀ
ନିଳାଦ୍ରୌତୁ ଜଗନ୍ନାଥ ସାକ୍ଷାତ୍ ଦକ୍ଷିଣ କାଳୀକା

ଏହି ଦକ୍ଷିଣ କାଳୀଙ୍କର ମୂର୍ତ୍ତି ପୂଜାବିଧିରେ ଦୁଇ ପ୍ରକାରର ଯଥା– ସାତ୍ୱିକ ଓ ତାମସିକ। କଲିକତା ସ୍ଥିତ କାଳୀଘାଟରେ ଥିବା କାଳୀ ହେଉଛନ୍ତି ତାମସିକ କାରଣ ସେଠାରେ ପଶୁବଳୀ ପ୍ରଥା ପ୍ରଚଳିତ। ପୁନଶ୍ଚ ସେହି କଲିକତାର ଦକ୍ଷିଣେଶ୍ୱରସ୍ଥିତ ଦକ୍ଷିଣକାଳୀ ସାତ୍ତ୍ୱିକ ଅର୍ଥାତ୍ ସେଠାରେ ପଶୁବଳି ନାହିଁ । ସେହିପରି ଶୀକ୍ଷେତ୍ରସ୍ଥ ଦକ୍ଷିଣକାଳୀ ସ୍ୱାତ୍ତ୍ୱିକ ବୈଷ୍ଣବୀ । ଯଦିବା ଏହି ମୂର୍ତ୍ତିଚତୁର୍ଭୁଜା ଓ ତାଙ୍କର ବାମହସ୍ତରେ ମୁଣ୍ଡ ଓ ଖର୍ପର ଏବଂ ଦକ୍ଷିଣ ହସ୍ତ ଦ୍ୱୟରେ ଖଡ୍ଗ ଓ ଅଭୟ ଜପାମାଳି ଆୟୁଧ ଭାବେ ରହିଛି। କିନ୍ତୁ ସେଠାରେ ପଶୁବଳି ନିଷେଧ। ଶ୍ରୀଜଗନ୍ନାଥଙ୍କର ତାଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ଥିବାରୁ କେବଳ ଦକ୍ଷିଣକାଳୀଙ୍କର ସିନ୍ଦୂର ଶ୍ରୀମନ୍ଦିରର ରୋଷଘରେ ପ୍ରବେଶ କରେ ଏବଂ ସପ୍ତପୁରୀ ଅମାବାସ୍ୟା ପୂର୍ବଦିନ ରାତିରେ ଶ୍ରୀଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ଆସେ ଓ ସେହି ଆଜ୍ଞାମାଳ ଦକ୍ଷିଣ କାଳୀଙ୍କୁ ଲାଗି କରାଯାଏ। ତା' ପରଦିନ ଠାକୁରାଣୀଙ୍କଠାରୁ ଆଜ୍ଞାମାଳ ଯାଇ ରୋଷଘର ସ୍ଥିତ ପିଠାଚୁଲିର ଉପରେ ବନ୍ଧା ଯାଏ । ତେଣୁ ଏ ଯେଉଁ ସଂପର୍କ, ଏଇଆ ସୂଚିତ କରେ ଯେ ଦକ୍ଷିଣକାଳୀକା ବୈଷ୍ଣବ ଓ ଶାକ୍ତଚିନ୍ତାଧାରାର ଏକ ସମନ୍ୱିତ ଚେତନା।

ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥଙ୍କ ନବଦୀନାତ୍ମକ ଯାତ୍ରା ବା ରଥଯାତ୍ରା ପରେ ନୀଳାଦ୍ରିବିଜେ ଦିନ ଅର୍ଥାତ୍ ଦ୍ୱାଦଶୀଦିନ ଶ୍ରୀଜୀଉଙ୍କ ପାଖରେ ରଥ ଉପରେ ଅଧର ପଣା ଭୋଗ କରାଯାଏ। ଏହି

ପଣା ହାଣ୍ଡି ସାଧାରଣତଃ ମହାପ୍ରଭୁଙ୍କର ଅଧର ଉଚ୍ଚତା ଅନୁଯାୟୀ ମାପ ହୋଇ ପୋଡା ମାଟି ହାଣ୍ଡିରେ ନିର୍ମିତ ହୋଇଥାଏ ଓ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଭୋଗ ହେଉଥିବା ପଣା ଅଷ୍ଟଦ୍ରବ୍ୟ ସମିଶ୍ରିତ ଛେନା, ସର, କଦଳୀ, କ୍ଷୀର, ଗୋଲ ମରିଚ ଗୁଣ୍ଡ, କର୍ପୂର ଓ ଜାଇଫଳରେ ତିଆରି ହୋଇଥାଏ । ଶାକ୍ତ ମତରେ ପୋଡ଼ା ମାଟିହାଣ୍ଡି ତଳେ କଞ୍ଚାମାଟି ରଖାଯାଇ ଶ୍ରୀଜୀଉଙ୍କ ଆକଣ୍ଠ କରାଯାଏ। ତେଣୁ ପ୍ରତ୍ୟେକ ଅଧର ପଣା ମାଟି ହାଣ୍ଡିର ମାପ ସମାନ ନଥାଏ। ଜଗନ୍ନାଥଙ୍କ ପାଖରେ ଅଧର ପଣା ଶାକ୍ତ ପୂଜାରେ ଗୋଟାଫଳ ନୈବେଦ୍ୟ ହେବା ପରି ଆକଣ୍ଠ ଗୋଟା ମାଟି ହାଣ୍ଡିର ନୈବେଦ୍ୟ ଶ୍ରୀଜୀଉଙ୍କଠାରେ ଶାକ୍ତ ଦର୍ଶନର ବାର୍ତ୍ତା ବହନ କରେ ।

ହୁଏତ ଶ୍ରୀଜଗନ୍ନାଥ ଚେତନାରେ ଅଧର ପଣାର ଉଦ୍ଦେଶ୍ୟ ଭିନ୍ନ ହୋଇପାରେ । ପ୍ରଭୁ ଜଗନ୍ନାଥ ପତିତମାନଙ୍କୁ ଉଦ୍ଧାର ପାଇଁ ବା ଅଶରୀରୀମାନଙ୍କୁ ଦର୍ଶନ ଦେବା ଉଦ୍ଦେଶ୍ୟରେ ସେ ରତ୍ନସିଂହାସନ ଛାଡ଼ି ବଡ଼ଦାଣ୍ଡକୁ ଆସିଥାନ୍ତି । କାରଣ ସେମାନେ ଶ୍ରୀମନ୍ଦିର ପରିସରକୁ ଯାଇପାରନ୍ତି ନାହିଁ । ତେଣୁ ସେମାନେ ବଡ଼ଦାଣ୍ଡରେ ପ୍ରଭୁଙ୍କ ଦର୍ଶନ କରନ୍ତି ଏବଂ ମୋକ୍ଷ ମାର୍ଗି ହେବା ଉଦ୍ଦେଶ୍ୟରେ କୈବଲ୍ୟର ଆବଶ୍ୟକ ହୋଇଥାଏ । ସେଥିପାଇଁ ଶ୍ରୀଜୀଉଙ୍କ ପାଖରେ ଅଧର ପଣା ଭୋଗ ସରିବା ପରେ ସମସ୍ତ ଭକ୍ତ କୈବଲ୍ୟ ପାଇବା ଉଦ୍ଦେଶ୍ୟରେ ସେହି ମାଟି ପଣା ହାଣ୍ଡିକୁ ଭାଙ୍ଗି ଦିଆଯାଏ । ଯାହାକୁ ପାଇ ଶ୍ରଦ୍ଧାଳୁ ଭକ୍ତମାନେ ନିଜକୁ ଧନ୍ୟ ମନେ କରନ୍ତି । ତନ୍ତ୍ର ପରମ୍ପରା ଅନୁଯାୟୀ ଏହି ଅଧର ପଣାହାଣ୍ଡିଗୁଡ଼ିକୁ ରଥର ରକ୍ଷକ ଯୋଗିନୀ, ଛାୟା, ମାୟା ଓ ବ୍ୟାଘ୍ର ଦେବୀଙ୍କ ଉଦ୍ଦେଶ୍ୟରେ ରଥଚକ ତଳେ ଭାଙ୍ଗି ଦିଆଯାଉଥିବାରୁ ଏବେବି ଅନେକ ଜାଣିବା ଶୁଣିବା ଲୋକ ଅଧର ପଣା ସେବା କରନ୍ତି ନାହିଁ।

ଏହା ବ୍ୟତୀତ ଶ୍ରୀଜୀଉମାନଙ୍କର ନବକଳେବର ପାଇଁ ଦାରୁ ସଂଗ୍ରହ ବେଳେ ସେବକମାନେ କାକଟପୁର ମା'ମଙ୍ଗଳାଙ୍କୁ ଉପାସନା କରି ତାଙ୍କ ପାଖରେ ଅଧିଆ ବଢ଼ିଲାବେଳେ ସପ୍ତାବତୀ ଓ ସପ୍ତଗୁଣୀ ମନ୍ତ୍ର ଜପ କରିଥାନ୍ତି। ଯେଉଁ ମନ୍ତ୍ର କି ଶାସ୍ତ୍ର ସମ୍ମତ। ସାଧାରଣତଃ ତନ୍ତ୍ର ସାଧନାର ସମସ୍ତ କାର୍ଯ୍ୟ ଶ୍ମଶାନ ଭୂମିରେ କରାଯାଇଥାଏ। ତେଣୁ ଶ୍ରୀଜୀଉମାନଙ୍କର ନବକଳେବର ମୂର୍ତ୍ତି ନିର୍ମାଣଠାରୁ ପ୍ରତିଷ୍ଠା ପର୍ଯ୍ୟନ୍ତ ସମସ୍ତକାର୍ଯ୍ୟ ଶ୍ରୀଜୀଉମାନଙ୍କର ନିଜସ୍ୱ ଶ୍ମଶାନ ଶିଆଳିଲତା ତଳେ ଥିବା କୋଇଲି ବୈକୁଣ୍ଠରେ ହିଁ ସମ୍ପନ୍ନ ହୋଇଥାଏ । ଶ୍ରୀଜୀଉଙ୍କର ବିଗ୍ରହ ନିର୍ମାଣଠାରୁ ଆରମ୍ଭ କରି ବିଗ୍ରହମାନଙ୍କ ପ୍ରତିଷ୍ଠା ହେବା ସମୟରେ ବିଭିନ୍ନ ଗୁପ୍ତ କର୍ମ କରାଯାଇ ରକ୍ତବରାହୀ ଓ ନବଶକ୍ତିକୁ ବଳି ଉତ୍ସର୍ଗ କରାଯାଇଥାଏ । ଯେଉଁ ନୀତିଗୁଡ଼ିକ ତନ୍ତ୍ର ଶାସ୍ତ୍ରଭିତ୍ତିକ ଅଟେ ।

ସେ ଯାହା ହେଉନା କାହିଁକି ଶ୍ରୀଜଗନ୍ନାଥ ହେଉଛନ୍ତି ପରଂବ୍ରହ୍ମ। ବିଗ୍ରହଠାରେ ଦେଖେ କୋଟି କନ୍ଦର୍ପର ମଦନମୋହନ ରୂପ। ବୌଦ୍ଧ ତନ୍ତ୍ର ଯୁଗରେ ସେ ବୁଦ୍ଧ ଓ ହିନ୍ଦୁ ତନ୍ତ୍ର ଯୁଗରେ ସେ ଶ୍ରୀଜଗନ୍ନାଥ ରୂପେ ଭକ୍ତମାନଙ୍କ ନିକଟରେ ଉଭା ହୋଇଛି। ଏହା ସତ୍ତ୍ୱେ ସମସ୍ତ ତନ୍ତ୍ର ତାକୁ ମୂଳ ଆଧାର ରୂପେ ଗ୍ରହଣ କରି ଥିବାରୁ ଶ୍ରୀଜଗନ୍ନାଥ ହେଉଛନ୍ତି ଜଣେ ତନ୍ତ୍ର ଉପାସ୍ୟର ଦେବତା ଓ ଶ୍ରୀମନ୍ଦିର ଯେ ଏକ ତନ୍ତ୍ର ଉପାସନାର ମୂଳପୀଠ ଏହା ଅସ୍ୱୀକାର କରି ହେବ ନାହିଁ ।

କ୍ୱାଟର ନମ୍ବର – ଇ/୨୦୮
ୟୁନିଟ୍ – ୮, ଭୁବନେଶ୍ୱର-୭୫୧ ୦୧୨

# କବି ଲେଖନୀରେ ମହାପ୍ରଭୁ ଶ୍ରୀଜଗନ୍ନାଥ

ଅପୂର୍ବ ରଞ୍ଜନ ରାୟ

ପରମେଶ୍ୱରଙ୍କ ସାନ୍ନିଧ ଓ ଦର୍ଶନ ପାଇଁ ଏକମାତ୍ର ଭକ୍ତିପଥ ହେଉଛି ଯଥାର୍ଥ । ଭକ୍ତି ବିନା ତାଙ୍କୁ ପାଇବା ସମ୍ଭବପର ନୁହେଁ । ମଣିଷର ମୁକ୍ତି ପାଇଁ ତିନୋଟି ପଥ–ଜ୍ଞାନ, ଭକ୍ତି ଓ କର୍ମ ଉଦ୍ଦିଷ୍ଟ ହୋଇଥିଲେ ହେଁ, ଭକ୍ତିମାର୍ଗ ହେଉଛି ଏଥିପାଇଁ ଏକମାତ୍ର ମାର୍ଗ । ଭକ୍ତିକୁ ମନୀଷୀମାନେ କହନ୍ତି– 'ଭଜ' ଶବ୍ଦରୁ ଏହା ଉତ୍ପନ୍ନ ହୋଇଛି । ଭଜକୁ ସେବା ବା ପୂଜା ଅର୍ଚ୍ଚନା ଭାବରେ ବ୍ୟବହାର କରାଯାଇଥାଏ । ଭକ୍ତ ଭଗବାନଙ୍କ ନିକଟରେ ନିଜକୁ ଉତ୍ସର୍ଗ କରିଦେବାର ଏକମାତ୍ର ମାଧ୍ୟମ ହେଉଛି ଭକ୍ତି । ଶାଣ୍ଡିଲ୍ୟଙ୍କ ମତରେ 'ସା ପରାନୁରକ୍ତିରୀଶ୍ୱରେ' । ପରମେଶ୍ୱରଙ୍କ ନିକଟରେ ନିଜକୁ ସମର୍ପଣ କରିବା ଓ ତାଙ୍କ ପ୍ରତି ଅନୁରାଗୀ ହେବା ହେଉଛି ଭକ୍ତିର ଲକ୍ଷଣ । ପରମେଶ୍ୱରଙ୍କୁ ପ୍ରେମ କରିବା ହେଉଛି ଭକ୍ତି ଭାବର ପରମ ନିଦର୍ଶନ, ଏହା ନାରଦ କହିଥାଆନ୍ତି । ତାଙ୍କ ଦୃଷ୍ଟିରେ 'ସାତସ୍ମିନ ପରମ ପ୍ରେମରୂପା ।' ଭକ୍ତ ବ୍ୟାକୁଳିତ ହୃଦୟରେ ତା ପ୍ରଭୁଙ୍କ ପାଇଁ ପ୍ରାର୍ଥନା କଲେ, ତାହା ବ୍ୟର୍ଥ ହୁଏନାହିଁ । ଅନ୍ୟ ଆଡକୁ ଲକ୍ଷ୍ୟ ନରଖି, କେବଳ ଗୋଟିଏ ମାର୍ଗରେ ଧାଇଁଲେ ଭକ୍ତ ସେହିଠି ପହଞ୍ଚିପାରେ । ନାରଦ ଯଥାର୍ଥରେ କହିଛନ୍ତି– 'ତଦର୍ପିତା ଖିଳଚାରତା ତଦ୍‌ବିସ୍ମରଣେ ପରମ ବ୍ୟାକୁଳିତୋଃତି ।'

ଓଡ଼ିଆ ସାହିତ୍ୟରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା ବହୁ ଭାବରେ ବର୍ଣ୍ଣିତ ହୋଇଛି । ଓଡ଼ିଆ ସାହିତ୍ୟର ପ୍ରଥମ ପର୍ଯ୍ୟାୟରେ ଧର୍ମକୁ ଭିତ୍ତିକରି ସାହିତ୍ୟ ସ୍ରଷ୍ଟାମାନେ ସାହିତ୍ୟକୁ ସୃଷ୍ଟି କରିଥିଲେ । ସେଥିପାଇଁ ଧର୍ମକୁ ବାଦଦେଇ, ଓଡ଼ିଆ ସାହିତ୍ୟ ସୃଷ୍ଟି ହେବା ସମ୍ଭବପର ନଥିଲା । ଓଡ଼ିଆ ସାହିତ୍ୟର ଆଦି ବିକାଶ ପଥରେ, ଧର୍ମ ଏକମାତ୍ର ମାଧ୍ୟମ ହୋଇଥିବାରୁ, ସେହି କାଳରେ ସ୍ରଷ୍ଟାମାନଙ୍କ ଲେଖନୀରେ ମହାପ୍ରଭୁ ଶ୍ରୀଜଗନ୍ନାଥ ବର୍ଣ୍ଣିତ ହେବା ସ୍ୱାଭାବିକ । ସପ୍ତମ ଶତାବ୍ଦୀରୁ ଏହି ଧାରା ଚାଲି ଆସିଥିବା ଲକ୍ଷ୍ୟ କରାଯାଏ । ତାଙ୍କ ମହିମା ଓ ଅଲୌକିକ ଦର୍ଶନ ଆଦି ସାରସ୍ୱତ ଜଗତକୁ ରୁଦ୍ଧିମନ୍ତ କରିଛି । ମହାପ୍ରଭୁଙ୍କ ଅକଳ୍ପନୀୟ ସୌନ୍ଦର୍ଯ୍ୟ ଯୁଗେ ଯୁଗେ କବି, ଲେଖକ ଓ ସାରସ୍ୱତ ସାଧକଙ୍କୁ ମୁଗ୍ଧ ଓ ଚକିତ କରିଛି । କବି ସାରଳାଦାସ ତାଙ୍କ ରୂପ ବର୍ଣ୍ଣନା କରି ଲେଖିଛନ୍ତି–

'ଜୟ ହେ ନୀଳ ସୁନ୍ଦର ପୁରୁଷ ଉତ୍ତମ<br>
ବ୍ରହ୍ମାରୁଦ୍ର ଅବତାର ତୁମ୍ଭେ ପୂର୍ଣ୍ଣ ବ୍ରହ୍ମ<br>
ଶ୍ୱେତ ପୀତ କୃଷ୍ଣବର୍ଣ୍ଣ ତିନୋଟି ମୂରତି,<br>
ସତ୍ତ୍ୱ ରଜ ତମୋ ଗୁଣ ହୋଇ ବିରାଜନ୍ତି ।<br>
ମଧ୍ୟରେ ବ୍ରହ୍ମା ଧରିଣ ସୁଭଦ୍ରାର ରୂପ,<br>
ରଜୋଗୁଣେ ଜଗନ୍ନାଥ ସୁନ୍ଦର ସ୍ୱରୂପ ।'

(ସାରଳା ମହାଭାରତ–ମୂଷଳୀ ପର୍ବ)

ଅନ୍ତରଙ୍ଗ ଭକ୍ତ, ଭଗବାନଙ୍କୁ ଥରେ ପାଇଗଲେ, ତାଙ୍କଠାରୁ ସେ ଭିନ୍ନ ମନେକରେ ନାହିଁ । ଅଭିନ୍ନ ଭାବ ଭିତରେ ଦୁହିଁଙ୍କ ସମ୍ପର୍କ ଗଢ଼ିଉଠେ । ପରମେଶ୍ୱର ସାଧାରଣ ଭକ୍ତ ନିକଟରେ କେବଳ ଦୁର୍ଲଭ ନୁହନ୍ତି– ମୂଲ୍ୟ କଳନା କରିବା ସାଧ୍ୟାତୀତ । ତାଙ୍କୁ ପାଇଗଲା ପରେ କୋଟି କୋଟି ଟଙ୍କା ପ୍ରଲୋଭନ ଦେଖାଇ, କୌଣସି ବ୍ୟକ୍ତି ତାଙ୍କଠାରୁ ମହାପ୍ରଭୁଙ୍କୁ ନେଇପାରେ ନାହିଁ । ବରଂ ଭକ୍ତ ଦୃଢ ସ୍ୱରରେ କହେ– ହେ ମହାପ୍ରଭୁ, ଥରେ ମୋ' ପାଖକୁ ଆସିଗଲା ପରେ, ମୋର ନିକଟତର ହୋଇଗଲେ, ଆଉ କଣ ମୋ' ପ୍ରିୟ ପରମେଶ୍ୱରଙ୍କୁ ହାତଛଡା କରିବିକି ? ଆପଣଙ୍କୁ ନେଇ ମୁଁ ବିକ୍ରେତା ହୋଇପାରିବି ନାହିଁ ! ବିଶ୍ୱ ସାହିତ୍ୟରେ ଏଭଳି ସମର୍ପଣର ଭାବ କେଉଁଠି ଦୃଶ୍ୟମାନ ହୁଏ ନାହିଁ । 'ଋକ୍ ବେଦରେ' କୁହାଯାଇଛି–

'ମହେଚ ନତ୍ୱାଂ ଆଦ୍ରିବା
ପରଶୁଲ୍କାୟ ଦେୟାଂ
ନ ସହସ୍ରାୟ ନାୟୁତାୟ ବଜ୍ରିବୋ
ନ ଶତାୟ ଗଣମଧ ।'

ମହାପ୍ରଭୁ ଶ୍ରୀଜଗନ୍ନାଥ ଅଣାକାର ରୂପେ ବର୍ଣ୍ଣିତ ହୋଇ ସୁଦ୍ଧା, ସାକାର ରୂପରେ ବି କଳ୍ପିତ ହୋଇଛନ୍ତି । ଗୌତମ ବୁଦ୍ଧଙ୍କ ଦେହାନ୍ତ ପରବର୍ତ୍ତୀ କାଳରେ, ଯେଉଁମାନେ ତାଙ୍କୁ ଭକ୍ତିର ଆତ୍ମୀୟ ରଜ୍ଜୁରେ ଆବଦ୍ଧ କରିବାକୁ ଚାହିଁଥିଲେ, ସେମାନେ ତାଙ୍କୁ ସାକାର ରୂପରେ କଳ୍ପନା କରିବା ସହିତ, ଏହି ଭାବରେ ଆରାଧନା କରିବାକୁ ଉତ୍କଣ୍ଠା ପ୍ରକାଶ କରିଥିଲେ । ଭକ୍ତ ନିଜ ଆରାଧ୍ୟ ମହାପ୍ରଭୁଙ୍କ ପାଖରେ ବାନ୍ଧି ହୋଇଗଲେ, ସେ ଆଉ ନିର୍ଗୁଣ, ନିରାକାର ରୂପରେ ପ୍ରତିଭାତ ହୁଅନ୍ତି ନାହିଁ । ସାକାର ରୂପରେ ମହାପ୍ରଭୁ ଅବତୀର୍ଣ୍ଣ ହୋଇପଡନ୍ତି । କବି ବଳରାମ ଦାସ ତାଙ୍କ 'ଭାବ ସମୁଦ୍ର'ରେ ଶ୍ରୀଜଗନ୍ନାଥଙ୍କୁ ସାକାର ରୂପରେ ବର୍ଣ୍ଣନା କରିଛନ୍ତି ।

'ନାଥ ତୋ' ନିର୍ଗୁଣ ନାମ ଅଟଇ
ମୋହର ମନରୁ ଦଣ୍ଡେ ନ ଯାଇ ।'

ଭକ୍ତ ପାଇଁ ସେ ସାକାର ହୋଇଥିବା ହେତୁ, ଭକ୍ତ ଦ୍ୱାରା ନିର୍ମିତ 'ବାଲିରଥ' ଜଗନ୍ନାଥଙ୍କର ଆଦରଣୀୟ ହୋଇଛି । ଭକ୍ତ ଯେତେବେଳେ ବାଲିରେ ରଥ ନିର୍ମାଣ କରି, ଅନ୍ତରର ସହିତ ତାଙ୍କୁ ପ୍ରାର୍ଥନା କରିଛି, ସେତେବେଳେ ନନ୍ଦିଘୋଷରୁ ଓହ୍ଲାଇ ଆସିଛନ୍ତି । ଭକ୍ତ ନିର୍ମିତ ବାଲିରଥରେ ମହାପ୍ରଭୁ ବିରାଜମାନ କରିଛନ୍ତି । ଏହି ହେଉଛି ଭକ୍ତ ପାଇଁ ଶ୍ରୀଜଗନ୍ନାଥଙ୍କର ମହିମା ଓ କରୁଣା । ଯିଏ ଅବ୍ୟକ୍ତ, ତାଙ୍କୁ ସଗୁଣ ତତ୍ତ୍ୱରେ ବର୍ଣ୍ଣନା କରାଯାଇଛି । ଅନାମ ଓ ଆଣାକାର ରୂପୀ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ, ରାମ, କୃଷ୍ଣ ପ୍ରଭୃତି ବିଭିନ୍ନ ସାକାର ରୂପରେ କଳ୍ପନା କରାଯାଇଛି । କବି ଶିଶୁ ଅନନ୍ତ ଦାସ, ଦାରୁବ୍ରହ୍ମ ଚତୁର୍ଦ୍ଧା ମୂର୍ତ୍ତିକୁ ସାକାର ରୂପରେ କଳ୍ପନା କରିଛନ୍ତି । କବି ତାଙ୍କୁ ସାକାର ରୂପରେ ବର୍ଣ୍ଣନା କରିବା ସହିତ, ତାଙ୍କଠାରେ ଚାରି ବେଦର ବୈଶିଷ୍ଟ୍ୟ ରହିଛି ବୋଲି କହିଛନ୍ତି । କବିଙ୍କ ଭାଷାରେ–

' ପରମ ପୁରୁଷ ଦେଉଳ, ନୀଳଚକ୍ର ଯେ ଶୂନ୍ୟ ଠୁଳ,
ନେତ ଯେ ବ୍ରହ୍ମା ବିଷ୍ଣୁ ହର, ଉଡୁଣ ଅଛି ଚକ୍ରପର ।
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ, ବୁଦ୍ଧ ସ୍ୱରୂପେ ବିହରଇ ।
ମାୟାକୁ ଦିଶଇ ସ୍ୱରୂପ, ସକଳ ରୂପ ଯହି ଗୋପ୍ୟ,
ଅଲେକ ଅରୂପ ଅଚ୍ୟୁତ, ଅକ୍ଷୟ କ୍ଷୟ, ସର୍ବଜାତ ।
ଏମନ୍ତ ନୀଳାଦ୍ରି ମହିମା, ଦେବାକୁ ନାହିଁ ନା ଉପମା ।'

(ହେତୁ ଉଦୟ ଭାଗବତ)

କବି ଅଚ୍ୟୁତାନନ୍ଦଙ୍କ ଦୃଷ୍ଟିରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଲୀଳାମୟ ଶ୍ରୀକୃଷ୍ଣ ଏକ–ଅଭିନ୍ନ । ଯଦୁବଂଶର ଅଧିବାସୀମାନେ ଶ୍ରୀଜଗନ୍ନାଥଙ୍କ ସେବା କରିବା ପାଇଁ ବ୍ରହ୍ମର୍ଷି ଅଭିଶାପ ଦେଇଥିଲେ । ସେହି ଅଭିଶାପ ବଳରେ ସେମାନେ ମହାପ୍ରଭୁଙ୍କ ସେବକ ହୋଇ ରହିଛନ୍ତି । ସ୍ୱୟଂ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ରୂପରେ ନୀଳାଦ୍ରିରେ ପୂଜା ପାଇଛନ୍ତି । ସେଠାରେ ପୂଜିତ ଦିଅଁଙ୍କୁ ଶୂନ୍ୟ ବୁଦ୍ଧ ରୂପରେ କବି ବର୍ଣ୍ଣନା କରିଛନ୍ତି । ସେହି ବୁଦ୍ଧରୂପୀ ଦିଅଁ ଭକ୍ତମାନଙ୍କ ଗୁହାରି ଶୁଣିପାରନ୍ତି ବୋଲି କବି କଳ୍ପନା କରି 'ଶୂନ୍ୟ ସଂହିତା'ରେ ଲେଖିଛନ୍ତି–

'ଅବତାର ଦଶ ଏହି ଦାରୁରୂପ
ଏହି ଦାରୁରେ ସେ ଲୀନ,
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ
ବିଜେ ରତ୍ନ ସିଂହାସନ ।'

କବି ଦେବଦୁର୍ଲ୍ଲଭ ଦାସ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ କରୁଣା ଆଶାୟୀ ହୋଇଛନ୍ତି । ତାଙ୍କ ରଚିତ 'ରହସ୍ୟ ମଞ୍ଜରୀ' କାବ୍ୟରେ ଗୋପୀଙ୍କର ବୈଶିଷ୍ଟ୍ୟ ସହିତ, ପ୍ରେମମୟୀ ରାଧାଙ୍କର ପ୍ରୀତି ଜଗତର ସ୍ୱଚ୍ଛତା ଉପରେ ଗୁରୁତ୍ୱ ଦେଇଥିଲେ ହେଁ, ସେ କେବେ ଜଗନ୍ନାଥଙ୍କୁ ଅବହେଳା କରିନାହାନ୍ତି । କାବ୍ୟର ପ୍ରଥମ ଛାନ୍ଦରେ କାବ୍ୟକାର ନୀଳାଦ୍ରି ବିହାରୀଙ୍କ ମହିମା ବର୍ଣ୍ଣନା କରିଛନ୍ତି । କବି ଦେବଦୁର୍ଲ୍ଲଭ ଏହି କାବ୍ୟରେ କରୁଣା ଭିକ୍ଷୁ ରୂପେ ଠାକୁର ଶ୍ରୀଜଗନ୍ନାଥଙ୍କ ନିକଟରେ ମୁକ୍ତ କଣ୍ଠରେ ଗାଇଛନ୍ତି–

'ତୁମ୍ଭ ବିନୁ ଜଗନ୍ନାଥେ କେହି ମୋର ନାହିଁ,
ଗଞ୍ଜି ମାରୁଅଛ କେତେ ଦୋଷ ମୋ ଗୋସାଇଁ ।
କେଶଧରି ରଖିନେଇ ଶ୍ରୀଚରଣ ତଳେ,
ଅନାଥ ଦେବର ଫେଡ ଦୁଃସହ ଆକୁଳେ ।'

ଶ୍ରୀଜଗନ୍ନାଥଙ୍କ ମହିମା କୀର୍ତ୍ତନରେ କବି ଲେଖନୀ ମୁଖର ହୋଇଛି । ମହାପ୍ରଭୁଙ୍କର ବହୁ ଯାତ୍ରା–ବହୁ ପର୍ବ । ଏହି ପର୍ବରେ ସେ ନାନା ବେଶରେ ଉଭା ହୁଅନ୍ତି । ସ୍ନାନ ଯାତ୍ରାରେ ତାଙ୍କୁ ଦର୍ଶନ କରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଭକ୍ତିରେ ବିହ୍ୱଳ ହୋଇ ପଡିଛନ୍ତି । ଭକ୍ତିର ଅର୍ଘ୍ୟ ବାଢିବା ପାଇଁ ସେ ଅତ୍ୟନ୍ତ ଗଦ୍‌ଗଦ୍ ଚିତ୍ତରେ ଆତ୍ମବିଭୋର ହୋଇପଡିବା ବେଳେ ତାଙ୍କ ଲେଖନୀରୁ ଝରି ଆସିଛି ସୁନ୍ଦର ହୃଦୟସ୍ପର୍ଶୀ ଚଉପଦୀ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାଳ୍ପନିକ କାବ୍ୟ, ଅଥଚ ସେହି କାବ୍ୟରେ ମହାପ୍ରଭୁଙ୍କ ସ୍ନାନଯାତ୍ରାର ରୂପ ଜୀବନ୍ତ ଭାବେ ଫୁଟି ଉଠୁଛି ।

'କୋଟି କନ୍ଦର୍ପ ଲାବଣ୍ୟ ମୂର୍ତ୍ତି ଦରଶନ
ଦେବାକୁ ସୁବେଶେ ବିଜେ ରତ୍ନ ସିଂହାସନ ।'

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ରଚନାରେ କାବ୍ୟକାର ଉପେନ୍ଦ୍ର ସେହି ବିଶ୍ୱନିୟନ୍ତାଙ୍କ ଆଶୀର୍ବାଦ ଭିକ୍ଷା କରିଛନ୍ତି । ତାଙ୍କ ବ୍ୟତୀତ ଏପରି କାଳ୍ପନିକ କାବ୍ୟ ରଚନା ପାଇଁ କବି କ'ଣ ସକ୍ଷମ ହୁଅନ୍ତେ ବୋଲି ଭାବିଛନ୍ତି । କବି ନୀଳାଦ୍ରିର ସୌନ୍ଦର୍ଯ୍ୟ ଓ ରୂପରେ ମୁଗ୍ଧ ହୋଇଯାଇଛନ୍ତି । ଏହି ପୀଠର ନାମ ସ୍ମରଣରେ ଜୀବନ ଧନ୍ୟ ହୁଏ, ତା'ର ମହାପ୍ରସାଦ ସେବନରେ ଜନଜୀବନ ପବିତ୍ର ହୋଇଯାଏ । କବି ଉପେନ୍ଦ୍ର ଭଞ୍ଜ 'ରସିକ ହାରାବଳୀ' କାବ୍ୟରେ ନୀଳାଦ୍ରିର ବର୍ଣ୍ଣନା କରି ଲେଖିଛନ୍ତି–

'ଯେଉଁ କ୍ଷେତ୍ରରାଜ ବିରାଜମାନ ଗରୁଡଧ୍ୱଜେ,
ଶ୍ରବଣେ ଚରିତ ତୁରିତ ଜନ ଦୂରିତ ଗଞ୍ଜେ ।
ଯେବଣ କଟକ ଛଟକେ ବିରାଟକେ ମୁକତି,
ମହାପ୍ରସାଦରେ ସାଦରେ ଜନମାନେ ଲଭନ୍ତି ।'

କବି ନିଜକୁ ଅଜାମିଳ ପରି ପାପି ମନେକରି, ମହାପ୍ରଭୁଙ୍କ ଭଜନ ଗାନରେ ଆପଣାକୁ ହଜାଇ ଦେଇଛନ୍ତି । ପାପ, ଅପରାଧ ତଥା ସକଳ ଦୋଷରୁ କେବଳ ସେହି ବଡଠାକୁର ମୁକ୍ତି ଦେଇପାରିବେ ବୋଲି କବିଙ୍କର ଶେଷ ଭରସା । ସେଥିପାଇଁ କବି ଯଦୁମଣି ଅତ୍ୟନ୍ତ ବ୍ୟାକୁଳ ପ୍ରାଣରେ ତାଙ୍କୁ ଡାକିଛନ୍ତି । ଲୟ ରଖି, ତାଙ୍କ ଉଦ୍ଦେଶ୍ୟରେ ଜୀବନକୁ ହଜାଇ ଦେଇଛନ୍ତି । ଜନ ସମାଜର ସମସ୍ତ ପାପୀଙ୍କୁ ସେ ଉଦ୍ଧାର କରିଛନ୍ତି– ସକଳ ପାପ ଧୋଇ ଦେବାରେ ତାଙ୍କର ହାତ ପ୍ରସାରିତ ହୋଇଛି । ସେ ଯେମିତି ସବୁ ପାପକୁ ନିଜ ହାତରେ ପୋଛି ଦେଇ ମୁକ୍ତ ମଣିଷ କରିବା ପାଇଁ ଚାହିଁ ରହିଛନ୍ତି। କବି ଯଦୁମଣି ଏହି ଭରସାରେ ଗାଇଛନ୍ତି–

'ଲୋଭ ମାୟା ମୋହ ଭ୍ରମଛନ୍ଦ ଦ୍ୱନ୍ଦ୍ୱ ଏସବୁ ପଛକୁ ପକା,
ମହାପ୍ରଭୁ ସାହା ଥାଉ ଥାଉ ଆଉ କାହାକୁ ନକର ଶଙ୍କା ।
ଯଦୁମଣି ଜଣେ କଲା ପୁଣ୍ୟ କର୍ମେ କାହାକୁ ନକର ଦକା,
ନୀଳାଚଳେ ନୀଳଚକ୍ରରେ ଉଡୁଛି ପାପୀ ପାକଳ ଫଡକାରେ ।'

ଅଶାନ୍ତ ମନକୁ ଶାନ୍ତ କରିବାରେ ଏକମାତ୍ର ଜଗନ୍ନାଥ ହିଁ ଭରସା । ଅନ୍ଧକାର ପଥରେ ଆଲୋକ ଦର୍ଶନ ଲାଗି ସେହି ହିଁ ଦିଗ୍‌ଦର୍ଶକ । ଏ ଜୀବନ ବିଷୟାସକ୍ତ ହୋଇଗଲା ପରେ, ସେଥିରୁ ମୁକ୍ତ କରିବା ପାଇଁ ମହାପ୍ରଭୁ ଆଶିଷ ଢାଳି ଦିଅନ୍ତି ।

କବି ଲେଖନୀରେ ସନ୍ଧ୍ୟାଧୂପ ବେଳର ମହାପ୍ରଭୁଙ୍କ ବର୍ଣ୍ଣନା ଅତ୍ୟନ୍ତ ଆକର୍ଷଣୀୟ । ଧୂପ କର୍ପୂରର ବାସ୍ନା ଭାସି ଆସିବା ସହିତ ଦୀପ ଜଳି ଉଠୁଛି– ଜଗମୋହନରେ ଚନ୍ଦ୍ର, ପବନ, ଇନ୍ଦ୍ର ପ୍ରମୁଖ ଉପସ୍ଥିତ । ହରିନାମ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ । ଚାମର ପଡୁଛି । ଏତେବେଳେ ମହାପ୍ରଭୁଙ୍କ ନୟନ ଯୁଗଳ, କାଳିନ୍ଦୀ ହ୍ରଦରେ ଥିବା ଶ୍ୱେତପଦ୍ମରେ ଶୋଭା ପାଉଥିବା କେଶର ଉପରେ ସତେ ଯେପରି ଦୁଇଗୋଟି ଭଅଁର ପରି ଦିଶୁଛନ୍ତି । ଏହି ସଂଧ୍ୟା ଧୂପରେ ପରିବେଶକୁ ବର୍ଣ୍ଣନା କରି କବି ଜଗନ୍ନାଥ ଦାସ କହିଛନ୍ତି–

'ମନାଇ ହୋ ! ତିନି ଧୂପରେ ଯେହ୍ନୁ ସାର,
କେ କହି ପାରିବ ଯେ ଜଗନ୍ନାଥଙ୍କ ଲୀଳା
ବ୍ରହ୍ମା ରୁଦ୍ରଙ୍କୁ ଆଗୋଚର ।'

ମହାପ୍ରଭୁଙ୍କର ବାର ମାସରେ ତେର ପର୍ବ । ଏହି ପର୍ବମାନଙ୍କରେ ଦିଅଁଙ୍କୁ ସୁନ୍ଦର ଭାବରେ ବେଶ କରିଦିଆଯାଏ । ବୈଶାଖମାସ ଶୁକ୍ଳ ତୃତୀୟା ତିଥିଠାରୁ ଫାଲଗୁନ ମାସ ପୂର୍ଣ୍ଣିମା ତିଥି ପର୍ଯ୍ୟନ୍ତ ସେ ବିଭିନ୍ନ ବେଶରେ ସଜ୍ଜିତ ହୁଅନ୍ତି । ଏହିସବୁ ବେଶ ଭୂଷଣକୁ ନେଇ କବି ଲେଖନୀ ସୁନ୍ଦର–ରସାଳ ବର୍ଣ୍ଣନା କରିଛି । ଆଷାଢ ମାସ ଶୁକ୍ଳ ଏକାଦଶୀ ତିଥିରେ ସୁନାବେଶକୁ କବି ଆକର୍ଷଣୀୟ କରି ବର୍ଣ୍ଣନା କରିବା ସହିତ, ଭାଦ୍ରବ ମାସ କୃଷ୍ଣ ଦଶମୀ ତିଥିରେ ବଣଭୋଜି ବେଶର ବର୍ଣ୍ଣନା ଆକର୍ଷଣୀୟ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ହାତୀ ବେଶକୁ କବି ଯେପରି ବର୍ଣ୍ଣନା କରିଛନ୍ତି, ବୈଶାଖ ମାସର ଶୁକ୍ଳ ତୃତୀୟା ତିଥିରେ ହେଉଥିବା ଚନ୍ଦନ ଲାଗି ବେଶକୁ କବି ବର୍ଣ୍ଣନାରେ ମଧ୍ୟ ସେପରି ହୃଦୟଗ୍ରାହୀ କରିଛନ୍ତି । ଆଶ୍ୱିନ ମାସ ଶୁକ୍ଳ ଏକାଦଶୀ ତିଥିଠାରୁ, କାର୍ତ୍ତିକ ଶୁକ୍ଳ ଦଶମୀ ତିଥି ଯାଏ ରାଇଦାମୋଦର ବେଶ, କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଲକ୍ଷ୍ମୀ ନୃସିଂହ ବେଶ, ମାଘ ମାସ ଦ୍ୱିତୀୟା ତିଥିରେ ପଦ୍ମବେଶ, ଫାଲ୍‌ଗୁନ ମାସ ପୂର୍ଣ୍ଣିମା ତିଥିରେ ରାଜବେଶ ଆଦି ହେଉଥିବା ଦୃଶ୍ୟକୁ କବି ଲେଖନୀ ଆକର୍ଷଣୀୟ ଭାବେ ବର୍ଣ୍ଣନା କରିଛି । ସରଳ ଭକ୍ତ ପ୍ରାଣରେ ମହାପ୍ରଭୁ ଯେପରି ଭାବରେ ବନ୍ଧା ହୋଇଛନ୍ତି, କବି ଲେଖନୀରେ ମଧ୍ୟ ସେପରି ସେ ଯୁଗେ ଯୁଗେ ଚିତ୍ରିତ ହୋଇଛନ୍ତି । ସେହି ଚିତ୍ରଣକୁ କିଞ୍ଚିତ୍‌ମାତ୍ର ଏଠାରେ ଉପସ୍ଥାପିତ ହେଲା ।

ସମ୍ପାଦକ
'ସାଳନ୍ଦୀ ସମାଚାର'
ମଠସାହି, ଭଦ୍ରକ

# ସବୁରି ଭାବର ଉର୍ଦ୍ଧ୍ୱରେ ସେ ନୀଳାଚଳିଆ

ବିମଳ କୁମାର ରାଉଳ

ସେ ଭାବ, ସେ ଅଭାବ, ସେ ସୁଖ, ସେ ଦୁଃଖ, ସେ ମାୟାବି, ସେ ମଣିଷ, ସେ ଆକାର, ସେ ନିରାକାର, ସେ ଅନ୍ତର୍ଯ୍ୟାମୀ, ସେ ସର୍ବବ୍ୟାପୀ, ସେ ପୁଣି ଅବତାରୀ ପୁରୁଷ । ଯାହାଙ୍କର ଭାବ ଗୀତା, ଭାଗବତ, ମହାଭାରତ ସବୁରି ଉର୍ଦ୍ଧ୍ୱରେ । ଥରେ ଯିଏ ତାଙ୍କ ଭାବକୁ ବୁଝିଛି, ତାଙ୍କ ଚେତନାରେ ହଜିଛି, ସେ ତାଙ୍କ ପ୍ରେମରେ ପଡିଛି । ଆକାର ତାଙ୍କର ଅଦ୍ଭୁତ । ସୃଷ୍ଟିରେ ଏଭଳି ଆକାର ବିରଳ । ହାତ ନାହିଁ, ଗୋଡ ନାହିଁ ତଥାପି ସେ ଚାଲିପାରନ୍ତି, କାନ ନଥାଇ ସେ ସବୁ ଶୁଣନ୍ତି, ପାଟି ନଥାଇ ଖାଆନ୍ତି ଓ ନାକ ନଥାଇ ସେ ମଲ୍ଲୀ, ହେନାର ସୁଗନ୍ଧ ବାରି ପାରନ୍ତି । ସେଥିପାଇଁ ସେ ଜଗତର ନାଥ ଶ୍ରୀଜଗନ୍ନାଥ ।



ପଣ୍ଡିତ, ବିଦ୍ୱାନମାନଙ୍କ ପାଇଁ ତାଙ୍କର ଭାବ ଯେତେ ଜଟିଳ ହେଲେ ବି ସାଧାରଣ ଭକ୍ତଟିଏ ପାଇଁ ସେ ବେଶ୍ ସରଳ । ତେଣୁ ସେ ଅନାଥଙ୍କର ନାଥ । ଯିଏ ତାଙ୍କୁ ଯେପରି ବୁଝନ୍ତି, ସେ ତାଙ୍କୁ ସେମିତି ପାଆନ୍ତି । ଶ୍ରୀଜଗନ୍ନାଥଙ୍କର ଚିନ୍ତା, ଚେତନା ଓ ତତ୍ତ୍ୱ କୌଣସି ଗୋଟିଏ ସରଳରେଖାରେ ଗତି ନକରି ତୀର୍ଯ୍ୟକଭାବେ ଗତି କରିଥାଏ । ଭକ୍ତମାନେ ପ୍ରଭୁଙ୍କୁ ଯେମିତି ବୁଝିଥାନ୍ତି, ପରୋକ୍ଷରେ ସେମାନେ ଅନ୍ୟମାନଙ୍କୁ ସେମିତି ବୁଝାଇଥାନ୍ତି । ମାତ୍ର ସଭିଁଙ୍କର ଭାବନା, ଚେତନା ଯେତେବେଳେ ଏକ କରାଯାଏ, ସେତେବେଳେ ସେ ହୋଇଯାନ୍ତି ଏକ ଓ ଅଭିନ୍ନ ।

ନୀଳାଚଳବାସୀ ପ୍ରଭୁ ଜଗନ୍ନାଥଙ୍କୁ ଅବତାରୀ ଠାକୁର ବୋଲି କୁହାଯାଏ । ପ୍ରଥମେ ସେ ଶବର ଦେବତା ନୀଳମାଧବ ଥିଲେ, ପରବର୍ତ୍ତୀ ସମୟରେ ପ୍ରଭୁ ଶ୍ରୀଜଗନ୍ନାଥରେ ରୂପାନ୍ତରିତ ହୋଇଥିଲେ । ଏହାକୁ ନେଇ ଏକ କିମ୍ବଦନ୍ତୀ ରହିଛି । ଶରତଚନ୍ଦ୍ର ରଥ 'ଆମ ସଂସ୍କୃତି ଓ ଅନ୍ୟାନ୍ୟ ପ୍ରବନ୍ଧ' ପୁସ୍ତକର ପୃଷ୍ଠା ୧୨, ଦ୍ୱିତୀୟ ଅନୁଚ୍ଛେଦରେ ଉଲ୍ଲେଖ କରିଛନ୍ତି 'ଜଗନ୍ନାଥ ପ୍ରଥମେ ଶବର ଦେବତା ନୀଳମାଧବ ଭାବରେ ପୂଜିତ ହେଉଥିଲେ । ବିଦ୍ୟାପତିଙ୍କ ଦ୍ୱାରା ରାଜା ଇନ୍ଦ୍ରଦ୍ୟୁମ୍ନ ତାଙ୍କର ସନ୍ଧାନ କରାଇ ଥିଲେ । ବିଦ୍ୟାପତି ଓ ଲଳିତାଙ୍କ ବିବାହରେ ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ସମନ୍ୱୟ ଘଟିଲା । ଏହି ସମନ୍ୱୟକୁ ଯଥାମାନ୍ୟ ଦେବାପାଇଁ ସମନ୍ୱୟର ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ବିଦ୍ୟାପତି ଓ ଲଳିତାଙ୍କର ବଂଶଧରଙ୍କୁ ଠାକୁରଙ୍କ ସେବା ପୂଜାରେ ଅଂଶ ଗ୍ରହଣ କରିବାର ସୁଯୋଗ ଦିଆଯାଇଛି । ସେହି ନୀଳମାଧବ ଅନ୍ତର୍ଦ୍ଧାନ ହୋଇ ଦାରୁ ରୂପରେ ବାଙ୍କୀ ମୁହାଣରେ

ଆବିର୍ଭୂତ ହେଲେ ଏବଂ ତହିଁରୁ ମୂର୍ତ୍ତିମାନ ଗଠିତ ହେଲା ବୋଲି ଜନଶ୍ରୁତି ରହିଛି । ଅତଏବ ଏକଥା ସ୍ୱୀକାର୍ଯ୍ୟ ଯେ ଶ୍ରୀଜଗନ୍ନାଥ ଧର୍ମ ଓ ଦର୍ଶନ ଆର୍ଯ୍ୟ-ଅନାର୍ଯ୍ୟ ଉଭୟଙ୍କର ସଂସ୍କୃତିର ସମନ୍ୱିତ ଭିତ୍ତି ଉପରେ ପ୍ରତିଷ୍ଠିତ ଓ ପରିବ୍ୟାପ୍ତ । ଦଇତାପତିମାନେ ନବକଳେବର, ରଥଯାତ୍ରା ଏବଂ ଅଣସର ସମୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ସେବା ପୂଜାରେ ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି ।'

ପୁରୁଷୋତ୍ତମରେ ବିରାଜମାନ କରିବା ପରେ ପ୍ରଭୁ ଶ୍ରୀଜଗନ୍ନାଥ ସମନ୍ୱୟର ଦେବତା ହୋଇଗଲେ । ବଳରାମ ଦାସ ବଳରାମ, ଜଗନ୍ନାଥ ଓ ସୁଭଦ୍ରାଙ୍କୁ ଶିବ, ବିଷ୍ଣୁ ଓ ଦୁର୍ଗା ଭାବରେ, ପଞ୍ଚସଖା ଯୁଗୀୟ ସାଧକମାନେ ଜଗନ୍ନାଥଙ୍କ ଚକାଡୋଳାରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିର ଅବତାରଣା କରିଥିବା ବେଳେ 'ଗୀତ ଗୋବିନ୍ଦ'ରେ ଜୟଦେବ ମଧ୍ୟ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଭାବେ ଗ୍ରହଣ କରିଛନ୍ତି । ସେହିପରି ରାଜା ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ରାୟରାମାନନ୍ଦ ଜଗନ୍ନାଥଙ୍କୁ କୃଷ୍ଣ, ରାମ ଉପାସକମାନେ ତାଙ୍କୁ ରାମ, ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନେ ଜଗନ୍ନାଥଙ୍କୁ ନିଜ ନିଜ ଦେବତାଭାବେ ଗ୍ରହଣ କରିଛନ୍ତି ।

ଦେଶର କୋଣ ଅନୁକୋଣରୁ ବହୁ ଭକ୍ତ ନୀଳାଚଳ ଧାମକୁ ଆସିଛନ୍ତି । ମହାପ୍ରଭୁ ଶ୍ରୀଚୈତନ୍ୟ ପୁରୀ ଆସି ଜଗନ୍ନାଥଙ୍କଠାରେ ଅନ୍ତର୍ଦ୍ଧାନ ହୋଇଥିଲେ । ତେଣୁ ଦାରୁ ଦେବତା ଜଗନ୍ନାଥଙ୍କୁ ଯେଉଁ ଭକ୍ତ ଯେମିତି ଦେଖିଲା, ତାଙ୍କୁ ସେମିତି ବୁଝିଲା । ପ୍ରଭୁଙ୍କ ଭାବନା ଚେତନା ଏତେ ସରଳ ଯେ, ତାହା ବୁଝାଇବା ପାଇଁ କୌଣସି ଭାଷାର ମାଧ୍ୟମ ଦରକାର ପଡେ ନାହିଁ । ପ୍ରଥମ ଦର୍ଶନରେ ହିଁ ଭକ୍ତ ତାଙ୍କୁ ବୁଝିଯାଏ ଓ ତାଙ୍କୁ ପ୍ରେମ କରି ବସେ । ଭକ୍ତଙ୍କ ପାଇଁ ପ୍ରଭୁଙ୍କ ଦର୍ଶନ ହେଉଛି ମୋକ୍ଷ ପ୍ରାପ୍ତି । ଦାରୁ ହେଲେ ବି ଜଗନ୍ନାଥ ଚଳନ୍ତି ଦେବତା । ବୋଧହୁଏ ଜଗତର ଅନ୍ୟ କୌଣସି ଦେବତାଙ୍କୁ ଦେଖିଲେ ଭକ୍ତ ସେତିକି ଭାବ ବିହ୍ୱଳିତ ହୁଏନାହିଁ, ଯାହା ସେ ଜଗନ୍ନାଥଙ୍କୁ ଦେଖିବା ପରେ ହୁଏ । ପ୍ରଭୁଙ୍କ ସାମ୍ନାରେ ଭକ୍ତ ସବୁ କିଛି ଭୁଲିଯାଏ । ଆଖିରୁ ତା'ର ଭାବର ଲୋତକ ଝରିଯାଏ, ପ୍ରଭୁଙ୍କ ନିକଟରେ ନିଜକୁ ସମର୍ପିତ କରି ଦେବାପରେ ଭକ୍ତର ସବୁ ଦୁଃଖ ଲାଘବ ହୋଇଯାଏ । ଭକ୍ତ ଅପୂର୍ବ ଶାନ୍ତିପାଏ ।

ଶ୍ରୀଜଗନ୍ନାଥ ତତ୍ତ୍ୱ ଜଣେ ସାଧାରଣ ଭକ୍ତ ପାଇଁ କିଛି ମୂଲ୍ୟ ରଖେ ନାହିଁ । ସରଳ ମନରେ ଭକ୍ତଟିଏ ପ୍ରଭୁଙ୍କୁ ଯେମିତି ହୃଦୟଙ୍ଗମ କରେ, ତାହାହିଁ ନୂଆ ତତ୍ତ୍ୱ ହୋଇଯାଏ । ଗୀତାର ଶ୍ଳୋକ, ଭାଗବତର ତତ୍ତ୍ୱ ଓ ମହାଭାରତର ନୀତି ଓ ଭାବକୁ ବୁଝିବା ସାଧାରଣ ମାନବ ପକ୍ଷେ ସହଜ ନୁହେଁ । କିନ୍ତୁ ଜଗନ୍ନାଥଙ୍କୁ ବୁଝିବା ସହଜ । ତେଣୁ ପ୍ରଭୁ ହେଉଛନ୍ତି ସବୁରି ଭାବର ଊର୍ଦ୍ଧ୍ୱରେ । ଜ୍ଞାନୀ, ବିଦ୍ୱାନ ଓ ପଣ୍ଡିତଙ୍କଠୁ ସରଳ ଭକ୍ତଟିଏ ହେଉଛି ଜଗନ୍ନାଥଙ୍କର ପ୍ରିୟ । ଭକ୍ତଙ୍କ ପାଇଁ ସେ ବଡ ଦେଉଳ ଛାଡି ବାହାରକୁ ଆସନ୍ତି । ସେମାନଙ୍କୁ ଦର୍ଶନ ଦିଅନ୍ତି । ପ୍ରଭୁ ଭକ୍ତମାନଙ୍କୁ ଆଲିଙ୍ଗନ କରନ୍ତି, ତା'ର ଦୈନନ୍ଦିନ ସୁଖଦୁଃଖ ପଚାରି ବୁଝନ୍ତି । ଭକ୍ତର ଲୁହ ଓ ଦେହର ଝାଳକୁ ବୋଳି ହୋଇ ଜଗନ୍ନାଥ ନିଜର ସୁଗନ୍ଧ ବାଣ୍ଟନ୍ତି । ଭକ୍ତ ଓ ଭଗବାନର ଏହି ମହାମିଳନର ପର୍ବ ଜଗତରେ ବିରଳ । ଏଭଳି ଏକ ମହାଦିବସକୁ ସମସ୍ତେ ଅପେକ୍ଷା କରି ରହିଥାନ୍ତି । ପ୍ରତିବର୍ଷ ରଥଯାତ୍ରା ହେଉଛି ଏହି ଭକ୍ତ ଓ ଭଗବାନଙ୍କର ମହାମିଳନର ଦିବସ । ରଥଯାତ୍ରାରେ ପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିର ଛାଡି ବାହାରକୁ ଆସନ୍ତି । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତଙ୍କୁ ଦର୍ଶନ ଓ ଆଲିଙ୍ଗନର ସୁଯୋଗ ଦେଇଥାନ୍ତି । କିଏ ବି ଜଣେ ପ୍ରିୟ ଭକ୍ତ ଆସିବାରେ ବିଳମ୍ବ ହେଲେ ପ୍ରଭୁ ବହୁ ଛଳନା କରନ୍ତି ଓ ବଡଦାଣ୍ଡରେ ରଥ ଅଟକାଇ ଦିଅନ୍ତି । ଭକ୍ତକୁ ଦର୍ଶନ ଦେବାପରେ ସେ ଆଗକୁ ଯାଆନ୍ତି । ସତରେ ପ୍ରଭୁଙ୍କର ଏଭଳି ଅଦ୍ଭୁତ ମହିମା ଅବର୍ଣ୍ଣନୀୟ ।

ଏମ୍‌ଆଇଜି-୩୭, କେ-୯(ଏ)
କଳିଙ୍ଗବିହାର, ପାତ୍ରପଡା, ଭୁବନେଶ୍ୱର

# ଘୋଷଯାତ୍ରାର ଅତୀତ ଓ ବର୍ତ୍ତମାନ

**ତ୍ରିଲୋଚନ ଦାଶ**

ବୈଦିକ ଯୁଗରୁ ମହାପ୍ରଭୁ ଶ୍ରୀଜଗନ୍ନାଥ ପୁରୀଧାମରେ ପୂଜା ପାଇ ଆସୁଛନ୍ତି । ସେ ମଧ୍ୟ ଦାରୁବ୍ରହ୍ମ, ପୁରୁଷୋତ୍ତମ, ନୀଳାଦ୍ରିନାଥ ଆଦି ଏକାଧିକ ନାମରେ ନାମିତ । ପ୍ରଭୁଙ୍କର କୃତି, କ୍ରାନ୍ତି ଓ କୀର୍ତ୍ତି ସମ୍ପର୍କରେ ଓଡ଼ିଆ ସାହିତ୍ୟର ଅଧିକାଂଶ ସ୍ଥାନରେ ବର୍ଣ୍ଣିତ ହୋଇଛି । ଏହି ଧାମରେ ବିଶ୍ୱ ପ୍ରସିଦ୍ଧ ରଥାଯାତ୍ରା ଚଳି ଆସୁଛି । ଏହାର ଆରମ୍ଭ କେବେଠାରୁ, ସେ ସମ୍ପର୍କରେ ଆମେ ଏଠାରେ ଅତୀତର ଘୋଷଯାତ୍ରା ସଂପର୍କରେ କିଛି ଆଲୋଚନା କରିବା ।



ବର୍ତ୍ତମାନ ସମୟ ପରି ଅଷ୍ଟାଦଶ ଶତାବ୍ଦୀ ହେଉ କିମ୍ବା ଏହା ପୂର୍ବ ସମୟ ହେଉ– ବହୁ ବିଦେଶୀ ପର୍ଯ୍ୟଟକ ପୁରୀ ଆସୁଥିଲେ ପ୍ରସିଦ୍ଧ ଘୋଷଯାତ୍ରା ଦେଖିବାକୁ । ସେମାନେ ଘୋଷଯାତ୍ରା ଦେଖି ସାରିଲା ପରେ ନିଜ ଦେଶକୁ ଫେରି ପୁରୀ ରଥଯାତ୍ରାର ଦୃଶ୍ୟକୁ ଲେଖନୀରେ ବର୍ଣ୍ଣନା କରୁଥିଲେ । ସେଗୁଡ଼ିକ ପଢିଲେ ଆମେ ଘୋଷଯାତ୍ରାର ଅତୀତ ଉପରେ କେତେ ତଥ୍ୟ ପାଇଥାଉ । ସେଇ ତଥ୍ୟଗୁଡ଼ିକୁ ମଧ୍ୟ କେହି କେହି ଐତିହାସିକ ବା ଗବେଷକ ତର୍ଜମା କରିଛନ୍ତି, ସମୀକ୍ଷା କରିଛନ୍ତି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥ ଚକତଳେ ଆତ୍ମ ବିସର୍ଜନ କଲେ ସ୍ୱର୍ଗପ୍ରାପ୍ତି ଘଟେ ବୋଲି ସେସମୟରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ରଥ ସାମନାକୁ ଡେଇଁ ପଡୁଥିଲେ । ରଥଚକ ତଳେ ସ୍ୱେଚ୍ଛାକୃତ ପ୍ରାଣଦାନ କରୁଥିବା କଥା ୧୬୬୭ ମସିହା ରଥଯାତ୍ରା ଦେଖିସାରି ଲଡ଼ି ବର୍ଣ୍ଣେୟର ମଧ୍ୟ ଉଲ୍ଲେଖ କରିଛନ୍ତି । ସେଇ ଏକାକଥା ମଧ୍ୟ ଆଲେକଜାଣ୍ଡାର ହାମିଲଟନ ୧୭୨୭ ମସିହା ରଥଯାତ୍ରା ଦେଖିସାରି ଲେଖିଛନ୍ତି । ଆତ୍ମ ଉତ୍ସର୍ଗ ଦୃଶ୍ୟ ବର୍ଣ୍ଣନା ସହିତ ହାମିଲଟନ ଏକଥା ମଧ୍ୟ ଲେଖିଛନ୍ତି ।

ରଥ ଟଣା ହୋଇ ଚାଲିବାର ଗତି ଅତ୍ୟନ୍ତ ମନ୍ଥର ଥିଲା । ଗୁଣ୍ଡିଚାଘରେ ତିନିରଥ ପହଞ୍ଚିବା ପାଇଁ ଅନ୍ୟୂନ ତିନିରୁ ଚାରିଦିନ ସମୟ ଲାଗୁଥିଲା । ଯାତ୍ରା ଭିତରେ ଭିକାରୀମାନେ ଅଭିନବ ଉପାୟରେ ଭୀକ୍ଷା ସଂଗ୍ରହ କରୁଥିଲେ । କେହି ନିଜ ଦେହସାରା କାଦୁଅ ବୋଳି ହୋଇ ବସିଥାନ୍ତି । କେହି ପାଟିରେ ପାଳ ବା ନଡ଼ା ଗୁଞ୍ଜି ଥାନ୍ତି । କେହି ଚିତ୍ ହୋଇ ପେଟ ଉପରେ ନିଆଁ ଉମେଇ ଥୋଇଥାନ୍ତି । କେହି ମୁଣ୍ଡକୁ ମାଟିରେ ପୋତି ଦେଇଥାନ୍ତି । ଗୋଟିଏ ସ୍ଥାନରେ ସମସ୍ତ ଯାତ୍ରୀ ବସି ଖାଉଥିବାର ଦୃଶ୍ୟ ହାମିଲଟନଙ୍କୁ ଆତ୍ମହରା କରିଥିଲା ।

ହାମିଲଟନଙ୍କ ପରି ରେଭରେଣ୍ଡ କୁଚନାନ୍ ମଧ୍ୟ ରଥଯାତ୍ରାର ପ୍ରତ୍ୟକ୍ଷ ଦର୍ଶୀ ଦୃଶ୍ୟ ବର୍ଣ୍ଣନା କରିଛନ୍ତି । ମୁଖ୍ୟତଃ

ପହଣ୍ଡିବିଜେର ଦୃଶ୍ୟ, ଜନତାଙ୍କ ସମାବେଶ ଓ ସେମାନଙ୍କର ଜୟଜୟକାର ଧ୍ୱନି, ରଥଟଣା ସମୟରେ ନୃତ୍ୟ ସଂଗୀତ, ଭାବଭଙ୍ଗୀ, ତଥ୍ୟମାନ ତାଙ୍କ ରଚନାରେ ରହିଛି । ତାଙ୍କ ଲେଖାନୁସାରେ 'ଠାକୁରମାନେ ରଥରେ ବସି ସାରିଲା ପରେ, ଭକ୍ତମାନେ ହାତରେ ପଇଡ଼ ଧରି, ମୁଣ୍ଡିଆମାରି ପୂଜା କଲାପରେ ରଥ ଟଣା ହୁଏ । ରଥ ସାମନାରେ ହାତୀ ଓ ନୃତ୍ୟାଙ୍ଗନା ଝିଅମାନେ ନାଚି ଗାଇ ଚାଲନ୍ତି । ଶତାଧିକ ସେବକ ରଥରେ ରହି ପୂଜାର୍ଚ୍ଚନା କରୁଥାନ୍ତି ।

ରଥ ବଳଗଣ୍ଡିଠାରେ ପହଞ୍ଚିଲା ପରେ ମଧ୍ୟାହ୍ନ ଖରା ପାଇଁ ପ୍ରଭୁ ଓ ଭକ୍ତମାନେ ବିଶ୍ରାମ ନେଉଥିଲେ । ପଞ୍ଚାମୃତ, ଚନ୍ଦନ, କର୍ପୂର ଇତ୍ୟାଦି ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲେପ ହେଉଥିଲା । ନଡ଼ିଆ, ଖଜୁରୀ, ତାଳ, ପଣସ, ଆମ୍ବ ଇତ୍ୟାଦି ପୂଜା କରାଯାଉଥିଲା । ସେହିପରି ଅତୀତରେ ରଥ ଟାଣିବା ପାଇଁ ସ୍ୱତନ୍ତ୍ର ସେବକ ନିଯୁକ୍ତ ହେଉଥିଲେ । ସେମାନେ ଏଥିପାଇଁ ମାଗଣାରେ ଜମି ଚାଷ କରି ଜୀବିକା ଅର୍ଜନ କରୁଥିଲେ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥ ପାଇଁ, ବଳଦେବଙ୍କ ପାଇଁ, ସୁଭଦ୍ରାଙ୍କ ପାଇଁ ସେବକ ରଥଟଣାରେ ନିଯୁକ୍ତ ହେଉଥିଲେ । ମୋଟରେ ପ୍ରାୟ ୪୨୦୦ ସେବକ ରହୁଥିଲେ ।

୧୬୬୮ ମସିହାରେ ପବିତ୍ର ରଥଯାତ୍ରା ଜୁନ୍‌ମାସ ୨୩ ତାରିଖରେ ପଡ଼ିଥିଲା । ବଙ୍ଗଳାର ତତ୍କାଳୀନ ସାନିଟାରୀ କମିଶନର ଡକ୍ଟର ଡାଭିଡ଼ ବି.ସ୍ମିଥ ପୁରୀ ସହରର ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ଅନୁଧ୍ୟାନ ପାଇଁ ଆସିଥିଲେ । ସେ କଲିକତାରୁ ଜୁନ୍‌ମାସ ୧୧ ତାରିଖରେ ଷ୍ଟିମର ଯୋଗେ ଆସି ୨୩ ଜୁନ୍ ୧୮୬୮ ମସିହା ମଧ୍ୟରାତ୍ରରେ ପୁରୀରେ ପହଞ୍ଚିଲେ । ପହଣ୍ଡିପରେ ପ୍ରଭୁ ରଥାରୂଢ଼ ହୋଇ ବଡ଼ ଦାଣ୍ଡରେ ଥାନ୍ତି । ପୁରୀରୁ ଫେରିଗଲା ପରେ ସ୍ମିଥ ତାଙ୍କ ପୁସ୍ତକରେ ପୁରୀ ରଥଯାତ୍ରା ସମ୍ପର୍କରେ କିଛି ଅଂଶ ଏଠାରେ ଉଲ୍ଲେଖଯୋଗ୍ୟ ।

ମୁଁ ଅନୁଧ୍ୟାନ କଲି ଯେ, ପୁରୀଠାରେ ଏକତ୍ରିତ ଯାତ୍ରୀ ବିଶ୍ୱାସ କରୁଥିଲେ ଯେ–ପୁରୀ ସହର ଓ ଏହାର ୧୦ ମାଇଲ ବ୍ୟାସାର୍ଦ୍ଧ ପରିମିତ ଅଞ୍ଚଳ ତୀର୍ଥଯାତ୍ରୀଙ୍କ ପାଇଁ ପବିତ୍ର ସ୍ଥାନ । ସେବକମାନେ କହୁଥିଲେ ମର୍ତ୍ତ୍ୟ ଭୂମିରେ ସ୍ୱର୍ଗ ହେଉଛି ପୁରୀ । ଫଳ ଯେମିତି ଗଛକୁ ସୁନ୍ଦର, ସେମିତି ପୁରୀରେ ଶ୍ରୀଜଗନ୍ନାଥ ଦର୍ଶନ ଜୀବନ ପାଇଁ ସୁନ୍ଦର । ଏଠାରେ ପୁଷ୍କରିଣୀରେ ସ୍ନାନ କଲେ ପୁଣ୍ୟ ପ୍ରାପ୍ତି ହୁଏ । ଏଠାରେ ଲକ୍ଷ୍ମୀଙ୍କ ହାତରନ୍ଧା ପ୍ରସାଦ ସମସ୍ତେ ଖାଆନ୍ତି ....ଇତ୍ୟାଦି...ଇତ୍ୟାଦି ।

ପରେ ସ୍ମିଥ ସରକାରଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ ସେଥିରେ ସେ ଲେଖିଥିଲେ 'ମୁଁ ଅନୁଭବ କଲି ପୁରୀ ପବିତ୍ର ସ୍ଥାନ ଓ ଏହାର ମାହାତ୍ମ୍ୟ ସ୍ୱତନ୍ତ୍ର । ଏହା ସବୁ ହୋଇପାରେ କିନ୍ତୁ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପରିମଳତା ପାଇଁ ଭୂ–ସ୍ୱର୍ଗ ନୁହେଁ । ଏହି ସହରର ପୁଷ୍କରିଣୀମାନ ସୁନ୍ଦର ହୋଇପାରିଛି । ପବିତ୍ର ହୋଇପାରନ୍ତି, ମାତ୍ର ଜଳରେ ମୃତ୍ୟୁ କଣିକା ଭର୍ତ୍ତି । ଏଠାରେ ଅମରତ୍ୱ ନାହିଁ । ରାସ୍ତା କଡ଼ରେ ସୁଗନ୍ଧ ଯୁଗ ପୁଷ୍ପଗଛ ଥାଇପାରେ–କିନ୍ତୁ ଏହାର ରାସ୍ତାର ଅବସ୍ଥା ଆଦୌ ସୁଗନ୍ଧ ଯୁକ୍ତ ହୋଇ ନପାରେ । ଏଇଭଳି ଭାବରେ କିଛି ବାସ୍ତବ ଓ କିଛି ସଂଗୃହୀତ ତଥ୍ୟକୁ ଏକତ୍ର କରି ସ୍ମିଥ୍ ତାଙ୍କ ରିପୋର୍ଟ ପ୍ରସ୍ତୁତ କରିଥିଲେ ।

ହାମିଲଟନଙ୍କ 'ହିନ୍ଦୁସ୍ଥାନ' ପୁସ୍ତକଠାରୁ ଆରମ୍ଭ କରି ସ୍ମିଥଙ୍କ ରିପୋର୍ଟ ପର୍ଯ୍ୟନ୍ତ–କେତେ ବିଦେଶୀ ପର୍ଯ୍ୟଟନ ଓ ପ୍ରଶାସକଙ୍କ ଦୃଷ୍ଟିରେ ରଥଯାତ୍ରାର ଐତିହ୍ୟ ବର୍ଣ୍ଣିତ ହୋଇଛି । ଏହାଦ୍ୱାରା ଆମେ ପୁରୀର ପ୍ରସିଦ୍ଧ ଘୋଷଯାତ୍ରାର ଅତୀତ ଉପରେ କିଛି ଜାଣିଥାଉ । ବର୍ତ୍ତମାନର ଯାତ୍ରା ଓ ତତ୍କାଳୀନ (ଅଷ୍ଟାଦଶ ଶତାବ୍ଦୀ) ରଥଯାତ୍ରା ମଧ୍ୟରେ କିଛିଟା ଆନୁଷଙ୍ଗିକ ପାର୍ଥକ୍ୟ ଥିଲେ ବି ରଥଯାତ୍ରାର ପରମ୍ପରା ଓ ବିଶ୍ୱାସ ଏଯାବତ୍ ଅପରିବର୍ତ୍ତିତ ବୋଲି ମନେ ହୁଏ । ବିଦେଶୀ ପର୍ଯ୍ୟଟକମାନଙ୍କ ଲେଖନୀରେ ଓଡ଼ିଶାର ଐତିହ୍ୟ ଫୁଟି ଉଠିଛି ।

ରଥଯାତ୍ରା ଉପରେ ବାସ୍ତବ କ୍ଷେତ୍ରରେ ଆହୁରି ଗବେଷଣା ହେଲେ–ଅତୀତ ଐତିହ୍ୟ ତଥା ଏହାର ଉତ୍ପତ୍ତି ସମୟ ଉପରେ ଅଧିକ ତଥ୍ୟ ମିଳିପାରନ୍ତା । ଘୋଷଯାତ୍ରାର ଐତିହ୍ୟ, ପରମ୍ପରା, ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଯେମିତି ଚିତ୍ରିତ ହେଲେବି ଏହି ବିଶ୍ୱପ୍ରସିଦ୍ଧ ପରମ୍ପରାଟି, ଭାରତୀୟ ଜାତୀୟ ଜୀବନକୁ ବିଶ୍ୱ ସ୍ତରରେ ପ୍ରତିପାଦିତ କରିଛି । ଏହା ହୁଏତ ସମସ୍ତେ ସ୍ୱୀକାର କରିବେ ।

ଗ୍ରାମ–ବାସନ୍ଦରା
ଭାୟା–ବିରିଡ଼ି ରୋଡ଼
ଜଗତସିଂହପୁର–୭୫୪୧୧୧

# ଉତ୍କଳର ନେତା ନିଜେ ନାରାୟଣ

**ଡକ୍ଟର ଉର୍ମିମାଳା ଆଚାର୍ଯ୍ୟ**

ନ ଅଟକେ କର୍ମ ନେତାର ଅଭାବେ
ଧର୍ମନାବ ଚଳେ ଧର୍ମର ପ୍ରଭାବେ।
ସହଜେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

ଗୋପବନ୍ଧୁ ଦାସ

ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ଅଭିମାନ। ଓଡ଼ିଆମାନଙ୍କର ଗର୍ବ, ଗୌରବ ଓ ମଙ୍ଗଳ-ଅମଙ୍ଗଳର ଦେବତା ସେ । ଓଡ଼ିଶାର ସାଂସ୍କୃତିକ ଓ ଆଧ୍ୟାତ୍ମିକ ଇତିହାସରେ ତାଙ୍କ ସ୍ଥାନର ତୁଳନା ନାହିଁ। ଭକ୍ତି ଏବଂ ଭାବର ରଜ୍ଜୁରେ ସେ ବନ୍ଧା। ସେ କେତେବେଳେ ଭଗବାନ ଓ କେତେବେଳେ ଭକ୍ତ ।



ଜଗନ୍ନାଥ ସଂସ୍କୃତି ଏବଂ ଧର୍ମ ପରମ୍ପରା। ହେଉଛି ସନାତନ ଧର୍ମ ପରମ୍ପରା । ସନାତନ ଶବ୍ଦର ଅର୍ଥ ହେଉଛି ଯାହାର କୌଣସି ଆରମ୍ଭ ନାହିଁ । ମନୁଷ୍ୟର ଉତ୍ତରଣ ସହିତ ଏହି ଧର୍ମ ପରମ୍ପରାର ବୌଦ୍ଧିକ ବିକାଶ ସଞ୍ଚରିତ ହୋଇ ଚାଲିଛି । ଶବର ବିଶ୍ୱାବସୁଠାରୁ ଆର୍ଯ୍ୟ ଇନ୍ଦ୍ରଦ୍ୟୁମ୍ନ, ବୌଦ୍ଧ ଇନ୍ଦ୍ରଭୂତି, ଶୈବ ଶଙ୍କରାଚାର୍ଯ୍ୟ ପଞ୍ଚରାତ୍ରିକ ରାମାନୁଜ, ଭକ୍ତିବାଦୀ ଶ୍ରୀଚୈତନ୍ୟ, ଶୂନ୍ୟବାଦୀ ବଳରାମ, ଶିଖ୍ ଗୁରୁ ନାନକଙ୍କ ପର୍ଯ୍ୟନ୍ତ ସବୁ ମତବାଦ ଓ ସମ୍ପ୍ରଦାୟ ଶ୍ରୀଜଗନ୍ନାଥଙ୍କ ମୈତ୍ରୀ ସାଧନାରେ ସମନ୍ୱିତ ହୋଇଯାଇଛି ।

ଶ୍ରୀଜଗନ୍ନାଥଙ୍କ ରୂପର ଅନେକ ବୈଶିଷ୍ଟ୍ୟ ରହିଛି । ସେ ହସ୍ତପଦହୀନ । ଏହାର ସାଂକେତିକ ଅର୍ଥ ହେଉଛି ତାଙ୍କ ପାଖରେ ସୃଷ୍ଟି ଏବଂ ବିଲୟ । ତେଣୁ କୌଣସି ସଂଖ୍ୟାରେ ସେ ଆବଦ୍ଧ ନୁହନ୍ତି । ଅସଂଖ୍ୟ ଅନନ୍ତ ତାଙ୍କର ବିସ୍ତାର । ସେ ପ୍ରେମ ଏବଂ ଭକ୍ତି ନିକଟରେ ସରଳ ଶିଶୁ ପରି ତ ଶତ୍ରୁ ସଂହାର ପାଇଁ ଚକ୍ରଧାରୀ ।

ଶ୍ରୀଜଗନ୍ନାଥ ହେଉଛନ୍ତି ଏକମାତ୍ର ଦେବତା, ଯାହାଙ୍କ ପାଖରେ ଆମେ ଓଡ଼ିଆ ଜୀବନ ଶୈଳୀର ପ୍ରତିଛାୟା ଦେଖିବାକୁ ପାଇବା । ସକାଳୁ ଉଠି ଦାନ୍ତ ଘଷିବାଠାରୁ ରାତିରେ ବଡ଼ସିଂହାର ବେଶ ହୋଇ ଶୟନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମ ମନୁଷ୍ୟମାନଙ୍କ ପରି ସମ୍ପାଦିତ କରାଯାଇଥାଏ । ସେ ହେଉଛନ୍ତି ପୃଥିବୀର ଏକମାତ୍ର ଦେବତା, ଯାହାଙ୍କୁ ବର୍ଷକରେ ଥରେ ଜ୍ୱର ମଧ୍ୟ ହୋଇଥାଏ । ତାଙ୍କ ପାଖରେ ଧର୍ମ-ବର୍ଣ୍ଣ-ଜାତିର କୌଣସି ଭେଦଭାବ ନ ଥାଏ । ରଥଯାତ୍ରା ସମୟରେ ସେ ଧକ୍କା-କଚଡ଼ା, ଟଣା-ଓଟରା ଓ ଠେଲା-ପେଲା ଖାଇ ସର୍ବସାଧାରଣରେ ଦର୍ଶନ ଦିଅନ୍ତି ଏବଂ ସମସ୍ତେ ଧର୍ମ-ବର୍ଣ୍ଣ-ଜାତି ନିର୍ବିଶେଷରେ ସ୍ପର୍ଶଲାଭ କରନ୍ତି।

ଯବନ ସାଲବେଗର ଭକ୍ତିରେ ସେ ବନ୍ଧା ଓ ଦାସିଆ ବାଉରୀର ନଡ଼ିଆ ରଙ୍କୁଣା । ତେଣୁ ତାଙ୍କୁ କେହି କୌଣସି ସଂଜ୍ଞା ବା ପରିଭାଷାରେ ବାନ୍ଧି ପାରିବ ନାହିଁ । ଜ୍ଞାନ, ଧନ ଓ ବୁଦ୍ଧିର ଅଭିମାନରେ କେହି ତାଙ୍କୁ ଜୟ କରି ପାରିବେନି । ଗର୍ବ, ଅହଂକାରକୁ ସେ ସହିପାରନ୍ତି ନାହିଁ । ତେଣୁ ତାଙ୍କର ବାନାର ନାମ ହେଉଛି ଗର୍ବଗଞ୍ଜନ ବାନା । ନିଜକୁ ସମର୍ପଣ କରି ହାତଟେକି ଯଦି ତାଙ୍କର

ଶରଣାପନ୍ନ ହୁଅ, ତେବେ ସେ ତାଙ୍କର ଛତ୍ରଛାୟାରେ ଆଶ୍ରୟ ଦିଅନ୍ତି ।

ଏକଦା ଜଣେ ବ୍ୟବସାୟୀ ବହୁତ ଧନ ଉପାର୍ଜନ କରିଥିଲା। ଧନର ପ୍ରାଚୁର୍ଯ୍ୟରେ ମଦମତ୍ତ ବ୍ୟବସାୟୀଟିର ମନରେ ଅଭିମାନ ଆସିଲା । ସେ ଭାବିଲା ମୁଁ ଯାହା ଚାହିଁବି ତାହା କରିପାରିବି। ସେଥିପାଇଁ ସେ ନିଜର ଆର୍ଥିକ ସମ୍ପନ୍ନତା ପ୍ରଦର୍ଶନ ପାଇଁ ନୀଳାଚଳଧାମ ଆସିଲା । ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବା ପାଇଁ ଉକ୍ତ ବ୍ୟବସାୟୀଟି ଇଚ୍ଛା ପ୍ରକଟ କଲା । ପଣ୍ଡାମାନେ ତାଙ୍କୁ ଶ୍ରୀଜଗନ୍ନାଥଙ୍କ ସମ୍ମୁଖକୁ ନେଇଗଲେ। ନମସ୍କାର କରୁ କରୁ ବ୍ୟବସାୟୀ ଭାବିଲେ ମୁଁ ଶ୍ରୀଜଗନ୍ନାଥଙ୍କୁ କିଛି ଦେବାକୁ ଚାହେଁ। ସେ ନିଜ ମନର ଅଭିଳାଷ ପୂଜକଙ୍କ ସମ୍ମୁଖରେ ବୟାନ କଲେ। ପୂଜକମାନେ ତାଙ୍କୁ ବିଭିନ୍ନ ପ୍ରକାରର ଦାନ ବିଷୟରେ କହିଲେ। ମାତ୍ର ବ୍ୟବସାୟୀ ଜଣଙ୍କ ଅଭିମାନ ପୂର୍ବକ କହିଲେ, ମୁଁ ଏପରି ଏକ ପ୍ରସାଦ ଦେବାକୁ ଚାହେଁ, ଯାହା କି ସମସ୍ତ ପ୍ରସାଦଠାରୁ ବ୍ୟୟବହୁଳ ହୋଇଥିବ । ଅର୍ଥ ପ୍ରତି ଆପଣମାନେ ନିଶ୍ଚିନ୍ତ ରୁହନ୍ତୁ । ପୂଜକମାନେ ନିଜ ନିଜର ଜ୍ଞାନର ପରିସରରେ ବିଭିନ୍ନ ପ୍ରସାଦର ନାମ ଉଲ୍ଲେଖ କଲେ। ମାତ୍ର ଅଭିମାନୀ ବ୍ୟବସାୟୀ ସେ କଥା ପ୍ରତି ତାଚ୍ଛଲ୍ୟ ପ୍ରକଟ କରି କହିଲେ, ଏହା ତ ମୋ ଧନର ସହସ୍ରାଂଶରୁ ମଧ୍ୟ କମ୍ ହେବ । ଏପରି ପ୍ରସାଦର ନାମ କୁହ, ଯାହା ଅନ୍ତତଃ ଆଗରୁ  କେହି ଦେଇନଥିବେ ନା କେହି ଆଗକୁ ଦେଇପାରିବେ ନାହିଁ ।

ପୂଜକମାନେ ପ୍ରମାଦ ଗଣିଲେ ଏବଂ ସମସ୍ୟା ବିଷୟରେ ଗଜପତି ମହାରାଜଙ୍କୁ ଅବଗତ କରାଇଲେ । ଗଜପତି ମହାରାଜ ମଧ୍ୟ ବିଷମ ସମସ୍ୟାରେ ପଡ଼ିଲେ । ବ୍ୟବସାୟୀଙ୍କର ଜିଦ୍ ଏବଂ ଇଚ୍ଛା ଆଗରେ ଗଜପତି ମ୍ରିୟମାଣ ଅନୁଭବ କଲେ । ଶେଷରେ ମହାରାଜ ପ୍ରଧାନ ପୂଜକଙ୍କ ପାଖକୁ ଯାଇ ସବିଶେଷ ଆଲୋଚନା କଲେ । ପ୍ରଧାନ ପୂଜକ କହିଲେ, ମହାରାଜ! ଆପଣ ନିଶ୍ଚିନ୍ତ ରୁହନ୍ତୁ। ଶ୍ରୀଜଗନ୍ନାଥଙ୍କର ଇଚ୍ଛା ହିଁ ପୂରଣ ହେବ। ସେ ହିଁ ଆମ୍ଭମାନଙ୍କର ଅପରାଜୟତାର ଇଷ୍ଟଦେବ। ତେଣୁ ଆଜି ରାତିରେ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ହିଁ ବ୍ୟବସାୟୀଙ୍କର ଇଚ୍ଛା ପ୍ରକଟ କରିବି । ସେ ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସର୍ବଜ୍ଞାନୀ ଓ ଅନ୍ତର୍ଯ୍ୟାମୀ। ତେଣୁ ସେ ହିଁ ଆମ୍ଭମାନଙ୍କୁ ଠିକ୍ ରାସ୍ତା ଦେଖାଇବେ । ଏହା କହି ପ୍ରଧାନ ପୂଜକ ପ୍ରଭୁଙ୍କ ସମ୍ମୁଖରେ ହାତଯୋଡ଼ି ନିଜର ମ୍ରିୟମାଣତାର ଉଲ୍ଲେଖ କରି ପାଦତଳେ ଅଧିଆ ପଡ଼ିଲେ। ରାତ୍ରିର ଶେଷ ପ୍ରହରରେ ତାଙ୍କୁ ସ୍ୱପ୍ନାଦେଶ ହେଲା, ସେ ବ୍ୟବସାୟୀକୁ କୁହ, ସେ ମୋତେ ଏକ ତାମ୍ବୁଳ ପ୍ରଦାନ କରିବ, ଯେଉଁଥିରେ କି ଗଜମୁକ୍ତାକୁ ଜ୍ୱଳନ ଉପରାନ୍ତେ ଯେଉଁ ପାଉଁଶ ବାହାରିବ, ତାହାକୁ ହିଁ ପଥର ଚୂନ ରୂପରେ ବ୍ୟବହାର କରାଯିବ । ମୋର ଆଉ କୌଣସିଥିରେ ଇଚ୍ଛା ନାହିଁ । ପ୍ରଧାନ ପୂଜକ ମହୋଦୟଙ୍କର ନିଦ୍ରାଭଙ୍ଗ ହେଲା । ସେ ନିଜର ସ୍ୱପ୍ନାଦେଶ ବ୍ୟବସାୟୀଙ୍କୁ ତତ୍ ପରଦିନ ଜଣାଇଲେ।

ବ୍ୟବସାୟୀ ଏହା ଶୁଣି ଆଶ୍ଚର୍ଯ୍ୟ, ଚକିତ ଏବଂ ହତପ୍ରଭ ହୋଇଗଲେ। କିଂକର୍ତ୍ତବ୍ୟମୂଢ଼ ଅବସ୍ଥାରେ ବେପାରୀ ଜଣଙ୍କ କ'ଣ କରିବେ କିଛି ବୁଝିପାରିଲେ ନାହିଁ । ଏପରି ହସ୍ତୀ କେଉଁଠୁ ମିଳିବ, ଯାହାର ମଥାମଣିକୁ ନେଇ ଜଳାଇ ସେଥିରୁ ବାହାରିଥିବା ପାଉଁଶରୁ ଚୂନ ପ୍ରସ୍ତୁତ କରି ତାମ୍ବୁଳ ଶ୍ରୀଜଗନ୍ନାଥଙ୍କ ସେବାରେ ଲାଗି କରାଯାଇପାରିବ। ପାନ ପାଇଁ ଯେତିକି ଚୂନର ଆବଶ୍ୟକତା ଅଛି, ସେଥିଲାଗି ଗୋଟିଏ ବା ଦୁଇଟି ମଣି ଯଥେଷ୍ଟ ନୁହେଁ। କାରଣ ଜଳାଇବା ପରେ ତା'ର ଅବଶିଷ୍ଟାଂଶ କେତେ ଅବା ରହିବ। ଏହାଛଡ଼ା ସମସ୍ୟା ହେଉଛି ମଣି ସମସ୍ତ ହସ୍ତୀଙ୍କ ମସ୍ତକରେ ନଥାଏ, କେବଳ କେତୋଟି ସୁଲକ୍ଷଣଯୁକ୍ତ ହସ୍ତୀ ହିଁ ମଣିର ଅଧିକାରୀ ହୋଇଥାନ୍ତି । ଏହିପରି ସୁଲକ୍ଷଣସମ୍ପନ୍ନ ହସ୍ତୀ ଉପଲବ୍ଧ ହେବା ମଧ୍ୟ ଏକ ବିଷମ ସମସ୍ୟା। ବ୍ୟବସାୟୀଙ୍କର ଧନର ଅହମିକା ଧୂଳିସାତ୍ ହୋଇଗଲା । କୋଟି କୋଟି ଟଙ୍କାର ଅର୍ଥ ଥିଲେ ମଧ୍ୟ ମହାପ୍ରଭୁଙ୍କର ପାନଖଣ୍ଡକର ସମକକ୍ଷ ନୁହେଁ ବୋଲି ପ୍ରତିପାଦିତ ହୋଇଗଲା।

ସତରେ ଶ୍ରୀଜଗନ୍ନାଥ ନିରାକାର ପରଂବ୍ରହ୍ମ, ତାଙ୍କୁ କିଏ ବୁଝିଛି ନା ବୁଝିବ । ବ୍ୟବସାୟୀ ଶ୍ରୀଛାମୁଙ୍କ ପାଦତଳେ ପଡ଼ି କ୍ଷମା ପ୍ରାର୍ଥନା କରି ନିଜର ଗର୍ବ ଓ ଅହଂକାର ପାଇଁ ଲଜ୍ଜା ଅନୁଭବ କଲେ। ସେ ବୁଝିପାରିଲେ ଧନର ଅହମିକା ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ପାନଖଣ୍ଡକଠାରୁ ବି ମୂଲ୍ୟହୀନ।

ଶ୍ରୀଜଗନ୍ନାଥ ଦାସିଆ ବାଉରୀ ପଠେଇଥିବା ନଡ଼ିଆକୁ ହସ୍ତ ପ୍ରସାରଣପୂର୍ବକ ଗ୍ରହଣ କରିପାରନ୍ତି। ଶବରୀ ଉଚ୍ଛିଷ୍ଟ ଫଳ ଖାଇପାରନ୍ତି। ସେ ଭକ୍ତ ପାଇଁ ବାଲିର ରଥରେ ବିଜେ ହୋଇପାରନ୍ତି । ଓଡ଼ିଆ ପ୍ରାଣ ତାଙ୍କୁ କେତେବେଳେ କାଳସର୍ପ କହି ଗାଳିଦିଏ ଓ କେତେବେଳେ କାଳିଆ ଧନ କହି କୋଳରେ ବସାଏ । ସେ ଓଡ଼ିଆମାନଙ୍କର ଦେବତା । ଓଡ଼ିଶାର ପରିଚୟ ଶ୍ରୀଜଗନ୍ନାଥଙ୍କୁ ନେଇ । ଶ୍ରୀଜଗନ୍ନାଥଙ୍କର ବାର ବ୍ରତ, ତେର ପର୍ବପର୍ବାଣିରେ ଓଡ଼ିଆ ପୁଅ ନାଚେ, ଗାଏ, କାନ୍ଦେ, ରୁଷେ ଓ ଘୋଷା ହୁଏ । ଶ୍ରୀଜଗନ୍ନାଥ ଯେପରି ନିଜର କେହି ଆପଣାର ଲୋକ । କାହାର ବାଡ଼ିରେ କଦଳୀ କାନ୍ଧିଟିଏ ହେଲେ ସେ ପ୍ରଥମେ

ସମର୍ପଣ କରେ ଶ୍ରୀଜଗନ୍ନାଥଙ୍କୁ । ବିଭାଘର, ଗୃହ ନିର୍ମାଣ ଏବଂ ଯେତେ ଯାହା ଶୁଭକର୍ମ ହୁଏ, ସବୁଥିରେ ଶ୍ରୀଜଗନ୍ନାଥଙ୍କର ପୂଜା ସର୍ବାଗ୍ରେ।

ଉତ୍କଳର ପ୍ରାଣର ଦେବତା କେବଳ ନୁହନ୍ତି, ସେ ହେଉଛନ୍ତି ଜଗତର ନାଥ। ଶ୍ରୀଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦବଳା । ସ୍ୱୟଂ ଅସ୍ତ୍ର ଧାରଣ ନ କରି ମହାଭାରତ ଭଳି ମହାସମରର ମହାନାୟକ ଭଗବାନ ଶ୍ରୀକୃଷ୍ଣ ଏବଂ ତାଙ୍କରି ମୁଖ ନିଃସୃତ ଶ୍ରୀମଦ୍ ଭାଗବତ ଗୀତା ସାରା ପୃଥିବୀରେ ଅକ୍ଷୟ ଦାର୍ଶନିକ ତତ୍ତ୍ୱ ରୂପେ ସର୍ବବିଦିତ। ସେହି ଶ୍ରୀକୃଷ୍ଣ ଶ୍ରୀଜଗନ୍ନାଥଙ୍କର ଅଂଶବିଶେଷ। ଭକ୍ତବତ୍ସଳ, ଦୀନବାନ୍ଧବ, ଦଇତାରି ପ୍ରଭୁ ତାଙ୍କର ପରମ ସେବକ ଗଜପତି ମହାରାଜା ତଥା ଉତ୍କଳର ସମ୍ମାନ ରକ୍ଷା ପାଇଁ ସ୍ୱୟଂ ଭାଇଙ୍କୁ ସାଙ୍ଗରେ ଧରି କଳାଘୋଡ଼ା, ଧଳାଘୋଡ଼ାରେ କାଞ୍ଚି ଅଭିଯାନରେ ଯିବାର ଆଲେଖ୍ୟ ଯେତିକି ରୋମାଞ୍ଚକର, ମାଣିକ ଗଉଡୁଣୀଠାରୁ ଦହି ପିଇ ରତ୍ନ ମୁଦିର ସନ୍ତକ ଛାଡ଼ି ଯିବାର ଲୌକିକ କାହାଣୀ କମ୍ ଚାଞ୍ଚଲ୍ୟକର ନୁହେଁ। କାଞ୍ଚି ବିଜୟର ଅଭୁଲା କାହାଣୀ ଅପେକ୍ଷା ମାଣିକ ନାଁରେ ମାଣିକପାଟଣା ଗାଁର ସୃଷ୍ଟି ତାଙ୍କର ଭକ୍ତିପୂତ ଲୀଳାମୃତର ଅନନ୍ୟ ଉପାଖ୍ୟାନ ହୋଇ ରହିଛି ।

ବର୍ଷକରେ ଥରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପୃଥିବୀ ବିଖ୍ୟାତ । ଆଚାଣ୍ଡାଳ ବ୍ରାହ୍ମଣଠାରୁ ଆରମ୍ଭ କରି ଯବନ, ପାର୍ଶି, ଖ୍ରୀଷ୍ଟିୟାନ୍ ଆଦି ଭକ୍ତଙ୍କୁ ସାକ୍ଷାତ ଦେବାପାଇଁ ଲକ୍ଷ ଲକ୍ଷ ମନୁଷ୍ୟ ଗହଣରେ ସମ୍ପାଦିତ ହୁଏ 'ଘୋଷଯାତ୍ରା' । ପରମ୍ପରା ଅନୁଯାୟୀ ପ୍ରତିବର୍ଷ ଯାତ୍ରା ପୂର୍ବରୁ ରଥ ଉପରେ ଗଜପତି ମହାରାଜ ନିଜେ ସର୍ବସମକ୍ଷରେ ଝାଡୁ ଧରି ଛେରାପହଁରା କରିଥାନ୍ତି । ଏ ପରଂପରା ଏଭଳି ଦୃଷ୍ଟାନ୍ତ ବିଶ୍ୱ ଇତିହାସରେ ବିରଳ । ସେ ପୁଣି ନଟିଆ, ହଟିଆ ଓ କପଟିଆ। ଭକ୍ତଙ୍କ ସହିତ ସେ ବେଳେ ବେଳେ କପଟ କରିଥାନ୍ତି। ମହାପ୍ରଭୁ ପହଣ୍ଡିରେ ଆସୁଥିବା ବେଳେ ଅବା ରଥାରୂଢ଼ ହେବା ପୂର୍ବରୁ ଅଚଳ ମହାମେରୁ ଭଳି ସେବକମାନଙ୍କୁ ନିରାଶ କରନ୍ତି। ନିଜ ସ୍ଥାନରୁ ଟିକେ ବି ହଟନ୍ତିନି। ଯେପରି ସେ ନିଜର ଚାହିଆ ହଲାଇ କହୁଥାନ୍ତି, ନେ ମୋତେ ଭିଡ଼ି ନେ, ମୁଁ ପରା ତୋ ହାତରେ ବନ୍ଧା । ନିଜେ ଗଜପତି ଏବଂ ସେବକମାନେ କୃତାଞ୍ଜଳିପୁଟ ହୋଇ ଆକୁଳ ପ୍ରାର୍ଥନା କରନ୍ତି, ମହାବାହୁ! ଆମ୍ଭେମାନେ କ୍ଳାନ୍ତ, ଆପଣଙ୍କର ଶରଣାପନ୍ନ । ଦୟାକରି ଆପଣ ସଦୟ ହୋଇ ରଥାରୂଢ଼ ହୁଅନ୍ତୁ । ଭକ୍ତର ସମର୍ପଣ ଭାବନାରେ ତରଳିଯାଏ ଅବରୁଦ୍ଧ ଚେତନା। ମହାପ୍ରଭୁ ଚଳଚଞ୍ଚଳ ହୁଅନ୍ତି, ବଡ଼ଦାଣ୍ଡରେ ଗଡ଼ିଚାଲେ ରଥ । ଶଙ୍ଖ, ଘଣ୍ଟା, ମୃଦଙ୍ଗ , ମାଦଳ ଓ ଜୟ ଜୟକାରରେ ପ୍ରକମ୍ପିତ ହୁଏ ପ୍ରଶସ୍ତ ବଡ଼ଦାଣ୍ଡ । ଆଜି କେବଳ ଭାରତବର୍ଷ ନୁହେଁ, ସୁଦୂର ଆମେରିକାରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ବିଶ୍ୱର ଅନେକ ସ୍ଥାନରେ ଆରମ୍ଭ ହେଲାଣି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା । ଧନ୍ୟ ସେ ଦେବତା ! ଧନ୍ୟ ତାଙ୍କର କରୁଣା କୈବଲ୍ୟ । ବସ୍ତୁତଃ, ଶ୍ରୀଜଗନ୍ନାଥଙ୍କ ପାଖରେ ଦେବତା ଯେପରି ମନୁଷ୍ୟ ହୋଇଛି, ତାଙ୍କ ସିଂହଦ୍ୱାରରେ ମନୁଷ୍ୟ ମଧ୍ୟ ସେହିପରି ଦେବତା ହୋଇଛି ।

ମାନବୀୟ ମୈତ୍ରୀ ଭାବନାର ଇଷ୍ଟଦେବ ରୂପେ ଶ୍ରୀଜଗନ୍ନାଥଙ୍କ ପରିକଳ୍ପନା ଅଦ୍ୱିତୀୟ, ବିରାଟ ଓ ଉଦାର। 'ସର୍ବମଙ୍ଗଳେ ଜଗନ୍ନାଥ' ସ୍ମରଣ କରିଦେଲେ ଓଡ଼ିଆ ପ୍ରାଣରେ ଆବେଗ ଓ ଉଚ୍ଛାଟ ଆପେ ଆପେ ସଂଚରିଯାଏ। ବହୁ କାହାଣୀର ନେପଥ୍ୟ ନାୟକ ସେ, ବହୁ ଘଟଣାର କେନ୍ଦ୍ରବିନ୍ଦୁ। ବହୁ ଆଲେଖ୍ୟର ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରେରଣା ବି ସେଇ ଶ୍ରୀଜଗନ୍ନାଥ। ସେ ଅଣାକାର, ଅକ୍ଷୟ, ଅବିନଶ୍ୱର କିନ୍ତୁ ଭକ୍ତଗତ ପ୍ରାଣ ଏକ ଉଦାରବାଦୀ ଚେତନାର ସର୍ଜନା କେନ୍ଦ୍ର ।

ଷୋଡ଼ଶ ଶତାବ୍ଦୀରେ ଉତ୍କଳର ସ୍ୱାଧୀନତା ବିଲୟ ପରେ ସୁଦ୍ଧା ଖୋର୍ଦ୍ଧାର ରାଜନୈତିକ ସ୍ୱାଧୀନତା ସ୍ୱୀକାର କରି ଆକବରଙ୍କ ସେନାପତି ମାନସିଂହ ଘୋଷଣା କରିଥିଲେ–'ଓଡ଼ିଶାର ଭୂମି, ମନୁଷ୍ୟର ଉଚ୍ଚାକାଂକ୍ଷା ଅଥବା ବିଷୟ–ଲାଳସା ଚରିତାର୍ଥ କରିବା ପାଇଁ ଅଭିପ୍ରେତ ନୁହେଁ । ଏହା ଦେବରାଜ୍ୟ-ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଏହା ନିଖିଳ ମାନବର ତୀର୍ଥଭୂମି'– ଷ୍ଟର୍ଲିଙ୍ଗ୍ ।

କେଉଁ ଅସମାଧିତ ଗହନ ରହସ୍ୟର ପ୍ରତିରୂପ ଏଇ ଶ୍ରୀଜଗନ୍ନାଥ ? ସର୍ଜନାର କେଉଁ ଆଦିମ ପ୍ରଭାତରେ ପ୍ରଳୟ–ପୟୋଧି–ଜଳରେ କେଉଁ ଧ୍ୱଂସଲୀଳା ମଧ୍ୟରୁ ମହାଦାରୁ ଖଣ୍ଡେ ଦାରୁ ରୂପରେ ଭାସି ଆସିଥିଲେ ଏହି ଶେଷଦେବ ?

ଏ ପ୍ରଶ୍ନ ଏବେ ବି ଅସମାହିତ ।-ଏବେ ବି ଗବେଷଣାର ଅପେକ୍ଷା ରଖେ। ତେବେ-ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ଅଭିମାନ।

୪୫୫, ଶକ୍ତି ବିହାର
ଭୁବନେଶ୍ୱର–୧୭

# ଜଗନ୍ନାଥ ସଂସ୍କୃତିରେ ଗଜପତିଙ୍କ ଭୂମିକା

ଗିରିଜା ଶଙ୍କର ତରାସିଆ

କର୍ପୂର ଉଡ଼ି ଯାଇଥିଲେ ମଧ୍ୟ ପାଟ କନାଟି ପଡ଼ିରହିଛି । ଓଡ଼ିଶା ଭୂଖଣ୍ଡରୁ ରାଜା, ମହାରାଜା ପଦବୀମାନ ଉଠିଯାଇଛି ସତ, କିନ୍ତୁ ଉତ୍କଳବାସୀଙ୍କ ହୃଦୟରୁ ଗଜପତିଙ୍କ ପ୍ରତି ଥିବା ଶ୍ରଦ୍ଧା ଏବଂ ସମ୍ମାନ କାଣିଚାଏ ମଧ୍ୟ ହଟିନାହିଁ । ଉତ୍କଳୀୟ ପ୍ରାଣର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେଇ ଓଡ଼ିଆ ଜାତିର ଆଚାର ବ୍ୟବହାର, ଚାଲିଚଳନ, ସୁଖଦୁଃଖ ସବୁକିଛି । ଏହି ସଂସ୍କୃତିରେ ଅହମିକାର ସ୍ଥାନ ନାହିଁ । ଏଠି କେବଳ ସମର୍ପଣର ଭାବ । ଉତ୍କଳର ଗଜପତି ଶ୍ରୀଜଗନ୍ନାଥଙ୍କର ଆଦ୍ୟ ସେବକ । ସେ ମହାରାଜାର ଆତ୍ମବଡ଼ିମା ଦେଖାନ୍ତି ନାହିଁ । ରାଉତ ଭାବେ ପରିଚିତ ହୋଇ ଜଗନ୍ନାଥଙ୍କର ପ୍ରତିନିଧିଭାବେ ଆଦେଶ ପାଳନ କରିଥାନ୍ତି ମାତ୍ର ।

ଶ୍ରୀଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା କାଳରୁ ଜଗନ୍ନାଥ ଉତ୍କଳ ସାମ୍ରାଜ୍ୟର ସାର୍ବଭୌମ ଅଧୀଶ୍ୱର ଭାବେ ଜନମାନସରେ ପ୍ରତିଭାତ ହେଉଥିଲେ । ତାଙ୍କର ପ୍ରତିନିଧି ତଥା ମୁଖ୍ୟ ସେବକ ହିସାବରେ ପୁରୀର ଗଜପତି ଭାରପ୍ରାପ୍ତ ଶାସକଭାବେ ଦୀର୍ଘ ଦିନ ଧରି ଦାୟିତ୍ୱ ନିଭାଇ ଆସୁଥିଲେ । ଗଜପତି ଶ୍ରୀମନ୍ଦିରର ଆଦ୍ୟସେବକ ଭାବେ ସ୍ୱୀକୃତି ଲାଭ କରିବା ସହିତ ଏହି ସେବା ପୁରୀ ରାଜବଂଶର ବଂଶାନୁକ୍ରମିକ ସେବାର ମର୍ଯ୍ୟାଦା ଲାଭ କରି ଏଯାବତ୍ ପ୍ରଚଳିତ ହୋଇ ଆସୁଅଛି । ସ୍ୱାଧୀନତା ଲାଭ କରିବା ପରେ ୧୯୫୨ ମସିହାରେ ପ୍ରସ୍ତୁତ ଶ୍ରୀମନ୍ଦିରର ସ୍ୱତ୍ୱ ଲିପିରେ ଶ୍ରୀମନ୍ଦିର ସେବା ପୂଜା ସହିତ ସଂପୃକ୍ତ ସେବକମାନଙ୍କର ତାଲିକା ଓ ସେବା ବିବରଣୀ ଲିପିବଦ୍ଧ ରହିଛି । ଏହି ତାଲିକାରେ ଗଜପତି ମହାରାଜାଙ୍କୁ ଆଦ୍ୟ ସେବକର ମାନ୍ୟତା ଦିଆଯାଇଥିବା ବେଳେ ତାଙ୍କ ଛଡ଼ା ଆଉ ୧୧୯ ପ୍ରକାର ସେବା ଓ ସେବକ ଶ୍ରେଣୀର ବିବରଣୀ ଦର୍ଶାଯାଇଛି ।

କେତେକ ଐତିହାସିକଙ୍କ ମତରେ ଗଙ୍ଗବଂଶର ରାଜା ଅନନ୍ତ ବର୍ମା ଚୋଡ଼ଗଙ୍ଗଦେବ ଶ୍ରୀମନ୍ଦିରକୁ ନିର୍ମାଣ କରିଥିବା କୁହାଯାଉଥିବା ବେଳେ ଆଉ କେହି କେହି ଏହା ଅନଙ୍ଗଭୀମଦେବ ନିର୍ମାଣ କରିଥିଲେ ବୋଲି ମତ ପ୍ରକାଶ କରିଥାନ୍ତି । ଅନନ୍ତ ବର୍ମା ଚୋଡ଼ଗଙ୍ଗଙ୍କ ସମୟରୁ ଅର୍ଥାତ୍ ୧୦୭୮ ଖ୍ରୀଷ୍ଟାବ୍ଦରୁ ଗଜପତି ପରମ୍ପରା ପ୍ରଚଳିତ ହୋଇ ଆସୁଥିବା କଥା ଐତିହାସିକମାନେ ଦର୍ଶାଇଥାନ୍ତି । ଇତିହାସ ବକ୍ଷରେ ଉତ୍କଳ ଭୂଖଣ୍ଡରେ ବିଭିନ୍ନ ନରପତିମାନଙ୍କର ଉତ୍ଥାନ ଓ ବିଲୟ ହୋଇଥିଲେ ମଧ୍ୟ ଗଜପତି ପରମ୍ପରା ଅକ୍ଷୁଣ୍ଣ ହୋଇ ରହିଛି । ଗଙ୍ଗବଂଶର ଶେଷ ରାଜା ଚତୁର୍ଥ ଭାନୁଦେବଙ୍କ ପରେ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ ଶାସନଭାର ଗ୍ରହଣ କରିଥିଲେ । ତାଙ୍କପରେ ପୁରୁଷୋତ୍ତମ ଦେବ ୧୪୬୭ ମସିହାରେ ସିଂହାସନ ଆରୋହଣ କରିଥିବା ବେଳେ ତାଙ୍କ ପରେ ପ୍ରତାପରୁଦ୍ରଦେବ ୧୪୯୭ ମସିହାରେ ରାଜସିଂହାସନ ଅଳଙ୍କୃତ କରିଥିଲେ । ପ୍ରତାପରୁଦ୍ରଦେବଙ୍କ ପରେ ତାଙ୍କ ପୁତ୍ର କାଳୁଆଦେବ ଓ କଖାରୁଆଦେବ ସ୍ୱଳ୍ପକାଳ ନିମନ୍ତେ ଶାସନ ଭାର ଗ୍ରହଣ କରିଥିଲେ । ଏହି ଦୁଇ ରାଜପୁତ୍ରଙ୍କୁ ହତ୍ୟାକରି ଗୋବିନ୍ଦ ବିଦ୍ୟାଧର ସିଂହାସନ ଦଖଲ କରି ୧୫୪୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ ଚଳାଇଥିଲେ । ତାଙ୍କ ପରେ ତାଙ୍କ ପୁଅ ଚକ୍ରପ୍ରତାପ ଆଠବର୍ଷ ଶାସନ ଦାୟିତ୍ୱରେ ରହିଥିଲେ ଏବଂ ତାଙ୍କ ପରେ ସେନାପତି ମୁକୁନ୍ଦ ହରିଚନ୍ଦନ ୧୫୫୯ ମସିହାରେ ସିଂହାସନ ଆରୋହଣ କରିଥିଲେ । ମୁକୁନ୍ଦଦେବ ନାମରେ ପ୍ରସିଦ୍ଧିଲାଭ କରିଥିବା ଏହି ରାଜା ଓଡ଼ିଶାକୁ ଆଫଗାନୀ ଶକ୍ତି ହାତକୁ ୧୫୬୮ ମସିହାରେ ଯିବା ପର୍ଯ୍ୟନ୍ତ ଶାସକ ଭାବେ ଦାୟିତ୍ୱ ନିଭାଇ ଆସୁଥିଲେ । ଓଡ଼ିଶାର ରାଜଧାନୀ କଟକରୁ ଖୋର୍ଦ୍ଧା ଗଡ଼କୁ ୧୫୯୨ରେ ସ୍ଥାନାନ୍ତରିତ ହେଲା ।

ଭୋଇବଂଶର ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ପୁଅ ଦନେଇ ବିଦ୍ୟାଧର ନିଜକୁ ପ୍ରଥମ ରାମଚନ୍ଦ୍ରଦେବ ଭାବରେ ପରିଚିତ କରାଇ ଖୋର୍ଦ୍ଧା ରାଜଗାଦିରେ ବସିଥିଲେ । ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଦଖଲ କରିବା ପରେ ଓଡ଼ିଶାବାସୀଙ୍କ ଚେତନ ଓ ଅବଚେତନ ମନ ଉପରେ ଜଗନ୍ନାଥଙ୍କର ସର୍ବମୟ ପ୍ରଭାବ ଏବଂ ଶ୍ରୀମନ୍ଦିର ପ୍ରାଧାନ୍ୟକୁ ଅନୁଭବ କରି ଏହାର ପାରମ୍ପରିକ ସେବାପୂଜା ଓ ନୀତି ନିୟମରେ ଇଂରେଜ ପ୍ରଶାସନ ପକ୍ଷରୁ କୌଣସି ହସ୍ତକ୍ଷେପ ନ କରିବା ପାଇଁ ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ ଆଦେଶ ପ୍ରଦାନ କରିଥିଲେ । କିନ୍ତୁ ୧୮୭୪ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ତତ୍‌କାଳୀନ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ରିଚାର୍ଡ ଟେମ୍ପଲ କଟକ ଦରବାରକୁ ଆସିଥିବା ସମୟରେ ପୂର୍ବ ପ୍ରଚଳିତ ପ୍ରଥା ଏବଂ ପରମ୍ପରାକୁ ପରାହତ କରି ଗଜପତିଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦାନ କରାଯାଇ ନଥିଲା । ଏହି ବ୍ୟବହାରରେ ମର୍ମାହତ ହୋଇ ଗଜପତି ଦିବ୍ୟସିଂହଦେବ ଦରବାର ପରିତ୍ୟାଗ କରିଥିଲେ । ଗଜପତିଙ୍କର ଏହି ଆଚରଣ ବ୍ରିଟିଶ ରାଜଶକ୍ତି ପ୍ରତି ଏକ ଆହ୍ୱାନ ବୋଲି ମନେ କରି ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ସାର୍ ରିଚାର୍ଡ ପ୍ରତିଶୋଧ ପରାୟଣ ହୋଇ ଗଜପତିଙ୍କୁ ପାନେ ଚଖାଇବା ପାଇଁ ମସୁଧା କଲେ ଏବଂ ଏହାର ପରିଣାମ ସ୍ୱରୂପ ୧୮୭୮ ମସିହାରେ ଏକ ମିଥ୍ୟା ହତ୍ୟା ମୋକଦ୍ଦମାରେ ଗଜପତିଙ୍କୁ ଅଭିଯୁକ୍ତ କରାଇ ତାଙ୍କୁ ଆଣ୍ଡାମାନକୁ ଦ୍ୱୀପାନ୍ତର କରାଗଲା । ଏଣେ ଇଂରେଜମାନଙ୍କର ଚକ୍ରାନ୍ତକୁ ହୃଦୟଙ୍ଗମ କରି ଦିବ୍ୟସିଂହ ଦେବଙ୍କ ମାତା ସୂର୍ଯ୍ୟମଣି ପାଟ ମହାଦେଇ ଦିବ୍ୟସିଂହଦେବଙ୍କ ପାଞ୍ଚବର୍ଷର ନାବାଳକ ପୁତ୍ରକୁ ଗଜପତି ମୁକୁନ୍ଦ ଦେବ ନାମ ଅର୍ପଣ କରି ଅଭିଷିକ୍ତ କଲେ ଏବଂ ସେ ଗଜପତିଙ୍କ ଅଭିଭାବିକା ଭାବେ ଦାୟିତ୍ୱ ନିଭାଇଲେ । କିନ୍ତୁ ଇଂରେଜମାନେ ଏଥିରେ ବାଧା ସୃଷ୍ଟି କରିବାକୁ ଲାଗିଲେ । ଏପରିକି ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ରାଣୀଙ୍କ ହାତରୁ କାଢ଼ି ନେଇଥିଲେ ଏବଂ ପୂର୍ବ ଚୁକ୍ତି ଅନୁଯାୟୀ ରାଜକୋଷରୁ ଗଜପତିଙ୍କୁ ବାର୍ଷିକ ଦିଆଯାଉଥିବା ଟ.୨୧୩୩୩ ୧/୪ ପାହୁଲାକୁ ମଧ୍ୟ ବନ୍ଦ କରିଦିଆଗଲା ।

ଉତ୍କଳୀୟ ସଂସ୍କୃତି ଓ ମହାନ୍ ପରମ୍ପରାର ଏହି ମହାସଙ୍କଟ କାଳରେ ଉତ୍କଳଗୌରବ ବାରିଷ୍ଟର ମଧୁସୂଦନ ଦାସ ଦେବଦୂତ ପରି ଆବିର୍ଭୂତ ହେଲେ । ତାଙ୍କର ବଳିଷ୍ଠ ଉଦ୍ୟମ ଯୋଗୁଁ କଲିକତା ଉଚ୍ଚ ନ୍ୟାୟାଳୟରେ ମହାରାଣୀଙ୍କର ବିଜୟ ଘଟିଲା । ପୁରୀ ବଡ଼ଦେଉଳର ପରିଚାଳନା ଦାୟିତ୍ୱ ପୂର୍ବଭଳି ଗଜପତିଙ୍କ ହାତରେ ରହିଲା ଏବଂ ମୁକୁନ୍ଦଦେବ ଗଜପତି ଭାବେ ଅବସ୍ଥାପିତ ହେଲେ ।

ଗଜପତି ପରମ୍ପରା ନାନା କିମ୍ବଦନ୍ତୀ ଏବଂ ଐତିହାସିକ ଘଟଣାବଳୀ ସହିତ ଜଡ଼ିତ । ଜଗନ୍ନାଥଙ୍କ ଆଦ୍ୟ ସେବକ ପୁରୁଷୋତ୍ତମ ଦେବଙ୍କ ମାନରକ୍ଷା ପାଇଁ ଜଗନ୍ନାଥ, ବଳଭଦ୍ର ସ୍ୱୟଂ କାଞ୍ଚି ଅଭିଯାନ କରିବା କଥା କିମ୍ବଦନ୍ତୀରୁ ଶୁଣିବାକୁ ମିଳିଥିବା ବେଳେ ନାଏବ ତକି ଖାଁର ଭଉଣୀ ରେଜିଆଙ୍କୁ ବିବାହ କରି ଗଜପତି ରାମଚନ୍ଦ୍ରଦେବ ବିଧର୍ମୀ ହୋଇଥିଲେ ମଧ୍ୟ ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଟଳ ଭକ୍ତିରୁ ସାମାନ୍ୟତମ ଊଣା ହୋଇ ନଥିଲା । ବିଧର୍ମୀ ଗଜପତି ରାମଚନ୍ଦ୍ରଦେବଙ୍କୁ ଶ୍ରୀମନ୍ଦିର ପ୍ରବେଶ ବାରଣ କରାଯାଇ ଥିବାରୁ ସେ ବାଇଶି ପାହାଚ ତଳେ ଛିଡ଼ା ହୋଇ ଶ୍ରୀଜଗନ୍ନାଥଙ୍କୁ ଆରାଧନା କଲାବେଳେ ଭକ୍ତର ଭାବ ଡ଼ୋରିରେ ବନ୍ଧା ହୋଇ ପଡ଼ିଥିବା ମନୁଆ ଠାକୁର ରତ୍ନ ସିଂହାସନରୁ ଓହ୍ଲାଇ ଆସି ଭକ୍ତ ରାମଚନ୍ଦ୍ରଦେବଙ୍କୁ ବାଇଶି ପାହାଚ ତଳେ ଦର୍ଶନ ଦେଉଥିଲେ ବୋଲି ଶୁଣିବାକୁ ମିଳେ । ପ୍ରଭୁ ଜଗନ୍ନାଥ କୁଆଡ଼େ ବଡ଼ ପଣ୍ଡାଙ୍କୁ ସ୍ୱପ୍ନାଦେଶ ଦେଇଥିଲେ କି, 'ଗଜପତି ମୋର ପ୍ରଥମ ସେବକ ଏବଂ ତାର ଦର୍ଶନ ନିମନ୍ତେ ସିଂହଦ୍ୱାର ସମ୍ମୁଖରେ ମୋର ଗୋଟିଏ ବିଗ୍ରହ ପ୍ରତିଷ୍ଠା କର ଏବଂ ମୁଁ ସେଠାରେ ପତିତପାବନ ନାମରେ ପୂଜିତ ହେବି ।' ପ୍ରଭୁଙ୍କର ଏହି ସ୍ୱପ୍ନାଦେଶକୁ ଅକ୍ଷରରେ ଅକ୍ଷରେ ପାଳନ କରାଯାଇ ସିଂହଦ୍ୱାର ଗୁମୁଟରେ ମହାପ୍ରଭୁଙ୍କର ଏକ ବିଗ୍ରହ ପ୍ରତିଷ୍ଠା କରାଗଲା । ଏହି ଘଟଣା ୧୭୩୩ ରେ ଘଟିଥିଲା ବୋଲି ବିଶ୍ୱାସ କରାଯାଏ ।

ଶ୍ରୀଜଗନ୍ନାଥଙ୍କର ପ୍ରଥମ ସେବକ ଭାବେ ଶ୍ରୀମନ୍ଦିରରେ ପ୍ରଚଳିତ କେତେକ ରୀତିନୀତି ମଧ୍ୟରେ ଗଜପତିଙ୍କ ସେବା ଅନୁଭୂତ ହୋଇଥାଏ । ଜଗନ୍ନାଥଙ୍କର ବିଶ୍ୱ ପ୍ରସିଦ୍ଧ (ରଥଯାତ୍ରା) ଶ୍ରୀଗୁଣ୍ଡିଚା ଏବଂ ବାହୁଡ଼ା ଯାତ୍ରା ସମୟରେ ଗଜପତି ତିନି ରଥରେ ସମାର୍ଜନ ବା ଛେରାପହଁରା କରିଥାନ୍ତି । ଏତଦ୍‌ବ୍ୟତୀତ ଚନ୍ଦନ ଯାତ୍ରା ସମୟରେ ଚାପ ଉପରେ ପ୍ରଥମ ଦିନ ଓ ଶେଷ ଦିନ, ସ୍ନାନପୂର୍ଣ୍ଣିମୀ ଦିନ ସ୍ନାନବେଦୀ ଉପରେ ଦୋଳପୂର୍ଣ୍ଣମୀ ଦିନ ଦୋଳବେଦୀ ଉପରେ ଗଜପତି ଛେରାପହଁରା କରିପାରିବେ । ଗଜପତିଙ୍କ ଅନୁପସ୍ଥିତିରେ ମୁଦିରସ୍ତ ଏ ସେବା ତୁଲାଇ ପାରିବେ ।

ଗଜପତି ରାମଚନ୍ଦ୍ର ଦେବଙ୍କଠାରୁ ଏଯାବତ୍ ଗଜପତି ଭାବେ ଅଧିଷ୍ଠିତ ଥିବା ଶ୍ରୀ ଦିବ୍ୟସିଂହ ଦେବଙ୍କ ପର୍ଯ୍ୟନ୍ତ ବିଗତ ଚାରିଶହ ବର୍ଷ ମଧ୍ୟରେ ପ୍ରାୟ ୧୯ ଜଣ ଗଜପତି ଆସନରେ ଆସୀନ ହୋଇଛନ୍ତି । ଏହି ଗଜପତିମାନେ ହେଲେ ୧. ଗଜପତି ରାମଚନ୍ଦ୍ରଦେବ, ୨. ଗଜପତି ପୁରୁଷୋତ୍ତମ ଦେବ, ୩. ଗଜପତି ନରସିଂହ ଦେବ, ୪. ଗଜପତି ବଳଭଦ୍ର ଦେବ, ୫. ଗଜପତି

ମୁକୁନ୍ଦ ଦେବ, ୬. ଗଜପତି ଦିବ୍ୟସିଂହ ଦେବ (୧ମ), ୭. ଗଜପତି ହରେକୃଷ୍ଣ ଦେବ, ୮.ଗଜପତି ଗୋପୀନାଥ ଦେବ, ୯. ଗଜପତି ରାମଚନ୍ଦ୍ର ଦେବ (୨), ୧୦. ଗଜପତି ବୀର କିଶୋର ଦେବ (୧ମ), ୧୧. ଗଜପତି ଦିବ୍ୟସିଂହ ଦେବ (୨ୟ), ୧୨. ଗଜପତି ମୁକୁନ୍ଦଦେବ (୨ୟ), ୧୩. ଗଜପତି ରାମଚନ୍ଦ୍ର ଦେବ (୩ୟ), ୧୪. ଗଜପତି ବୀରକିଶୋର ଦେବ, ୧୫. ଗଜପତି ଦିବ୍ୟସିଂହଦେବ (୩ୟ), ୧୬. ଗଜପତି ମୁକୁନ୍ଦଦେବ (୩ୟ), ୧୭. ଗଜପତି ରାମଚନ୍ଦ୍ର ଦେବ(୪ର୍ଥ), ୧୮. ଗଜପତି ବୀରକିଶୋର ଦେବ (୩ୟ) ଏବଂ ୧୯.ଗଜପତି ଦିବ୍ୟସିଂହଦେବ ।

ବର୍ତ୍ତମାନ ଅଧିଷ୍ଠିତ ଗଜପତି ଶ୍ରୀ ଦିବ୍ୟସିଂହ ଦେବଙ୍କର ପିତା ବୀରକିଶୋର ଦେବ ୩ୟ ତା ୧୫.୧୧.୧୯୫୬ ରୁ ୧୯୭୦ ମସିହା ପର୍ଯ୍ୟନ୍ତ ଗଜପତି ଭାବେ ଅଧିଷ୍ଠିତ ହୋଇଥିଲେ । ବୀରକିଶୋର ଦେବ ୩ୟଙ୍କ ଦେହାବସାନ ପରେ ତାଙ୍କର ପୁତ୍ର ଶ୍ରୀ ଦିବ୍ୟସିଂହଦେବ ମାତ୍ର ଷୋଳ ବର୍ଷ ବୟସରେ ଗଜପତି ଆସନ ଅଳଙ୍କୃତ କରିଥିଲେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସେଣ୍ଟ ଷ୍ଟିଫେନ୍ସ କଲେଜରେ ଫାଷ୍ଟ ଇୟର ବି.ଏ ଅଧ୍ୟୟନ କରୁଥିବା ବେଳେ ୧୯୭୦ ମସିହାରେ ସେ ଗାଦିସୀନ ହୋଇଥିଲେ । ଗଜପତି ଦିବ୍ୟସିଂହ ଦେବ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଆଇନ୍‌ରେ ଡିଗ୍ରୀ ହାସଲ କରିବା ପରେ ଉଚ୍ଚଶିକ୍ଷା ନିମନ୍ତେ ଆମେରିକା ଯାତ୍ରା କରିଥିଲେ ଏବଂ ଆମେରିକା ଚିକାଗୋ ସ୍ଥିତ ଉତ୍ତର ପଶ୍ଚିମ ବିଶ୍ୱବିଦ୍ୟାଳୟରୁ ଆଇନରେ ସ୍ନାତକ ଡିଗ୍ରୀ ହାସଲ କରିଥିଲେ । ଶ୍ରୀଦିବ୍ୟସିଂହଦେବ ଗଜପତି ହେବା ଭିତରେ ଦୁଇଥର ନବକଳେବର ଉତ୍ସବ ଅନୁଷ୍ଠିତ ହୋଇଛି ।

ଅତ୍ୟନ୍ତ ଭଦ୍ର, ନମ୍ର, ଶିଷ୍ଟ, ସଂସ୍କୃତି ସଂପନ୍ନ ଗଜପତି ଶ୍ରୀଦିବ୍ୟସିଂହ ଦେବ ଓଡ଼ିଆ ପ୍ରାଣର ଆବେଗମୟ ଠାକୁର ଜଗନ୍ନାଥଙ୍କର ଆଦ୍ୟ ସେବକ ଭାବେ ସବୁରି ଶ୍ରଦ୍ଧା ଏବଂ ସମ୍ମାନର ପାତ୍ର ହୋଇପାରିଛନ୍ତି । ଜଗନ୍ନାଥ ସଂସ୍କୃତିରେ ଗଜପତି ଏକ ଗୁରୁତ୍ୱପୂର୍ଣ୍ଣ ଅବିଚ୍ଛେଦ୍ୟ ଅଙ୍ଗ ।

ଆଡ଼ଭୋକେଟ
ସା/ପୋ: ଖଣ୍ଡପଡ଼ା, ଜି.ନୟାଗଡ଼
ପିନ୍–୭୫୨୦୭୭

# ମୁକ୍ତି

ଡକ୍ଟର ଅମୂଲ୍ୟ ମହାପାତ୍ର



ଶାନ୍ତିର ପଥ ଦେଖାଅ କାଳିଆ
ଧରମ ପଥ ଦେଖାଅ
କରୁଣାର ଧାରା ବିଞ୍ଚି ଦିଅ ପ୍ରଭୁ
ଭକ୍ତିର ନୈବେଦ୍ୟ ନିଅ ।

ସତ୍ୟର ସନ୍ଧାନେ ରହୁ ମୋର ମନ
ପ୍ରେମର ପରଶ ପାଇ
ତୁମରି ସେବାରେ ରହିଥାଉ ମତି
ତୁମରି ଆଶିଷ ନେଇ ।

ଏତିକି ମାଗୁଣି ଶ୍ରୀପଦେ ତୁମରି
କୃପାର ବାରିଧି ଦିଅ ।

ତୁମ ନାମ ସଦା ତୁଣ୍ଡେ ରହିଥାଉ
କାଳିମା ବିନାଶ ହେଉ ।

ଧ୍ୟାନ ଉପାସନା ସଦା ଲାଗିଥାଉ
ତ୍ରିତାପର ନାଶ ହେଉ
ଏହି ନିବେଦନ ଶ୍ରୀପଦେ ତୁମରି
ଅଧମର ମୁକ୍ତି ହେଉ ।

ଶରଣାଗତ
ବିବେକାନନ୍ଦ ମାର୍ଗ
କୋରାପୁଟ

# ଶ୍ରୀଜଗନ୍ନାଥଙ୍କ ଲୀଳାମୃତ ଓ ତାମରା ବିଶୋଇ ସେବା

ଡକ୍ଟର ଅଶୋକ କୁମାର ମହାନ୍ତି

ପ୍ରଭୁଙ୍କର ଲୀଳା ଦୁଇ ପ୍ରକାର । ବୈକୁଣ୍ଠରେ ନିତିପ୍ରତି ଚାଲିଛି ଅବ୍ୟକ୍ତ ଲୀଳା । ଅପ୍ରକଟ ଲୀଳା । ମର୍ତ୍ତ୍ୟରେ ବ୍ୟକ୍ତ ଲୀଳା। ପ୍ରକଟ ଲୀଳା। ଅପ୍ରାକୃତ ପ୍ରେମରୁ ପ୍ରାକୃତ ପ୍ରେମକୁ ଅବତରଣ କରନ୍ତି ଭକ୍ତମାନଙ୍କର ପ୍ରେମ ରସ ଆସ୍ୱାଦନ ପାଇଁ । ଦୁଷ୍ଟମାନଙ୍କୁ ସଂହାର କରି ଶିଷ୍ଟମାନଙ୍କୁ ପାଳିବା ପାଇଁ ।



ମର୍ତ୍ତ୍ୟ ବୈକୁଣ୍ଠ ଶ୍ରୀକ୍ଷେତ୍ର, ପୁରୀ । ୩୩ କୋଟି ଦେବାଦେବୀ ନେଇ ପ୍ରଭୁଙ୍କର ଏହି ମର୍ତ୍ତ୍ୟ ଲୀଳା ଅବତାର ନୁହେଁ । ଚାରିଧାମ ମଧ୍ୟରୁ ପ୍ରଭୁଙ୍କର ଭୋଜନ କ୍ଷେତ୍ର ଏହି ଲୀଳା କ୍ଷେତ୍ରର ଅବସ୍ଥିତି ଓ ଶ୍ରୀଜଗନ୍ନାଥ ବା ପୁରୁଷୋତ୍ତମ ତତ୍ତ୍ୱ ଓ ଦର୍ଶନ ସବୁ ଯୁଗରେ ଥିଲା । ଏଠାରେ ମାନବତାବାଦର ପ୍ରଚାର ପାଇଁ ପ୍ରଭୁଙ୍କର ରୀତିନୀତିରେ ମାନବୀୟ ଗୁଣାବଳୀର ପରିପ୍ରକାଶ ଘଟିଛି।

ସକାଳ ହେଲେ (ଅବକାଶ) ଦାନ୍ତ ଘଷନ୍ତି । (ମଇଲମ) ତୈଳ ମର୍ଦ୍ଦନ ହୁଅନ୍ତି । ଗାଧାନ୍ତି । ତଡ଼ପ (ତଉଲିଆ) ଲାଗି ହୁଅନ୍ତି। ଯେଉଁ ଦିନରେ ଯେଉଁ ରଙ୍ଗର ଲୁଗା ପିନ୍ଧନ୍ତି। ବେଶ ହୁଅନ୍ତି, ଖାଆନ୍ତି, ଶୁଅନ୍ତି, ଗରମ ହେଲେ ପଣା ପିଅନ୍ତି। ନୌବିହାର କରନ୍ତି । ଚନ୍ଦନ ଲାଗି ହୁଅନ୍ତି । ଆଲଟ, ଚାମର ଲାଗି ହୁଅନ୍ତି । ଥଣ୍ଡା ହେଲେ ଘୋଡ଼ ଲାଗି ହୁଅନ୍ତି । ମୁଣ୍ଡରେ ପଗଡ଼ି ବାନ୍ଧନ୍ତି । ନାଚ ଗୀତ ନହେଲେ ନିଦ ଆସେନି । ଶେଜ ସୁପାତି ପଡ଼େ । ଫୁଲରେ ବଡ଼ ସିଂହାର ହୁଅନ୍ତି । ନିଦ ପାଇଁ ପଇଡ଼ ପିଅନ୍ତି । କର୍ପୂର ଆଳତି ନିଅନ୍ତି । ବିଡ଼ିଆ ପାନ ଖାଆନ୍ତି । ସୂତା ଓ ପଟ୍ଟବସ୍ତ୍ର ପିନ୍ଧନ୍ତି । କାଠ ଜଳା ମାଟିହାଣ୍ଡି ରୋଷେଇ ଖାଆନ୍ତି । ଚେର ମୂଳି ଔଷଧ ବା ଆୟୁର୍ବେଦିକ ଓଷୁଅ, ପଥି ପାଞ୍ଚଣ ସବୁ ଖାଆନ୍ତି । ଏକାନ୍ତରେ ମା' ଲକ୍ଷ୍ମୀଙ୍କ ସହ ମିଳିତ ହୁଅନ୍ତି । ଏମିତି କେତେ କ'ଣ !

ସମୁଦ୍ରରେ ଲହଡ଼ିର ବିପରୀତ ଦିଗରେ ଭାସି ଆସିଥିବା ମହାଦାରୁରୁ ଶରୀର ନିର୍ମାଣ କରାଯାଇଥିବାରୁ ତାଙ୍କ ଜନ୍ମ ଦିନରେ ବୈଶାଖ ଶୁକ୍ଳ ଅଷ୍ଟମୀ ତିଥିରେ ଜଳ ଅଭିଷେକ ହୁଅନ୍ତି । ମତାନ୍ତରେ ଜ୍ୟେଷ୍ଠ ପୂର୍ଣ୍ଣିମା ତାଙ୍କ ଜନ୍ମ ଦିନରେ ସ୍ନାନ ବେଦୀରେ ଅତ୍ୟଧିକ ଗାଧୋଇ ଜ୍ୱରଗ୍ରସ୍ତ ହୁଅନ୍ତି ।

ଭାଇ ଭଉଣୀଙ୍କୁ ଧରି ଜନକପୁରୀ ଗୁଣ୍ଡିଚା ଘରକୁ ବର୍ଷକେ ଥରେ ଯାଆନ୍ତି । ଫେରିଲା ବେଳେ ବାହୁଡ଼ା ଯାତ୍ରାରେ ମାଉସୀ (ଅର୍ଦ୍ଧାସନୀ) ଘରେ ପୋଡ଼ ପିଠା ଖାଆନ୍ତି ।

ଲକ୍ଷ୍ମୀ ଠାକୁରାଣୀଙ୍କୁ ନେଇ ଯାଇ ନଥିବାରୁ ପରସ୍ପର କଳି ଲାଗିଥାଏ । ତେଣୁ ଆଶ୍ୱିନ ମାସରେ 'ଗୁପ୍ତ ଗୁଣ୍ଡିଚାରେ' ଲକ୍ଷ୍ମୀଙ୍କୁ ଦୋଳମଣ୍ଡପ ସାହିସ୍ଥିତ ନାରାୟଣୀ ମନ୍ଦିରକୁ ନେଇ ବୁଲି ଯାଆନ୍ତି ।

କୁମାର ପୂର୍ଣ୍ଣମୀରେ ଶକଟା ଖେଳରେ ହାରି ଲକ୍ଷ୍ମୀଙ୍କ ପାଖରେ ବନ୍ଧା ପଡ଼ନ୍ତି । ହାର ମାନନ୍ତି ।

ଅମାବାସ୍ୟା ତିଥିରେ ଶ୍ୱଶୁରାଳୟ ସାଗର ବିଜେ କରନ୍ତି । ସମୁଦ୍ର କୂଳରେ ପହଞ୍ଚିବା ପରେ ଶ୍ୱଶୁର ସାଗର ଆସି ଜ୍ୱାଇଁ

ନାରାୟଣଙ୍କ ପାଦ ଧୋଇ ଦିଅନ୍ତି । ଶ୍ୱଶୁର ଘରେ ବନ୍ଦାପନା ସାରି ଖାଇ ପିଇ ବଡ଼ ଦେଉଳକୁ ଫେରନ୍ତି ।

ଦେବ ଦୀପାବଳିରେ ପୂର୍ବ ପୁରୁଷଙ୍କୁ ଶ୍ରାଦ୍ଧ ଦିଅନ୍ତି । ନିଜେ ନବକଳେବର ହୋଇ ଆତ୍ମାର ମୃତ୍ୟୁ ନାହିଁ, ଶରୀରର ମୃତ୍ୟୁ ଅଛି ବୋଲି ବାର୍ତ୍ତା ପ୍ରଚାର କରନ୍ତି ।

ସୁତରାଂ ଜନ୍ମ ଦିନ ପାଳନ କରିବା, ଶ୍ରାଦ୍ଧ ଦେବା, ନବକଳେବର ହେବା, ଜନକପୁରୀ ଭାଇ ଭଉଣୀଙ୍କ ସାଙ୍ଗରେ ଯିବା, ସ୍ତ୍ରୀକୁ ନେଇ ବୁଲି ଯିବା, ଶ୍ୱଶୁର ଘର ଯିବା, ମାଉସୀ ଘରେ ପୋଡ଼ ପିଠା ଖାଇବା ଏସବୁ ମାନବୀୟ ଲୀଳା । ମାଉସୀଙ୍କ ମୁହଁ ଠିକ୍ ପୁତୁରା ଝିଆରୀଙ୍କ ମୁହଁ ଭଳି । ତେଣୁ କୁହାଯାଇଛି ମାଉସୀ ମା'ର ପ୍ରତିରୂପ ।

ଏବେ ତାଙ୍କ 'ଅଜାଘର' ପ୍ରସଙ୍ଗକୁ ଯିବା । ଅଜା ସିଦ୍ଧ ବଳରାମ । ଅଜାଙ୍କ ଘର ପ୍ରକୃତିର ନୈସର୍ଗିକ ଶୋଭାରେ ବିମଣ୍ଡିତ ସତ୍ୟବାଦୀର ବକୁଳବନ । ଆମ୍ବ, ପଣସ, ନାରିକେଳ, ତମାଳ, କେତକୀ, ବଉଳ, ଛୁରିଅନା ଆଦି ବୃକ୍ଷରାଜିରେ ଶୋଭିତ । ଫୁଲ ଫଳର ପ୍ରାଚୁର୍ଯ୍ୟ ମଧରେ ମୂଳ ଅଳସା, ଫୁଲ ଅଳସା ମଉଜାରେ ଏହି ଉପବନ । ଅବସର ସମୟରେ ଅଜାଙ୍କ ଉପବନରେ ଅଳସ ଭାଙ୍ଗନ୍ତି ଶ୍ରୀଜଗନ୍ନାଥ । ଅଜା ଠାକୁରଙ୍କ ମୁଖ ମଣ୍ଡଳ ଶ୍ରୀଜଗନ୍ନାଥଙ୍କ ମୁହଁ ପରି ।

ଦିନେ ଭାଇ ବଳଭଦ୍ରଙ୍କ ସହ ଶ୍ରୀଜଗନ୍ନାଥ ଅଜାଙ୍କ ବଗିଚାରେ ପଶି ପାଚିଲା ପଣସ ଖାଇ ଧରା ପଡ଼ିଗଲେ । ଅଜା ସେମାନଙ୍କୁ ଶାସ୍ତି ଦେବାକୁ ନିକଟସ୍ଥ ବଉଳ ଗଛରେ ବାନ୍ଧିବାକୁ ଯୋଜନା କଲାବେଳେ ଅଜାଙ୍କ ମୁଣ୍ଡରେ ଅଠା ବୋଳି ଦୁଇ ଭାଇ ପୁରୀ ପଳାଇ ଗଲେ । ଆଗକୁ ଥିଲା ରଥ ଯାତ୍ରା । ଅଜା ନାତିମାନଙ୍କୁ ଶାସ୍ତି ଦେବା ଓ ରଥଯାତ୍ରା କାଳୀନ ପହଣ୍ଡି ସମୟରେ ଶ୍ରୀଅଙ୍ଗକୁ ସୁରକ୍ଷିତ ରଖିବା ପାଇଁ ବଉଳ ଗଛର କାଠ ଗଣ୍ଡି ପଠାଇଲେ । ଏହାକୁ ଶ୍ରୀଅଙ୍ଗ ବାହୁଟ ଓ ସେନାପଟା ଲାଗି ସେବା କୁହାଯାଏ ।

ଓଡ଼ିଆ ଭାଷାରେ ପହୁଣ୍ଡ ଶବ୍ଦଟି ସଂସ୍କୃତ ଭାଷାର ପଦ ହୁଣ୍ଡନ ଶବ୍ଦରୁ ନିଷ୍ପନ୍ନ । ଧ୍ୱନି ପରିବର୍ତ୍ତନ ହୋଇ ପଦ ହୁଣ୍ଡନରୁ ପହଣ୍ଡ, ପହୁଣ୍ଡ, ପାହୁଣ୍ଡ, ପହଣ୍ଡେ, ପହଣ୍ଡି ଇତ୍ୟାଦି ଶବ୍ଦର ସୃଷ୍ଟି ହୋଇଛି । ଏହାର ଅର୍ଥ ଧୀରେ ଧୀରେ ପଦକ୍ଷେପ ।

ସଂସ୍କୃତ 'ବିଜୟ' ଶବ୍ଦରୁ ଓଡ଼ିଆ 'ବିଜେ'ଶବ୍ଦର ସୃଷ୍ଟି । ରାଜା ଦେବତା ଓ ମହାମାନ୍ୟ ବ୍ୟକ୍ତିବିଶେଷଙ୍କ ଯାତାୟାତକୁ 'ବିଜେ' ବୋଲି କୁହାଯାଏ । ଶ୍ରୀବଳଭଦ୍ର ଶ୍ରୀଜଗନ୍ନାଥ ମହାପ୍ରଭୁ ଧୀରେ ଧୀରେ ପଦକ୍ଷେପରେ ଆସି ଉଭା ହେବାକୁ ପହଣ୍ଡି ବିଜେ କୁହାଯାଏ ।

ପହଣ୍ଡି ବିଜେ ଦୁଇ ପ୍ରକାର । ଯଥା –ଗୋଟି ପହଣ୍ଡି ଓ ଧାଡ଼ି ପହଣ୍ଡି । ଗୋଟିଏ ବିଗ୍ରହ ସିଂହାସନରୁ ଓହ୍ଲାଇ ପହଣ୍ଡିରେ ଯାଇ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବା ପରେ ଆଉ ଗୋଟିଏ ବିଗ୍ରହଙ୍କର ସିଂହାସନରୁ ଅବତରଣ କରାଯାଇ ଯେଉଁ ପହଣ୍ଡି କରାଯାଏ, ତାକୁ 'ଗୋଟି ପହଣ୍ଡି' କହନ୍ତି । ଏକ ସଙ୍ଗରେ ବିଗ୍ରହମାନଙ୍କର ପହଣ୍ଡି ବିଜେକୁ ଧାଡ଼ି ପହଣ୍ଡି କୁହାଯାଏ । ଗୁଣ୍ଡିଚା ଯାତ୍ରାର ପହଣ୍ଡିକୁ 'ମହା ପହଣ୍ଡି' କୁହାଯାଏ ।

ପ୍ରଭୁ ସୁଦର୍ଶନ, ମା'ସୁଭଦ୍ରା ପହଣ୍ଡ ପକାଇ ବିଜେ କରନ୍ତି ନାହିଁ । କେବଳ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ପହଣ୍ଡ ପକାଇ ବିଜେ କରନ୍ତି । ସ୍ନାନ, ଗୁଣ୍ଡିଚା, ବାହୁଡ଼ା ଓ ନୀଳାଦ୍ରି ବିଜେ ଦିନ ପହଣ୍ଡି ହୋଇଥାଏ ।

କଥିତ ଅଛି, ଦ୍ୱାପରରେ ଗୁଡ଼ାଏ ମିଛ କହି, ଗୋପୀମାନଙ୍କୁ ନାନା ରକମ ହଇରାଣ ହରକତ କରି ଚୋରି ଇତ୍ୟାଦି କରିଥିବାରୁ କଳିଯୁଗରେ ଜଗନ୍ନାଥ ବନ୍ଧା ହୋଇ ଛେଚା କଚା ହୋଇ ବିଭିନ୍ନ ଶାସ୍ତି ଭୋଗନ୍ତି । ପ୍ରଭୁ କୁଆଡ଼େ ଶ୍ରୀକୃଷ୍ଣ ଓ ଦଇତାଙ୍କ ସମେତ ସମସ୍ତ ଅଙ୍ଗଲାଗି ସେବକମାନେ ହେଲେ ଗୋପୀ । ଏମାନେ ଦ୍ୱାପରର ରାଗ ଶୁଝାନ୍ତି ।

ଜଗତର ନାଥ ହୋଇ ମଧ ସେ ସାମାଜିକ ରୀତିନୀତି ତଥା ଅନୁଶାସନରେ ବନ୍ଧା । ଅଜାଙ୍କ ଦଣ୍ଡକୁ ସ୍ୱୀକାର କରି ଅଜା ପଠାଇ ଥିବା ବଉଳ କାଠରେ ବନ୍ଧା ହୋଇ ରତ୍ନ ସିଂହାସନରୁ ଓହ୍ଲାଇବାଠାରୁ ଆରମ୍ଭ କରି ରଥ ଆରୋହଣ ଓ ଅବରୋହଣ କରିଥାନ୍ତି । ଅଚଳ ମହାମେରୁ ମହାବାହୁ ଠାକୁରମାନଙ୍କୁ ଯେତେବେଳେ ଆଗପଛ, ଏକଡ଼ ସେକଡ, ଗଡ଼େଇ ତଡ଼େଇ ବଳ ପ୍ରୟୋଗ କରି ନିଜ ନିୟନ୍ତ୍ରଣକୁ ଆଣି ଦଇତାମାନେ ପହଣ୍ଡି କରନ୍ତି, ସେଥିରେ ପ୍ରଭୁଙ୍କର ମୂଳ ବିଗ୍ରହର କୌଣସି କ୍ଷତି ଘଟି ନଥାଏ । ବାହାରକୁ ଜଣା ନପଡୁଥିଲେ ବି ଏହି ବଉଳ କାଠକୁ ପ୍ରଭୁଙ୍କ ମସ୍ତକରୁ ପୃଷ୍ଠ ଓ ଶ୍ରୀଅଙ୍ଗ ଚାରିପଟରେ ଖଞ୍ଜାଯାଇଥିବା ଏହି ସୁରକ୍ଷା ବନ୍ଧନୀ ବଉଳ କାଠର ଛାଞ୍ଚକୁ ପ୍ରଭୁଙ୍କ ବିଗ୍ରହ ସହ ମିଶାଇ ବାହୁଟ ସେନାପଟା ପାଟକନା ଗୁଡ଼ାଇ ଦିଆଯାଇଥାଏ ।

ସ୍ନାନ ଯାତ୍ରା ପୂର୍ବରୁ ରୁକ୍ମଣୀ ହରଣ ଏକାଦଶୀ ତିଥିରେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ବିଶ୍ୱକର୍ମା ଓ ଭୋଇମାନେ

ସାକ୍ଷୀଗୋପାଳ ଆସି ବକୁଳବନରୁ ଏହି ସେନାପଟା ବାହୁଟ କାଠ ସଂଗ୍ରହ କରି ଏମାର ମଠର ଶଗଡ଼ରେ ପୁରୀ ଶ୍ରୀମନ୍ଦିରକୁ ନେଇଥାନ୍ତି । ଶ୍ରୀମନ୍ଦିର କର୍ମଚାରୀ, ପ୍ରଶାସନିକ କର୍ମକର୍ତ୍ତା, ସତ୍ୟବାଦୀ ସଂସ୍କୃତି ସୁରକ୍ଷା ମଞ୍ଚ, ସୁଧର୍ମା ମହାସଭା ସଂକୀର୍ତ୍ତନ ମଣ୍ଡଳ ଓ ସ୍ଥାନୀୟ ଜନସାଧାରଣ ଏକ ଆମ୍ବିକ ଶୋଭା ଯାତ୍ରାରେ ଏହି କାଠକୁ ଶ୍ରୀକ୍ଷେତ୍ରକୁ ମେଲାଣି ଦେଇଥାନ୍ତି।

ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପି (ରେକର୍ଡ଼ ଅଫ୍ ରାଇଟ୍ସ୍)ର ୯୦ ନମ୍ବର ସେବାରେ ତାମରା ବିଶୋଇ ସେବା ସମ୍ପର୍କରେ ଉଲ୍ଲେଖ ରହିଛି । ରଥ ନିର୍ମାଣରେ ଯେଉଁ ଆଠ ପ୍ରକାର ସେବକ ନିୟୋଜିତ ହୋଇଥାନ୍ତି, ସେମାନଙ୍କ ମଧ୍ୟରେ ତାମରା ବିଶୋଇ ସେବକ ଅନ୍ତର୍ଭୁକ୍ତ । ପହଣ୍ଡି ପାଇଁ ଉଦ୍ଦିଷ୍ଟ ବାହୁଟ ଓ ସେନାପଟାରେ ବିଧି ଅନୁଯାୟୀ ତାମ୍ର ପଟା ଲଗାଉ ଥିବାରୁ ଏହି ସେବକ ତାମରା ବିଶୋଇ ନାମରେ ଖ୍ୟାତ। ପହଣ୍ଡି ସମୟରେ ଯେଉଁଭଳି ଶ୍ରୀଅଙ୍ଗରେ ଆଘାତ ନ ଲାଗିବ ସେଥିଲାଗି ଶିରୋଦେଶରୁ ପୃଷ୍ଠ ଦେଶ ପର୍ଯ୍ୟନ୍ତ ସେନାପଟା ଓ ମହାବାହୁଙ୍କ ବାହୁ ଯୁଗଳର ସୁରକ୍ଷା ପାଇଁ ବାହୁଟ ଲଗାଯାଇଥାଏ । ଅଜାଙ୍କ ପ୍ରଦତ୍ତ ବଉଳ କାଠକୁ ସେନାପଟା ଫ୍ରେମ୍ ଓ ବାହୁଟ ଫ୍ରେମ୍ କରାଯାଇଥାଏ। ତାମରା ବିଶୋଇ ଘରେ କମାର ଶାଳରେ ପ୍ରସ୍ତୁତ ତାମ୍ର ପଟା ଓ ପିତଳ କଡ଼ା ଏଥିରେ ସଂଯୋଗ କରିଥାନ୍ତି।

ତାମରା ବିଶୋଇଙ୍କ ସେବା ଏକ ଗୁପ୍ତ ସେବା । ସ୍ନାନ ପୂର୍ଣ୍ଣମୀର ଅବ୍ୟବହିତ ପୂର୍ବରୁ ଜ୍ୟେଷ୍ଠ ତ୍ରୟୋଦଶୀ ମଧ୍ୟରାତ୍ରି ଓ ଶ୍ରୀଗୁଣ୍ଡିଚା ପାଇଁ ନେତ୍ର ଉତ୍ସବ ମଧ୍ୟରାତ୍ରି ଓ ବାହୁଡ଼ା ପାଇଁ ସନ୍ଧ୍ୟା ଦର୍ଶନ ମଧ୍ୟରାତ୍ରିରେ ତାମରା ବିଶୋଇ ଏହି ସେବା କରିଥାନ୍ତି । ଶ୍ରୀଜଗନ୍ନାଥ, ପ୍ରଭୁ ବଳଭଦ୍ର ଓ ମା' ସୁଭଦ୍ରାଙ୍କର ତାମରା ସେବା କରିଥାନ୍ତି । କେବଳ ସେବାୟତଙ୍କ ବ୍ୟତୀତ ଅନ୍ୟ କେହି ଏହି ସେବା ଦେଖିବାର ସୁଯୋଗ ପାଆନ୍ତି ନାହିଁ ।

ତାମରା ବିଶୋଇ ସେବା ବଂଶାନୁକ୍ରମିକ ଓ ଶାଢ଼ୀ ବନ୍ଧା ସେବା। ଏହି ସେବା ପାଇଁ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏକ ମୁକୁଟ ଓ ଆର୍ଥିକ ପୁରସ୍କାର ମିଳିଥାଏ । ଶ୍ରୀବିଗ୍ରହମାନଙ୍କର ସେନାପଟା ଓ ବାହୁଟ କଣ୍ଟ ପାଇଁ ଆବଶ୍ୟକ ତମ୍ବା ଓ ପିତଳ କଡ଼ା ବାବଦ ମୂଲ୍ୟ ଶ୍ରୀମନ୍ଦିର ପ୍ରଶାସନ ପ୍ରଦାନ କରିଥାଏ। ପୂର୍ବର ସେଇ ବ୍ୟବସ୍ଥା ଏବେ ପ୍ରଚଳିତ ନାହିଁ । ପୁରସ୍କାର ବାବଦରେ ତାମରା ବିଶୋଇଙ୍କୁ ମିଳେ ୩ ହଜାର ଟଙ୍କା ମାତ୍ର । ତାମରା ବିଶୋଇ ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀଠାରୁ ବାହୁଡ଼ା ଯାତ୍ରା ପର୍ଯ୍ୟନ୍ତ ଏକ ମାସ ଧରି ହବିଷ ପାଳନ କରିଥାନ୍ତି ଓ ଏ ବାବଦ ଖର୍ଚ୍ଚ ମଧ୍ୟ ଶ୍ରୀମନ୍ଦିର ପ୍ରଶାସନ ପ୍ରଦାନ କରନ୍ତି ।

'କୁଣ୍ଠାଇ ବେଣ୍ଟ ସାହି, ଜେନା ମଠ' ଗଳିର 'ପ୍ରଭୁ ନାରାୟଣ ମହାପାତ୍ର' ବର୍ତ୍ତମାନର ଏକମାତ୍ର ତାମରା ବିଶୋଇ ସେବକ, ଯିଏକି ବୃତ୍ତି ନୁହେଁ ସେବା ଭାବେ ପ୍ରଭୁଙ୍କ କାର୍ଯ୍ୟ ନିଷ୍ଠାର ସହ କରି ଆସୁଛନ୍ତି ।

ଭାରତୀୟମାନଙ୍କ ବନ୍ଧୁ ବତ୍ସଳତା, ଏକାନ୍ନବର୍ତ୍ତୀ ପରିବାର (ଇଣ୍ଡିଆନ୍ ରିଲେସନ୍‌ସିପ୍) ପୃଥିବୀରେ ଅନ୍ୟତ୍ର ବିରଳ । ଆମ ସଂସ୍କୃତିର ଆଦ୍ୟ ପୁରୋଧା ଆମ ଠାକୁର ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ସେହିଭଳି ଚଳଣି, ରୀତିନୀତି ପର୍ବପର୍ବାଣି, ସ୍ମରଣୀୟ ଦିବସ ପାଳନ, ଶ୍ରାଦ୍ଧ ଉତ୍ସବ, ବନ୍ଧୁ ସଙ୍ଖୋଳିବା, ସ୍ତ୍ରୀ, ଭାଇ ଭଉଣୀ, ଅଜା, ମାଉସୀ, ଶ୍ୱଶୁର, ଶାଶୂଙ୍କୁ ନେଇ ଘର କରି ରହିବା ପରିଦୃଷ୍ଟ ହୁଏ ।

ଠାକୁର ଜମ୍ବେଶ୍ୱର ପ୍ରଭୁଙ୍କ ହିସାବ ରକ୍ଷକ ହୋଇଥିବା ବେଳେ ପ୍ରଭୁ ଲୋକନାଥ ଭଣ୍ଡାର ରକ୍ଷକ । ପ୍ରଥମେ ପ୍ରସାଦ ସାନ ଠାକୁରାଣୀ ମା' ବିମଳାଙ୍କ ପାଖରେ ସମର୍ପଣ ନହେବା ପର୍ଯ୍ୟନ୍ତ ମହାପ୍ରସାଦ ହୋଇପାରେ ନାହିଁ । ପଞ୍ଚୁପାଣ୍ଡବ (ପଞ୍ଚଶିବ)ଙ୍କ ସହ ନୌବିହାର ଓ ବିଶେଷ ଯାତ୍ରାରେ ଭୂଦେବୀ, ଶ୍ରୀଦେବୀ ପ୍ରଭୁଙ୍କ ସାଙ୍ଗରେ ରହିବା ଦୃଷ୍ଟିରୁ ଶ୍ରୀଜଗନ୍ନାଥ ସଂସ୍କୃତି ଆତିଥେୟତା, ଆତ୍ମୀୟତା ଓ ଅଭିନ୍ନତା ଆଦି ମାନବୀୟ ମୂଲ୍ୟବୋଧର ସାକ୍ଷର ବହନ କରେ, ଯାହା ଅନନ୍ୟ ଓ ପ୍ରଣିଧାନଯୋଗ୍ୟ ।

ଶ୍ରୀଜଗନ୍ନାଥ ବିଶ୍ୱରେ ମାନବତାବାଦ ପ୍ରଚାର କରୁଥିବା ଜୀବନ୍ତ ଦେବତା ବା ଲିଭିଙ୍ଗ୍ ଗଡ୍।

ଡେଲାଙ୍ଗ କଲେଜ
ଡେଲାଙ୍ଗ, ପୁରୀ– ୭୫୨୦୧୫

# ଆମ ଗୀତି କବିତାରେ ଶ୍ରୀଜଗନ୍ନାଥ

ନନ୍ଦ କିଶୋର ସିଂହ

ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତର ନାଥ, ସର୍ବଧର୍ମର ସମନ୍ୱୟ ଘଟିଛି ତାଙ୍କ ରୂପରେ, ତାଙ୍କ ପୂଜାବିଧିରେ । ଭକ୍ତ ତାଙ୍କୁ ଯେତେବେଳେ ଯେଉଁ ରୂପରେ ଦେଖିବାକୁ ଚାହେଁ, ସେ ତାକୁ ସେଇ ରୂପରେ ଦେଖାଦିଅନ୍ତି । ରତ୍ନବେଦୀରେ ରହି ସେ ହିନ୍ଦୁମାନଙ୍କ ଆରାଧ ରୂପେ ପୂଜା ହେଉଥିବା ବେଳେ ସବୁଧର୍ମର ଭକ୍ତମାନଙ୍କୁ ଦେଖାଦେବା ପାଇଁ ସେ ଚାଲିଆସନ୍ତି ବଡଦାଣ୍ଡକୁ ରଥଯାତ୍ରାରେ । ମାଉସୀମା ମନ୍ଦିରକୁ ଯାଇ ଆଡପ ମଣ୍ଡପରେ ସେ ଭକ୍ତମାନଙ୍କୁ ଗୁଣ୍ଡିଚାରୁ ବାହୁଡା ଯାଏ ଦର୍ଶନ ଦେଇଥାନ୍ତି । ସ୍ନାନ ସାରି ଅଣସର ଘରେ ରହିଥିବା ବେଳେ ସେ ପୁଣି ଅଲାରନାଥ ରୂପେ ଦର୍ଶନ ଦେଇଥାନ୍ତି ବ୍ରହ୍ମଗିରିଠାରେ । ମୋଟ ଉପରେ କହିବାକୁ ଗଲେ ସର୍ବସାଧାରଣଙ୍କୁ ଦର୍ଶନ ଦେବା ପାଇଁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ସେ ସୁବ୍ୟବସ୍ଥା କରିଥାନ୍ତି ।



ସେ ଥିଲେ ଶବରରାଜ ବିଶ୍ୱାବସୁଙ୍କ ନୀଳମାଧବ । ସେ ପୁଣି ହେଲେ ଇନ୍ଦ୍ରଦ୍ୟୁମ୍ନଙ୍କ ପାଖରେ ଦାରୁବ୍ରହ୍ମ । କେତେବେଳେ ସେ ଜଗାଇ ମାଧାଇଙ୍କୁ ଦେଖା ଦିଅନ୍ତି  କୃଷ୍ଣ ରୂପରେ ତ କେତେବେଳେ ପୁଣି ବିଭୀଷଣଙ୍କୁ ଦେଖା ଦିଅନ୍ତି ରାମ ରୂପରେ । ଭକ୍ତ ପାଇଁ ସେ ଧରନ୍ତି ଗଜବେଶ ପୁଣି କେତେବେଳେ ଧରନ୍ତି ବଡସିଂହାର । ଭକ୍ତ ପାଇଁ କେତେବେଳେ ସେ ଉଭା ହୁଅନ୍ତି ବାଲି ରଥରେ ତ କେତେବେଳେ ଭକ୍ତର ଡାକ ସାତଶପଞ୍ଚାଶ କୋଶରୁ ଶୁଣି ତାପାଇଁ ଅପେକ୍ଷା କରନ୍ତି ବଡଦାଣ୍ଡରେ ରଥ ଉପରେ ।

ଜଗନ୍ନାଥଙ୍କୁ ଦେଖି ଭକ୍ତ ଦାସିଆ ଭାବ ବିହ୍ୱଳ ହୋଇ ଜାଉ ଓ ଶାଗ ଭିତରେ ଦର୍ଶନପାଏ ଚକାଡୋଳାର । ପୁଣି କେଉଁ ଭକ୍ତ ତାଙ୍କୁ ଅତି ନିଷ୍ଠୁର କାଳସର୍ପ ରୂପରେ ଆବାହନ କରିଥାଏ ।

ଜଗନ୍ନାଥ ବଳରାମ ସୁଭଦ୍ରାଙ୍କ ରୂପ ଯଥାକ୍ରମେ କଳା, ଧଳା ଏବଂ ହଳଦିଆ । ସମଗ୍ର ପୃଥିବୀରେ ଏହି ତିନି ରଙ୍ଗର ଲୋକ ହିଁ ଦେଖା ଯାଇଥାନ୍ତି । ଏଣୁ ସମଗ୍ର ଜଗତର ମାନବତ୍ୱ ଏଇ ତିନି ମୂର୍ତ୍ତିଠାରେ ଆରୋପ କରାଯାଇଛି ।

ସାଧାରଣ ମଣିଷ ପରି ଖିଆପିଆ, ଦୈନନ୍ଦିନ କର୍ମ କରିବା, ରାତ୍ରି ହେଲେ ଶୋଇବା, ଦେହ ଖରାପ ହେଲେ ଔଷଧ ଖାଇବା ପୁଣି ଆମୋଦ ପ୍ରମୋଦ ପାଇଁ ଭିତର ଗାଏଣୀର ଗୀତ ଆଉ ଦେବଦାସୀର ନୃତ୍ୟ ବ୍ୟବସ୍ଥା ମଧ୍ୟ ବଡ ଦେଉଳର ।

ଏ ସମସ୍ତ ତଥ୍ୟକୁ ଆଧାର କରି ଜଗନ୍ନାଥଙ୍କୁ ନେଇ ଭକ୍ତ କବିମାନେ ଭକ୍ତି ଗୀତ ରଚନା କରିଛନ୍ତି, କରୁଛନ୍ତି ମଧ୍ୟ । ପୁନଶ୍ଚ ଜଗନ୍ନାଥଙ୍କ ମୌନତ୍ୱକୁ ନେଇ ବୌଦ୍ଧ ରୂପ ଏବଂ ମ୍ଳେଚ୍ଛ ସଂହାର ପାଇଁ କଳ୍କୀ ଅବତାର ଗ୍ରହଣ ମଧ୍ୟ ଜଗନ୍ନାଥ ପରମ୍ପରାର ଅନ୍ୟ ଏକ ଦିଗ ।

ଜଗନ୍ନାଥଙ୍କ ଏହି ସାର୍ବଜନୀନତା ପାଇଁ ସମଗ୍ର ବିଶ୍ୱରେ ଆଜି ଜଗନ୍ନାଥ ଧର୍ମ ପ୍ରସାରିତ ହୋଇ ଚାଲିଛି । କେବଳ ଓଡ଼ିଶାରେ ନୁହେଁ ଭାରତରେ ବି ନୁହେଁ ସୁଦୂର ନିୟୁୟର୍କରେ ମଧ୍ୟ ରଥଯାତ୍ରା ହେଉଛି ।

ଜଗନ୍ନାଥଙ୍କ ମହିମା ଜାଣିବା ପାଇଁ ବହୁ ତତ୍ତ୍ୱ ଏବଂ ବହୁ ତଥ୍ୟ ଗଚ୍ଛିତ ରହିଛି । ଖାଦ୍ୟପେୟ ବେଶଭୂଷାକୁ ନେଇ ବହୁ ବର୍ଣ୍ଣନା ରହିଛି । ଆନନ୍ଦବଜାର ପୃଥିବୀର ସବୁଠାରୁ ବଡ ଭୋଜନାଳୟ ମାନ୍ୟତା ପାଇବାରେ ଅସୁବିଧା ନାହିଁ । କାରଣ ଆନନ୍ଦ ବଜାରକୁ ଯିଏ ଯେତେବେଳେ ଯାଇଛି ମହାପ୍ରସାଦ ପାଇଛି ।

ବଡଠାକୁରଙ୍କ ସବୁ ବଡ । ତାଙ୍କ ଦାଣ୍ଡ ବଡଦାଣ୍ଡ, ତାଙ୍କ ଭୋଗ ବଡ ଭୋଗ, ତାଙ୍କ ବେଶ ବଡ ସିଂହାର ବେଶ । ତାଙ୍କ ପତାକା ବଡ ପତାକା ପତିତପାବନ ବାନା, ତାଙ୍କ ପାଖରେ ଥିବା ସାଗର ମଧ୍ୟ ମହାସିନ୍ଧୁ । ତାଙ୍କର ଭକ୍ତ ମଧ୍ୟ ବଡ ଭକ୍ତ ।

ଏଇ ସମସ୍ତ ବିଶାଳତା ଭିତରେ ତାଙ୍କ ଧର୍ମର ମଧ୍ୟ ବହୁ ସୂକ୍ଷ୍ମ ତତ୍ତ୍ୱ ଭରି ରହିଛି । ଉଭୟ ବିଶାଳତା ଏବଂ କ୍ଷୁଦ୍ରତାର ଅପୂର୍ବ ସମନ୍ୱୟ ତାଙ୍କଠି । ସେଇ ସମସ୍ତ ତତ୍ତ୍ୱ ଓ ତଥ୍ୟକୁ ନେଇ ପ୍ରାଚୀନ ଯୁଗରୁ ଆଜିଯାଏ ଯେଉଁସବୁ ଭକ୍ତି ଗୀତିମାନ ରଚନା କରାଯାଇଛି, ତାକୁ କେତେବେଳେ ଭଜନ କେତେବେଳେ ଜଣାଣ ପୁଣି କେତେବେଳେ ସ୍ତୁତି ଓ କେତେବେଳେ ବ୍ୟାଜସ୍ତୁତି ନାମରେ ନାମିତ କରାଯାଇଛି ।

ଆସନ୍ତୁ ଏବେ ଜଗନ୍ନାଥ ଉପରେ ଆଧାରିତ ଜଗନ୍ନାଥ ପରମ୍ପରା ଆଶ୍ରିତ କେତେଗୁଡିଏ ଭଜନ ଜଣାଣ ଓ ସ୍ତୁତି ଉପରେ ଆଲୋକପାତ କରିବା । ବିଶେଷତଃ ଜଗନ୍ନାଥଙ୍କ ରଥ, ପଥ, ନେତ୍ର ଓ ପତିତପାବନ ନେତ ଉପରେ ଆଧାରିତ ଗୀତିଗୁଡିକ ଉପରେ ପାଠକଙ୍କୁ ସୂଚନା ଦେବାକୁ ଉଚିତ ମନେକରୁଛି । ଜଗନ୍ନାଥଙ୍କ ମହିମାରେ ମୁଖ୍ୟତଃ ତାଙ୍କର ପତିତପାବନ ନେତ, ନେତ୍ର, ରଥ ଓ ଦାଣ୍ଡ ଭକ୍ତର ହୃଦୟକୁ ଆକର୍ଷିତ କରିଥାଏ । ସର୍ବପ୍ରଥମେ ଆମର ଆଦିକବି ସାରଳା ଦାସଙ୍କ ରଚନାକୁ ଲକ୍ଷ୍ୟ କରାଯାଉ–

ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସେ ଗତିମୁକ୍ତି ଦାତା ଭାବେ ଲେଖିଛନ୍ତି–

ନବୀନ ନୀଳ ଜଳଦ ଜିଣି ଶ୍ୟାମବର୍ଣ୍ଣ  
ମାଣିକ୍ୟ ବର୍ଣ୍ଣ ଅଧର ପଙ୍କଜ ନାୟନ୍  
ବାମେ ଯେ କମଳା ଦେବୀ ଚକ୍ର ସୁଦର୍ଶନ  
ଅଶେଷ ମହିମା ଦେବେ ଦେବ ଜନାର୍ଦ୍ଦନ

ଗତିମୁକ୍ତି ଦିଅ ମୋତେ ଶଂଖ ଚକ୍ର ହସ୍ତ  
ଶୂଦ୍ର ମୁନି ମୁଁ ସାରଳା ଦାସ ଚିନ୍ତେ ନିତ୍ୟ ।

(ମଧ୍ୟ ପର୍ବ)

ବ୍ୟାସ କବି ସାରଳା ମହାଭାରତର କେବଳ ମଧ୍ୟପର୍ବରେ କାହିଁକି ସମୁଦାୟ ମହାଭାରତରେ ବିଭିନ୍ନ ପ୍ରସଙ୍ଗକ୍ରମେ ଜଗନ୍ନାଥଙ୍କ ବିଭିନ୍ନ ମହିମା ବଖାଣିବାରେ କାର୍ପଣ୍ୟ ଦେଖାଇ ନାହାନ୍ତି ।

ସାରଳାଦାସଙ୍କ ପଦାଙ୍କ ଅନୁସରଣ କରି ପ୍ରାଚୀନ ଯୁଗର କବି ଅର୍ଜ୍ଜୁନ ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ଆଦି ଜଗନ୍ନାଥଙ୍କ ସ୍ତୁତି ଓ ମହିମା ଗାନରୁ କ୍ଷାନ୍ତ ହୋଇ ନାହାନ୍ତି । ସେହିପରି ଯବନ କବି ଭକ୍ତ ସାଲବେଗଙ୍କ ରଚନାବଳୀ ମଧ୍ୟରୁ ଯୁଗାନ୍ତକାରୀ ଭକ୍ତ ହେଲା–

ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ  
ମୋ ଆରତ ନଳିନୀ ବନକୁ କଲ ଦଳନ,  
କିମ୍ବା  
କେଣେ ଘେନିଯାଉଛ ଜଗନ୍ନାଥଙ୍କୁ  
ଆମ୍ଭେ ଦର୍ଶନ କରିବୁ କାହାକୁ ।

ଖ୍ରୀଷ୍ଟିୟ ଅଷ୍ଟାଦଶ ଶତାବ୍ଦୀର ଭକ୍ତ କବି ସଦାନନ୍ଦଙ୍କ ଲେଖନୀ ମୁନରୁ ଜଗନ୍ନାଥଙ୍କ ମହିମା ମଧ୍ୟ ପ୍ରାଞ୍ଜଳଭାବେ ଚିତ୍ରିତ ହୋଇଛି ।

ଜୟ ନୀଳାଦ୍ରି ବିହାରୀ ହେ  
ଦୀନବନ୍ଧୁ ଜୟ ନୀଳାଦ୍ରି ବିହାରୀ  
ଭକତଙ୍କ ହିତେ ନାମ ବହିଅଛ  
କରେ ଶଂଖ ଚକ୍ର ଧରି ।

ସେହିପରି ଏହି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ କବି ଚଣ୍ଡୀ ଦାସ ମଧ୍ୟ ସୁନ୍ଦର ଭଜନଗୁଡିଏ ରଚନା କରିଛନ୍ତି । ତହିଁ ମଧ୍ୟରୁ ଲୋକପ୍ରିୟ ପଂକ୍ତି ହେଲା–

'ଉଚ୍ଚମନ ଜଗନ୍ନାଥଙ୍କୁ ନୀଳାଚଳବାସୀ ଦାରୁବ୍ରହ୍ମଙ୍କୁ  
ରତ୍ନ ସିଂହାସନେ ବିଜେ କରିଛନ୍ତି  
ଧ୍ୟାନ କର ତାଙ୍କୁ ତରି ଯିବାକୁ ।'

ପ୍ରାଚୀନ ଯୁଗରୁ ନାରୀ କବିମାନେ ମଧ୍ୟ ଚତୁର୍ଦ୍ଧାମୂର୍ତ୍ତି ଦାରୁବ୍ରହ୍ମ, ପଙ୍କଜ ନେତ୍ର ଜଗନ୍ନାଥଙ୍କ ଗୁଣବର୍ଣ୍ଣନାରେ ନିଜକୁ ଉତ୍ସର୍ଗ

କରିଛନ୍ତି । ସେମାନଙ୍କ ମଧ୍ୟରେ ମାଧବଦାସୀ, କଳ୍ପଲତା ଜେନାଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମାଧବ ଦାସୀଙ୍କ ରଚନାରୁ ଲୋକପ୍ରିୟ ପଂକ୍ତି କେତୋଟି ହେଲା–

'ଚକାନୟନ ହେ ଜଗୁ ଜୀବନ ଶ୍ରୀହରି
କାତରେ ଜଣାଣ କରୁଛି ଛାମୁରେ
ଶୁଣପ୍ରଭୁ ଶ୍ରୁତି ଡେରି ।'

ପଞ୍ଚସଖା ଯୁଗର କବି ବଳରାମ ଦାସ କହନ୍ତି–

'ଶ୍ରୀଜଗନ୍ନାଥଙ୍କର ଯେ ଆଜ୍ଞା ଶିରେ ଧରି
ଗ୍ରନ୍ଥ ବଖାଣିବି ମୁଁ ଆଦ୍ୟପ୍ରାପ୍ତ କରି
ଜଗମୋହନ ବୋଲି ଯେ ରାମାୟଣ ଗ୍ରନ୍ଥ
ଏଥର କବି ସେ ନୀଳଗିରି ଜଗନ୍ନାଥ ।'

ସେହିପରି ଭାଗବତକାର ଜଗନ୍ନାଥ ଦାସ କହନ୍ତି–

ନମସ୍ତେ ପ୍ରଭୁ ଜଗନ୍ନାଥ
ଅନାଥ ଲୋକଙ୍କର ନାଥ ।

ଅଚ୍ୟୁତାନନ୍ଦ ଦାସ ତାଙ୍କ ରଚିତ ଗରୁଡ ଗୀତାରେ କହନ୍ତି–

ତୁଳସୀର ବଟ ତୁଳସୀ ମୁକୁଟ ତୁଳସୀ ଭୂଷଣ ହୋଇ
ତୁଳସୀ ଚଉଁରା ପାଶେ ଅନାଇଁଲେ ନୀଳଚକ୍ର ଦିଶୁଥାଇ ।

ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ମଧ୍ୟ ଜଗନ୍ନାଥଙ୍କ ଗୁଣକୀର୍ତ୍ତନ ଭରପୂର ଭାବେ ବର୍ଣ୍ଣିତ– ସେହିପରି ତାଙ୍କର ଅନ୍ୟଏକ ଗ୍ରନ୍ଥ ଶିବସ୍ୱରୋଦୟରେ ସେ ଲେଖିଛନ୍ତି–

କୋଟି କୋଟି ପତିତପାବନ ଦେବ ହରି
ତିନିଭୁବନର ନାଥ ନୀଳାଦ୍ରି ବିହାରୀ ।

ଏପରିକି ପଞ୍ଚସଖା ଯୁଗର କବି ଶିଶୁ ଅନନ୍ତ ମଧ୍ୟ ତାଙ୍କ 'ଆଗତ ଭବିଷ୍ୟ ମାଳିକା'ରେ ଲେଖିଛନ୍ତି–

ଜୟ ଜୟ ଜଗନ୍ନାଥ ଦେବହରି ନିରଞ୍ଜନ ନିର୍ବିକାର

ଶ୍ରୀନୀଳକନ୍ଦରେ ବିଜେ କରିଅଛ ଶଙ୍ଖ ଚକ୍ର ଧରି କର ।'

ପ୍ରାଚୀନ ଯୁଗ ଓ ପଞ୍ଚସଖା ଯୁଗ ପରି ମଧ୍ୟଯୁଗରେ କବି ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଦୀନକୃଷ୍ଣ ଦାସ ମଧ୍ୟ ଜଗନ୍ନାଥଙ୍କର ବର୍ଣ୍ଣନାରେ ସ୍ୱସ୍ୱ କାବ୍ୟରାଜିକୁ ବିମଣ୍ଡିତ କରିଛନ୍ତି । କିଏ ତାଙ୍କୁ କହିଛି ନୀଳାଚଳ ନାୟକ ତ କିଏ କହିଛି କମ୍ବୁ କଟକର ଅଧୀଶ୍ୱର । କିଏ ତାଙ୍କର ପଙ୍କଜ ନେତ୍ରକୁ ଦେଖି ଭାବ ବିହ୍ୱଳ ତ କିଏ ତାଙ୍କ ବଳିଆର ଭୁଜ ତଳେ ଟିକେ ଆଶ୍ରୟ ପାଇଁ ବ୍ୟାକୁଳ ।

ଏଇଥିପାଇଁ କିଏ ଗାଇଛି–

ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଆନ ଗତି ନାହିଁ ।

ଅଥବା

'ଭୁଜତଳେ ମୋତେ ରଖ ମହାବାହୁ, ବାହୁତଳେ ମୋତେ ରଖ ।'

ତେବେ ଅଷ୍ଟାଦଶ ଶତାବ୍ଦୀର କବିମାନଙ୍କ ମଧ୍ୟରୁ କବି ବନମାଳୀଙ୍କ ଜଣାଣ ଓ ଭଜନ ଆଜି ବି ଶ୍ରୋତାଙ୍କ ହୃଦୟରେ ଭକ୍ତି ଭାବ ସଂଚାର କରିଥାଏ ।

ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ କବି ସୂର୍ଯ୍ୟ ବଳଦେବ ରଥଙ୍କ ଏକ ଜଣାଣ ପଣ୍ଡିତ ସମାଜରେ ଅତ୍ୟନ୍ତ ଲୋକପ୍ରିୟ । ଏଠାରେ କବି ଜଗନ୍ନାଥଙ୍କୁ 'କାଳସର୍ପ' ବୋଲି ସମ୍ବୋଧନ କରିଛନ୍ତି ।

ସେହିପରି ଏହି ଶତାବ୍ଦୀର ଅନ୍ୟ ଜଣେ ପ୍ରସିଦ୍ଧ କବି ଗୌରଚରଣ ଅଧିକାରୀଙ୍କ ରଚିତ କେତୋଟି ଲୋକପ୍ରିୟ ପଂକ୍ତି ହେଲା–

ନୀଳଚକ୍ରେ ହୋ ଦେଖ ଉଡୁଛି ବାନା
ପତିତପାବନ ନାମଟି ଯା ନାଁ ।
କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁ କି ।

ବିଂଶ ଶତାବ୍ଦୀ ଜଗନ୍ନାଥଙ୍କ ଭଜନ, ଜଣାଣ ରଚନାରେ ମଧ୍ୟ ପଛାଇ ଯାଇନାହିଁ । ଏହି ସମୟରେ ଯୁଗର ଧାରା ବଦଳିଛି । ବିଜ୍ଞାନର ପ୍ରଭାବରେ ରେଡିଓ, ଟେଲିଭିଜନ୍ ଆଦି ଉଦ୍‌ଭାବନ ହୋଇଛି । ଆକାଶବାଣୀ, ଦୂରଦର୍ଶନ ପ୍ରତିଷ୍ଠା ଲାଭ କରିଛି । ଏଣୁ କବିଗଣ ମଧ୍ୟ ଏହାର ସଦୁପଯୋଗ କରି ଜଗନ୍ନାଥଙ୍କ ମହିମା ଗାନରେ ସ୍ୱସ୍ୱ ଧାରାରେ ସ୍ୱସ୍ୱ ଲେଖନୀ ଚାଳନାରେ ବ୍ରତୀ ହୋଇଛନ୍ତି।

ଏମାନଙ୍କ ମଧ୍ୟରେ ପୁରୀ ନିବାସୀ ଆର୍ତ୍ତବନ୍ଧୁ ଦାସ, ଲୋକନାଥ ପଟ୍ଟନାୟକ ସମେତ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ନାମ ସ୍ୱତଃମନକୁ ଆସେ । ଏମାନେ ଜଗନ୍ନାଥଙ୍କ ରଥ ପଥ, ନେତ ଓ ନେତ୍ରକୁ ନେଇ ବହୁ ଗୀତ ରଚନା କରିଯାଇଛନ୍ତି ।

ଆଧୁନିକ ଯୁଗରେ ଜଗନ୍ନାଥଙ୍କୁ କିଏ କଳାହାଣ୍ଡୀ, କିଏ କଳାଷଣ୍ଢ କିଏ କଳାସିନ୍ଧୁକ କିଏ ପୁଣି କଳା ଗୁଣିଆ ନାମରେ ଡାକୁଛନ୍ତି ।

ଆକାଶବାଣୀ କଟକ ପ୍ରତିଷ୍ଠା ହେବା ପରେ ଏହାକୁ ଆଧାର କରି ବହୁ ଗୀତିକବି ଜଗନ୍ନାଥଙ୍କ ମହିମା ରଚନାରେ ସିଦ୍ଧହସ୍ତ ହୋଇଛନ୍ତି । ଏସବୁ ଆକାଶବାଣୀରେ ଖୁବ୍ ଲୋକପ୍ରିୟ ହୋଇଥିବା ଜଗନ୍ନାଥ ଜଣାଣ କେତୋଟି ହେଲା–

ହେ ଚକା ନୟନ
ଅଗତିର ଗତି ଦୀନ ଦୁଃଖ ନାଶନ
ଗାୟିକା– ଶାନ୍ତିଲତା ଛୋଟରାୟ
ଲେଖକ– ନଗେନ୍ଦ୍ର ମହାପାତ୍ର

କୋଠଭୋଗଖିଆ ମୋ ଚକା ଆଖିଆ
ଉଠ ହେ ପହଡ ଭାଙ୍ଗି
ଗାୟକ– ଭିକାରୀ ଚରଣ ବଳ
ଲେଖକ– କ୍ଷୀରୋଦ ଚନ୍ଦ୍ର ପୋଥାଳ

ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ
ମନ ବଡ ଦାଣ୍ଡେ ବାରେ ଆସ ଜଗନ୍ନାଥ
ଗାୟକ– ଦିବାକର ମହାନ୍ତି
ଲେଖକ– ନନ୍ଦ କିଶୋର ସିଂହ

ଆସିଥିଲି କାଳିଆ ତୋ ଦରଶନ ପାଇଁରେ
ତୋତେ ଛାଡି ଯିବାକୁ ମୋ ମନ ବଳୁ ନାହିଁରେ ।
ଗାୟକ: ସୁବାସ ଦାସ
ଲେଖକ: ଅଲେଖ ବିଶ୍ୱାଳ

ସେହିପରି ଜଗନ୍ନାଥଙ୍କ ନେତ୍ର, ପତିତପାବନ ନେତ, ରଥ ଓ ପଥକୁ ନେଇ ଏ ଯୁଗର ବହୁ ଗୀତିକବି ଭକ୍ତି ଗୀତିମାନ ରଚନା କରିଛନ୍ତି– ସେ ସମସ୍ତ ଉଲ୍ଲେଖ କରିବା ଏଇ କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ । ତଥାପି କେତୋଟି ଉଲ୍ଲେଖ ଯୋଗ୍ୟ ପଂକ୍ତି ଏଠାରେ ସ୍ଥାନିତ କରାଯାଉଛି–

ମଣିମା ମଣିମା ବଡ ଘର ଦିଅଁ
ଗୁହାରୀ ଶୁଣିମା ମୋର
ମହିମା ତୋହର ଉଡେ ବାନା ହୋଇ
ନୀଳଚକ୍ରେ ଫର ଫର

କବି– ବିନୋଦିନୀ ଦେବୀ

ଭକତ ନଥିଲେ କିଏ ରେ ପୂଜନ୍ତା
ମନ୍ଦିର ଦୁଆର ଖୋଲି
ଅପୂଜା ରୁହନ୍ତ ଆହେ ଜଗନ୍ନାଥ
କେ କହନ୍ତା ପ୍ରଭୁ ବୋଲି ।

କବି– ପ୍ରେମଲତା ସାମଲ

ଠାକୁର ଭିତରେ ଠାକୁରଟିଏ ବଡ ଠାକୁରତା ନାଁ
ଅନାଥ ଜନଙ୍କ ନାଥଟିଏ ସିଏ ଜଗତ ଯାକର ସାହା ।

କବି– ଅଲେଖ ଚନ୍ଦ୍ର ପଢିଆରୀ

ଆଖିରେ ପତାନାହିଁ
ପାଟିରେ କଥା ନାହିଁ
ହାତ ନାହିଁ ପାଦ ନାହିଁ ଦିନ ରାତି ନିଦ ନାହିଁ
(ହେଲେ) ଚକାଡୋଳା ତୋ ଠାରୁ ଦେବତା ନାହିଁ

କବି– ଅନ୍ତର୍ଯ୍ୟାମୀ ମିଶ୍ର

ପର୍ବତ ଉପରେ ଚକା ପଥର ଭସା ମେଘ ଛାଇ ଛାଇ
ନୀଳପରବତେ ଚକା ଆଖିଆ ସାଙ୍ଗରେ ଭଉଣୀ ଭାଇ

କଣ୍ଠ– ସତ୍ୟ ପଟ୍ଟନାୟକ

ଚକାଆଖି ତୋତେ ଡାକି ମୁଁ ପାରୁନି
ମୁକତି ଦେବାକୁ ମୋତେ
ଏଇ ଦୁନିଆକୁ ବୈକୁଣ୍ଠ କରିଦେ
ସ୍ନେହମମତାରେ ସଭିଙ୍କୁ ବାନ୍ଧିଦେ
ଏମିତି ମାଗୁଛି ତୋତେ ।

କବି– ରଘୁନାଥ ରାଉତ

ଏମିତି ଏ ବହ ଦାଣ୍ଡେ ହାତପାତି ରହିଥିବି
ପତିତପାବନ ପତାକାକୁ ଚାହିଁ
ତୋର ନାମ ଗାଉଥିବି ।

କବି–ଗୌରହରି ଦଳାଇ

ଏହିପରି ବିଭିନ୍ନ ଦୃଷ୍ଟିକୋଣରୁ ଆଧୁନିକ ଗୀତିକବିମାନେ କେତେବେଳେ ଜଗନ୍ନାଥଙ୍କ ମହିମା ଗାନରେ କୃତ୍ୟକୃତ୍ୟ ତ କେତେବେଳେ ଅଭିମାନୀ ହୃଦୟରେ ଜଗନ୍ନାଥଙ୍କୁ ନିଷ୍ଠୁର, ନିର୍ଦ୍ଦୟ କୂଟ କପଟିଆ କହିବାକୁ ଭୁଲି ନାହାନ୍ତି । ଏହି ଗୀତିକବିମାନଙ୍କ ଭିତରେ ଗୁରୁକୃଷ୍ଣ ଗୋସ୍ୱାମୀ, ରସରାଜ ନାରାୟଣ ପ୍ରସାଦ ସିଂହ,

ମୀନାକ୍ଷୀ ଦେବୀ, ଗୌର ପଟ୍ଟନାୟକ, ନାରାୟଣ ପ୍ରସାଦ ଜେନା, ମନୋଜ ପଟ୍ଟନାୟକ, ସଚ୍ଚି ମହାନ୍ତି, ଦୁର୍ଗାଚରଣ ପଟ୍ଟନାୟକ, ଡକ୍ଟର ଖଗେନ୍ଦ୍ର ମଲ୍ଲିକ, କୁମୁଦଲତା ମହାନ୍ତି, ଅଲେଖଚନ୍ଦ୍ର ବିଶ୍ୱାଳ, ପ୍ରଫେସର ଶରତ ଚନ୍ଦ୍ର ରଥ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ଗୀତିକବି ସମାଜ ଆନୁକୂଲ୍ୟରେ ପ୍ରକାଶିତ ଭକ୍ତି ଗଂଗୋତ୍ରୀ ପୁସ୍ତକରେ ଷାଠିଏରୁ ଊର୍ଦ୍ଧ୍ୱ ଗୀତିକବିଙ୍କ ଭକ୍ତିଗୀତିମାନ ସ୍ଥାନିତ ହୋଇଛି । ତହିଁରୁ ଅଧିକାଂଶ ଜଗନ୍ନାଥଙ୍କୁ ଆଶ୍ରୟ କରି ଲିଖିତ ।

ସେହିପରି ବନଜ୍ୟୋସ୍ନା ସାହିତ୍ୟ ସଂସଦ ଆନୁକୂଲ୍ୟରେ ପ୍ରକାଶିତ 'ଭକ୍ତି ସମର୍ପଣ' ପୁସ୍ତକରେ ଛପନ ଜଣ ଗୀତିକବିଙ୍କ ଭକ୍ତିଗୀତ ସ୍ଥାନିତ ହୋଇଛି । ଏଥିରେ ମଧ୍ୟ ଅଧିକାଂଶ ଭକ୍ତିଗୀତି ଜଗନ୍ନାଥ ଓ ଜଗନ୍ନାଥଙ୍କ ବିଭିନ୍ନ ଅବତାରକୁ ନେଇ ରଚିତ ।

ଏତଦ୍‌ବ୍ୟତୀତ ବ୍ୟକ୍ତିଗତ ପ୍ରଚେଷ୍ଟାରେ ବହୁ ଗୀତିକବି କେତେ ଭକ୍ତିଗୀତି ପୁସ୍ତକମାନ ପ୍ରକାଶ କରିଛନ୍ତି– ସେଗୁଡ଼ିକ ମଧ୍ୟରେ ମୀନାକ୍ଷୀ ଦେବୀଙ୍କ 'ଅମୃତ ଅନୁଭବ', ବିନୋଦିନୀ ଦେବୀଙ୍କ 'ଅମ୍ରିତା, ବୀର କିଶୋର ନାୟକଙ୍କ 'ଜଣାଣ ସୁଧା' ଦେବ ନାରାୟଣ ସିଂହଙ୍କ 'ଚନ୍ଦ୍ରମା ପଦାବଳୀ' ଦୁର୍ଗାଚରଣ ପଟ୍ଟନାୟକଙ୍କ 'ଭକ୍ତି ନୈବେଦ୍ୟ' ଉଲ୍ଲେଖଯୋଗ୍ୟ । ଏହି ପୁସ୍ତକରେ ମଧ୍ୟ ସ୍ଥାନିତ ଭଜନଗୁଡ଼ିକରେ ଜଗନ୍ନାଥଙ୍କ ପ୍ରସାଦ ଯଥେଷ୍ଟ ଅନୁଭୂତ ହୁଏ ।

ଜଗନ୍ନାଥଙ୍କୁ ନେଇ ବହୁ ଓଡ଼ିଆ ଫିଲ୍ମ ଯେପରି ନିର୍ମାଣ ହୋଇଛି ଜଗନ୍ନାଥଙ୍କ ନାମକୁ ଏହି ଫିଲ୍ମ ମାଧ୍ୟମରେ ବ୍ୟବସାୟୀକରଣ ମଧ୍ୟ କରାଯାଇଛି । ସେହିପରି କ୍ୟାସେଟ୍ କମ୍ପାନୀମାନେ ଜଗନ୍ନାଥଙ୍କୁ ନେଇ କିଛି ପରିମାଣରେ ଉନ୍ନତ ରୁଚିକର ସଂଗୀତ ପ୍ରଯୋଜନା କରିଥିଲେ ହେଁ ବେଶୀମାତ୍ରାରେ ଏହାକୁ ଅତି ନିମ୍ନସ୍ତରକୁ ନେଇ ଆସିଛନ୍ତି । ଫଳରେ ଜଗନ୍ନାଥଙ୍କ ଗୀତଗୋବିନ୍ଦ କଥା ଆସିଲେ ଯେପରି ରଘୁନାଥ ପାଣିଗ୍ରାହୀଙ୍କ କଥା ମନକୁ ଆସେ ଠିକ୍ ସେହିପରି ଜଗନ୍ନାଥଙ୍କ ଭଜନ ବା ଜଣାଣ କଥା ଚିନ୍ତାକଲେ ସଂଗୀତ ସୁଧାକର ବାଳକୃଷ୍ଣ ଦାସ, ନିମାଇଁ ଚରଣ ହରିଚନ୍ଦନ, ଭିକାରୀ ଚରଣ ବଳ, ସିକନ୍ଦର ଆଲାମଙ୍କ କଥା ସ୍ୱତଃ ମନକୁ ଆସେ ।

ବାଳକୃଷ୍ଣ ଦାସଙ୍କ କଣ୍ଠରେ ଜଗନ୍ନାଥ ହୋ– କିଛି ମାଗୁ ନାହିଁ ତୋତେ, ମହମ୍ମଦ ସିକନ୍ଦର ଆଲାମଙ୍କ କଣ୍ଠରେ 'ଆରତ ସୁରେ ବାରେ କରେ ମିନତିରେ ଏବଂ ବାଣୀକଣ୍ଠଙ୍କ କଣ୍ଠରେ କଳାକୃଷ୍ଣ କମଳ ଆଖି ଚିର ଅମଳିନ ଚିର ଭାସ୍ୱର । ଭିକାରୀ ଚରଣ ବଳଙ୍କ କଣ୍ଠରେ ଭକତ ବିଦୁର ଖୁଦ ଭଜା ଖାଇ... ମଧ୍ୟ ଏକ ଅନବଦ୍ୟ ସୃଷ୍ଟି ।

ସାହିତ୍ୟ ଏକାଡେମୀ ମଧ୍ୟ ତାର ମୁଖପତ୍ର କୋଣାର୍କର ଶ୍ରୀଜଗନ୍ନାଥ ସଂସ୍କୃତି ଉପରେ ମଝିରେ ମଝିରେ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିଥାନ୍ତି । ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଏବଂ ସଂସ୍କୃତି ବିଭାଗର ମିଳିତ ସହଯୋଗରେ 'ଶ୍ରୀଜଗନ୍ନାଥାୟନ' କାର୍ଯ୍ୟକ୍ରମରେ ଜଗନ୍ନାଥ ଜଣାଣ ଭଜନ ବରିଷ୍ଠ ଶିଳ୍ପୀମାନଙ୍କ ଦ୍ୱାରା ଗାୟନ କରାଯିବା ସଙ୍ଗେ ସଙ୍ଗେ ଜଗନ୍ନାଥ ସଂସ୍କୃତିର ବିକାଶ ପାଇଁ ବିଭିନ୍ନ ଗବେଷକ ଏବଂ ବକ୍ତାଙ୍କ ମାଧ୍ୟମରେ ଆଲୋଚନାଚକ୍ର ମଧ୍ୟ କରାଯାଉଛି ।

ସ୍ଥୂଳତଃ ଉପସଂହାରରେ ଏତିକି କୁହାଯାଇପାରେ ଉତ୍କଳ ଉତ୍କୃଷ୍ଟ କଳାର ଦେଶ । ଏଠାରେ ଷୋଳ କଳାର ସମୃଦ୍ଧ ଦେବତା ଶ୍ରୀଜଗନ୍ନାଥ ବିରାଜମାନ । ଏଣୁ ଓଡ଼ିଶାର ସାହିତ୍ୟ ସଭ୍ୟତା, ସଂସ୍କୃତି ସବୁଠାରେ ଜଗନ୍ନାଥଙ୍କ ଆଶୀର୍ବାଦ ରହିଛି ଏବଂ ରହିଥାଉ କାଳକାଳକୁ ।

ସହାୟକ ଗ୍ରନ୍ଥସୂଚୀ:


୧) କୋଣାର୍କ ୩୨ଶ ସଂଖ୍ୟା ୧୯୭୭

୨) ଭକ୍ତି ଗଂଗୋତ୍ରୀ– ପ୍ରକାଶକ, ଓଡ଼ିଆ ଗୀତିକବି ସମାଜ

୩) ଭକ୍ତି ସମର୍ପଣ– ପ୍ରଚାରକ, ବନଜ୍ୟୋସ୍ନା ସାହିତ୍ୟ ସଂସଦ, ଫୁଲବାଣୀ ।

୪) ଅମୃତା– ବିନୋଦିନୀ ଦେବୀ

୫) ଗୀତିବର୍ଣ୍ଣାଳୀ– ଅଲେଖ ଚନ୍ଦ୍ର ପଢିଆରୀ



କୋରେଇ, ଯାଜପୁର–୨୨
ପିନ୍– ୭୫୫୦୨୨

# ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ବୁଦ୍ଧ

**ସୁରେଶ କୁମାର ପ୍ରଧାନ**

ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହିଁ ଅନନ୍ତକୋଟି ବ୍ରହ୍ମାଣ୍ଡର ଏକମାତ୍ର ଉପାସ୍ୟ ଦେବତା ଭାବେ ଦ୍ରଷ୍ଟା ଆସନରେ ବିରାଜିତ । ଯାହାଙ୍କ ଇଙ୍ଗିତରେ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ଲୟ ସଂଘଟିତ ହୋଇଥାଏ । ତାଙ୍କ ଅଗୋଚରରେ ସୃଷ୍ଟିର ରେଣୁମାତ୍ର କାର୍ଯ୍ୟ ସମ୍ପାଦିତ ହେବା ଅସମ୍ଭବ । ସେହି ଅବର୍ଣ୍ଣନୀୟ ଅକଳ୍ପନୀୟ ତତ୍ତ୍ୱର ଆକର ଶ୍ରୀଜଗନ୍ନାଥଙ୍କ ସୃଷ୍ଟି ଓ ସଂସାରର ରହସ୍ୟ ଅପ୍ରକାଶ୍ୟ ଓ ଅକଳନୀୟ । ଜଗତର ମଙ୍ଗଳ ବିଧାନ ନିମନ୍ତେ ଯାହାଙ୍କ ଦିବ୍ୟଲୀଳାର ସଂରଚନା । ଯୁଗେ ଯୁଗେ ଦେବ, ଦାନବ ଓ ମାନବ ଯାହାଙ୍କ ଲୀଳା ସହଚର ହୋଇଥିଲେ ହେଁ, ସେହି ପୂର୍ଣ୍ଣବ୍ରହ୍ମ ସଚ୍ଚିଦାନନ୍ଦ ଘନ ବିଗ୍ରହଙ୍କ ରହସ୍ୟ ଜାଣିବାକୁ ଅସମର୍ଥ । ଏଥିପାଇଁ କୁହାଯାଇଛି– 'ସର୍ବଂ ରହସ୍ୟ 'ପୁରୁଷୋତ୍ତମସ୍ୟ' ସେ ନିର୍ଗୁଣ, ନିରାକାର, ନିର୍ଲିପ୍ତ, ନିର୍ବିକାର ବ୍ରହ୍ମ ହୋଇ ମଧ୍ୟ ସଗୁଣ, ସାକାରରୂପ ଧାରଣ କରି ମାନବୀୟ ଲୀଳା ସଂରଚନା କରୁଅଛନ୍ତି ।

ହିନ୍ଦୁଧର୍ମ, ଦର୍ଶନ ଓ ଧାର୍ମିକ ଚେତନାରେ ଅବତାରୀ ଓ ଅବତାର ପ୍ରସଙ୍ଗ ବହୁ ପ୍ରାଚୀନ । ବେଦ, ବେଦାନ୍ତ, ଉପନିଷଦ, ପୁରାଣ ଆଦି ଗ୍ରନ୍ଥମାନଙ୍କରେ ଅବତାର ତତ୍ତ୍ୱ ବହୁଧା ଆଲୋଚିତ । ଯୁଗେ ଯୁଗେ ସତ୍ୟ ଧର୍ମର ପ୍ରତିଷ୍ଠା ପାଇଁ ଭଗବାନ ନାନା ରୂପ ଧାରଣ କରି ଅବତରଣ ପୂର୍ବକ ଅବତାର ତତ୍ତ୍ୱକୁ ପ୍ରତିପାଦିତ କରିଅଛନ୍ତି । ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ପତିତପାବନ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହିଁ ଅବତାରୀ ପୁରୁଷ । କଳିଯୁଗରେ ନବମ ଅବତାର ଭାବେ ବୁଦ୍ଧ ରୂପରେ ଧରାବତରଣ କରି ସଂସାରରେ ଅହିଂସା, ଜୀବେ ଦୟା ଆଦି ମହାନ୍ ତତ୍ତ୍ୱର ଉଦ୍‌ଘୋଷଣା କରିଛନ୍ତି ।

ହେ ଭାରତ ! ଯେଉଁ ଯେଉଁ ସମୟରେ ଧର୍ମର ଅବକ୍ଷୟ ହୁଏ ଏବଂ ଅଧର୍ମର ବୃଦ୍ଧି ହୁଏ, ସେହି ସେହି ସମୟରେ ମୁଁ ନିଜର ରୂପ ସୃଷ୍ଟି କରିଥାଏ ଅର୍ଥାତ୍ ସାକାର ରୂପରେ ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୁଏ ।

ପରିତ୍ରାଣାୟ ସାଧୁନାଂ ବିନାଶାୟ ଚଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥

ସାଧୁପୁରୁଷମାନଙ୍କୁ ଉଦ୍ଧାର କରିବା ପାଇଁ ପାପୀମାନଙ୍କୁ ବିନାଶ କରିବା ପାଇଁ ଏବଂ ଧର୍ମ ସଂସ୍ଥାପନ କରିବା ପାଇଁ ମୁଁ ଯୁଗେ ଯୁଗେ ପ୍ରକଟ ହୋଇଥାଏ ।

ହିନ୍ଦୁଧର୍ମ ଓ ଶାସ୍ତ୍ରରେ ଶ୍ରୀଜଗନ୍ନାଥ (ବିଷ୍ଣୁ)ଙ୍କ ଦଶ ଅବତାର ମଧ୍ୟରେ ଭଗବାନ ବୁଦ୍ଧ ହେଉଛନ୍ତି ନବମ ଅବତାର । ଖ୍ରୀଷ୍ଟପୂର୍ବ ସପ୍ତମ–ଷଷ୍ଠ ଶତାବ୍ଦୀରେ ସମଗ୍ର ବିଶ୍ୱ ଯେତେବେଳେ କୁସଂସ୍କାର ଓ ଅନ୍ୟାୟର ପ୍ରାବଲ୍ୟରେ ଉବୁଟୁବୁ ହୋଇ କଳୁଷିତ ହୋଇଯାଇଥିଲା, ଠିକ୍ ଏହିଭଳି ଏକ ସଙ୍କଟମୟ କାଳରେ ଭଗବାନ ବୌଦ୍ଧାବତାର ଗ୍ରହଣ କରି ସଂସାରକୁ ନବୀନ ଆଲୋକ ଦେଖାଇଥିଲେ । ତଦୀୟ ପ୍ରଚାରିତ ଧର୍ମ (ବୌଦ୍ଧଧର୍ମ) ସନାତନ ହିନ୍ଦୁଧର୍ମ ବା ଜଗନ୍ନାଥ ଧର୍ମର ଏକ ଅନ୍ୟତମ ଶାଖା ଭାବେ ବିଶ୍ୱକୁ ଦିଗ୍‌ଦର୍ଶନ ଦେବାରେ ସମର୍ଥ ହେଲା । ମହନୀୟତା ହେଉଛି ଧର୍ମ ଜଗତର ଏକ ଦାରୁଣ ସମୟ ଅର୍ଥାତ୍ ପଶୁବଳି, ଜାତିପ୍ରଥା ଭଳି କୁସଂସ୍କାରାଛନ୍ନ ସମାଜରେ ଜ୍ଞାନର ଆଲୋକ ପ୍ରଜ୍ୱଳିତ ହୋଇ ଉଠିଥିଲା । ସ୍ନିଗ୍ଧାବତାର ପରମ କାରୁଣିକ ବୁଦ୍ଧ ଗଭୀର ତପଶ୍ଚରଣ ବଳରେ ଯେଉଁ ସତ୍ୟର ସନ୍ଧାନ ଲାଭ କଲେ ତାହା ଜଗତରେ ବିତରଣ କରିଗଲେ । ଜୀବ ହିଂସା ଓ ପରଧନ ଅପହରଣ ନକରିବା, ସତ୍ୟ କହିବା ଆଦିମାନବୀୟ ଗୁଣକୁ ଅଙ୍ଗର ଭୂଷଣ କରିବାକୁ ସଦୁପଦେଶ ଦେଲେ । ଏହିଭଳି ଶାସ୍ତ୍ରର ବିଧିବିଧାନ ଜୀବନରେ ପାଳନ କଲେ ଅଥବା ଏହିମାର୍ଗ ଅବଲମ୍ବନ କଲେ ସର୍ବମଙ୍ଗଳ ସାଧିତ ହୋଇଥାଏ ।

ଧର୍ମ ଓ ଚେତନାର ପ୍ରତିଭୂ ହେଲେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ । ପରିଣାମରେ ସର୍ବଧର୍ମର ସମନ୍ୱୟ ଘଟିଛି ଜଗନ୍ନାଥ ସଂସ୍କୃତିରେ । ମହନୀୟତା ହେଉଛି ସକଳ ଧର୍ମାବଲମ୍ବୀ ଶ୍ରୀଜଗନ୍ନାଥଙ୍କୁ ଆପଣା ଆପଣା ଧର୍ମର ଉପାସ୍ୟ ଦେବତା ରୂପେ ଗ୍ରହଣ କରିଅଛନ୍ତି । ଏହି ଦୃଷ୍ଟିରେ ବୌଦ୍ଧମାନେ ଶ୍ରୀଜଗନ୍ନାଥଙ୍କ ଭିତରେ ବୁଦ୍ଧଙ୍କୁ ଉପଲବ୍ଧି କରି ନିଜକୁ ଧନ୍ୟ ମନେ କରିଅଛନ୍ତି । ତତ୍ତ୍ୱତଃ ବୌଦ୍ଧ ଓ ଜଗନ୍ନାଥ ସଂସ୍କୃତିର ମହାମିଳନ ସଂଘଟିତ ହୋଇ ଜଗନ୍ନାଥ ଓ ବୁଦ୍ଧଙ୍କ ଅଭେଦତ୍ୱ ପ୍ରତିପାଦିତ ହୋଇଛି । ସ୍ମରଣାତୀତ କାଳରୁ ହିନ୍ଦୁମାନେ ବୁଦ୍ଧଦେବଙ୍କୁ ବିଷ୍ଣୁ (ଜଗନ୍ନାଥ)ଙ୍କ ନବମ ଅବତାର ରୂପେ ଗ୍ରହଣ କରିଆସିଛନ୍ତି । 'ବିଷ୍ଣୁପୁରାଣ'ରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ରୂପରେ ବର୍ଣ୍ଣନା କରାଯାଇଛି । ସେହିପରି 'ଗୟା ମାହାତ୍ମ୍ୟ'ରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି କୁହାଯାଇଛି । ବଜ୍ରଯାନୀ ରାଜା ଇନ୍ଦ୍ରଭୂତି ତାଙ୍କ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ୭୧୭ ଖ୍ରୀଷ୍ଟାବ୍ଦରେ ପ୍ରଥମେ ମଙ୍ଗଳାଚରଣରେ ବୁଦ୍ଧଦେବଙ୍କୁ ଜଗନ୍ନାଥ ରୂପେ ପ୍ରାର୍ଥନା କରି ଲେଖିଛନ୍ତି–

'ପ୍ରଣିପତ୍ୟ ଜଗନ୍ନାଥ ସର୍ବଜିନ ବରାର୍ଚ୍ଚିତଂ
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମ୍ ।'

ଅର୍ଥାତ୍ ସମସ୍ତ ଜିନଙ୍କ (ଜୀବ) ଦ୍ୱାରା ପୂଜିତ, ସର୍ବ ବୁଦ୍ଧମୟ ସିଦ୍ଧି ସ୍ୱରୂପ, ଆକାଶ ଭଳି ପରିବ୍ୟାପ୍ତ ସେହି ଜଗନ୍ନାଥଙ୍କୁ ପ୍ରଣାମ କରୁଅଛି ।

ମାଟିର ମହାକବି ସାରଳା ଦାସ ରଚିତ 'ମହାଭାରତ'ର ଆଦି, ସଭା, ବନ, ମଧ୍ୟ, ବିରାଟ ପର୍ବମାନଙ୍କରେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ବର୍ଣ୍ଣନା କରିଛନ୍ତି–

'ମହୋଦଧି ତୀରେ ବଡ ଦେଉଳରେ ବସି
ଦରିଦ୍ରମାନଙ୍କ ଦୁଃଖ ଦେଉଅଛ ଧ୍ୱଂସି
ବଉଦ୍ଧ ରୂପରେ କଳିଯୁଗେ ଅବତାର
ହୋଇଣ ପାପୀଜନକୁ କରୁଛ ଉଦ୍ଧାର ।'

(ମହାଭାରତ–ମଧ୍ୟପର୍ବ)

ବୁଦ୍ଧ ଅବତାରରେ ଦୟାର୍ଦ୍ର ହୃଦୟରେ ନିର୍ମମ ପଶୁହତ୍ୟା ଦୋଷ ଦର୍ଶନ କିପରି ବେଦର ଯଜ୍ଞବିଧିକୁ ନିନ୍ଦାପୂର୍ବକ ପଶୁ ହତ୍ୟାରୁ ନିବୃତ୍ତ ରହିବାକୁ ସମାଜକୁ ଦିଗ୍‌ଦର୍ଶନ ଦେଇଅଛନ୍ତି । ସେହିପରି ଲୁଇପାଙ୍କ ନାମରେ ଭଣିତ 'ଲୋହିଗୀତା'ରେ ଉଲ୍ଲେଖ ଅଛି–

'କଳିଯୁଗରେ ବିଜେ ନୀଳଗିରି
ବଉଦ୍ଧ ରୂପେ ଶଙ୍ଖଚକ୍ରଧାରୀ ।

ପଡୋଶୀ ବଙ୍ଗଦେଶର ବିଦ୍ୱାନ ରମାଇ ପଣ୍ଡିତ ଉଲ୍ଲେଖ କରିଅଛନ୍ତି–

'ଜଳଧିର ତୀରେ ସ୍ଥାନ, ବୌଦ୍ଧ ରୂପେ ଭଗବାନ
ହୟା ତୁମି କୃପାବଲୋକନ ।'

ଦଶମ ଶତାବ୍ଦୀର ପ୍ରସିଦ୍ଧ କାଶ୍ମୀରୀ ପଣ୍ଡିତ କ୍ଷେମେନ୍ଦ୍ର ସ୍ୱରଚିତ 'ଦିବ୍ୟା ଦାନକଳ୍ପଲତା' ଗ୍ରନ୍ଥରେ ବୁଦ୍ଧଙ୍କୁ ଶ୍ରୀବିଷ୍ଣୁ (ଜଗନ୍ନାଥ)ଙ୍କର ଅବତାର ରୂପେ ବର୍ଣ୍ଣନା କରିଅଛନ୍ତି । ସେହିପରି ସିଦ୍ଧାଚାର୍ଯ୍ୟ ଅନଙ୍ଗ ବଜ୍ର ସ୍ୱରଚିତ 'ପ୍ରଜ୍ଞୋପାୟ ବିନିଶ୍ଚୟସିଦ୍ଧି'ରେ ଜଗନ୍ନାଥଙ୍କୁ ବୁଦ୍ଧଭାବେ ଚିତ୍ରିତ କରିଅଛନ୍ତି । ଏତଦ୍ ପୁରାଣ ଗ୍ରନ୍ଥ ବ୍ୟତୀତ କାଶ୍ମୀରର 'ନୀଳମତ ପୁରାଣ' ଓ ବହୁ ପଣ୍ଡିତ କବିକୋବିଦ ଯଥା– ଦ୍ୱାରକା ଦାସ, ଶିଖର ଦାସ, ବଳରାମ, ଦିବାକର ଓ ପ୍ରାଚ୍ୟ ପାଶ୍ଚାତ୍ୟ ଗବେଷକବୃନ୍ଦ ଶ୍ରୀଜଗନ୍ନାଥଙ୍କଠାରେ ବୁଦ୍ଧତ୍ୱ ଆରୋପ କରି ଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ବୌଦ୍ଧ ଚେତନାକୁ ପ୍ରତିଫଳିତ କରାଇପାରିଛନ୍ତି ।

ଶ୍ରୀଜଗନ୍ନାଥଙ୍କ ନାଭିପଦ୍ମରେ ବୁଦ୍ଧଦେବଙ୍କ ଏକଦନ୍ତ ବା ଦନ୍ତ ଏକ ପାଖୁଡା (ବ୍ରହ୍ମ) ଭାବରେ ନିହିତ ବୋଲି ବିଶ୍ୱାସ କରାଯାଏ । ଏହି ଦୃଷ୍ଟିରୁ ପୁରୀ (ଶ୍ରୀକ୍ଷେତ୍ର) ପ୍ରାଚୀନ କାଳରୁ ଦନ୍ତପୁର ନାମରେ ସୁପରିଚିତ । ବୌଦ୍ଧ ଧର୍ମର ତ୍ରିରତ୍ନ ଯଥା– ବୁଦ୍ଧ, ଧର୍ମ ଓ ସଂଘ ଜଗନ୍ନାଥ ଧର୍ମର ଏହା 'ଜଗନ୍ନାଥ' 'ବଳଭଦ୍ର' ଓ 'ସୁଭଦ୍ରା' ଭାବେ ପରିଚିହ୍ନିତ । ଜଗନ୍ନାଥ ଧର୍ମ ଓ ସଂସ୍କୃତିର ଉପାସ୍ୟ ଦେବତା ଅସମ୍ପୂର୍ଣ୍ଣ ଚତୁର୍ଦ୍ଧାମୂର୍ତ୍ତି ବୁଦ୍ଧଗୟାର ବୁଦ୍ଧଙ୍କ ଅସମ୍ପୂର୍ଣ୍ଣ ମୂର୍ତ୍ତି ସହିତ ବେଶ୍ ତୁଳନୀୟ । ଏତଦ୍ 'ବୁଦ୍ଧଗୟା' ଇଂରାଜୀ ଗ୍ରନ୍ଥରେ ଡକ୍ଟର ରାଜେନ୍ଦ୍ର ଲାଲ ମିତ୍ର ସୂଚାଇଛନ୍ତି ଯେ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଆରମ୍ଭରୁ ହିନ୍ଦୁମାନେ ବୁଦ୍ଧଦେବଙ୍କୁ ଅବତାରର ମାନ୍ୟତା ଦେଇଆସିଛନ୍ତି । 'ଗୟା ମାହାତ୍ମ୍ୟ' ଓ 'ଉତ୍କଳ ମାହାତ୍ମ୍ୟ' ବର୍ଣ୍ଣନା ଅନୁଯାୟୀ ପୁରୁଷୋତ୍ତମ ଶ୍ରୀବିଷ୍ଣୁ ଗୟାସୁରକୁ ବଧ କରି ସଂସାରରେ ସତ୍ୟ ଓ ଶାନ୍ତି ପ୍ରତିଷ୍ଠା କଲେ । ଗୟାସୁରର ନିଧନ ପରେ ତା'ର ହୃଦୟ ଯାଜପୁର, ନାଭି ଶ୍ରୀପୁରୁଷୋତ୍ତମ (ଶ୍ରୀକ୍ଷେତ୍ର)ରେ ପତିତ ହୋଇଥିଲା । ଭଗବାନ ଶ୍ରୀବିଷ୍ଣୁଙ୍କ ଧର୍ମ ସଂସ୍ଥାପନର ସ୍ମାରକୀ ସଦୃଶ ଗୟାରେ ପାଦପଦ୍ମ, କୋଣାର୍କରେ ପଦ୍ମ, ଯାଜପୁରରେ ଗଦା, ଭୁବନେଶ୍ୱରରେ ଚକ୍ର ଓ ପୁରୀରେ ଶଙ୍ଖ ରଖିଯାଇଥିଲେ । ପୁରୀ ଶଙ୍ଖକ୍ଷେତ୍ରରେ ନିର୍ମିତ ଅନେକ ବୌଦ୍ଧସ୍ତୂପ ଓ ମନ୍ଦିର ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ ଅଥବା ବୈଷ୍ଣବ ପୂଜାର ପୀଠସ୍ଥଳୀରେ ପରିଣତ ହୋଇଯାଇଛି । କେତେକ ଗବେଷକଙ୍କ ମତରେ ପ୍ରାଚୀନ ବୌଦ୍ଧପୀଠ, ବୌଦ୍ଧ

ଦେବଦେବୀ, ବୌଦ୍ଧ ପରମ୍ପରା (ରଥଯାତ୍ରା) ଓ ବୌଦ୍ଧମୂର୍ତ୍ତି ଏବର ଜଗନ୍ନାଥ ସଂସ୍କୃତିରେ ବିଲୀନ ହୋଇ ଶ୍ରୀବିଷ୍ଣୁ (ଜଗନ୍ନାଥ) ସର୍ବସ୍ୱ ହୋଇଯାଇଥିବା ଦୃଷ୍ଟିକୁ ଆସିଛି ।

ଜଗନ୍ନାଥ, ଧର୍ମ, ସଂସ୍କୃତି ଓ ପରମ୍ପରାରେ ବୌଦ୍ଧଧର୍ମର ପ୍ରତିଫଳନ ବେଶ୍ ସୁସ୍ପଷ୍ଟ । ବହୁ ତତ୍ତ୍ୱଦର୍ଶୀ ଗବେଷକ ସ୍ୱୀକାରପୂର୍ବକ ଉଲ୍ଲେଖ କରିଅଛନ୍ତି ଯେ, ଶ୍ରୀମନ୍ଦିର ରତ୍ନବେଦୀରେ ବିରାଜିତ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧ 'ତ୍ରିରତ୍ନ'ର ପ୍ରତୀକ । ଉକ୍ତ ତ୍ରିମୂର୍ତ୍ତିଙ୍କ ସହ ସୁଦର୍ଶନକୁ ଯୁକ୍ତିକରି ଯେଉଁ ଚତୁର୍ଦ୍ଧାମୂର୍ତ୍ତିର ପରିକଳ୍ପନା ହୋଇଛି ଉକ୍ତ ସ୍ତମ୍ଭାକାର ସୁଦର୍ଶନ ତାନ୍ତ୍ରିକ ବୌଦ୍ଧଧର୍ମର ବଜ୍ର ସହିତ ତୁଳନୀୟ । ସେହିପରି ଜଗନ୍ନାଥ ସଂସ୍କୃତିର ମହାନ୍ ପର୍ବ ଘୋଷଯାତ୍ରା ବା ରଥଯାତ୍ରା ବୌଦ୍ଧ ପରମ୍ପରାର ପ୍ରତିଫଳନ ବୋଲି ଅନେକ ଗବେଷକଙ୍କ ମତ । ଖ୍ରୀଷ୍ଟପୂର୍ବ କାଳରେ ପାଟଳିପୁତ୍ରରେ ବୁଦ୍ଧଦେବଙ୍କ ମୂର୍ତ୍ତିକୁ ରଥରେ ବସାଇ ଜନ୍ମ ଦିବସ ପାଳନ କରାଯାଉଥିବା ପରମ୍ପରାକ୍ରମେ ଏବର ରଥଯାତ୍ରାରେ ପରିଣତ ହୋଇଥିବା ଅନେକଙ୍କ ମତ । ରଥଯାତ୍ରା ବେଳେ ଶ୍ରୀଜୀଉଙ୍କ ଗଜାନନ ବେଶ ଅତୀତ ବୌଦ୍ଧ ସଂସ୍କୃତିରୁ ଆନୀତ ହୋଇଥିବା ବିଶ୍ୱାସ କରାଯାଏ । ଭଗବାନ ବୁଦ୍ଧ ସ୍ୱୟଂ ହସ୍ତୀରୂପେ ପରିକଳ୍ପିତ ହୋଇଥିବାରୁ ବୌଦ୍ଧ ପରମ୍ପରାରେ ଗଜସ୍ନାନ ଅନ୍ୟତମ । ଏହି ଦୃଷ୍ଟିରେ ଜ୍ୟେଷ୍ଠପୂର୍ଣ୍ଣିମା ତିଥିରେ ଦେବସ୍ନାନ ଯାତ୍ରା ଅବସରରେ ସ୍ନାନ ମଣ୍ଡପରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଗଜାନନ ବେଶ ହୋଇ ଭକ୍ତମାନଙ୍କୁ ଦର୍ଶନ ଦାନ ଦିଅନ୍ତି । ଏହି ପରମ୍ପରା ଯେ ବୌଦ୍ଧ ସଂସ୍କୃତିର ପ୍ରଭାବ ତାହା ଜନମାନସରେ ଗ୍ରହଣୀୟ ହୋଇପାରିଛି ।

ଜଗନ୍ନାଥ ସଂସ୍କୃତିରେ ମହାପ୍ରସାଦ ବା ଅବଢା ଅତ୍ୟନ୍ତ ପବିତ୍ର ଓ ପାପନାଶକ । ମହନୀୟତା ହେଉଛି ଅବଢା ଉଚ୍ଛିଷ୍ଟ ବା ଅଇଁଠା ହୁଏନାହିଁ । ଆଚାଣ୍ଡାଳ, ବ୍ରାହ୍ମଣ ଏହାକୁ ଏକାଠି ବସି ସେବନ କରିବାର ବିଧି ଜଗନ୍ନାଥ ସଂସ୍କୃତିର ଅନନ୍ୟ ପରମ୍ପରା । ମହାପ୍ରଭୁ ଶ୍ରୀଜଗନ୍ନାଥ ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗର ପ୍ରାଚୀର ଅପସାରଣପୂର୍ବକ ସମସ୍ତଙ୍କୁ ଏକାକାର କରିଦେଇଛନ୍ତି । ଠିକ୍ ସେହିପରି ମୋକ୍ଷପ୍ରାପ୍ତି ନିମିତ୍ତ ବୁଦ୍ଧଦେବ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଭେଦଭାବ ଦୂରୀକରଣ ପୂର୍ବକ ଏକତ୍ର ଭୋଜନର ସୂତ୍ରପାତ କରାଇଥିଲେ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନବକଳେବର ୧୨ବର୍ଷରେ ଥରେ (ଯୋଡା ଆଷାଢ– ଯେଉଁ ବର୍ଷ ଦୁଇଟି ଆଷାଢ ପଡେ) ଅତ୍ୟନ୍ତ ଶ୍ରଦ୍ଧା ଓ ନିଷ୍ଠାର ସହିତ ଅନୁଷ୍ଠିତ ହୁଏ । ବିଶେଷ କରି ନବକଳେବର ସମୟରେ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମ, ବୀଜ ବା ଦନ୍ତ ଧାତୁକୁ ନୂଆ କାଷ୍ଠ ମୂର୍ତ୍ତିରେ ସ୍ଥାନାନ୍ତରିତ କରାଯାଏ । ଉକ୍ତ ସମୟରେ ଅନେକ ଗୁପ୍ତ ତାନ୍ତ୍ରିକ ପଦ୍ଧତି (ପୂଜା ଉପଚାର) ପଞ୍ଚମକାର ପ୍ରକ୍ରିୟାରେ ସମାହିତ ହୋଇଥାଏ । ଯାହାକି ସମ୍ପୂର୍ଣ୍ଣ ରୂପେ ବୌଦ୍ଧ ତାନ୍ତ୍ରିକ ପଦ୍ଧତିର ଅନୁକରଣରେ ଅନୁଷ୍ଠିତ ହେଉଥିବା ମହାତାନ୍ତ୍ରିକ ଗବେଷକଙ୍କ ମତ ।

ପରମପୁରୁଷ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହିଁ ପୂର୍ଣ୍ଣବ୍ରହ୍ମ ନିର୍ଗୁଣ ଓ ନିରାକାର । ସେ ସାକାର ରୂପ ଧାରଣ ପୂର୍ବକ ବୁଦ୍ଧ ରୂପରେ ଜଗତର କଲ୍ୟାଣ କାମନାର୍ଥେ ଆବିର୍ଭୂତ ହୋଇ ସତ୍‌କର୍ମ, ସତ୍‌ଚିନ୍ତା, ସତ୍‌ବିଶ୍ୱାସ, ସତ୍ ଜୀବନଯାପନ, ସତ୍ ଉଦ୍ୟମ ଭଳି ଦିବ୍ୟପଥର ମାର୍ଗଦର୍ଶନ କରାଇଛନ୍ତି । ଠିକ୍ ସେହିପରି ପତିତପାବନ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦୀନଜନଙ୍କ ଉଦ୍ଧାରଣ ନିମିତ୍ତ ହସ୍ତପ୍ରସାରୀ ଦିବ୍ୟ ନୀଳାଚଳଧାମରେ ଦାରୁଭୂତ ସମ ବିରାଜମାନ କରିଅଛନ୍ତି । ଯାହାଙ୍କ ପଲକ ମାତ୍ର କରୁଣା ଲାଭ କରି ଜୀବ ଧନ୍ୟ ହୋଇଥାଏ । ଏଣୁ କରୁଣାର ଅବତାର ଭଗବାନ ଗୌତମବୁଦ୍ଧ ଅବତାରୀ ପୁରୁଷ ଶ୍ରୀଜଗନ୍ନାଥ (ବିଷ୍ଣୁ)ଙ୍କ ଅଙ୍ଗର ଅନ୍ୟଏକ ପ୍ରକାଶମାତ୍ର । ତତ୍ତ୍ୱତଃ ଶ୍ରୀଜଗନ୍ନାଥ ହିଁ ବୁଦ୍ଧ ରୂପରେ କଳିକାଳରେ ଭବଭୀରୁ ପ୍ରାଣୀଙ୍କୁ ଉଦ୍ଧାର କରୁ ଅଛନ୍ତି ।

ଖୁଣ୍ଟୁଣୀ
ଆଠଗଡ, କଟକ

# ଜୟ ଶ୍ରୀଜଗନ୍ନାଥ– ଏକକ ପରିଚୟ

**ଡକ୍ଟର ଦୁର୍ଗାପ୍ରସନ୍ନ ଚୌଧୁରୀ**

ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳ କମଳେ ରତ୍ନସିଂହାସନସ୍ଥମ୍
ସର୍ବାଳଙ୍କାରଯୁକ୍ତ ନବଘନ ରୁଚିରଂ ସଂଯୁକ୍ତଂ ଚାଗ୍ରଜେନ
ଭଦ୍ରାୟା ବାମଭାବେ ରଥଚରଣ ଯୁକ୍ତଂ ବ୍ରହ୍ମରୁଦ୍ରେନ୍ଦ୍ର ସେବିତଃ
ବେଦାନାଂ ଶାରମେକମ୍ ସ୍ୱଜନ ପରିବୃତ୍ତଃ ବ୍ରହ୍ମଦାରୁ ଉଦେଃହମ୍



ଉପରୋକ୍ତ ଶ୍ରୀଜଗନ୍ନାଥଙ୍କ ସ୍ତବ ଏକ ଯୁଗାନ୍ତକାରୀ, ବଳିଷ୍ଠ, ସ୍ୱତନ୍ତ୍ର ଓ ଅନନ୍ୟ ଅଟେ । ହେ ମହାପ୍ରଭୁ ! ତୁମେ ଶତଦଳ କମଳରେ ପରିବେଷ୍ଟିତ । ତୁମେ ସମଗ୍ର ଅଳଙ୍କାରଯୁକ୍ତ ଶରୀର ବହନ କରୁଛ । ତୁମେ ଦାରୁ, ବ୍ରହ୍ମ ଓ ସର୍ବତ୍ର ବିଦ୍ୟମାନ ସେ ଅନନ୍ତ, ସର୍ବପରିବ୍ୟାପି । ତାଙ୍କ ବିନା ଏ ସଚରାଚର ପୃଥିବୀ ଚଳଚଞ୍ଚଳ ବିହୀନ । ତାଙ୍କର ଅସ୍ତିତ୍ୱ ବିନା ମାନବ ଜାତିର ସ୍ଥିତି ଅସମ୍ଭବ । ହେ ଗ୍ରହାଧିରାଜ ନୀଳମାଧବ, ଚିରକୁମାର ଅବସ୍ୟମ୍ଭାବି ପୁରୁଷୋତ୍ତମ । ତୁମର ନିର୍ଦ୍ଦେଶରେ ସମସ୍ତ ସ୍ଥାବର, ଅସ୍ଥାବର ଜୀବକୋଷ, କୀଟ, କୀଙ୍କର ଜାଗ୍ରତ ହୋଇ ଉଠନ୍ତି । ଭକ୍ତ ଭାବବିହ୍ୱଳରେ ଯେତେବେଳେ ତାଙ୍କୁ ଭକ୍ତି କରନ୍ତି, ସେ ସନ୍ତୁଷ୍ଟ ହୋଇ ସମସ୍ତ ଦୁଃଖ ଲାଘବ କରିବା ପାଇଁ ପ୍ରଚେଷ୍ଟା କରିଥାଆନ୍ତି । ନିଜର ଇଚ୍ଛା, ମାୟା, ମାନସିକତା ତାଙ୍କ ନିକଟରେ ସମ୍ପୂର୍ଣ୍ଣ ସମର୍ପିତ କରିବା ମାନବ ସମାଜ ପାଇଁ ପ୍ରକୃତ ଉପଦେଶ ବୋଲି ମନେହୁଏ ।

ଶ୍ରୀଜୟଦେବ ମହାପ୍ରଭୁଙ୍କ ଏକ ପ୍ରମୁଖ ଭକ୍ତ । ଶ୍ରୀଜୟଦେବ ରଚିତ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଏକ ପ୍ରିୟ କାବ୍ୟ । ଗୀତଗୋବିନ୍ଦର ପଦ୍ୟାବଳୀ ମହାପ୍ରଭୁଙ୍କୁ ନିଦ୍ରା ଆଣିବାରେ ସହାୟକ ହୋଇଥାଏ । ସେଥିପାଇଁ ଶ୍ରୀଜୟଦେବ ପ୍ରତିଦିନ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାନ କରନ୍ତି । ନଚେତ ଶ୍ରୀଜଗନ୍ନାଥ ନିଜକୁ ଅନିଦ୍ରା, ଅନିଦ୍ରା ଲାଗେ ବୋଲି ଅନୁଭବ କରନ୍ତି । ଏହାର କାରଣ ସ୍ୱୟଂ ଶ୍ରୀଜଗନ୍ନାଥ ଅଟନ୍ତି । ଯେତେବେଳେ ଶ୍ରୀଜୟଦେବ ପଦ ପୂରଣ କରି ନପାରି ସ୍ନାନ କରିବାକୁ ପ୍ରସ୍ଥାନ କଲେ । ପଦ୍ମାବତୀ ଯେ କି ଶ୍ରୀଜୟଦେବଙ୍କ ପତ୍ନୀ, ତାଙ୍କର ଆଗମନକୁ ଅପେକ୍ଷା କଲେ । କିନ୍ତୁ ଭାବଗ୍ରାହୀ ଜନାର୍ଦ୍ଦନ ଶ୍ରୀଜଗନ୍ନାଥ ଭକ୍ତର ମନ ଜାଣିପାରି ଶ୍ରୀଜୟଦେବଙ୍କ ଛଦ୍ମବେଶରେ ଗୃହରେ ଆବିର୍ଭାବ କଲେ । ପଦ୍ମାବତୀ ସ୍ୱାମୀଙ୍କ ସହସା ପ୍ରତ୍ୟାବର୍ତ୍ତନ ଦେଖି ଆଶ୍ଚର୍ଯ୍ୟାନ୍ୱିତା ହେଲେ ଓ ସ୍ୱାମୀଙ୍କ ସହସା ଆଗମନର କାରଣ ଜାଣିବାକୁ ପ୍ରଶ୍ନ କଲେ । ଶ୍ରୀଜଗନ୍ନାଥ ଶ୍ରୀଜୟଦେବଙ୍କ ଛଦ୍ମ ବେଶରେ ଉତ୍ତର ଦେଲେ 'ପଦମନେ ପଡିଲା ସେଥିପାଇଁ ମନ୍ତ୍ରସ୍ନାନ କରି ପ୍ରତ୍ୟାବର୍ତ୍ତନ କଲି' । ଆହାର ପରିବେଷଣ କରିବା ପାଇଁ ବ୍ୟବସ୍ଥା କରିବାକୁ ପଦ୍ମାବତୀଙ୍କୁ ଛଦ୍ମବେଶୀ ମହାପ୍ରଭୁ ଅନୁରୋଧ କଲେ । ଯେତେବେଳେ ପଦ୍ମାବତୀ ଖାଦ୍ୟ ପରିବେଷଣ କରିବାକୁ ପ୍ରସ୍ଥାନ କଲେ, ସେତେବେଳେ, ମହାପ୍ରଭୁ ଗୀତଗୋବିନ୍ଦରେ 'ଦେହି ପଦ ପଲବ ମୁଦାରମ୍' ପଦକୁ ନିଜେ ଲେଖିଦେଲେ । ତତ୍‌ପରେ ପଦ୍ମାବତୀ ଖାଦ୍ୟ ପରିବେଷଣ କଲେ । ମହାପ୍ରଭୁ ଖାଦ୍ୟ ଭୋଜନ କଲେ । ତା'ପରେ ପଦ୍ମାବତୀ ସେହି ଥାଳିରେ ସ୍ୱାମୀଙ୍କ ଉଚ୍ଛିଷ୍ଟରେ ନିଜର ଖାଦ୍ୟ ପରିବେଷଣ କରି

ଭୋଜନ କଲେ । ଇତିମଧ୍ୟରେ ମହାପ୍ରଭୁ ଅନ୍ତର୍ଦ୍ଧାନ ହେଲେ । କିନ୍ତୁ ବିଚିତ୍ର କଥା ହେଲା ଶ୍ରୀଜୟଦେବ ସ୍ନାନାନ୍ତେ ଗୃହରେ ପ୍ରବେଶ କଲେ ଓ ଭୋଜନ ପରିବେଷଣ କରିବାକୁ କହିଲେ । ପଦ୍ମାବତୀ ଶ୍ରୀଜୟଦେବଙ୍କୁ ଦେଖି ନିଜର କୋହ ରଖିପାରିଲେନି ଓ ନିଜକୁ ଆଶ୍ଚର୍ଯ୍ୟାନିତ୍ୱ ମନେ କଲେ । ପଦ୍ମାବତୀ ଶ୍ରୀଜୟଦେବ ନିଜେ ଭୋଜନ କରିବା କଥା ପ୍ରକଟ କଲେ । କିନ୍ତୁ ଶ୍ରୀଜୟଦେବ ଯେକି ମହାପ୍ରଭୁଙ୍କ ଅପୂର୍ବ ଭକ୍ତ ସମସ୍ତ କଥା ବୁଝିନେଲେ ଓ ଗୀତଗୋବିନ୍ଦ ଖୋଲି ଦେଖିଲେ ମହାପ୍ରଭୁ ନିଜେ ତାଙ୍କର ପଦପୂରଣ କରିଯାଇଛନ୍ତି । ତେଣୁ ସେ ନିଜକୁ ଧନ୍ୟ ମନେକରି ମହାପ୍ରଭୁଙ୍କୁ ଯୋଡହସ୍ତରେ ପ୍ରଣିପାତ କରି ପଦ୍ମାବତୀଙ୍କ ଉଚ୍ଛିଷ୍ଟ ଥାଳିରେ ବସି ପଡିଲେ । ପଦ୍ମାବତୀଙ୍କ ବାରଣ ସତ୍ତ୍ୱେ ଶ୍ରୀଜୟଦେବ ସେହି ଥାଳିରେ ଥିବା ଅନ୍ନଭକ୍ଷଣ କଲେ । ଶ୍ରୀଜୟଦେବ କହିଲେ 'ହେ ପଦ୍ମାବତୀ, ତୁମେ ମହାପ୍ରଭୁଙ୍କ ଉଚ୍ଛିଷ୍ଟ ଭକ୍ଷଣ କରି ଧନ୍ୟ ହେଲ ମୁଁ ସେହି ଭାବଗ୍ରାହୀଙ୍କ ଉଚ୍ଛିଷ୍ଟ ଭକ୍ଷଣ କରି ଧନ୍ୟ ହେଉଛି । ମୋର ଛଦ୍ମବେଶରେ ଯେ ଆସିଥିଲେ, ସେ ହିଁ ଶ୍ରୀଜଗନ୍ନାଥ । ସେ ଗୀତଗୋବିନ୍ଦ ପଦପୂରଣ କରି ଓ ଆମ ଘରେ ଭୋଜନ କରି ଆମକୁ ତାଙ୍କ ପାଦତଳେ ସଦାସର୍ବଦା ଆଶ୍ରୟ ଦେଇଛନ୍ତି । ମୁଁ ତାଙ୍କୁ କୋଟି କୋଟି ନମନ କରୁଛି ।' ପଦ୍ମାବତୀ ଭାବବିହ୍ୱଳ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଏହା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭକତ ପାଇଁ ଦରଦ ନୁହେଁ ତ ଆଉ କ'ଣ ହୋଇପାରେ । ମହାପ୍ରଭୁ ତୁମେ ଅପାର କୃପାମୟ, ଦୟାମୟ ଓ ସମସ୍ତ ଦୁଃଖ ସୁଖର ସାଥୀ ।

ସେତିକି ନୁହେଁ ମହାପ୍ରଭୁ ଦାସିଆ ବାଉରୀର ଦୁଃଖ ସମ୍ଭାଳି ନପାରି ନିଜେ ଭକ୍ତର ନଡିଆ ଗ୍ରହଣ କରି ସମସ୍ତ ଜାତି, ଉପଜାତି ଆଦି ମଧ୍ୟରେ ଅନ୍ତର ନାହିଁ ବୋଲି ପ୍ରମାଣିତ କଲେ । ସେ କେବଳ ଭାବର ସାଥୀ । ସେହିପରି ଭକ୍ତ ସାଲବେଗ ଯବନ ହୋଇ ମହାପ୍ରଭୁଙ୍କୁ ଡାକିଲେ । ତାଙ୍କ ଡାକ ଶୁଣି ନିଜେ ନିଜକୁ ତାଙ୍କ ସମ୍ମୁଖରେ ପ୍ରକଟ କଲେ । ତେଣୁ ତାଙ୍କ ପାଖରେ ଧର୍ମ, ଜାତି ଇତ୍ୟାଦି କିଛି ବୋଲି ନାହିଁ । ସେ ହିନ୍ଦୁଙ୍କ ପାଇଁ ଦେବତା ଖାଲି ନୁହଁନ୍ତି, ବରଂ ସେ ସମସ୍ତ ମାନବ ଜାତି ପାଇଁ ନିଜକୁ ସମର୍ପି ଦେଇଛନ୍ତି । ତାଙ୍କର ମାୟା ସଚରାଚର । ସେଥିପାଇଁ ହିନ୍ଦୁଧର୍ମ ସନାତନ ଧର୍ମ । ଧର୍ମର ବ୍ୟାଖ୍ୟା ସ୍ୱୟଂ ଶ୍ରୀଜଗନ୍ନାଥ କରିଛନ୍ତି ସେ ସ୍ଥିର, ପରିଷ୍କାର, ମାୟାହୀନ, ଗୁଣବନ୍ତ, ଶାନ୍ତ, କମନୀୟ, ଦୟାର ଅବତାର ଅଟନ୍ତି । ସେ ଭକ୍ତର ହୃଦୟରେ ଅବସ୍ଥାନ କରନ୍ତି । ନିଜକୁ ସମ୍ପୂର୍ଣ୍ଣ ସମର୍ପଣ ତାଙ୍କ ପାଇଁ ପ୍ରକୃତ ପୁଷ୍ପାଞ୍ଜଳି ବୋଲି ବୁଝିବାକୁ ହେବ ।

ସ୍ୱର୍ଗତ କବି ଭିକାରୀ ବଳଙ୍କ ଭାଷାରେ 'କୋଠ ଭୋଗଖିଆ ହେ ଚକା ଆଖିଆ'ର ଅର୍ଥ ତାଙ୍କ ପାଇଁ ପ୍ରକୃଷ୍ଟ ଭାଷା କାରଣ ତାଙ୍କର ଚକା ଆଖି ସମସ୍ତ ମାନବ ଜାତିକୁ ଦେଖୁଛନ୍ତି । କୋଠଭୋଗଖିଆର ଅର୍ଥ ସେ ସମସ୍ତଙ୍କ ଅର୍ପିତ ଭୋଗ ନିଜେ ଗ୍ରହଣ କରିବାକୁ ସମକ୍ଷ ଅଟନ୍ତି । ଡାକ୍ତର କବି ପ୍ରସାଦ ମିଶ୍ରଙ୍କ ରଚିତ 'ବାଇଶ ପାହାଚ'ରେ ମଧ୍ୟ ଭାବଗ୍ରାହୀଙ୍କ ଭାବର ନିଦର୍ଶନ ପ୍ରଚ୍ଛନ୍ନ ଭାବେ କରାଯାଇଛି । ସେ ଯେଭଳି ଠାକୁରଙ୍କୁ ଦେଖିଲେ ଓ ଅନୁଭବ କଲେ ସେ ତାଙ୍କୁ ସେଭଳି ଲାଗେ ବୋଲି ବର୍ଣ୍ଣନା କରିଛନ୍ତି । ଧନ୍ୟ ମହାପ୍ରଭୁ ଆପଣ ଯୁଗୋପଯୋଗୀ ପରମପୁରୁଷ ।

ଶ୍ରୀଯୁକ୍ତ ଚନ୍ଦ୍ରଭାନୁ ଶତପଥୀଙ୍କ ଭାଷାରେ ଶ୍ରୀ ଶିରିଡି ସାଇ ବାବା ମଧ୍ୟ ଭଗବାନଙ୍କ ଅବତାର । ପ୍ରକୃତରେ ଶ୍ରୀଜଗନ୍ନାଥ ଏକକ ଓ ଶ୍ରୀ ଶିରିଡି ସାଇ ବାବା ମଧ୍ୟ ଜାତି, ଭାଷା ଓ ମାନବ ଜାତିର ଉନ୍ନତି ପାଇଁ ଉଦ୍ଦିଷ୍ଟ । ଭଗବାନ ସମୟାନୁଯାୟୀ ବିଭିନ୍ନ ଅବତାରରେ ଅବତୀର୍ଣ୍ଣ ହୋଇଥାଆନ୍ତି । ଶ୍ରୀଜଗନ୍ନାଥ ମଧ୍ୟ ଅବତାର ନେଇ ଅବତୀର୍ଣ୍ଣ । ମତ୍ସ୍ୟ, କଶ୍ଚପ୍ୟ ଇତ୍ୟାଦି ବିଭିନ୍ନ ଅବତାର ନେଇ ଭଗବାନ ପ୍ରକଟିତ । ବିଭିନ୍ନ ମହାପୁରୁଷଙ୍କ ମାଧ୍ୟମରେ ମଧ୍ୟ ଭଗବାନ ଆବିର୍ଭାବ କରିଥାନ୍ତି । ଯଥା ଶ୍ରୀସତ୍ୟ ସାଇ ବାବା, କବିର, ଶ୍ରୀନିଗମାନନ୍ଦ ଓ ବିଭିନ୍ନ ମହାପୁରୁଷମାନେ ଭଗବାନଙ୍କ ବାର୍ତ୍ତା ନେଇ ଅବତୀର୍ଣ୍ଣ ହୋଇଥାନ୍ତି । ସେହିପରି ଶ୍ରୀଶିରିଡି ସାଇ ବାବୁ ଭଗବାନଙ୍କ ବାର୍ତ୍ତା ତଥା ସ୍ୱରୂପ ବହନ କରି ସର୍ବତ୍ର ଭକ୍ତର ମନବାଞ୍ଛା ପୂରଣ କରୁଛନ୍ତି । ସେହି ମହାପୁରୁଷ ମହାପ୍ରଭୁଙ୍କ ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ । ଏଣୁ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରିବା ଅର୍ଥ ସମସ୍ତ ଦେବାଦେବୀ ଓ ମହାପୁରୁଷଙ୍କୁ ସମର୍ପଣ କରିବା । ସେହିପରି ଉପରୋକ୍ତ ମହାପୁରୁଷଙ୍କୁ ନିଜକୁ ସମର୍ପଣ କରିବା ଅର୍ଥ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରିବା ।

ଶ୍ରୀଜଗନ୍ନାଥ ସର୍ବ ବିଦ୍ୟମାନ ଓ ସମଗ୍ର ପୃଥିବୀରେ ମଧ୍ୟ ଅନୁଭବନୀୟ । ଏହି ଲେଖକ ଗତ ରଥଯାତ୍ରା ସଂସ୍କରଣରେ ନିଜର ଅନୁଭୂତି ପ୍ରକଟିତ କରିଥିଲା । ଠିକ୍ ଏହି ଅବସରରେ ସେ ନିଜ ପୁତ୍ର ଓ ବଧୂଙ୍କ ଆମେରିକାସ୍ଥିତ କେଣ୍ଟକି ରାଜ୍ୟରେ ଥିବା ବାସସ୍ଥାନକୁ ଯାତ୍ରା କରିଥିଲା । ସେ ରାଜ୍ୟ ଖାଲି ଚାରିଚକିଆ ଗାଡି, ଗୋରା ଲୋକ ଓ ସବୁଜ ବନାନୀରେ ଭରପୂର । କିନ୍ତୁ ଏଠାରେ ଜନଶୂନ୍ୟ, କୁଆ କୋଇଲି ମଧ୍ୟ ନାହାଁନ୍ତି । ନିଜ ପୁତ୍ରର ବାସଭବନରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ମା ସୁଭଦ୍ରାଙ୍କ ମୂର୍ତ୍ତି ବିରାଜମାନ ଦେଖି ନିଜକୁ ଧନ୍ୟ ମନେ କରିଥିଲା । ସେହି ମହାପ୍ରଭୁଙ୍କ କୃପାରୁ ଓ ଆଜ୍ଞାରେ ଗତବର୍ଷ ପୁତ୍ରର ବିଭାଘର

ହୋଇଥିଲା । ତାଙ୍କର ଆଜ୍ଞାରେ ପୁତ୍ରବଧୂ ମଧ୍ୟ ଶ୍ରୀଠାକୁରଙ୍କୁ ଆଣି ବାସଭବନରେ ଅବସ୍ଥାନ କରିଛି । ଏହା ତାଙ୍କର ଲୀଳା ନୁହେଁ ତ ଆଉ କ'ଣ ହୋଇପାରେ । ସେଠାରେ ମନ୍ଦିର ନାହିଁକି ଅଲଗା ଠାକୁର ଘର ନାହିଁ, ଆସ୍ଥାନ ମଧ୍ୟ ଅଲଗା ନାହିଁ । ଭୋଗ ନାହିଁ, ଫୁଲ ନାହିଁ କିନ୍ତୁ ଅଛନ୍ତି ବିଗ୍ରହ । ଧୂପଦୀପର ଅର୍ଘ୍ୟ । ଦୁଇଜଣଯାକ ଧୂପଦେଇ କାର୍ଯ୍ୟସ୍ଥଳୀକୁ ଯାଆନ୍ତି ଓ ମନରେ ପ୍ରଭୁଙ୍କୁ ଡାକନ୍ତି । ମୁଁ ଅନୁଭବ କଲି, ପ୍ରକୃତରେ ମହାପ୍ରଭୁ ସେହି ଆମେରିକାସ୍ଥିତ ବାସଭବନରେ ମଧ୍ୟ ବିଦ୍ୟମାନ । ସତେ ଯେପରି ସେ କିଛି ଚାହାଁନ୍ତି ନାହିଁ । ଖାଲି ଚାହାଁନ୍ତି ଭକ୍ତି ଓ ନିଷ୍ଠା । ନିଜ କର୍ତ୍ତବ୍ୟରେ ଉପଯୁକ୍ତ ସେବା ପ୍ରଦାନ କରିବା । ଆମେ ବଜାରକୁ ଚାଲିଗଲେ ବି ଲାଗେ ସତେ ଯେପରି ମହାପ୍ରଭୁ ସ୍ୱୟଂ ଗୃହରେ ବିରାଜମାନ କରି ଗୃହକୁ ସାଫଲ୍ୟମଣ୍ଡିତ କରିଛନ୍ତି । ଏତ ତାଙ୍କର ମହିମା । ଭାବବିହ୍ୱଳରେ ଏ ଲେଖକ ଅଧିକ କିଛି ଲେଖନୀରେ ଉପସ୍ଥାପନ କରିପାରୁନାହିଁ । ଚକ୍ଷୁରୁ ଭାବାଶ୍ରୁ ଢାଳି ସେହି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିଜକୁ ସମର୍ପଣ କରୁଛି ।

ଶେଷରେ ଏତିକି କହିବା ବାହୁଲ୍ୟ ଯେ ଶ୍ରୀଜଗନ୍ନାଥ ଅଲୌକିକ, ଶାନ୍ତ ଓ ଭକ୍ତର ବେଦନାଗ୍ରାହୀ । ତାଙ୍କର ଏକକକୁ ସ୍ୱୀକାର କରିବା ମାନବ ଜାତି ପାଇଁ ଏକ ଶ୍ରେଷ୍ଠ ପୁଷ୍ପାଞ୍ଜଳି ବୋଲି ଧରାଯିବ । ହେ ମହାପ୍ରଭୁ ତୁମକୁ କୋଟି କୋଟି ମୋର ପ୍ରଣାମ ।

ନିର୍ଦ୍ଦେଶକ
ଓଡ଼ିଶା ଜୁଡିସିଆଲ୍ ଏକାଡେମୀ

---

# ଭାବ ବିନୋଦିଆ

**ଗୋପାଳ ଚନ୍ଦ୍ର ବାରିକ**

ଭାବର ଭାବରେ ଭାବ ବିନୋଦିଆ
ଭାବର ସେ ଭାବଗ୍ରାହୀ
ଭାବର ଭାବରେ ଭାବ ଦିଏ ନିଏ
ଭାବର ସେ ଗୁଣଗ୍ରାହୀ
ଭାବର ଭାବରେ କରେ ସେ ଅନ୍ତର
ଭାବରେ କରେ ନିଜର
ଭାବରେ ସେ ଠାକୁର ଭାବରେ ଅଇଁଠା
ଭାବରେ ଖାଏ ସେ ଖୁଦଭଜା
ଭାବର ଭାବରେ ଆଦର
ଭାବରେ ନିଏ ସେ ଶାଗଭଜା
ଭାବରେ କରେ ସୁନ୍ଦରୀ
ଭାବରେ ଭାବରେ ପଦ ବାଜି ତାର
ପଥର ହୋଇଛି ନାରୀ
ଭାବରେ ନଚାଇ ଭାବରେ ମଜାଇ
ଭାବରେ ବାତୁଳି କରି



ଭାବରେ ଶ୍ରୀରାଧା ପାଇ ଅପନିନ୍ଦା
ଗୋପରେ ଦେଇଛି କାଳି
ଭାବରେ ଯଶୋଦା ମାତା
ପୁତ୍ର ସ୍ନେହେ ଅନ୍ଧ ହୋଇ ସେ ଭାବରେ
ଭାବରେ ପାଇଲେ ନିନ୍ଦା ।
ଭାବର ଭାବରେ ଏ କଳିଯୁଗରେ
ଦାରୁ ମୂରତି ହୋଇ
ହାତ ପାଦ ତେଣୁ ନାହିଁ
ନାମଟି କେବଳ ସାର
ଭାବକୁ ନିକଟ ଅଭାବକୁ ଦୂର
ଏଇଟି ମନ୍ତ୍ର ତାହାର ।

ଶ୍ରୀରାମ ନଗର
ମଧୁପାଟଣା, କଟକ–୭୫୩୦୧୦

# ଦାମ୍ପତ୍ୟ ଅଭିମାନର ମଧୁର ରାଗିଣୀ – ହେରାପଞ୍ଚମୀ

**ଦେବାଶିଷ ଚକ୍ରବର୍ତ୍ତୀ**

ଆନନ୍ଦରୁ ଜୀବନ ଆସିଛି । ତେଣୁ ମନୁଷ୍ୟ ଚିରକାଳ ଆନନ୍ଦର ସଂଧାନ କରି ଆସିଛି । ମାତ୍ର ଭୌତିକ ଆନନ୍ଦ ସୁରା ପରି । ଏହା ତାକୁ ପ୍ରମତ୍ତ କରେ ସିନା ତାର ତୃଷ୍ଣାକୁ ପ୍ରଶମିତ କରିପାରେ ନାହିଁ । ସେଇଥିପାଇଁ ମୁନିଋଷି ତଥା ସମାଜ ସଂସ୍କାରକମାନେ ସାଂସାରିକ ସୁଖ ସହିତ ଈଶ୍ୱରୀୟ ଆନନ୍ଦ ଲାଭ ପାଇଁ ନାନାବିଧ ଉତ୍ସବର ପରିକଳ୍ପନା କରିଛନ୍ତି । ପରବର୍ତ୍ତୀ କାଳରେ ବିଭିନ୍ନ ଉତ୍ସବ ଦେବାଦେବୀଙ୍କ ସହିତ ଜଡିତ ହୋଇପଡିବା ଫଳରେ ଏହାର ଆଧ୍ୟାତ୍ମିକ ଗୁରୁତ୍ୱ ବୃଦ୍ଧି ପାଇଛି । ମର୍ତ୍ତ୍ୟବୈକୁଣ୍ଠ ଭାବରେ ପରିଚିତ ଶ୍ରୀକ୍ଷେତ୍ରର କ୍ଷେତ୍ରାଧିପତି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଲୀଳା ବର୍ଷସାରା ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଥାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନରେ ମାନବୋଚିତ ଆଚରଣ ସ୍ପଷ୍ଟ ପରିଲକ୍ଷିତ ହୋଇଥାଏ । ସାଧାରଣ ମଣିଷଟିଏ ପରି ସେ ସକାଳୁ ଉଠି ନିତ୍ୟକର୍ମ ସାରନ୍ତି । ସ୍ନାନ କରନ୍ତି । ବେଶ ବଦଳାନ୍ତି । ଭୋଜନ କରନ୍ତି । ବିଡିଆ ପାନ ମଧ ଖାଆନ୍ତି । ଏପରିକି ଗୀତ ଶୁଣି ଶୁଣି ନିଦ୍ରା ଯାଆନ୍ତି । ସେଇଥି ପାଇଁତ ସେ ସଖା ପରି ଭକ୍ତର ଏତେ ଆପଣାର ମନେ ହୁଅନ୍ତି ।

ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ରଥଯାତ୍ରା ଶ୍ରେଷ୍ଠ ଯାତ୍ରାର ମାନ୍ୟତା ପାଇଛି । ହେରାପଞ୍ଚମୀ ଏହାର ଉପଯାତ୍ରା ଭାବରେ ଗୃହୀତ ହୋଇଛି । ବଡଭାଇ ବଡ ଠାକୁର ଶ୍ରୀବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହିତ ମହାପ୍ରଭୁ ଶ୍ରୀଜଗନ୍ନାଥ ମାଉସୀ ଘରକୁ ଯାଇଥିବାରୁ ଅଧୀରା ହୋଇ ମହାଲକ୍ଷ୍ମୀ ପ୍ରାଣପ୍ରିୟଙ୍କ ସନ୍ଧାନରେ ବାହାରିଥିବାରୁ କେହି କେହି ଏହାକୁ 'ହାରାପଞ୍ଚମୀ' ବୋଲି କହିଥାନ୍ତି । ମତାନ୍ତରରେ ଅହୋରାତ୍ର ମହାପ୍ରଭୁଙ୍କ ବିରହରେ ଅଧୀରା ହୋଇ ମହାଲକ୍ଷ୍ମୀ ତାଙ୍କ ଦର୍ଶନରେ ଯାଇଥିବାରୁ କବିକର୍ଣ୍ଣପୁର ଗୋସ୍ୱାମୀ 'ଚୈତନ୍ୟ ଚନ୍ଦ୍ରୋଦୟ' ନାଟକରେ ଏହାକୁ 'ହେରାପଞ୍ଚମୀ' ଭାବରେ ଉଲ୍ଲେଖ କରିଛନ୍ତି । ମାତ୍ର ବିରହାତୁରା ମହାଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କୁ ହେରିବା (ଦର୍ଶନ କରିବା) ପାଇଁ ଶ୍ରୀମନ୍ଦିରକୁ ଯାଇଥିବାରୁ ଏହି ଉତ୍ସବର ନାମ 'ହେରାପଞ୍ଚମୀ' ହେବା ଅଧିକ ସମୀଚୀନ ମନେହୁଏ । ଏହି ଉତ୍ସବଟି ଆଷାଢ ଶୁକ୍ଳ ଷଷ୍ଠୀ ତିଥିରେ ଅନୁଷ୍ଠିତ ହେଉଥିଲେ ମଧ୍ୟ ରଥଯାତ୍ରାର ପଞ୍ଚମ ଦିବସରେ ଅନୁଷ୍ଠିତ ହେଉଥିବାରୁ ଏହା 'ହେରାପଞ୍ଚମୀ' ଭାବରେ ପରିଚିତି ଲାଭ କରିଛି ।

ଶ୍ରୀମନ୍ଦିରର ରତ୍ନବେଦୀରେ ଅଧିଷ୍ଠିତ ହୋଇ ତିନି ଧୂପ ଓ ପାଞ୍ଚ ଅବକାଶ ମାଧ୍ୟମରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଐଶ୍ୱର୍ଯ୍ୟ ଲୀଳାକୁ ପ୍ରକଟ କରୁଥିଲେ ମଧ୍ୟ ଭକ୍ତଗଣଙ୍କ ସହ ମାଧୁର୍ଯ୍ୟ ଲୀଳା ପ୍ରକାଶରେ କାର୍ପଣ୍ୟ କରିନଥାନ୍ତି । ମହାପ୍ରଭୁଙ୍କ ଲୀଳା ଯେ ମାନବୋଚିତ ତାହା ପୂର୍ବରୁ ବିବୃତ । ସୌହାର୍ଦ୍ଦ୍ୟ ଓ ସମ୍ପ୍ରୀତିର ଉତ୍କର୍ଷରେ ହିଁ ଦାମ୍ପତ୍ୟର ସଫଳତା ନିହିତ ଥାଏ । ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱଭଳି ସ୍ୱାମୀ ସ୍ତ୍ରୀ ପରସ୍ପରର ପରିପୂରକ । ସ୍ୱାମୀଙ୍କୁ ପରମଗୁରୁର ମାନ୍ୟତା ଦିଆଯାଇଥିବା ବେଳେ ପତ୍ନୀଙ୍କୁ ଶ୍ରେଷ୍ଠ ବନ୍ଧୁ ଭାବରେ ଅଭିହିତ କରି ମହାମନା ବ୍ୟାସଦେବ ପ୍ରକାଶ କରିଛନ୍ତି– 'ନାସ୍ତି ପତ୍ନୀ ସମଂ ବନ୍ଧୁ' । ଯଥାର୍ଥରେ ସଫଳ ଦାମ୍ପତ୍ୟ ହିଁ ଜୀବନ ବୀଣାର ମଧୁର ରାଗିଣୀ । ବେଳେବେଳେ ଅବୁଝାମଣାର କଳାବାଦଲ ବିଶ୍ୱାସର କୌମୁଦୀକୁ ଢାଙ୍କି ଦିଏ । ଏହା ହଟିଗଲେ ଜୀବନ ପୁଣି ଶୁଭ୍ର ସକାଳ ପରି ଚହଟି ଉଠେ । ଜୀବନ ବୀଣାରେ ଆନନ୍ଦର ରାଗିଣୀ ଝଙ୍କାର ତୋଳେ । ଆନନ୍ଦ ବିଷାଦର ଏହି ତିକ୍ତ ମଧୁର ସ୍ୱାଦହିଁ ଜୀବନକୁ ରସସିକ୍ତ କରିଥାଏ ।

'ହେରାପଞ୍ଚମୀ'ରେ ମହାପ୍ରଭୁଙ୍କର ଲୌକିକ ଲୀଳାର ରମ୍ୟପ୍ରକାଶ ପରିଲକ୍ଷିତ ହୋଇଥାଏ । ଭକ୍ତକବି ଜଗନ୍ନାଥ ଦାସ

ତାଙ୍କର 'ଶ୍ରୀଗୁଣ୍ଡିଚା ବିଜୟ' କାବ୍ୟରେ ଏହି ଉତ୍ସବର ସୃଷ୍ଟି ସମ୍ପର୍କରେ ସୂଚନା ଦେଇଛନ୍ତି । ବଡଠାକୁରଙ୍କ ପରାମର୍ଶକ୍ରମେ ମହାପ୍ରଭୁ ଶ୍ରୀଜଗନ୍ନାଥ କିଛିଦିନ ପାଇଁ ମାଉସୀ ଘରକୁ ଯାଉଥିବା କଥା ମହାଲକ୍ଷ୍ମୀଙ୍କୁ ଜଣାନ୍ତି । ମାତ୍ର ମହାଲକ୍ଷ୍ମୀ ତାଙ୍କୁ ସଙ୍ଗରେ ନନେଇ ମାଉସୀ ଘରକୁ ଯାଉଥିବାରୁ ଅଭିମାନ ଭରା କଣ୍ଠରେ 'ତୁମ୍ଭ ମନେ ଯେବେ ଶରଧା ନୋହିଲା, ଏକା ଯିବ ଯାତ୍ରା କରି' ବୋଲି ଅନୁଯୋଗ ବାଢ଼ିଛନ୍ତି । ମାତ୍ର ବଡଭାଇ ତାଙ୍କ ସାଙ୍ଗରେ ଯାଉଥିବାରୁ ଯାତ୍ରାକାଳରେ ଛୁଆଁଛୁଇଁର ଆଶଙ୍କା ଥିବାରୁ ମହାପ୍ରଭୁ ଶ୍ରୀଜଗନ୍ନାଥ ମହାଲକ୍ଷ୍ମୀଙ୍କୁ ସାଙ୍ଗରେ ନେବା ଉଚିତ ହେବନାହିଁ ବୋଲି ପ୍ରକାଶ କରିବା ସହିତ ସରସ୍ୱତୀ ଓ ବିମଳାଙ୍କ ସହିତ ଶ୍ରୀମନ୍ଦିରରେ ମନଖୁସିରେ ରହିବା ପାଇଁ ପରାମର୍ଶ ଦେଲେ ।

ଦୁଇଭାଇ ମାଉସୀ ଘରକୁ ଯାଉଥିବା କଥା ଶୁଣି ସାନ ଭଉଣୀ ସୁଭଦ୍ରା ମଧ୍ୟ ମାଉସୀ ଘରକୁ ଯିବାକୁ ଅଳି କଲେ । ବଡଠାକୁର ଏହାଶୁଣି ନିରବ ରହିଲେ ମାତ୍ର ଶ୍ରୀଜଗନ୍ନାଥ ଭଉଣୀ କଥାକୁ ଏଡି ପାରିଲେ ନାହିଁ । ବଡଠାକୁର ଜାଣନ୍ତି ମହାଲକ୍ଷ୍ମୀ ଖୁବ୍ ଅଭିମାନିନୀ । ସମସ୍ତେ ମାଉସୀ ଘରକୁ ଯିବେ ଅଥଚ ସେ ଶ୍ରୀମନ୍ଦିରରେ ଏକାକୀ ପଡିରହିବେ । ତାଙ୍କୁ ନଜଣାଇ ସୁଭଦ୍ରାଙ୍କୁ ସାଙ୍ଗରେ ନେଲେ ନିଶ୍ଚୟ ତାଙ୍କର ମନକଷ୍ଟ ହେବ । ତେଣୁ ସେ ସବୁକଥା ମହାଲକ୍ଷ୍ମୀଙ୍କୁ ଜଣାଇବାକୁ ଶ୍ରୀଜଗନ୍ନାଥଙ୍କୁ ପରାମର୍ଶ ଦେଲେ । ମାତ୍ର ଶ୍ରୀଜଗନ୍ନାଥ ତାଙ୍କୁ କିଛି ନଜଣାଇ ଭାଇଭଉଣୀଙ୍କ ସହିତ ଶ୍ରୀମନ୍ଦିରରୁ ବାହାରି ଗଲେ । ଏକଥା ଜଣେ ପରିଚାରିକା ପାଖରୁ ଜାଣି ମହାଲକ୍ଷ୍ମୀ ଅତ୍ୟନ୍ତ ଦୁଃଖିତ ହୋଇ ପ୍ରିୟ ସଖୀ ସରସ୍ୱତୀ ଓ ବିମଳାଙ୍କ ପାଖରେ ମନକଥା ଖୋଲି କହିଲେ– 'ତାଙ୍କ ବିଚାରେ କିସ ଯୋଗାଇ ଗୋ/ବୋଇଲେ ଆମ୍ଭେ ଯିବୁ ଦୁଇଭାଇ ଗୋ/ଯେବେ ସୁଭଦ୍ରା ରଙ୍ଗେ ଚଳଇ ଗୋ/ତାଙ୍କ ବିଚାରେ ଶରଧା ନନେଲେ ଲୋକେ ଶୁଣିବାକୁ ଲାଜ/ଛନ୍ଦଭୂମିକି ବଢାଇ ଘେନିଗଲେ ଅବଶ୍ୟ ଲଭିଲେ କାର୍ଯ୍ୟ ଗୋ ।'

ପରସ୍ପର ପ୍ରତି ଅଖଣ୍ଡ ବିଶ୍ୱାସ ହିଁ ଦାମ୍ପତ୍ୟକୁ ଶାଶ୍ୱତ କରି ଗଢି ତୋଳିଥାଏ । ମାତ୍ର ମନରେ ଥରେ ସନ୍ଦେହ ସ୍ଥାନ ପାଇଲେ ବିଶ୍ୱାସର ମୂଳଦୁଆ ଦୋହଲି ଯାଏ । ଭଉଣୀକୁ ସାଙ୍ଗରେ ନେଉଥିବା କଥା ଜଣାଇବା ତ ଦୂରର କଥା ତାଙ୍କ ଅଗୋଚରରେ ଶ୍ରୀମନ୍ଦିର ଛାଡିଗଲେ । ମନ ଭିତରର ଅଭିମାନକ୍ରମେ କ୍ରୋଧର ରୂପ ନେଲା । ସେ ତାଙ୍କ ମନର କଥା ପ୍ରିୟ ସଖୀ ସରସ୍ୱତୀ ଓ ବିମଳାଙ୍କୁ ଜଣାଇଲେ । ବିଚକ୍ଷଣା ସଖୀଦ୍ୱୟ ଜଣେ ଦାସୀଙ୍କୁ ପଠାଇ ଶ୍ରୀଜଗନ୍ନାଥଙ୍କୁ ସବୁକଥା ଜଣାଇବେ ବୋଲି ପ୍ରବୋଧନା ଦେଲେ । ପ୍ରତିଶ୍ରୁତି ଅନୁସାରେ ଜଣେ ଦାସୀ ଗୁଣ୍ଡିଚା ମନ୍ଦିରକୁ ଯାଇ ମହାପ୍ରଭୁଙ୍କୁ ସବୁକଥା ଜଣାଇଲେ । ଶ୍ରୀଜଗନ୍ନାଥ ମଧ୍ୟ ସାଙ୍ଗରେ ବଡଭାଇ ଯାଉଥିବାରୁ ଛୁଆଁଛୁଇଁର ଆଶଙ୍କା ରହିଥିବା ହେତୁ ମହାଲକ୍ଷ୍ମୀଙ୍କୁ ସାଙ୍ଗରେ ଆଣିବା ସମୀଚୀନ ନୁହେଁ ବୋଲି କହିବା ସହିତ ଖୁବ୍‌ଶୀଘ୍ର ଶ୍ରୀମନ୍ଦିରକୁ ଫେରିଆସିବେ ବୋଲି କହିଲେ ।

ମହାଲକ୍ଷ୍ମୀ କିନ୍ତୁ ଭାରି ଜିଦିଆ । ଯାହା ବୁଝିଥିବେ ସେଇଆ । ମହାପ୍ରଭୁଙ୍କ ପ୍ରତିଶ୍ରୁତି କିନ୍ତୁ ତାଙ୍କ କ୍ଷୋଭକୁ ପ୍ରଶମିତ କରିପାରିଲା ନାହିଁ । ସେ ଅଧୈର୍ଯ୍ୟ ହୋଇ ଏହାର ଆଶୁ ପ୍ରତିକାର ପାଇଁ ଦେବୀ ବିମଳାଙ୍କ ପାଖରୁ ପରାମର୍ଶ ଲୋଡିଲେ । ବିମଳା ଶ୍ରୀଜଗନ୍ନାଥଙ୍କୁ ଉଚାଟିତ କରିବା ପାଇଁ ମୋହନଚୂର୍ଣ୍ଣ ନେଇ ତାଙ୍କ ପାଖକୁ ଯିବାକୁ ପରାମର୍ଶ ଦେଇଥିବା କଥା 'ବାମଦେବ ସଂହିତା'ରେ ଉଲ୍ଲେଖ ଅଛି । ବିମଳାଙ୍କ ପରାମର୍ଶକ୍ରମେ ମହାଲକ୍ଷ୍ମୀ ଆଷାଢ ଶୁକ୍ଳ ଷଷ୍ଠୀ ତିଥିରେ ଶ୍ରୀମନ୍ଦିରରୁ ଗୁଣ୍ଡିଚା ମନ୍ଦିରକୁ ଗମନ କରିଥିଲେ ।

'ହେରାପଞ୍ଚମୀ' ଦିନ ଗୁଣ୍ଡିଚା ମନ୍ଦିରରେ ମଧ୍ୟାହ୍ନ ଧୂପ ଶେଷ ହେବା ପରେ ମହାଲକ୍ଷ୍ମୀଙ୍କର ବେଶ ଆରମ୍ଭ ହୁଏ । ମହାଲକ୍ଷ୍ମୀ ବିଭିନ୍ନ ଅଳଙ୍କାର ଓ ପୁଷ୍ପମାଲ୍ୟ ବିଭୂଷିତ ହୋଇ ପାଲିଙ୍କି ଚଢି ଗୁଣ୍ଡିଚା ମନ୍ଦିରକୁ ଗମନ କରନ୍ତି । ସାଙ୍ଗରେ ପୁଷ୍ପାଳକ, ସିଂହାରି, ପତି ମହାପାତ୍ର ପ୍ରଭୃତି ସେବକମାନେ ମଧ୍ୟ ଯାଇଥାନ୍ତି । ମହାଲକ୍ଷ୍ମୀ ଶ୍ରୀମନ୍ଦିରରୁ ବାହାରି ବଡଦାଣ୍ଡ ଦେଇ ଗୁଣ୍ଡିଚା ମନ୍ଦିରକୁ ଯାଆନ୍ତି । ବାଟରେ ମହାଲକ୍ଷ୍ମୀଙ୍କୁ ବିଭିନ୍ନ ସ୍ଥାନରେ ପନ୍ତିଭୋଗ ଲାଗି କରାଯାଏ । ପୂଜାପଣ୍ଡା ମଧ୍ୟ ଭୋଗ ଅର୍ପଣ କରନ୍ତି । ମହାଲକ୍ଷ୍ମୀ ଗୁଣ୍ଡିଚା ମନ୍ଦିରର ପାଟଅଗଣାରେ ରହିଥିବା ନନ୍ଦିଘୋଷ ରଥ ସମ୍ମୁଖରେ ପହଞ୍ଚିବା ପରେ ମହାପ୍ରଭୁଙ୍କ ସେବକ ଓ ମହାଲକ୍ଷ୍ମୀଙ୍କ ସେବକଙ୍କ ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି ଚାଲେ । ସଂଧ୍ୟା ଧୂପ ପରେ ମହାଲକ୍ଷ୍ମୀ ଗୁଣ୍ଡିଚା ମନ୍ଦିରକୁ ପ୍ରବେଶ କରନ୍ତି । ମହାପ୍ରଭୁଙ୍କ ସମକ୍ଷରେ ସ୍ଥାପନ କରାଯାଇ ଶ୍ରୀଅଙ୍ଗଲାଗି ମାଲ୍ୟ ଓ ପ୍ରସାଦ ତାଙ୍କୁ ଅର୍ପଣ କରାଯାଏ । ମହାଲକ୍ଷ୍ମୀ ସାଙ୍ଗରେ ଆଣିଥିବା କର୍ପୂର ଚନ୍ଦନ ଓ ମୋହନଚୂର୍ଣ୍ଣ ଶ୍ରୀଜଗନ୍ନାଥଙ୍କ ଉପରେ ପ୍ରକ୍ଷେପ କରାଯାଏ । ଏହି ବିଧାନ ପରେ ମହାଲକ୍ଷ୍ମୀ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥିବା କଥା ସ୍ମୃତିକାର ବାଲୁଙ୍କି ପାଠୀ ଅଷ୍ଟାଦଶ ଶତାବ୍ଦୀରେ ରଚିତ 'ଯାତ୍ରା ଭାଗବତମ୍'ରେ ଉଲ୍ଲେଖ କରିଛନ୍ତି ।

ମହାପ୍ରଭୁଙ୍କ ସାକ୍ଷାତ ନପାଇବାରୁ ମହାଲକ୍ଷ୍ମୀ କ୍ରୁଦ୍ଧା ହୋଇ ଗୁଣ୍ଡିଚା ମନ୍ଦିରରୁ ପ୍ରସ୍ଥାନ କରିଥିଲେ ବୋଲି କେତେକ ମତ

ଦେଇଥିବାବେଳେ ଭକ୍ତକବି ଜଗନ୍ନାଥ ଦାସ 'ଗୁଣ୍ଡିଚା ବିଜୟ' କାବ୍ୟରେ ଉଭୟଙ୍କ ମଧ୍ୟରେ ନିଭୃତ ସାକ୍ଷାତ ଘଟିଥିବା କଥା ସୂଚାଇଛନ୍ତି । ଏହି ସମୟରେ ଶ୍ରୀଜଗନ୍ନାଥ ଅଳ୍ପଦିନରେ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ମହାପ୍ରଭୁଙ୍କ ପ୍ରବୋଧନା ମହାଲକ୍ଷ୍ମୀଙ୍କ କ୍ରୋଧକୁ ପ୍ରଶମିତ କରିପାରେ ନାହିଁ । କ୍ରୁଦ୍ଧା ମହାଲକ୍ଷ୍ମୀ ଗୁଣ୍ଡିଚା ମନ୍ଦିରର ବିଜୟ ଦ୍ୱାର ଦେଇ ପ୍ରସ୍ଥାନ କଲାବେଳେ ଚଣାଆକାରର କ୍ଷୁଦ୍ର ନାସାଳଙ୍କାର ସେଠାରେ ପଡିଯାଇଥିବାରୁ ମହାଲକ୍ଷ୍ମୀଙ୍କର ଗୁଣ୍ଡିଚା ମନ୍ଦିର ଆଗମନ ସ୍ମୃତିର ସ୍ମାରକୀ ସ୍ୱରୂପ ସେହି ଦ୍ୱାର 'ନାକଚଣା ଦ୍ୱାର' ଭାବରେ ପରିଚିତ ଲାଭ କରିଥିବାର ଜନଶୃତି ରହିଛି । କ୍ରୁଦ୍ଧା ମହାଲକ୍ଷ୍ମୀ ମହାପ୍ରଭୁଙ୍କ ସେବକମାନଙ୍କୁ ଦଣ୍ଡ ଦିଅନ୍ତି । ଦଣ୍ଡ ସ୍ୱରୂପ ସେମାନଙ୍କୁ ଶ୍ରୀଜଗନ୍ନାଥଙ୍କ ରଥରେ ବାନ୍ଧନ୍ତି । ସେମାନଙ୍କ ଲୁଗା ଚିରନ୍ତି । ଏହାକୁ 'ଦଣ୍ଡମୁଣ୍ଡ ସେବା' କୁହାଯାଏ । ଏତିକିରେ ତାଙ୍କ ରାଗ ଶାନ୍ତ ହୁଏନି । ସେ ନନ୍ଦିଘୋଷ ରଥର କାଠ ଭାଙ୍ଗି ହେରାଗୋହିରି ସାହି ଦେଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଦେବୀ ବିମଳାଙ୍କ ପରାମର୍ଶକ୍ରମେ ମହାଲକ୍ଷ୍ମୀ ସାଙ୍ଗରେ ନେଇଥିବା କର୍ପୂର ଚନ୍ଦନ ଓ ମୋହନ ଚୂର୍ଣ୍ଣ ଶ୍ରୀଜଗନ୍ନାଥଙ୍କ ଉପରେ ସିଞ୍ଚନ କରାଯାଇଥିବା କଥା ପୂର୍ବରୁ ବର୍ଣ୍ଣିତ । ମୋହନଚୂର୍ଣ୍ଣ ସିଞ୍ଚନ କରାଯିବା ଫଳରେ ମହାପ୍ରଭୁଙ୍କ ମନ ଆନ୍ଦୋଳିତ ହୁଏ । ସେ ତା'ପରଦିନ ସକାଳେ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ ପାଇଁ ରଥ ପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦିଅନ୍ତି । ସକାଳ ଧୂପ ପରେ ତିନିବାଡରୁ ଆଜ୍ଞାମାଳ ଆସିବା ପରେ ରଥଗୁଡିକର ଦକ୍ଷିଣମୋଡ ପ୍ରକ୍ରିୟା ଆଷାଢ ଶୁକ୍ଳ ନବମୀ ମଧ୍ୟରେ ସମ୍ପନ୍ନ ହୋଇଥାଏ ।

ମହାଲକ୍ଷ୍ମୀ ଓ ମହାପ୍ରଭୁଙ୍କ ମଧ୍ୟରେ ସୃଷ୍ଟ ମାନ ଅଭିମାନ ଓଡ଼ିଆ କବିଙ୍କ 'ବଚନିକା'ରେ ଅତ୍ୟନ୍ତ ମନୋଜ୍ଞ ରୀତିରେ ପରିବେଷିତ ହୋଇଛି । ଉତ୍କଳ ବାଲ୍ମିକୀ କବି ବଳରାମ ଦାସ ଓ ବିପ୍ର ମହେଶ୍ୱର 'ଲକ୍ଷ୍ମୀନାରାୟଣ ବଚନିକା' ରଚନା କରିଥିବା ବେଳେ କେନ୍ଦୁଝରାଧିପତି ମହାରାଜା ଜଗନ୍ନାଥ ଭଞ୍ଜ 'ଲକ୍ଷ୍ମୀ ଜଗନ୍ନାଥ ବଚନିକା' ରଚନା କରି ଯାଇଛନ୍ତି । ହେରାପଞ୍ଚମୀ ଏବଂ ଆଷାଢ ଶୁକ୍ଳ ଦ୍ୱାଦଶୀରେ ମହାପ୍ରଭୁଙ୍କର ନୀଳାଦ୍ରି ବିଜୟ ସମୟରେ ଏହା ପରିବେଷିତ ହୋଇଥାଏ । ବିପ୍ର ମହେଶ୍ୱରଙ୍କ ବଚନିକା ବିରହବିଧୂରା ମହାଲକ୍ଷ୍ମୀଙ୍କ ମର୍ମଦାହକୁ କିପରି ଚମତ୍କାର ରୀତିରେ ତୋଳି ଧରିଛନ୍ତି ତାହା ସୁଧୀପାଠକଙ୍କ ଅବବୋଧ ପାଇଁ ଉଲ୍ଲେଖ କରୁଛି । ମନ୍ଦିର ପ୍ରବେଶ ସମୟରେ କବାଟ ଖୋଲିବା ପାଇଁ ମହାଲକ୍ଷ୍ମୀଙ୍କୁ ମହାପ୍ରଭୁ ଅନୁରୋଧ କରନ୍ତି– 'ନାଗରବର ଲକ୍ଷ୍ମୀଭାବ ଜାଣି ଦରହାସରେ କହୁଛନ୍ତି ବାଣୀ ଆଲୋ ପରିଚାରୀ ଫେଡ କପାଟ/ କେଉଁ କଥାକୁ ଲୋ କରିଛୁ ହଟ/ ଲୋ ଜାଣ ତୁମ୍ଭେ/ ଅଧିକ କି ଆଉ କହିବୁ ଆମ୍ଭେ ।' ଏହାଶୁଣି ଦେବଦାସୀମାନେ ଲକ୍ଷ୍ମୀଙ୍କ ପକ୍ଷରୁ ଉତ୍ତର ଦିଅନ୍ତି– 'ସତ କହିଲ ହେ ! ନାଗରବର/ ବଚନ ତୁମର ଅତି ମଧୁର/ ହୃଦୟ ତୁମର କର୍କଶ ପ୍ରାୟ/ ପୁରୁଷ ହୃଦୟ ଅତି ନିର୍ଦ୍ଦୟ/ ଏ ରାଜ କୁମାରୀ/ ଛାଡିଗଲ କେଉଁ ଦୋଷ ବିଚାରି ?'

କେବଳ ବଚନିକା ମାଧ୍ୟମରେ ମହିମା ପ୍ରଖ୍ୟାପନ କରି ଉତ୍କଳୀୟ କବିପ୍ରାଣ ତୃପ୍ତ ହୋଇନାହିଁ । ଅଷ୍ଟାଦଶ ଶତାବ୍ଦୀର ସ୍ମୃତିକାର ବାଲୁଙ୍କି ପାଠୀ ତାଙ୍କ ରଚିତ 'ଯାତ୍ରା ଭାଗବତମ୍'ରେ ଏହି ଉତ୍ସବର ଉଲ୍ଲେଖ କରିଛନ୍ତି । ଅଷ୍ଟାଦଶ ଶତାବ୍ଦୀର କବି ବକ୍ରବାକ୍ ଚକ୍ରପାଣି 'ଗୁଣ୍ଡିଚା ବିଜୟ' ନାମକ ଏକ ଚମ୍ପୂ ରଚନା କରିଛନ୍ତି । ଊନବିଂଶ ଶତାବ୍ଦୀର ରାଜକବି ଗୋପୀନାଥ ସିଂହଙ୍କ 'ନୀଳାଦ୍ରି ବିଜୟ' କାବ୍ୟରେ ରଥଯାତ୍ରା ସହିତ ଏହି ଉତ୍ସବ ମଧ୍ୟ ସ୍ଥାନୀତ ହୋଇଛି । ମହାଲକ୍ଷ୍ମୀ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିବା ପରେ ମହାପ୍ରଭୁଙ୍କ ପରିହାସପୂର୍ଣ୍ଣ ବାଙ୍କ ଚାହାଣୀରେ ସେ କ୍ରୁଦ୍ଧା ହୋଇଥିବା କଥା ଏହି କାବ୍ୟରେ ଉଲ୍ଲେଖ ଅଛି । କବି ଲୋକନାଥ ବିଦ୍ୟାଧର ତାଙ୍କ ରଚିତ 'ନୀଳାଦ୍ରି ମହୋତ୍ସବ'ରେ ମଧ୍ୟ ଏହି କାବ୍ୟକୁ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ଏଥିରେ ମହାଲକ୍ଷ୍ମୀଙ୍କ ବିରହ ଚିତ୍ର ପାଟବତାର ସହିତ ଅଙ୍କିତ ହୋଇଛି । ମହାଲକ୍ଷ୍ମୀଙ୍କ ମନୋଦଶା ସମ୍ପର୍କରେ ମହାପ୍ରଭୁଙ୍କୁ ଅବହିତ କରାଇବା ପାଇଁ ଜନୈକା ଦାସୀ ଗୁଣ୍ଡିଚା ମନ୍ଦିରକୁ ଯାଇଥିବା କଥା କବି ଜଗନ୍ନାଥ ଦାସ ତାଙ୍କର 'ଶ୍ରୀଗୁଣ୍ଡିଚା ବିଜୟ' କାବ୍ୟରେ ସୂଚୀତ କରିଥିବା ବେଳେ ଏହି କାବ୍ୟରେ ଦେବୀ ବିମଳା ଏହି ଭୂମିକା ତୁଲାଇଛନ୍ତି । ଦେବୀ ବିମଳାଙ୍କଠାରୁ ସବୁକଥା ଶୁଣି ମହାପ୍ରଭୁ ଶ୍ରୀଜଗନ୍ନାଥ ଶୀଘ୍ର ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି–

'ଶୀଘ୍ର ଘେନିଣ ଆମ୍ଭ ଆଦେଶ/ଯାଇପ୍ରାଣ ବାନ୍ଧବୀର ପାଶ/ ଏମନ୍ତ କହିବ ଯେବେ ତାଜୀବ/ ନଗମେ କୃତାନ୍ତ ପାଶ/ ଗୋ ବିମଳା/ ବାହୁଡା ଗମନେ ଅବିଳମ୍ବ ମନେ/ନକରି କିଛି ସଂଶୟ/ ଗୋ ବିମଳା ।' ମହାପ୍ରଭୁଙ୍କ ସନ୍ଦେଶ ଘେନି ଶ୍ରୀମନ୍ଦିରକୁ ଯିବା ପରେ ଶ୍ରୀଜଗନ୍ନାଥଙ୍କୁ ସ୍ୱାଗତ କରିବାକୁ ବେଶଭୂଷଣରେ ସଜ୍ଜିତ ହେବାକୁ ମହାଲକ୍ଷ୍ମୀଙ୍କୁ ପରାମର୍ଶ ଦେଇଛନ୍ତି । ରାଜା ରାମଚନ୍ଦ୍ର ଦେବଙ୍କ ରଚିତ 'ସପ୍ତରାଗ ଚଉତିଶା'ରେ ମଧ୍ୟ ବିରହବିଧୂରା ମହାଲକ୍ଷ୍ମୀଙ୍କ ମନୋଦଶା ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି ।

ଦାମ୍ପତ୍ୟ କେବଳ ମିଳନର କୁଞ୍ଜବନ ନୁହେଁ, ଏହା ତପସ୍ୟାର ତପୋବନ । ଅନ୍ଧାର ପାଇଁ ଆଲୋକର ଗାରିମା ପ୍ରକଟିତ ହେବାପରି ବିରହ ମିଳନକୁ ନିବିଡ କରିଥାଏ । ପାଣିରେ ଚିମୁଟାଏ ଲୁଣ ମୁହୂର୍ତ୍ତକ ମଧ୍ୟରେ ଅସ୍ତିତ୍ୱ ହରାଇବା ପରି ଦାମ୍ପତ୍ୟ କଳହ ମଧ୍ୟ 'ବହ୍ୱାରମ୍ଭେ ଲଘୁକ୍ରିୟା'ରେ ପରିଣତ ହୋଇଥାଏ । ଗୃହିଣୀ ହିଁ ଗୃହର ମୂଳାଧାର । ସେଇଥି ପାଇଁ ମହର୍ଷି ମନୁ କହିଛନ୍ତି- 'ଗୃହିଣୀ ଗୃହମୁଚ୍ୟତେ' ମହାଲକ୍ଷ୍ମୀ ରୁଷ୍ଟା ହୋଇଥିଲେ ମଧ୍ୟ ମହାପ୍ରଭୁଙ୍କ କୋମଳ ବଚନରେ ହୃଷ୍ଟା ହୋଇ କବାଟ ଖୋଲନ୍ତି । ମହାପ୍ରଭୁ ରସଗୋଲା ନଖାଇ ମହାଲକ୍ଷ୍ମୀଙ୍କ ଅଭିମାନ ଭାଙ୍ଗନ୍ତି । ବାସ୍ତବରେ ହେରାପଞ୍ଚମୀ ମାଧ୍ୟମରେ ମହାପ୍ରଭୁଙ୍କର ମାନବ ଲୀଳାର ଉତ୍କର୍ଷ ପ୍ରତିପାଦିତ ହୋଇଛି । ଏହା ରଥଯାତ୍ରାର ଏକ ଉପଯାତ୍ରା ହୋଇଥିଲେ ମଧ୍ୟ ଏହା ଯଥାର୍ଥରେ ପାଳଟିଛି ମାନ ଅଭିମାନ ପୁଷ୍ଟ ଦାମ୍ପତ୍ୟର ମଧୁର ରାଗିଣୀ ।

ସହାୟତା


୧. ଅଭିମାନର ଉତ୍ସବ- ହେରାପଞ୍ଚମୀ- ଡକ୍ଟର ଶରତ ଚନ୍ଦ୍ର ପରିଡା

୨. ହେରାପଞ୍ଚମୀ ଓ ଶ୍ରୀଜଗନ୍ନାଥ- ମମତା ମିଶ୍ର

୩. ବାହୁଡା ଯାତ୍ରା- ଶ୍ରୀ ହୟଗ୍ରୀବ ତ୍ରିପାଠୀ

୪. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଆଡପ ଅବସ୍ଥାନ- ଶ୍ରୀ ପଙ୍କଜ ସାହୁ



ମଣ୍ଡୁଆ,
କେନ୍ଦୁଝରଗଡ-୭୫୮୦୧୪


# ମହାପ୍ରଭୁ

ଦେବଦତ୍ତ ରଥ

ପତାହୀନ ତୁମ ଦୁଇ ଆଖିର ଗୋଲକେ,
ତୁମପରି ପ୍ରଭୁ ପତା କାହାର ଏ ମୂଳକେ ?
ନୟନ ମୁଦିଲେ ମୋର ଦିଶେ ରୂପ ବାରବାର
ଦାତାପଣେ ଦେବା କିଛି କିଏ ଅବା ସରିକେ ?
ସଂସାର କୁଟିଳ ନେତ୍ର ବିଷାକ୍ତ ଏ ସ୍ଥୂଳ ଗାତ୍ର
ସୂକ୍ଷ୍ମଦେହୀ ମହୀୟାନ ତୁମେ ଯେ ପବିତ୍ର
ମନ ଚିର ଭାରାକ୍ରାନ୍ତ ସମୟ ଯେ ଅତିକ୍ରାନ୍ତ
ଗମିବାକୁ ପଥ ବାକି କିଏ ଧୀରେ ଯାଏ ଡାକି
ନିଗାଡି ଦି'ଟୋପା ଲୁହ ଶ୍ରମ ଅବିଶ୍ରାନ୍ତ ।



ଦୁର୍ବଳ ଏ ଦେବାଳୟ, ହୁଏ ଅତୀବ ଅଥୟ
ଏ ସଂସାର ଲାଗେ ମୋତେ ବିଭୀଷିକାମୟ
ଭବ ପାରାବାର ଲଂଘି ପାରିଲେତ ସାର
ହେବ ସିନା ଜୀବନଟା ଆନନ୍ଦେ ଅଥୟ
ଆହେ ଦେବ କର୍ଣ୍ଣଧାର ଏ ସଂସାରୁ କର ପାର
ଅସୀମ ଅବ୍ୟକ୍ତ ଯିଏ ଅପାର କରୁଣାମୟ ।


ସହକାରୀ ପର୍ଯ୍ୟଟକ ଅଧିକାରୀ
ପର୍ଯ୍ୟଟନ ନିର୍ଦ୍ଦେଶାଳୟ, ଭୁବନେଶ୍ୱର-୧୪



# ପୁରାଣ ସାହିତ୍ୟରେ ଶ୍ରୀଜଗନ୍ନାଥ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ସର୍ବ ଶାସ୍ତ୍ର ମଧରେ ସର୍ବ ପ୍ରଥମ ହେଉଛି ପୁରାଣ । ପୁରାଣଂ ସର୍ବ ଶାସ୍ତ୍ରାଣାଂ ପ୍ରଥମଂ ବ୍ରହ୍ମଣା ସ୍ମୃତମ୍ । ପୁରାଣ ପ୍ରାଚୀନ ଓ ପ୍ରଚଳିତ ଘଟଣାବଳୀର ସଂଗ୍ରହ ହେଲେ ହେଁ ତାହା ଭାରତର ପ୍ରାଚୀନ ଇତିହାସ ଜ୍ଞାନ ବିଜ୍ଞାନ ବିଦ୍ୟା ଓ ସଂସ୍କୃତିର ଅମୂଲ୍ୟ ସଂକଳନ । ଏଣୁ ଭାରତୀୟ ପରଂପରାର ଜ୍ଞାନକୋଷ ହେଉଛି ପୁରାଣ ।

ପୁରାଣ ଭଳି ଶ୍ରୀଜଗନ୍ନାଥ ଚେତନା ଓ ସଂସ୍କୃତି ମଧ ବହୁ ପୁରାତନ । ଦେବତାମାନଙ୍କ ମଧରେ ଶ୍ରୀଜଗନ୍ନାଥ ସର୍ବପ୍ରାଚୀନ । ଏଣୁ ପୁରାଣ ଗ୍ରନ୍ଥ ତାର ଛତ୍ରେ ଛତ୍ରେ ଶ୍ରୀଜଗନ୍ନାଥ ତତ୍ତ୍ୱର ମହିମା ଗାନ କରିଛନ୍ତି । ବେଦ ଶ୍ରୀଜଗନ୍ନାଥଙ୍କୁ ନିରାକାର ବ୍ରହ୍ମ ରୂପେ ପରିକଳ୍ପନା କରି ପ୍ରମାଣ କରି ପାରିଛନ୍ତି ।

ଶ୍ୱେତାଶ୍ୱେତ ଉପନିଷଦରେ ନିର୍ଗୁଣ ବ୍ରହ୍ମ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କୁହାଯାଇଛି:

ଅପାଣିପାଦୋ ଜବନୋଗ୍ରହୀତା
ପଶ୍ୟତ୍ୟ ଚକ୍ଷୁ ସଶୃଣୋତ୍ୟ କର୍ଣ୍ଣ
ସ ବେର୍ତ୍ତ ବେଦ୍ୟଂ ନ ଚ ତସ୍ୟାସ୍ତିବେତ୍ତ
ତମାହୁ ରସ୍ୟଂ ପୁରୁଷଂ ମହନ୍ତମ୍ ।

ବେଦପରେ ପୃଥିବୀର ପ୍ରଥମ ମହାକାବ୍ୟ ଓ ପୁରାଣ 'ବାଲ୍ମୀକି ରାମାୟଣ'ରେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଗୋଟିଏ ଶ୍ଳୋକ ଦେଖିବାକୁ ମିଳେ । ଯେଉଁଠି ଶ୍ରୀରାମ ବିଭୀଷଣଙ୍କୁ କହିଛନ୍ତି–

ଆରାଧୟ ଜଗନ୍ନାଥଂ ଇକ୍ଷ୍ୱାକୁ କୁଳଦୈବତମ୍
ଆରାଧନୀୟମନିଶଂ ଦୈବୈରପି ସଦାସବୈଃ ।
(ଉତ୍ତରାକାଣ୍ଡ – ୧୦୮–୨୮)

ହେ ବିଭୀଷଣ, ତମକୁ ଗୋଟିଏ କଥା କହିବାକୁ ଚାହୁଁଛି । ଆମ ଇକ୍ଷ୍ୱାକୁ ବଂଶର କୁଳ ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ, ଯେଉଁ ଦେବତାଙ୍କୁ ଇନ୍ଦ୍ର ପ୍ରୀତିର ସହିତ ସର୍ବଦା ଆରାଧନା କରିଥାନ୍ତି । ତୁମେ ମଧ କୃପା ପ୍ରାପ୍ତି ନିମନ୍ତେ ଆମ ବଂଶର ଦେବତାଙ୍କୁ ଆରାଧନା କର ।

ଜ୍ଞାନସିଦ୍ଧି ଏକ ବଜ୍ରଯାନ ଗ୍ରନ୍ଥ । ଏହା ଉଡ୍ଡୀୟାନ ରାଜା ଇନ୍ଦ୍ରଭୂତିଙ୍କର ରଚନା । ଜ୍ଞାନସିଦ୍ଧି ପୁସ୍ତକର ମଙ୍ଗଳାଚରଣ ପ୍ରଥମ ଶ୍ଳୋକରେ ଜଗନ୍ନାଥ ଶବ୍ଦର ପ୍ରୟୋଗ କରାଯାଇଛି । ଗବେଷକମାନେ କୁହନ୍ତି ପୁରୀରେ ଅବସ୍ଥିତ ଶ୍ରୀଜଗନ୍ନାଥ ହିଁ ଏହି ଗ୍ରନ୍ଥର ଆରାଧ୍ୟ ଦେବତା ।

ସେହିଭଳି 'ଶିବପୁରାଣ'ରେ ସାକ୍ଷାତ ପରଂବ୍ରହ୍ମ ଦାରୁରୂପୀ ଶ୍ରୀଜଗନ୍ନାଥ ରୂପେ ପୂଜା ପାଉଛନ୍ତି ବୋଲି ଉଲ୍ଲେଖ ଅଛି–

ପୁରୁଷୋତ୍ତମତ୍ ପରଂ କ୍ଷେତ୍ରଂ ନାସ୍ତ୍ୟନବ ଭବମୋଚନଂ
ଯତ୍ର ସାକ୍ଷାତ ପରଂବ୍ରହ୍ମ ଦାରୁବ୍ୟଜଂ ଶରୀର୍ଯ୍ୟଭୂତ ।

ଶ୍ରୀକ୍ଷେତ୍ରରେ ସ୍ୱୟଂ ବିଷ୍ଣୁପ୍ରିୟା ଶ୍ରୀଲକ୍ଷ୍ମୀ ମହାପ୍ରସାଦ ରନ୍ଧନ କରନ୍ତି । ଶ୍ରୀକ୍ଷେତ୍ରରେ ଅନ୍ନ ପ୍ରସାଦ ହିଁ ସର୍ବଶ୍ରେଷ୍ଠ ଭୋଗ । ଏଣୁ ତାହା 'ମହାପ୍ରସାଦ' । ପବିତ୍ର ମହାପ୍ରସାଦ ନିକଟରେ କୌଣସି ଉଚ୍ଚନୀଚ ଜାତି ଭେଦ ନାହିଁ । ସମସ୍ତେ ଗୋଟିଏ ପତ୍ରରେ ଭୁଞ୍ଜନ୍ତି । ମହାପ୍ରସାଦ ଅତ୍ୟନ୍ତ ଦୁର୍ଲ୍ଲଭ । ବୌଦ୍ଧ ପୁରାଣରେ ମଧ ଶ୍ରୀଜଗନ୍ନାଥଙ୍କ ବିଷୟ ବର୍ଣ୍ଣିତ ଅଛି । 'ଗୀତଗୋବିନ୍ଦ'ରେ ଜଗନ୍ନାଥଙ୍କୁ ବୁଦ୍ଧ ରୂପେ ଶ୍ରୀଜୟଦେବ ସ୍ୱୀକାର କରିଛନ୍ତି ।

'ସ୍କନ୍ଦ ପୁରାଣ' ହେଉଛି ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ବିଧି ବିଧାନ ନିୟାମକ । ପୁରାଣ ଗ୍ରନ୍ଥ ସେହିଭଳି 'ନୀଳାଦ୍ରି ମହୋଦୟ' । ଏହି ଦୁଇ ପୁରାଣରେ ଜଗନ୍ନାଥଙ୍କ ବିଷୟରେ ପୁଙ୍ଖାନୁପୁଙ୍ଖ ରୂପେ ବର୍ଣ୍ଣନା କରାଯାଇଛି ।

ଉତ୍କଳର ଘରେ ଘରେ ଯେପରି ପୁରାଣ ସୁପରିଚିତ ଗ୍ରନ୍ଥ, ସେହିଭଳି ଶ୍ରୀଜଗନ୍ନାଥ ହେଉଛନ୍ତି ଓଡିଆର ଆରାଧ୍ୟ ଦେବତା । ଫଳରେ ଓଡିଆ ପୁରାଣ ଶ୍ରୀଜଗନ୍ନାଥଙ୍କ ମହିମା ଗାନରେ ଶତମୁଖ ହୋଇଉଠିଛି । ଓଡିଶାର ଆଧ୍ୟାତ୍ମିକ ଚିନ୍ତାଚେତନା ଧର୍ମ ଦର୍ଶନ, ଶିକ୍ଷା ସଂସ୍କୃତିରେ ଶ୍ରୀଜଗନ୍ନାଥ ଗଭୀର ଭାବେ ସଂଶ୍ଳିଷ୍ଟ । ଏଣୁ ଉତ୍କଳୀୟ ସଂସ୍କୃତି ହିଁ ଶ୍ରୀଜଗନ୍ନାଥ ସଂସ୍କୃତି । ଓଡିଶାର ଘରେ ଘରେ ଶ୍ରୀଜଗନ୍ନାଥ ପୂଜା ପାଆନ୍ତି । ଜନ୍ମଦିନ, ବିବାହ ବ୍ରତ ସବୁକିଛି ମହୋତ୍ସବରେ ଶ୍ରୀଜଗନ୍ନାଥଙ୍କୁ ପ୍ରଥମେ ନିମନ୍ତ୍ରଣ କରାଯାଏ । କବି ମଧ୍ୟ କାବ୍ୟ ପୁରାଣ ରଚନା କଲାବେଳେ ଶ୍ରୀଜଗନ୍ନାଥଙ୍କୁ ସର୍ବପ୍ରଥମେ ସ୍ମରଣ କରି ଶରଣାପନ୍ନ ହୁଏ । ପୁରାଣମାନଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ଅନାଦି ପୁରୁଷ, ପୁରୁଷୋତ୍ତମ । ସେ ସାରା ସଂସାରକୁ ବ୍ୟାପୀ ରହିଛନ୍ତି । ଉତ୍ପତ୍ତି ସ୍ଥିତି ଓ ଲୟର ସେ ହିଁ ହେଉଛନ୍ତି ସୂତ୍ରଧାର । ସେ ବିଭିନ୍ନ ଅବତାର ନେଇ ଏ ସଂସାରକୁ ଆସିଛନ୍ତି । ସେ ହିଁ ମୁଖ୍ୟ ଦେବତା ରୂପେ ବିବେଚିତ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ମାହାତ୍ମ୍ୟ ବିଭିନ୍ନ ପୁରାଣରେ ପରିପ୍ରକାଶ ଘଟିଛି ।

ଓଡିଆ ଭାଗବତରେ ଶ୍ରୀଜଗନ୍ନାଥଙ୍କ ମହିମାଗାନ କରି ଭକ୍ତକବି ଜଗନ୍ନାଥ ଦାସ ଉଲ୍ଲେଖ କରିଛନ୍ତି :

ଛାଡି ସକଳ ତୀର୍ଥ କ୍ଷେତ୍ର । ନୀଳକନ୍ଦରେ ଜଗନ୍ନାଥ ॥
ମୂର୍ତ୍ତିରେ ଜଗତକୁ ମୋହି । ତେଣୁ ଆଶ୍ରା କରିଛି ମୁହିଁ ॥
ଏ ଅଙ୍ଗ ଥିବା ପରିଯନ୍ତେ । ଛାଡିବି ନାହିଁ କଦାଚିତେ ॥

ଓଡିଶାର ଆଦିକବି 'ସାରଳା ଦାସ' ମହାଭାରତ ପୁରାଣରେ ଶ୍ରୀକୃଷ୍ଣଙ୍କୁ ଶ୍ରୀଜଗନ୍ନାଥ ରୂପେ ସ୍ୱୀକାର କରିଛନ୍ତି ଓ ଶ୍ରୀଜଗନ୍ନାଥଙ୍କ କରୁଣାକୁ ଗଭୀର ଭାବେ ଅନୁଭବ କରିଛନ୍ତି । ସେଥିପାଇଁ ଆରାଧ୍ୟ ଦେବତାଙ୍କ ବିଷୟରେ ମହାଭାରତର ସଭାପର୍ବରେ କହିଛନ୍ତି:

ସଂସାର ଜନକୁ ସେହୁ ତାରିବା ନିମନ୍ତେ
ବଉଦ୍ଧ ରୂପରେ ବିଜେ ଅଛ ଜଗନ୍ନାଥେ ॥

ଶ୍ରୀଜଗନ୍ନାଥ କାହିଁକି ଖଣ୍ଡିତ ସେ ବିଷୟରେ ଦେଉଳତୋଳା ନାମକ ପୁରାଣରେ ସବିଶେଷ ବର୍ଣ୍ଣିତ ଅଛି । ମାତ୍ର ଆଦିକବି ସାରଳା ଦାସଙ୍କ ମତରେ:

କଳିଯୁଗେ ଲୋକଙ୍କର ଅନୀତିଭାବ ଜାଣି
ତେଣୁ ପାଦପାଣି ନ କହିଲେ ଚକ୍ରପାଣି
ନାସା ଶ୍ରବଣ ଯେ ଅଧର ସହିତେ
ଲୁଚାଇ ମଉନ ହେଲେ ଜଗନ୍ନାଥେ ।

ପୁରାଣକାର ଶ୍ରୀ ବଳରାମ ଦାସ ଶ୍ରୀରାମଚନ୍ଦ୍ରଙ୍କୁ ଶ୍ରୀଜଗନ୍ନାଥ ରୂପେ ଚିନ୍ତାକରି ଶ୍ରୀମନ୍ଦିରରେ ବସି ରାମାୟଣ ରଚନା କରିଛନ୍ତି । ଏଣୁ ବଳରାମ ଦାସ କୃତ ଲୋକାଦୃତ ରାମାୟଣର ନାମ ହେଉଛି ଜଗମୋହନ ରାମାୟଣ । କବି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ରାମାୟଣ ଗ୍ରନ୍ଥ ଆରମ୍ଭ କରିଛନ୍ତି:

ବନ୍ଦଇ ଜଗନ୍ନାଥ କମଳା ଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା
କି ଜାଣି ପଟାନ୍ତର କଳାମେଘ ପ୍ରଭା
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।
(ରା. ଆଦ୍ୟକାଣ୍ଡ)

ସଂସ୍କୃତ ପଦ୍ମ ପୁରାଣ ଭଳି ଓଡିଆ ପଦ୍ମ ପୁରାଣ ବୃହତ ନହେଲେ ମଧ୍ୟ ମୌଳିକ ଓ ଓଡିଆର ନିଜସ୍ୱ । ସେଥିରେ କବି ନୀଳାମ୍ବର ଦାସ ବିଷ୍ଣୁରୂପୀ ଶ୍ରୀଜଗନ୍ନାଥଙ୍କ ମହିମା ମଧ୍ୟ ବର୍ଣ୍ଣନା କରିଛନ୍ତି:

ବଳଭଦ୍ର ଜଗନ୍ନାଥ ନୀଳାଦ୍ରିର ପତି
ସୁଭଦ୍ରା ଯେ ସୁଦର୍ଶନ ଚତୁର୍ଦ୍ଧାମୂରତି ।
ଭକ୍ତଭାବେ ଏହାକୁ ଯେ କରନ୍ତି ଦର୍ଶନ
କୋଟି କୋଟି ଜନ୍ମପାପ ହୁଅଇ ବହନ ।
ସେ ଚତୁର୍ଦ୍ଧାମୂରତିକୁ ଯେହୁ ଦେଖି ନାହିଁ
ଶତପୁଣ୍ୟ କଲେ ସେହୁ ମୁକ୍ତି ନମିଳଇ ।

ଶ୍ରୀଜଗନ୍ନାଥ ଚରିତାମୃତରେ କବି ଦିବାକର ଦାସ ଶ୍ରୀ–ଜ–ଗ–ନ୍ନା–ଥ, ଏହି ପାଞ୍ଚୋଟି ବର୍ଣ୍ଣର ବିଶଦ ଅର୍ଥ ପ୍ରଦାନ କରିଛନ୍ତି । **ଶ୍ରୀ–** ଲକ୍ଷ୍ମୀ, ଭକ୍ତ, ପ୍ରୀତି ଓ ଶୋଭା ପ୍ରଦାୟିନୀ ଶକ୍ତି । ସେ ସଂସାରର ତାରିଣୀ ଶକ୍ତିରୂପେ ବିଦ୍ୟମାନ । **ଜ –** 'ଜ'ର ଅର୍ଥ ହେଉଛି ସୃଷ୍ଟି ବା ଜନ୍ମର ସ୍ଥଳ । ସର୍ବଦେବତା ସେହିଠାରୁ ହି ସମ୍ଭବ ହୋଇଛନ୍ତି । ସେ ବେଦ, ମନ୍ତ୍ର, ଯୋଗ, ଜ୍ଞାନ, ସବୁର ଉତ୍ପତ୍ତି ସ୍ଥଳ । 'ଜ' ହିଁ ଜଗନ୍ନାଥ ମୂର୍ତ୍ତି ଓ ସେ ଆପେ ଜନ୍ମ ଲାଭ କରିଛନ୍ତି । ଜ– ଜଗନ୍ନାୟ ଓ ଜ୍ୟୋତି ସ୍ୱରୂପ । 'ଜ' ଜଗନ୍ନାଥ ବା ଯେ ଯେଉଁ ନାମରେ ଡାକିଲା ସେ ତାଙ୍କୁ ପାଇଲା । **ଗ –** 'ଗ'ର ଅର୍ଥ ଗୁହ୍ୟ, ଗୁରୁତର ଓ ସାଗର ପରି ଗଭୀର ଓ ଅନନ୍ତ । ସେ

ଗୋଲକ । ସେ ଗର୍ବଗଞ୍ଜନ ଓ ଗଜୋଦ୍ଧାରଣ ପରି ଦୁଃଖର ଦୁଃଖ କଷ୍ଟ ନିବାରକ । **ନା** – 'ନ'ର ଅର୍ଥ ନିର୍ବିକଳ୍ପ, ନିରୀହ, ବ୍ରହ୍ମ ନିରାକାର, ନତୀତ, ନିର୍ଭର, ନିରାଲମ୍ବସ୍ଥାନ, ନରକ ନିସ୍ତାରଣ, ନିତ୍ୟ, ମହାନିତ୍ୟ, ଅବିନାଶୀ, ନିର୍ମଳ, ନିର୍ମାୟା ଓ ସେ ନାମରୂପୀ ଅଟନ୍ତି । **ଥ** – 'ଥ'ର ଅର୍ଥ ସେ ସର୍ବଭୂତର ଆତ୍ମା, ସେ ସୁଦର୍ଶନ, ସ୍ଥିରବୁଦ୍ଧ ଧର୍ମ, ଅର୍ଥ, କାମ ଓ ମୋକ୍ଷର ଜନ୍ମସ୍ଥଳ । ଏଥିରୁ ସ୍ଥାବର ଜଙ୍ଗମ ଓ ଅଷ୍ଟାଦଶ ସିଦ୍ଧି ଜନ୍ମଲାଭ କରିଛନ୍ତି । 'ଥ' ଅନାଥର ନାଥ ଓ ସର୍ବପ୍ରାଣୀ ହିତକାରୀ ଅଟନ୍ତି ।

ଭଗବାନ ଯେ ରହସ୍ୟମୟ, ସର୍ବଶକ୍ତିମାନ, ସର୍ବ ଅନ୍ତର୍ଯ୍ୟାମୀ ତଥା ସେ ସର୍ବବ୍ୟାପକ । ଏହି ସମସ୍ତ ବିଷୟ କେବଳ ଜଗନ୍ନାଥ ନାମରେ ଭରି ରହିଛି ।

ପ୍ରାଚୀନ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ଓଡିଆ ପୁରାଣରେ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ମହିମା ତଥା ସଂସ୍କୃତି ବିଷୟରେ ବର୍ଣ୍ଣନା କରାଯାଇଛି । ବାୟୁପୁରାଣ, ଶ୍ରୀଜଗନ୍ନାଥ ପୁରାଣ, ସ୍କନ୍ଦ ପୁରାଣ, ଭବିଷ୍ୟ ପୁରାଣ, ବିଷ୍ଣୁ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ବରାହ ପୁରାଣ, ବ୍ରହ୍ମାଣ୍ଡପୁରାଣ, ଅଗ୍ନିପୁରାଣ ଓ କଳ୍କୀପୁରାଣରେ ଶ୍ରୀଜଗନ୍ନାଥଙ୍କ ମହିମା ବିଶେଷ ରୂପେ ବର୍ଣ୍ଣନା କରାଯାଇଛି ।

ଓଡିଆ ପୁରାଣକାରମାନେ ପୁରାଣ ଗ୍ରନ୍ଥ ଆରମ୍ଭରେ ଏ ମାଟିର ସାଆନ୍ତ ଓଡିଆ ଜାତିର କର୍ଣ୍ଣଧାର ଶ୍ରୀଜଗନ୍ନାଥଙ୍କ ମଙ୍ଗଳାଚରଣରୁ ହିଁ ଲେଖନୀ ଧରିଛନ୍ତି । ଓଡିଆ ସାହିତ୍ୟ ଓ ଜନ ଚେତନାର ପ୍ରତୀକ ଶ୍ରୀଜଗନ୍ନାଥ ଓଡିଆ ପୁରାଣର ଛାତ୍ରେ ଛାତ୍ରେ ତାଙ୍କ କରୁଣାର ବାରି ସିଞ୍ଚନ କରି ଓଡିଆ ଜାତି ଓ ସଂସ୍କୃତିକୁ ଧନ୍ୟ କରିଛନ୍ତି ଓ କରୁଛନ୍ତି ଭବିଷ୍ୟତରେ କରିବେ ମଧ୍ୟ ।

ସଂପାଦକ
ପୁରାଣ ପତ୍ରିକା
ଆଲୋକ ନଗର, ନିଆଳୀ
ଜି – କଟକ – ୭୫୪୦୦୪

# ଜଣାଣ

**ବିମଳା ସିଂହ**



ଭକତେ ହେଲେଣି ବାଇ
ମହାବାହୁ ଆଉ ବିଳମ୍ବ କିମ୍ପାଇ
ପହଣ୍ଡିରେ ବିଜେ କର ଯାଇ

ପଣ୍ଡା ପଢିଆରୀ ସଜ ସାରିଲେଣି
ଭକ୍ତ ନେବା ପାଇଁ ରଥକୁ ଟାଣି
ଭାଇ ବଳରାମ ଭଉଣୀ ସୁଭଦ୍ରା
ମାଉସୀ ଘରକୁ ସଙ୍ଗରେ ନେଇ ।

ଛେରାପହଁରାରେ ବିଜେ ଗଜପତି
ଯାହା ପାଇଁ ତୁମ ସଦା ଉଡେ ଛତି
ନବଦିନ ଯାତ୍ରା ପାଇଁ ବଡଦାଣ୍ଡ
ଜନ ସମୁଦ୍ରରେ ଉଛୁଳି ଉଠଇ

ବିଳମ୍ବ ନକରି ଉଠ ଜଗନ୍ନାଥ
ରଥପରେ ବିଜେ କର ଯାଇ ।

କେତେ ଯେ ବିଦୂର ଦାସିଆ ତୁମର
ଆଣିଅଛ ଟାଣି ଲଗାଇଣ ଡୋର,
କିଏ ଦେବ ଫୁଲ ତୁଳସୀର ମାଳ
ଲଭିବା ପାଇଁ କି କୋଟି ଜନ୍ମ ଫଳ
ତୁମେ ଦେଖୁଥିବ ଭକ୍ତ ଚାହୁଁଥିବ
ଆତ୍ମା ପରମାତ୍ମା ମିଳନ ପାଇଁ ।



ବରିଷ୍ଠ ଶିକ୍ଷୟିତ୍ରୀ, ସରକାରୀ ଉଚ୍ଚ ବିଦ୍ୟାଳୟ
ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦

# ଶବରୀ ନାରାୟଣଃ ଶ୍ରୀଜଗନ୍ନାଥ

ଡକ୍ଟର ଶରତ ଚନ୍ଦ୍ର ପରିଡା

ଏ ଜଗତରେ ପ୍ରତ୍ୟେକ ବସ୍ତୁ ଓ ଭାବର ବିବର୍ତ୍ତନ ହୋଇ ଚାଲିଛି । ପରିବର୍ତ୍ତନ ସୃଷ୍ଟିର ସ୍ୱଭାବ । ଶ୍ରୀଜଗନ୍ନାଥ ଓ ତାଙ୍କୁ ନେଇ ଗଢି ଉଠିଥିବା ଧର୍ମ, ଦର୍ଶନ, ଆଚାର ବିଚାର କ୍ଷେତ୍ରରେ ଯେ ଅନେକ ପରିବର୍ତ୍ତନ ଘଟିଯାଇଛି, ଏହା ସମସ୍ତେ ସ୍ୱୀକାର କରିବେ ।

ଭାରତର ଆଦିମାନବ ହିଁ ଶବର । ଆଜି ଆମେ ଯେଉଁ ସଭ୍ୟ, ଶିକ୍ଷିତ ମାନବ ସମାଜରେ ଦେଖୁଛୁ, ସେ ଦିନେ ବଣରେ ଲଙ୍ଗଳା ହୋଇ ବୁଲୁଥିଲା । ଜଙ୍ଗଲର ଫଳମୂଳ ଓ କନ୍ଦ ଖାଇ ବଞ୍ଚୁଥିଲା । ମାଲକାନାଗିରି ଜିଲ୍ଲାର ବଣ୍ଡାମାନଙ୍କୁ ଦେଖିଲେ ଏକଥା ସହଜରେ ଜଣେ ବିଶ୍ୱାସ କରି ପାରିବ । ଭାରତ ଭୂମିର ମୂଳ ଅଧିବାସୀ ଶବରମାନେ ଓଡ଼ିଶାର ପୂର୍ବ ଉପକୂଳ ପୁରୁଷୋତ୍ତମ କ୍ଷେତ୍ରରେ ମଧ ବାସ କରୁଥିଲେ ।

ପୁରାଣ ପ୍ରସିଦ୍ଧ ନୀଳଗିରିରେ ଶବରମାନେ ବସତି ସ୍ଥାପନ କରିଥିଲେ । ସ୍କନ୍ଦ ପୁରାଣରେ ନୀଳଗିରିର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଏହା ନାନା ବଣରେ ଆବୃତ୍ତ ଥିଲା । ନାନା ପ୍ରକାର ଲତା, ଗୁଳ୍ମ, ପଶୁପକ୍ଷୀ ଓ ପଥରମାଳା ଦ୍ୱାରା ସ୍ଥାନଟି ଆକୀର୍ଣ୍ଣ ଥିଲା । ଏହି ପାହାଡର ପଥରକୁ ଦକ୍ଷିଣ ସାଗରର ତରଙ୍ଗମାଳା ସ୍ପର୍ଶ କରୁଥିଲା । ରୋହିଣୀ କୁଣ୍ଡର ପୂର୍ବତଟର ନୀଳକାନ୍ତ ମଣି ନିର୍ମିତ ଭଗବାନ ବାସୁଦେବଙ୍କ ମୂର୍ତ୍ତି ରହିଥିଲା । ସେ ଥିଲେ ନୀଳମାଧବ । ନୀଳଗିରିର ବ୍ୟାଘ୍ର ଗୁମ୍ଫାରେ ଶବରରାଜ ବିଶ୍ୱାବସୁ ନୀଳମାଧବଙ୍କୁ ଉପାସନା କରୁଥିଲା । ଏହି ପାହାଡର ପଶ୍ଚିମ ଦିଗରେ ଶବର ଜାତିର ଘର ସବୁ ଘେରି ରହିଥିଲା । ତାହା ଶବର ଦ୍ୱୀପ ନାମରେ ଖ୍ୟାତି ଲାଭ କରିଥିଲା: କ୍ଷେତ୍ରସ୍ୟ ଦ୍ୱୀପ ସଂସ୍ଥାନ ଖ୍ୟାତଂ ଶବର ଦ୍ୱୀପକମ୍ । ଏହି ଶବର ପଲ୍ଲୀରୁ ନୀଳଗିରି ଉପରକୁ ଯିବା ପାଇଁ ଗୋଟିଏ ଏକପଦୀ ଶିଳାମୟ ପଥ ଥିଲା । ଅତଏବ ଶ୍ରୀଜଗନ୍ନାଥଙ୍କ ପୂର୍ବ ରୂପ ନୀଳମାଧବ ଶବର ଜାତି ଓ ସେମାନଙ୍କ ଉପାସନା ସହିତ ଜଡିତ ଥିଲେ ।

ଶବର ଦେବଭାବନାର ଅଙ୍କୁରୋଦ୍‌ଗମ ମୂଳରେ ବାହ୍ୟ ପ୍ରକୃତି ନିହିତ । ଶବରମାନେ ପ୍ରକୃତିର ଉପାସକ । ପ୍ରକୃତି କୋଳରେ ଜନ୍ମ ହୋଇ ତା'ର ମାଟି, ପାଣି, ପବନ ଓ ଜଙ୍ଗଲ ଭିତରେ ଜୀବନ ବିତାଉ ଥିଲେ । ସେମାନେ ଥିଲେ ସରଳ, ନିଷ୍କପଟ ଓ ନିରୀହ । ତାର ଭାବନା ଓ କଳ୍ପନା ବାହାରେ ଘଟି ଚାଲିଥିଲା ପ୍ରକୃତିର ଲୀଳା । ସେ ଧୀରେ ଧୀରେ ଅନୁଭବ କରିବାକୁ ଲାଗିଲା ଜୀବଜଗତଙ୍କ ବ୍ୟତୀତ ଆଉ ଏକ ଅଦୃଷ୍ଟ ମହାଶକ୍ତି ରହିଛି । ତାହା କେତେବେଳେ ଭୀଷଣ ଭୟଙ୍କର ତ ପୁଣି କେତେବେଳେ କାନ୍ତ କମନୀୟ । ଯେଉଁମାନେ ତା'ର ଉପକାର କଲେ, ସେମାନଙ୍କ ପାଖରେ କୃତଜ୍ଞତାରେ ତାର ମଥା ନଇଁ ଆସିଲା । ସୂର୍ଯ୍ୟ, ଚନ୍ଦ୍ର ପୃଥିବୀ, ଏମାନଙ୍କୁ ଆଦର କରି ଶିଖିଲା । ସବୁଠାରୁ ଅଧିକ ଭଲ ପାଇଲା ଗଛକୁ । 'ସବଦା' ସମ୍ପ୍ରଦାୟର ଶବରମାନେ ଭାବନ୍ତି, ଜଗତକର୍ତ୍ତା ପ୍ରଥମେ ସୃଷ୍ଟି କରିଥିଲେ ଗଛ । ସେମାନେ ବୃକ୍ଷକୁ ନିଜର 'ଗୋତ୍ର' ସଙ୍କେତ ହିସାବରେ ଉପାସନା କରୁଥିଲେ ।

ଶବର ଜଡ ଦେହରେ ଚେତନାର ଅବସ୍ଥାନକୁ ସ୍ୱୀକାର କରେ । ତା'ର ବିଶ୍ୱାସ ଗୋତ୍ରବୃକ୍ଷ ତାକୁ ବିପଦ ଆପଦରେ ସୁରକ୍ଷା ପ୍ରଦାନ କରିଥାଏ । ଜନ୍ମଜନ୍ମାନ୍ତର ଦୁଃଖ ବିଦାରଣ କରିବାରେ ବୃକ୍ଷ ହିଁ ସମର୍ଥ । ଏହି ଭାବ ସହିତ ଭାବ ମିଳାଇ ପରବର୍ତ୍ତୀ ଆର୍ଯ୍ୟମାନେ 'ଜନ୍ମଜନ୍ମାନ୍ତର ପାତକାନି ଦାରୟତି ଇତି ଦାରୁ' ଓ 'ଦ୍ୟେତି ସଂସାର ଦୁଃଖାନି ଦଦାତି ସୁଖମବ୍ୟୟମ୍ । ତସ୍ମାଦ୍ ଦାରୁମୟଂ ବ୍ରହ୍ମ...' ବୋଲି କହି ବୃକ୍ଷକୁ ଦାରୁ ଓ ଦାରୁକୁ ବ୍ରହ୍ମ ବୋଲି ବ୍ୟାଖ୍ୟା କରିଛନ୍ତି । ଅର୍ଥାତ୍ ବୃକ୍ଷର ଦୁଃଖ ଓ ପାପତାପ

ଦୂରୀକରଣ କ୍ଷମତାଥିବା କଥାରେ ଆର୍ଯ୍ୟ ଅନାର୍ଯ୍ୟ ସମସ୍ତେ ଏକମତ । ତେଣୁ ଶବରମାନେ ଗୋତ୍ରବୃକ୍ଷକୁ କେବେ କାଟନ୍ତି ନାହିଁ । ତାର ଫଳମୂଳକୁ ଖାଦ୍ୟଭାବେ ଗ୍ରହଣ କରନ୍ତି ନାହିଁ । ଅଁଳା, ନିମ୍ବ, ବେଲ, ଶାଳ, ଅଶ୍ୱତ୍ଥ, ବଟବୃକ୍ଷ ବ୍ୟତୀତ ଅନ୍ୟାନ୍ୟ ଫଳଗଛକୁ ମଧ୍ୟ ଶବରମାନେ ପୂଜା କରନ୍ତି । ଏହି ପ୍ରସଙ୍ଗରୁ ନିମ୍ବ ବୃକ୍ଷରୁ ଜଗନ୍ନାଥଙ୍କ କଳେବର ନିର୍ମାଣ ଓ ଅଣସର ଘରେ ଦଇତାପତିମାନଙ୍କ ଦ୍ୱାରା ଗୁପ୍ତସେବା ପ୍ରଦାନର ମୂଳଦୁଆ ବୋଲି ସ୍ପଷ୍ଟ ପ୍ରତିଭାତ ହୁଏ ।

ବୃକ୍ଷ ଥିଲା ଶବରର ଆଦର୍ଶ ଓ ଭଗବାନ । ବୃକ୍ଷର ବହୁମୁଖୀ ଉପକାରିତା ଓ ସହନଶୀଳତା ଶବର ଜାତିକୁ ଗଭୀରଭାବେ ଅନୁପ୍ରାଣିତ କରିଥିଲା । ଗଛ, ଫଳ, ପୁଷ୍ପ ଓ ଛାୟା ପ୍ରଦାନ କରି ଜଗତର କଲ୍ୟାଣ ସାଧନ କରୁଥିବା ବୃକ୍ଷକୁ ଦେଖି ଶବର ନିଜ କର ଚରଣର ବିନିଯୋଗ କରି ଆପଣାର ଜୀବିକା ସମ୍ପାଦନ କରେ । ପରୋପକାର କରିବାକୁ ପଛଘୁଞ୍ଚା ଦିଏ ନାହିଁ । ବୃକ୍ଷ ପରି ସେ ସର୍ବଂସହା । ବୃକ୍ଷ ଓ ଶବରର ଏହି ପ୍ରତ୍ୟକ୍ଷ ସମ୍ପର୍କକୁ ଲକ୍ଷ୍ୟ କରି ଅଥର୍ବ ବେଦର ଋଷି ବୃକ୍ଷକୁ 'ଦେବସଦନ' ବୋଲି କହିଛନ୍ତି । ଏହି ବୃକ୍ଷ ଉପାସନା ଦ୍ୱାରା ଆୟୁ, ବଳ, ଯଶ ଓ ବୃଦ୍ଧି ପ୍ରାପ୍ତ ହୁଏ ବୋଲି ଫଳଶ୍ରୁତି ମଧ୍ୟ ସେଠାରେ ରହିଛି । ଖାଲି ସେତିକି ନୁହେଁ ପ୍ରତ୍ୟେକ ଗ୍ରାମରେ ଦାରୁ ବା ପଥରରେ ନିର୍ମିତ ହୋଇଥିବା ଦେବଦେବୀଙ୍କ ନିକଟରେ ବିଭିନ୍ନ ପର୍ବମାନଙ୍କରେ ପୂଜାପାଠ, ବଳି, ନାଚ ଗୀତ ସମ୍ପନ୍ନ ହୋଇଥାଏ । ପୁଷ୍ପୁନୀ, ଛେର୍‌ଛେରା ଚୈତ୍ରପର୍ବ– ଏହିସବୁ ପର୍ବମାନଙ୍କରେ ଆଦିବାସୀମାନେ ଶିକାର କରି ସଲପ ହାଣ୍ଡିଆ ପିଇ ନାଚ ଗୀତରେ ମଜ୍ଜିଯାନ୍ତି ।

ଶବରର ମାଦଳ ପୂଜା ଜଗନ୍ନାଥ ସଂସ୍କୃତିକୁ ପ୍ରଭାବିତ କରିଥିବାର ଅନୁମାନ କରାଯାଏ । ଶବରମାନେ ଗାଁ ମୁଣ୍ଡରେ ଥିବା ଗୋତ୍ରବୃକ୍ଷକୁ ଚୁଆ, ଚନ୍ଦନ, ସିନ୍ଦୂର ଲଗାଇ ନାଲି କପଡା ଗୁଡାଇ ପୂଜା କରୁଥିଲେ । ତା'ର ନାଁ ଦେଇଥିଲେ 'ଜଗନ୍ତ' । ପୂଜା କରୁ କରୁ ଗଛଟି ବୁଢା ହୋଇ ମରି ଗଲେ ମଧ୍ୟ ଗଛପ୍ରତି ଥିବା ଦେବଭାବନା ବଦଳେ ନାହିଁ । ଡାଳପତ୍ର ଶୁଖି ଝଡି ପଡିଲେ ମଧ୍ୟ ମୂଳଗଣ୍ଡିକୁ ସେ ପୂର୍ବପରି ପୂଜା କରିବାକୁ ଲାଗେ । ଏହି ଶୁଖିଲା କାଠ ଗଣ୍ଡିକୁ ଦାରୁ ଓ ସେ ଅଧିକ ବିକୃତ ଓ ଶୁଷ୍କ ହୋଇଗଲେ ତାକୁ ମାଦଳ ଭାବେ ଉପାସନା କରିବାରୁ ବିଚ୍ୟୁତ ହୁଏ ନାହିଁ । ଏବେ ମଧ୍ୟ କେତେକ ଶବରମାନଙ୍କ ମଧ୍ୟରେ ମାଦଳ ପୂଜା ପ୍ରଚଳିତ ଅଛି । ମାଦଳର ଅର୍ଥ ହେଉଛି ହାତଗୋଡ ନଥିବା ମୁଣ୍ଡଗଣ୍ଡି ଥିବା ଏକ କାଠଗଣ୍ଡି । ଏହି କାରଣରୁ ଜଗନ୍ନାଥଙ୍କ ଦୈନନ୍ଦିନ ବିଧି ପାଳନ ଲିପିବଦ୍ଧ ହୋଇଥିବା ପାଞ୍ଜି ପ୍ରାଚୀନ ଶବର ଦେବତା 'ମାଦଳା'ଙ୍କ ନାମରେ 'ମାଦଳାପାଞ୍ଜି' ବୋଲି ଅଭିହିତ ହୋଇ ଆସୁଛି ।

ଜଗନ୍ନାଥ ସଂସ୍କୃତିରେ ଦଶାବତାରର ମୂଳଭିତ୍ତି ଶବର ସଂସ୍କୃତିରେ ଦେଖିବାକୁ ମିଳେ । ଶବରମାନଙ୍କର ଦଶ ପ୍ରକାରର ଦେବତା ଥିବାର ଜଣାଯାଏ । ସେମାନେ ହେଲେ କିତୁଙ୍ଗ, ଜଗନ୍ତ, ଡୋଡ, ତୁମନ୍, ଭୀମ, ଗରସିଦ୍, ରାମନ୍, ଯୋଯପେନ୍, ମଉ ଓ ଡିଢି । ଏମାନଙ୍କର ପୁରାଣ ପ୍ରସିଦ୍ଧ ଦଶାବତାର ସହ ସାଦୃଶ୍ୟ ରହି ଥିବାର ଜଣାଯାଏ । ଅନାର୍ଯ୍ୟ ଶବର ଦେବତା କିତୁଙ୍ଗ ଓ ଆର୍ଯ୍ୟମାନଙ୍କର ଜଗନ୍ନାଥ ଏକ ଓ ଅଭିନ୍ନ । ଜୈନମାନେ ମୂଳ 'ଜଗନ୍ତ' ସହିତ ନିଜ ଧର୍ମର ଉତ୍କର୍ଷ ପ୍ରତିପାଦକ 'ନାଥ' ଶବ୍ଦ ଯୋଗ କରି 'ଜଗନ୍ନାଥ' ବା ଜଗନ୍ତନାଥ ଶବ୍ଦ ନିଷ୍ପନ୍ନ କରନ୍ତି । ସେହିପରି ଆର୍ଯ୍ୟମାନେ ମୂଳ ଦାରୁ ସହିତ ପରମଭାବ ଦ୍ୟୋତିକ 'ବ୍ରହ୍ମ' ଶବ୍ଦ ଯୋଗ କରି ଦାରୁବ୍ରହ୍ମ ଶବ୍ଦ ନିର୍ମାଣ କଲେ ।

ବିଭିନ୍ନ ଶବର ସମ୍ପ୍ରଦାୟ ଦ୍ୱାରା ପୂଜିତ ବିଭିନ୍ନ ଦେବଦେବୀ କାଳକ୍ରମେ ଏକ ମହାସ୍ରୋତରେ ସାମିଲ ହୋଇ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ରୂପେ ରୂପାନ୍ତରିତ ହେଲେ । ଆଦିବାସୀ ଗଣ୍ଡ ସମାଜରେ 'ଛ' ଫୁଟ ଉଚ୍ଚତା ବିଶିଷ୍ଟ ଦୁଇଗୋଟି କୃଷ୍ଣବର୍ଣ୍ଣର ଦାରୁପୂଜା କରନ୍ତି । ଏହାକୁ ସେମାନେ 'ଦଙ୍ଗାଦେବତା' ବୋଲି ଡାକନ୍ତି । ଏହା ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହର ନିମ୍ନ ଅଂଶ ବୋଲି ବିଶ୍ୱାସ କରାଯାଏ । ଖଡିଆ ସଉରାମାନେ ବତାସ ବା ବଳସ ନାମରେ ଜଣେ ଦେବତାଙ୍କୁ ପୂଜା କରନ୍ତି । ଏହା ବଳଭଦ୍ରଙ୍କ ପୂର୍ବରୂପ ବୋଲି ବିଚାର କରାଯାଏ । ସୁଭଦ୍ରା ଶବରମାନଙ୍କର ଧାମଦେବୀ ସ୍ତମ୍ଭେଶ୍ୱରୀଙ୍କ ଭିନ୍ନ ଏକ ରୂପ । ଆଦିବାସୀମାନେ ଜଗାରାଜୁ, କେରାରାଜୁ ଓ ସୁଭଦ୍ରା ମା'ଙ୍କୁ ପୂଜା କରିଥାନ୍ତି । ଶବରମାନେ ଚାଳରେ ଶିକାବାନ୍ଧି ଏକ କୁଡୁଆ ଟାଙ୍ଗୀ କଳା, ଧଳା ଓ ଲାଲ ରଙ୍ଗରେ ଚିତ୍ରିତ ତିନୋଟି କାଷ୍ଠ ମୂର୍ତ୍ତି ପୂଜା କରନ୍ତି । ସେମାନେ ଯଥାକ୍ରମେ କିତୁଙ୍ଗ ଧର୍ମବୋଦ ଓ ବଳିଆ ନାମରେ ପରିଚିତ । କୋୟାର ଜଗାରାଜୁ, ଗଦବାର ଜଗତ ଓ କନ୍ଧମାନଙ୍କର ନଗୟ–ଏମାନେ ସମସ୍ତେ ଶବରଙ୍କର । କଣ୍ଢୁ ଜଗନ୍ତା ବା ଜନଙ୍ଗଲୁ ହେଉଛନ୍ତି ଜଗତର ନାଥ । ଆଦିବାସୀ କନ୍ଧମାନେ ଗାଁ ମୁଣ୍ଡ ବରଗଛ ତଳେ ତିନିଖଣ୍ଡ ପଥରକୁ ଏକ ଧାଡିରେ ରଖନ୍ତି । ସେମାନଙ୍କ ଉପରେ ଛାତଭଳି ଏକ ଆବରଣ ସ୍ଥାପନ କରନ୍ତି । ସେହି ତିନିଖଣ୍ଡ ପଥରକୁ ଯଥାକ୍ରମେ ମୁରବିପେନୁ, ଜାକେରିପେନୁ

ଓ ତାନାପେନୁ ଏହି ତିନିଦିଅଁ ନାମରେ ଉପାସନା କରନ୍ତି । ଏହିମାନେ ହିଁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀ ସୁଭଦ୍ରା ଅଟନ୍ତି ।

ଶବରମାନଙ୍କ 'ଗୁଡିସାରୁ' ଗୁଣ୍ଡିଚା ଯାତ୍ରାର ଉଦ୍ଭବ ବୋଲି ଗବେଷକମାନେ କହନ୍ତି । ଗୁଡିସା ଏକ ଦ୍ରାବିଡ ଶବ୍ଦ । ଏହାର ଅର୍ଥ କୁଟୀର । ଶବରମାନେ ପ୍ରଥମେ ଯେଉଁ କୁଟୀରରେ ଦାରୁପୂଜା କରୁଥିଲେ ସେହି ସ୍ଥାନକୁ ପ୍ରତିବର୍ଷ ଠାକୁରମାନଙ୍କ ଯାତ୍ରା କରାଇଥାନ୍ତି । ଏହା ଗୁଡିସା ଯାତ୍ରା ନାମରେ ପରିଚିତ ଥିଲା । ପରବର୍ତ୍ତୀ କାଳରେ ଏହା ଗୁଣ୍ଡିଚା ଯାତ୍ରା ନାମରେ ପ୍ରସିଦ୍ଧି ଲାଭ କଲା ।

ତନ୍ତ୍ର ବହୁଳ ଶବର ଉପାସନାରେ ଶ୍ରୀଜଗନ୍ନାଥଙ୍କ ସ୍ଥାନ ମହତ୍ୱପୂର୍ଣ୍ଣ ଅଟେ । ଶବରମାନଙ୍କର ପରମ୍ପରାରୁ ପରବର୍ତ୍ତୀ କାଳରେ ତନ୍ତ୍ରଶାସ୍ତ୍ରର ଉଦ୍ଭବ । କାଳୀ ପୁରାଣରେ ଜଗନ୍ନାଥଙ୍କୁ ତାନ୍ତ୍ରିକ ଦେବତା ରୂପେ କଳ୍ପନା କରାଯାଇଛି । ଶ୍ରୀମନ୍ଦିର ତଥା ଓଡ଼ିଶାର ଅନେକ ମନ୍ଦିର ତାନ୍ତ୍ରିକ ଢାଞ୍ଚାରେ ତିଆରି ହୋଇଛି । ଶ୍ରୀମନ୍ଦିରର ଆକୃତି ଶିବଲିଙ୍ଗ ପରି । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଗଠନ ଓ ପୂଜା ଉପାସନା ପରମ୍ପରାରେ ତନ୍ତ୍ରପ୍ରଭାବ ଅନୁଭୂତ ହୁଏ । ଚତୁର୍ଦ୍ଧାମୂର୍ତ୍ତିଙ୍କର ରତ୍ନବେଦୀ ଶ୍ରୀଚକ୍ର ଉପରେ ଆଧାରିତ । ତାଙ୍କର ମନ୍ତ୍ର ଓଁ ବେଦରୁ ଆନୀତ ଏବଂ ହ୍ଲୀଂ ଶ୍ଲୀଂ କ୍ଲୀଂ ତନ୍ତ୍ରରୁ ଆନୀତ । ଗବେଷକମାନେ ମତ ଦିଅନ୍ତି ରଥର ଚାରୋଟି ଦଉଡି ମଧ୍ୟ ତନ୍ତ୍ରର ପ୍ରତୀକ । ଶ୍ରୀମନ୍ଦିର ବେଢାରେ ଶକ୍ତି ସ୍ୱରୂପା ବିମଳାଙ୍କ ପୀଠ ପ୍ରତିଷ୍ଠିତ । ତାଙ୍କୁ ଭୈରବୀ ଓ ଜଗନ୍ନାଥଙ୍କୁ ଭୈରବ ରୂପେ ଚିତ୍ରିତ କରାଯାଇଛି । ଆମିଷ ପ୍ରିୟ ବିମଳାଙ୍କ ଗୁହାରି ଅନୁସାରେ ମହାଷ୍ଟମୀ ରାତ୍ରିରେ କୁଆଡେ ବଳିପଡେ । ଠାକୁରଙ୍କ ପୂଜା ପଦ୍ଧତିରେ ପଞ୍ଚମକାର ( ମତ୍ସ୍ୟ, ମାଂସ, ମଦ୍ୟ, ମୈଥୁନ ଓ ମୁଦ୍ରା) ସେବାରେ ଗୋପନ ବିଧି ପ୍ରଚଳିତ ହେଲା । ପରେ ଏହାର ପ୍ରତୀକ ସ୍ୱରୂପ ମାଂସାଦି ବଦଳରେ ବିରି, ସୁରା ବଦଳରେ କାଂସ୍ୟପାତ୍ରରେ ନାରିକେଳ ଜଳ ପ୍ରଭୃତି ଉପାସନାର ଅଙ୍ଗ ରୂପେ ପ୍ରବର୍ତ୍ତିତ ହୋଇଛି । ମାହାରିମାନେ ତନ୍ତ୍ର ସାଧନା ନାଁରେ ପଞ୍ଚ 'ମ'କାର ପୂଜା କରୁଥିଲେ । ମନ୍ଦିରର ପଶ୍ଚିମଦ୍ୱାରକୁ ତନ୍ତ୍ରଦ୍ୱାର କୁହାଯାଏ । ମାହାରୀମାନେ ଏହି ତନ୍ତ୍ରଦ୍ୱାର ଦେଇ ଯିବା ଆସିବା କରନ୍ତି । ଦାରୁ ଉପାସନାରେ ଏହି ତାନ୍ତ୍ରିକ ପ୍ରଭାବ ହେଉଛି ଶବର ସଂସ୍କୃତିର ଛାପ ।

ଶ୍ରୀଜଗନ୍ନାଥଙ୍କ ପୂଜା ଉପାସନାର ପରମ୍ପରା ଖୋଜିଲେ ନୀଳମାଧବଙ୍କ ପୂଜକ ଶବର ରାଜା ବିଶ୍ୱାବସୁଙ୍କ ପ୍ରସଙ୍ଗ ଦୃଷ୍ଟିକୁ ଆସେ । ବଡ ଆଶ୍ଚର୍ଯ୍ୟର ବିଷୟ ଦ୍ୱାପର ଯୁଗରେ କୃଷ୍ଣଲୀଳାର ସମାପ୍ତି ଘଟିଛି । ଜାରାଶବର ହାତରେ ଓ କଳିଯୁଗରେ ଶ୍ରୀଜଗନ୍ନାଥଙ୍କ ଲୀଳା ଆରମ୍ଭ ହୋଇଛି ବିଶ୍ୱାବସୁ ଶବର ହାତରେ । ଆଦି କବି ସାରଳା ଦାସ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅପୂର୍ବ ସମନ୍ୱୟ ଆଣି ଉଭୟଙ୍କ ମଧ୍ୟରେ ଅଭେଦ କଳ୍ପନା କରିଛନ୍ତି ।

ଜାରା ବାଣରେ ନାଶଯିବେ ଚକ୍ରପାଣି ।
ଆପଣେ ଦେହ ଛାଡିବେ ଦେବ ଯଦୁମଣି ।

ଚିତ୍ତବିନୋଦ ପୁରାଣରେ ଏହି କଥାକୁ ସମର୍ଥନ କରି କୁହାଯାଇଛି:

ହେ ଶବର ଯାଇ ଏବେ ସମୁଦ୍ର କୂଳକୁ ।
ଆଣି ପୂଜା କର ତୁହି ପ୍ରଭୁଙ୍କ ପିଣ୍ଡକୁ ॥
ନୀଳମାଧବ ନାମଟି ତାଙ୍କର ହୋଇବ ।
ଏହା ଶୁଣି ଶବର ଯେ ଚଳିଗଲା ଜବ ॥

ନୀଳମାଧବ ଶବ୍ଦର ଅର୍ଥ ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ନୀଳ ଅର୍ଥ କୃଷ୍ଣବର୍ଣ୍ଣ ଜଗନ୍ନାଥ । ମା ଅର୍ଥାତ୍ ସୁଭଦ୍ରା । ଧବ ଅର୍ଥାତ୍ ଧବଳବର୍ଣ୍ଣ ବଳଭଦ୍ର । ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀବିଷ୍ଣୁ ପ୍ରଥମେ ନୀଳମାଧବ ରୂପେ ଆବିର୍ଭୂତ ହୋଇଥିଲେ । ଓଡ଼ିଶାରେ ମାଧବ ଉପାସନା ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା । ସ୍କନ୍ଦ ପୁରାଣ ଅନୁସାରେ ନୀଳମାଧବଙ୍କୁ ଦର୍ଶନ କରି ସମସ୍ତେ ବୈକୁଣ୍ଠ ପ୍ରାପ୍ତ ହେଉଥିବାରୁ ଇନ୍ଦ୍ର, ଯମ ଆଦି ଦେବତାଙ୍କର ପ୍ରଭାବ କ୍ଷୁଣ୍ଣ ହେଲା । ସେମାନଙ୍କର ଅନୁରୋଧରେ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଗଲେ ।

ଜଗନ୍ନାଥଙ୍କ ସେବା ସମ୍ପ୍ରଦାୟରେ ଶବରମାନଙ୍କର ଭୂମିକା ଦେଖିଲେ ଶ୍ରୀଜଗନ୍ନାଥ ଯେ ମୂଳତଃ ଶବରମାନଙ୍କର ଏଥିରେ ଦ୍ୱିମତ ରହେନାହିଁ । 'ଛତିଶାନିଯୋଗ' ମଧ୍ୟରେ ଦଇତା ସେବା ଅନ୍ୟତମ । ଦଇତା ଶବ୍ଦ ଦୈତ୍ୟ ଶବ୍ଦର ଅପଭ୍ରଂଶ । ଦୈତ୍ୟ, ଶବର ଭୀଲ–ଏସବୁ ପର୍ଯ୍ୟାୟବାଚୀ ଶବ୍ଦ । ଶବରଶ୍ରେଷ୍ଠ ବିଶ୍ୱାବସୁଙ୍କ କନ୍ୟା ଲଳିତା ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପୁରୋହିତ ଭାଇ ବିଦ୍ୟାପତିଙ୍କ ବଂଶଧର ହେଉଛନ୍ତି ଦଇତାପତି । ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ଶ୍ରୀଜଗନ୍ନାଥଙ୍କ ଅଙ୍ଗ ସେବକ ରୂପେ ଦଇତାମାନଙ୍କୁ ନିଯୁକ୍ତ କରାଗଲା । ସ୍ନାନୋତ୍ସବ, ନେତ୍ରୋତ୍ସବ ଓ ଅଣସର ସେବାରେ ଶବରମାନେ ଓତପ୍ରୋତ ଭାବେ ସମ୍ପୃକ୍ତ । ଅନବସରରେ ଥିଲାବେଳେ ଦୀର୍ଘ ପନ୍ଦର ଦିନ ଶ୍ରୀବିଗ୍ରହମାନେ ଦଇତାପତିମାନଙ୍କର ସମ୍ପୂର୍ଣ୍ଣ ଦାୟିତ୍ୱରେ ଥା'ନ୍ତି । ଏହି ସମୟରେ ଶ୍ରୀଅଙ୍ଗ ପ୍ରସ୍ତୁତିର ସମୟ । ସ୍ୱୟଂ ଜଗନ୍ନାଥ ଶବରମାନଙ୍କୁ ଏହି ଅଧିକାର ପ୍ରଦାନ କରିଛନ୍ତି । ଭାବଯୁକ୍ତ ହୋଇ ଶବରମାନେ

ଏହି ପୂଜା ସମ୍ପନ୍ନ କରିଥାନ୍ତି । ଭାବପୂଜା ଶ୍ରେଷ୍ଠ ପୂଜା । ଏଥିରେ ମନ୍ତ୍ର ସଂସ୍କାର ବା ଦ୍ରବ୍ୟ ଆବଶ୍ୟକ ହୋଇ ନଥାଏ ।

ଶ୍ରୀଜଗନ୍ନାଥଙ୍କ ନବକଳେବର ସମୟରେ ଶବରମାନଙ୍କ ପ୍ରାଧାନ୍ୟ ସବୁଠୁ ବେଶୀ । ଦାରୁ ସଂଗ୍ରହ ପାଇଁ ବନଯାଗ ଯାତ୍ରା ଅନୁଷ୍ଠିତ ହୁଏ । ମୁଖ୍ୟ ଦଇତାଙ୍କ ହାତରେ ଗୁଆ ଟେକି ଦିଅନ୍ତି ରାଜା । କାକଟପୁର ମଙ୍ଗଳାଙ୍କ ସ୍ୱପ୍ନାଦେଶରେ ଦାରୁ ନିର୍ଣ୍ଣୟ ହୁଏ । ଦାରୁ ପାଖରେ ଶବରପଲ୍ଲୀର ନିର୍ମାଣ କରାଯାଏ । ଶାବରୀ ସଭ୍ୟତାର ପ୍ରତୀକ ରୂପେ ଶବରପଲ୍ଲୀର ଘରଗୁଡ଼ିକ ତାଳପତ୍ର ଦ୍ୱାରା ଆଚ୍ଛାଦିତ କରାଯାଏ । ବ୍ରାହ୍ମଣମାନେ ସିନା ନିକଟରେ ଥିବା ମଠମନ୍ଦିର କିମ୍ବା ବିଦ୍ୟାଳୟରେ ରହିଯାନ୍ତି କିନ୍ତୁ ଶବରମାନଙ୍କର କଥା ନିଆରା । ଅନ୍ୟ ନିର୍ମିତ ଚାଳତଳେ ରହିବା ସେମାନଙ୍କ ବିଧି ନୁହେଁ । ତେଣୁ ନିମ୍ବ ବୃକ୍ଷ ନିକଟରେ ନିର୍ମିତ ଶବରପଲ୍ଲୀରେ ସେମାନେ ରହନ୍ତି ଓ ସାତ୍ତ୍ୱିକ ଆହାର କରନ୍ତି । ହୋମ, ବିଗ୍ରହ ନିର୍ମାଣ ଓ ବ୍ରହ୍ମ ପରିବର୍ତ୍ତନ, କୋଇଲି ବୈକୁଣ୍ଠରେ ଶ୍ରୀବିଗ୍ରହମାନଙ୍କର ଗୋଲକ ବିଶ୍ରାମ ଓ ଜଗନ୍ନାଥଙ୍କ ଶବରମାନଙ୍କ ଦ୍ୱାରା ଶୁଦ୍ଧିକ୍ରିୟା ସମ୍ପାଦନ ଶ୍ରୀଜଗନ୍ନାଥଙ୍କ ସହିତ ଶବରମାନଙ୍କ କୁଟୁମ୍ବଭାବ ପ୍ରମାଣିତ କରେ । ଜଗନ୍ନାଥ ଶତ୍ରୁମାନଙ୍କ ଦ୍ୱାରା ଆକ୍ରମିତ ହୋଇ ଯୁଆଡେ ଯାନ୍ତି ଶବରମାନେ ତାଙ୍କ ପାଖ ଛାଡନ୍ତି ନାହିଁ ।

ମହାପ୍ରସାଦର ପ୍ରସ୍ତୁତି ଓ ସେବନ ବିଧିରେ ଶବର ସଂସ୍କୃତିର ଛାପ ସ୍ପଷ୍ଟ । ଶବରମାନଙ୍କର ଚଳଣି ଗୋଷ୍ଠୀ ଜୀବନ ଓ ପଙ୍କ୍ତି ଭୋଜନ । ଅରଣ୍ୟବାସୀ ଶବର ଗୋଷ୍ଠୀ ପଶୁମାଂସ ହେଉ ବା କନ୍ଦମୂଳାଦି ହେଉ ନିଆଁରେ ପୋଡି ପ୍ରଥମେ ଦେବତାଙ୍କୁ ସମର୍ପିତ କରନ୍ତି ଓ ପରେ ଆହାର କରନ୍ତି । କେତେକ ମତ ଦିଅନ୍ତି ଜଗନ୍ନାଥଙ୍କ ପାଖରେ ଲାଗି ହେଉଥିବା ପୋଡପିଠା ଶବର ସଂସ୍କୃତିର । ମାଟି ପାତ୍ରରେ ମହାପ୍ରସାଦ ସିଝା ହେବା ପରମ୍ପରା ଶବର ସଂସ୍କୃତିର । ଶବରମାନେ ଖାଦ୍ୟ ନିଜ ନିଜ ମଧ୍ୟରେ ବାଢ଼ି ଖାଆନ୍ତି ନାହିଁ । ମଝିରେ କୁଡୁଆ ରଖି ତା' ଚାରିପଟେ ଘେରି ବସି ଯାନ୍ତି ଓ କୁଡୁଆରେ ହାତ ପୂରାଇ ଖାଦ୍ୟନେଇ ସେବନ କରନ୍ତି । ଏହି ଶବର ସଂସ୍କୃତିରୁ ଅବଢ଼ା ସଂସ୍କୃତିର ଉଦ୍ଭବ ହେବା ଆଦୌ ଅସମୀଚୀନ ନୁହେଁ । ଏହା ଖାଣ୍ଟି ଶବର ସଂସ୍କୃତି । ଏହିପରି ଶାବରୀୟ ସାଂସ୍କୃତିକ ଚେତନାର ପ୍ରଭାବରେ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ଉଦ୍ଭବ ବୋଲି ଅନେକ ଗବେଷକ ମତ ଦିଅନ୍ତି ।

କ୍ୱା ନଂ.ସି/୨୨୧, ନାଲ୍କୋ
ଦାମନଯୋଡି, କୋରାପୁଟ–୭୬୩୦୦୮

# ନୀଳାଚଳବାସୀ

**ଦିଲ୍ଲୀପ କୁମାର ବେହୁରା**

ଦୁଃଖିଟିଏ ଦୁଃଖ ଜଣାଉଛି ବାରେ
ଦୁଃଖର ପସରା ଧରି ।
ତୁମେ ନଶୁଣିଲେ କିଏବା ଶୁଣିବ
ତୁମେ ପରା ଦୁଃଖହାରୀ ।

କେତେ ଦୁଃଖିଙ୍କେ ପ୍ରଭୁ ଡାକି ହାକି
ଭବୁ ହୋଇଛନ୍ତି ପାର ।
ମୋ ଡାକକୁ କିଆଁ ନଶୁଣ ହେ ପ୍ରଭୁ
କାହିଁକି କରୁଛ ପର ।
ସଂଜ ସକାଳେ ତୁମ ନାମ ଡାକେ
ନିତି ଜପାମାଳି କରି ।



ତୁମରି କରୁଣା ମୋ ଜୀବନେ ଲୋଡା
ଭବୁ ତରିବାର ପାଇଁ
ଦୁଃଖ ଦିଅ ପଛେ କରୁଣାରେ ଊଣା
ନକର ଜଗତ ସାଇଁ
ତୁମେ ଚକାଡୋଳା ନୀଳାଚଳବାସୀ
ପତିତ ପାବନ ହରି ।

ଗ୍ରା–ପୋଖରୀଆ
ପୋ– ମହୁଲିଆ
ଥାନା– ରାଜନଗର, ଜି–କେନ୍ଦ୍ରାପଡା

# ଚକ୍ରରାଜ ସୁଦର୍ଶନ

**କୃପାସିନ୍ଧୁ ବିଶ୍ୱାଳ**

ଓଡ଼ିଆ ଭାଷା ସାହିତ୍ୟରେ 'ଚକ୍ର' ଶବ୍ଦର ଅର୍ଥ ଭିନ୍ନ ଭିନ୍ନ ଭାବରେ କରାଯାଇଛି । ଗୋଟିଏ ଶବ୍ଦକୁ ବିଭିନ୍ନ ଭାବରେ ବ୍ୟବହାର କରିବା ଆମ ଭାଷା, ସାହିତ୍ୟର ଏକ ସ୍ୱତନ୍ତ୍ରତା । 'ଚକ୍ର'ର ବିଭିନ୍ନ ଅର୍ଥ ମଧ୍ୟରୁ ବିଷ୍ଣୁଚକ୍ର ଅନ୍ୟତମ । ବିଷ୍ଣୁଚକ୍ର ଏକ ତୀକ୍ଷ୍ଣଧାରଯୁକ୍ତ ଗୋଲାକାର ଅସ୍ତ୍ର । ସାଧାରଣ ଭାବରେ ଏପରି ଅସ୍ତ୍ରର ବ୍ୟବହାର କ୍ୱଚିତ ଦେଖାଯାଇଥାଏ । ଏହା ମୁଖ୍ୟତଃ ଦେବଦେବୀଙ୍କ ଦ୍ୱାରା ବ୍ୟବହାର କରାଯାଇଥିବାର ବିଭିନ୍ନ ପୌରାଣିକ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ । ସ୍ୱତନ୍ତ୍ର ଭାବରେ ଏହାକୁ ନାରାୟଣଙ୍କର ଆୟୁଧ ବୋଲି କୁହାଯାଇ ଥିଲେ ହେଁ ଶିବ ପଞ୍ଚାକ୍ଷର ଚକ୍ର, ଦେବୀମାନଙ୍କର ଶ୍ରୀଚକ୍ର, କାଳଚକ୍ର ଆଦିର ବର୍ଣ୍ଣନା ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ । ବୁଦ୍ଧଦେବଙ୍କର ଧର୍ମଚକ୍ର ସମ୍ବନ୍ଧରେ ମଧ୍ୟ ଆମ୍ଭେମାନେ ଅବହିତ । ଶ୍ରୀମନ୍ଦିରର ଶୀର୍ଷ ଦେଶରେ ଥିବା ନୀଳଚକ୍ର ମଧ୍ୟ ଏହି ଶ୍ରେଣୀଭୁକ୍ତ । ଆହୁରି ମଧ୍ୟ ଦେଖାଯାଏ ବିଭିନ୍ନ ଚକ୍ରର ଗଠନ ଓ ଅର ସଂଖ୍ୟା ଭିନ୍ନ ଭିନ୍ନ । କେତେକ କ୍ଷେତ୍ରରେ ଚକ୍ରକୁ ଦୁଇ ତ୍ରିଭୁଜର ସମାହାର ଭାବରେ ବର୍ଣ୍ଣନା କରାଯାଇଥାଏ । ଏହି କ୍ଷେତ୍ରରେ ଗୋଟିଏ ତ୍ରିଭୁଜକୁ ଅନ୍ୟ ତ୍ରିଭୁଜ ଉପରେ ଅବସ୍ଥାପିତ କରାଯାଇଥାଏ । ଗୋଟିଏ ତ୍ରିଭୁଜର ଶୀର୍ଷ ଉପରକୁ ରଖା ଯାଇଥିବା ବେଳେ ଅନ୍ୟ ତ୍ରିଭୁଜଟିର ଶୀର୍ଷ ତଳକୁ ରଖାଯାଇଥାଏ । ଫଳରେ ଚକ୍ର ଛଅଗୋଟି ଶୀର୍ଷଯୁକ୍ତ ହୋଇଥାଏ । ପ୍ରତିକାତ୍ମକ ଦୃଷ୍ଟିରୁ ଉପରକୁ ଶୀର୍ଷଥିବା ତ୍ରିଭୁଜଟି ବିଷୟାତ୍ମକ ଉନ୍ନତିର ପ୍ରତୀକ ଭାବରେ ଗ୍ରହଣ କରାଯାଇଥାଏ । ଓଲଟା ତ୍ରିଭୁଜକୁ ପରିବାର କଲ୍ୟାଣର ପ୍ରତୀକ ଭାବରେ ଗ୍ରହଣ କରାଯାଇଛି । ଏହା ବ୍ୟତୀତ ବହୁ ଶୀର୍ଷଯୁକ୍ତ ଚକ୍ର କିମ୍ବା ଶୀର୍ଷହୀନ ଚକ୍ର ମଧ୍ୟ ଦେଖିବାକୁ ମିଳିଥାଏ । ଏହିପରି ଅନେକ ପ୍ରକାର ଚକ୍ରର ଅବତାରଣା କରାଯାଇଥିଲେ ହେଁ ସୁଦର୍ଶନ ଚକ୍ର ବା ବିଷ୍ଣୁଚକ୍ରଙ୍କୁ ମୁଖ୍ୟତଃ ଚକ୍ରର ମାନ୍ୟତା ପ୍ରଦାନ କରାଯାଇଥାଏ ।



ସୁଦର୍ଶନ ଚକ୍ରକୁ ସାଧାରଣଭାବେ ଦେଖିବାକୁ ଗଲେ ସୁଦର୍ଶନ ଶବ୍ଦର ଅର୍ଥ, ଯାହା ଦେଖିବାକୁ ସୁନ୍ଦର । ଅନ୍ୟ ଭାବରେ ଏହାର ଅର୍ଥ ମଧ୍ୟ ଭିନ୍ନ । ଅର୍ଥାତ୍ ଯେ ସୁଦର୍ଶନ କରାଏ । ଚକ୍ର ପରି ସୁଦର୍ଶନ ମଧ୍ୟ ବହୁ ଅର୍ଥବୋଧକ । ବିଷ୍ଣୁଙ୍କ ଆୟୁଧ ଚକ୍ର ସୁଦର୍ଶନ । ଏକ ପ୍ରକାର ଶାଳଗ୍ରାମର ନାମ ମଧ୍ୟ ସୁଦର୍ଶନ । ସୁଦର୍ଶନ ଶବ୍ଦଟି ଅନେକ ଭାବରେ ବ୍ୟବହାର କରାଯାଇ ଥିବାର ଦୃଷ୍ଟାନ୍ତ ପରିଦୃଷ୍ଟ ହୋଇଥାଏ ମାତ୍ର ବିଷ୍ଣୁ ଆୟୁଧ ଚକ୍ର ସୁଦର୍ଶନଙ୍କୁ ହିଁ ବୁଝାଇଥାଏ । ଚକ୍ର ଏବଂ ସୁଦର୍ଶନ ଉଭୟେ ନାମବାଚକ ହୋଇଥିଲେ ମଧ୍ୟ ଉଭୟେ ଉଭୟଙ୍କର ଗୁଣବାଚକ ମଧ୍ୟ ହୋଇପାରନ୍ତି । ଯେପରି ଚକ୍ର ଆକାରର ସୁଦର୍ଶନ ଏବଂ ସୁଦର୍ଶନଯୁକ୍ତ ଚକ୍ର । ଏହାକୁ ମଧ୍ୟ କୁହାଯାଏ ଚକ୍ରନାରାୟଣ । ସୁଦର୍ଶନ ସହସ୍ର ନାମରେ ବିଭିନ୍ନ ନାମର ବର୍ଣ୍ଣନା କରାଯାଇଅଛି । ଆମେ ସୁଦର୍ଶନଙ୍କୁ ଆୟୁଧ ପୁରୁଷ ଭାବରେ ଆରାଧନା କରୁଥିବା ବେଳେ ଦକ୍ଷିଣ ଭାରତରେ ସୁଦର୍ଶନଙ୍କୁ ପରମ ପୁରୁଷ ଭାବରେ ଆରାଧନା କରାଯାଉଛି । ଶ୍ରୀରଙ୍ଗ କାଞ୍ଚିପୁରମ୍, ତିରୁମେଦୁର, ସୀମାଚଳମ୍, ଭଦ୍ରାଚଳମ୍ ପ୍ରଭୃତି ସ୍ଥାନରେ ଚକ୍ରଙ୍କୁ ପରମ ପୁରୁଷ ବିଗ୍ରହ ରୂପରେ ପୂଜା କରାଯାଇଥାଏ । ତାମିଲନାଡୁର ତିରୁକୁଣ୍ଡାଇଠାରେ ଚକ୍ରପାଣିଙ୍କର ପୂଜନ ସ୍ୱତନ୍ତ୍ର ମନ୍ଦିରରେ କରାଯାଉଛି । ଭେଙ୍କଟେଶ୍ୱର ଜୟନ୍ତୀ ଅବସରରେ ଚକ୍ରପୁରୁଷଙ୍କର ପୂଜା କରାଯିବା ସଙ୍ଗେ ସଙ୍ଗେ ସୁଦର୍ଶନ ହୋମ ଅନୁଷ୍ଠିତ ହୋଇଥାଏ । କିନ୍ତୁ ଉତ୍କଳୀୟ ସଂସ୍କୃତିରେ ସୁଦର୍ଶନଙ୍କୁ ସ୍ୱତନ୍ତ୍ର ପୂଜା କ୍ୱଚିତ୍

ଦେଖାଯାଇଥାଏ । ସୁଦର୍ଶନଙ୍କର ସ୍ୱତନ୍ତ୍ର ବିଗ୍ରହ ପୂଜନ ଏଠାରେ ପ୍ରତୀୟମାନ ହୋଇ ନଥାଏ । ବରଂ ସୁଦର୍ଶନଙ୍କର ନାରାୟଣଙ୍କ ସହିତ ସଂଯୁକ୍ତ କରାଯାଇ ପୂଜନ ପ୍ରକ୍ରିୟା ଦେଖିବାକୁ ମିଳିଥାଏ । ଶ୍ରୀମନ୍ଦିରରେ ସୁଦର୍ଶନଙ୍କୁ ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରେ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରାଯାଇଛି । ଓଡ଼ିଶାର ଯେଉଁ ଜଗନ୍ନାଥ ମନ୍ଦିରମାନଙ୍କରେ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠିତ, ସେଠାରେ ସୁଦର୍ଶନଙ୍କୁ ସ୍ୱତନ୍ତ୍ର ଭାବରେ ଦେଖିବାକୁ ମିଳିଥାଏ । ତେଣୁ ଭକ୍ତମାନେ ଏହି ପରିସ୍ଥିତିରେ ସୁଦର୍ଶନଙ୍କୁ ନାରାୟଣଙ୍କର ସ୍ୱରୂପ ଭାବରେ ପୂଜା କରୁଥିବା ବେଳେ କର୍ମକର୍ମାଣୀରେ ସୁଦର୍ଶନଙ୍କୁ ଆୟୁଧ ଭଗବାନ ଭାବରେ ଗ୍ରହଣ କରାଯାଇଥାଏ ।

ସୃଷ୍ଟିର ଆରମ୍ଭରୁ ସୁଦର୍ଶନଙ୍କୁ ନାରାୟଣଙ୍କର ଆୟୁଧ ରୂପେ ବର୍ଣ୍ଣନା କରାଯାଇଛି । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କର ଚତୁର୍ଦ୍ଧାମୂର୍ତ୍ତି ପୂଜନ ଆରମ୍ଭଠାରୁ ସୁଦର୍ଶନଙ୍କୁ ସ୍ୱତନ୍ତ୍ର ମାନ୍ୟତା ପ୍ରଦାନ ଦେଖିବାକୁ ମିଳେ । ସୁଦର୍ଶନ, ଚକ୍ରରାଜ ଭାବରେ ବିଷ୍ଣୁଙ୍କ ଦ୍ୱାରା ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ବ୍ୟବହୃତ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଚକ୍ରଙ୍କର ଶେଷ ବ୍ୟବହାରର ଦୃଷ୍ଟାନ୍ତ ମିଳିଥାଏ । ତା'ପରେ ଏହାର ପୁନରାବୃତ୍ତି ଦେଖିବାକୁ ମିଳୁ ନାହିଁ । ବରଂ ଏହା ପରେ ଚକ୍ରରାଜ ସ୍ତମ୍ଭ ରୂପରେ ପୂଜିତ ହୋଇଥିବାର ବର୍ଣ୍ଣିତ, ମାତ୍ର ସୁଦର୍ଶନଙ୍କର ଚକ୍ରାକାର ରୂପରୁ ଖମ୍ୱାକାର ରୂପ ଧାରଣର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ଦେଖିବାକୁ ମିଳି ନ ଥାଏ । କିନ୍ତୁ ଚକ୍ରାକାର ସୁଦର୍ଶନ ଏବଂ ଖମ୍ୱାକାର ସୁଦର୍ଶନଙ୍କର ସୃଷ୍ଟି ସମ୍ବନ୍ଧରେ ତଥ୍ୟମାନ ଦୃଷ୍ଟିଗୋଚର ହୋଇଥାଏ ।

ସୁଦର୍ଶନ ଚକ୍ରଙ୍କର ସୃଷ୍ଟି ସମ୍ପର୍କରେ ପୁରାଣ ଶାସ୍ତ୍ରମାନଙ୍କରେ ଭିନ୍ନ ଭିନ୍ନ ଆଖ୍ୟାୟିକାଗୁଡ଼ିକର ଅବତାରଣା କରାଯାଇଛି । ସେଥିମଧ୍ୟରୁ ଗୋଟିଏ ହେଲା–ସୁଦର୍ଶନ ଦେବଗୁରୁ ବୃହସ୍ପତିଙ୍କ ଦ୍ୱାରା ନାରାୟଣଙ୍କୁ ଅସୁର ନିଧନ ପାଇଁ ଦାୟିତ୍ୱ ଦିଆଯାଇଥିଲା । ଅନ୍ୟଟି ହେଲା ଅର୍ଜ୍ଜୁନ ଖାଣ୍ଡବ ବନ ଦହନ କରିବା ପରେ ଅଗ୍ନିଦେବ ଅର୍ଜ୍ଜୁନଙ୍କୁ ବିଭିନ୍ନ ଶକ୍ତି ପ୍ରଦାନ ସହିତ ଶ୍ରୀକୃଷ୍ଣଙ୍କୁ ଚକ୍ର ଏବଂ କୌମୋଦକୀ ଗଦା ପ୍ରଦାନ କରିଥିଲେ । ଆଉ କେତେକଙ୍କ ମତରେ ଦେବତାମାନେ ମିଳିତ ଭାବରେ କୃଷ୍ଣଙ୍କୁ ଏହା ପ୍ରଦାନ କରିଥିଲେ ବୋଲି ବର୍ଣ୍ଣିତ । ସୁଦର୍ଶନ ଶ୍ରୀକୃଷ୍ଣଙ୍କ ଦ୍ୱାରା ବ୍ୟବହୃତ ହୋଇଥିଲେ ମଧ୍ୟ ଏହା ପୂର୍ବରୁ ନାରାୟଣଙ୍କର ଆୟୁଧ ଭାବରେ ପ୍ରମାଣିତ । ଅବଶ୍ୟ ଚକ୍ର ଆୟୁଧ ଭାବରେ ବ୍ୟବହୃତ ହୋଇ ଥିବାରୁ ଉପରୋକ୍ତ ଚକ୍ରଗୁଡ଼ିକ ସୁଦର୍ଶନ ଚକ୍ର ନହୋଇ ଅନ୍ୟ ଚକ୍ର ମଧ୍ୟ ହୋଇଥାଇ ପାରେ । ଚକ୍ର ମଧ୍ୟ ଅନ୍ୟ ଦେବଦେବୀମାନଙ୍କର ଆୟୁଧ ରୂପେ ବ୍ୟବହୃତ ହୋଇଥିବାର ବର୍ଣ୍ଣନା ଦୃଷ୍ଟିଗୋଚର ହୋଇଥାଏ । ତେଣୁ ସମସ୍ତ ଚକ୍ରଙ୍କୁ ସୁଦର୍ଶନ ମନେ କରାଯାଇ ନ ପାରେ । ସ୍କନ୍ଦ ପୁରାଣ ମତେ ଏକଦା ଦେବଗଣ ଜଳନ୍ଧରଙ୍କ ଉତ୍ପାତରୁ ରକ୍ଷା ପାଇଁ ଶଙ୍କରଙ୍କ ନିକଟରେ ଉପସ୍ଥିତ ହୋଇ ଜଳନ୍ଧରଙ୍କୁ ବଧ କରିବା ନିମନ୍ତେ ପ୍ରାର୍ଥନା କଲେ । କିନ୍ତୁ ଶଙ୍କର ଜଳନ୍ଧରଙ୍କୁ ବଧ କରିବାରେ ସମର୍ଥ ନୁହଁନ୍ତି ବୋଲି ବ୍ୟକ୍ତ କରିବା ସହିତ କେବଳ ରୁଦ୍ରଙ୍କ ଦ୍ୱାରା ଏହା ସମ୍ଭବ ବୋଲି କହିଥିଲେ । ସମସ୍ତ ବିଷୟରେ ଅବଗତ ହେବା ପରେ ରୁଦ୍ର ଜଳନ୍ଧର ବଧ ପାଇଁ ସମ୍ମତି ପ୍ରକାଶ କଲେ ମାତ୍ର ତାଙ୍କ ନିକଟରେ ଥିବା ଆୟୁଧମାନଙ୍କ ସହଯୋଗରେ ଜଳନ୍ଧର ବଧ ସମ୍ଭବ ନୁହେଁ ବୋଲି କହିଥିଲେ ।

ଈଶ୍ୱର ବୋଇଲେ ମୋର ଏସବୁ ଅସ୍ତ୍ରରେ
ଏ ମହାଦୈତ୍ୟକୁ ବଧ କରି ମୁଁ ନ ପାରେ
ଏହି କାରଣରୁ ଦେବଗଣଙ୍କ ସହିତେ
ତୁମର ତେଜକୁ ସମର୍ପଣ କର ଯେତେ ।
(ସ୍କନ୍ଦ ପୁରାଣ)

ବିଷ୍ଣୁଙ୍କ ସହିତ ସମସ୍ତ ଦେବଗଣ ରୁଦ୍ରଙ୍କ କଥା ଶ୍ରବଣ କରି ସେମାନେ ସମସ୍ତଙ୍କର ତେଜ ହରିଙ୍କୁ ସମର୍ପଣ କରିଥିଲେ । ହରି ସେହି ତେଜ ରାଶିକୁ ରୁଦ୍ରଙ୍କୁ ସମର୍ପଣ କଲେ । ରୁଦ୍ର ସେସମସ୍ତ ତେଜ ସହ ନିଜର ତେଜକୁ ମିଶାଇ ସୁଦର୍ଶନ ଚକ୍ର ନିର୍ମାଣ କରିଥିଲେ।

ଏଥିରୁ ନିର୍ମିତ ସୁଦର୍ଶନଙ୍କ ସହିତ ବଜ୍ର ଆୟୁଧ ମଧ୍ୟରୁ ବଜ୍ର ଆୟୁଧଙ୍କୁ ଇନ୍ଦ୍ରଙ୍କ ହସ୍ତରେ ପ୍ରଦାନ କରିଥିଲେ । ପରିଶେଷରେ ଶଙ୍କର ସୁଦର୍ଶନ ଚକ୍ରଙ୍କ ସହାୟତାରେ ଜଳନ୍ଧର ବଧ କରିବାକୁ ସମର୍ଥ ହୋଇଥିଲେ ।

ତେଣୁ ସ୍କନ୍ଦ ପୁରାଣର ବର୍ଣ୍ଣନା ଅନୁସାରେ ସୁଦର୍ଶନ ଚକ୍ର ଈଶ୍ୱରଙ୍କ ଦ୍ୱାରା ଦେବତାମାନଙ୍କ ତେଜରେ ନିର୍ମିତ ହୋଇଥିଲା ଏବଂ ତାହା ଈଶ୍ୱରଙ୍କ ଦ୍ୱାରା ପ୍ରଥମେ ବ୍ୟବହୃତ ହୋଇ ଜଳନ୍ଧର ଦୈତ୍ୟର ମୃତ୍ୟୁର କାରଣ ହୋଇଥିଲା ।

ସ୍କନ୍ଦ ପୁରାଣରେ ସୁଦର୍ଶନଙ୍କର ସୃଷ୍ଟି ସଂପର୍କରେ ଏପରି ବର୍ଣ୍ଣନା କରାଯାଇଥିବା ବେଳେ ବ୍ରହ୍ମ ପୁରାଣରେ ଭିନ୍ନ କାରଣର ବର୍ଣ୍ଣନା କରାଯାଇଛି । ସୂର୍ଯ୍ୟଙ୍କର ତେଜରୁ ତାଙ୍କର ପତ୍ନୀ ସଂଜ୍ଞାଙ୍କର ସ୍ୱାର୍ଥ ସିଦ୍ଧି ପାଇଁ ସୁଦର୍ଶନ ଚକ୍ରଙ୍କର ସୃଷ୍ଟି ହୋଇଥିବାର ଜଣାପଡ଼େ । ଏହାର ଗୁରୁଦାୟିତ୍ୱ ବହନ କରିଥିଲେ ବିଶ୍ୱକର୍ମା । ବିଶ୍ୱକର୍ମା ସୂର୍ଯ୍ୟଙ୍କର ଶରୀରରୁ କାଟିଥିବା କିରଣମାନଙ୍କୁ ନଷ୍ଟ ନ କରି ବିଭିନ୍ନ ଅସ୍ତ୍ରଶସ୍ତ୍ର ବା ଆୟୁଧ ନିର୍ମାଣ କରିଥିଲେ ।

ସୁତମୂନି ବଦନ୍ତି ଯେ ଶୁଣ ମୁନିଗଣ
ସୂର୍ଯ୍ୟଅଙ୍ଗୁ ବିଶ୍ୱକର୍ମା କାଢ଼ି ସେ କିରଣ ।
ନାନା ଅସ୍ତ୍ରଶସ୍ତ୍ରମାନ ତହିଁରେ ଗଢ଼ିଲେ
ଶୁଣ ଏବେ ଯେଉଁ ଯେଉଁ ଆୟୁଧ ସେ କଲେ ।
ପନ୍ଦର ଅଂଶ ଯେ ରବି କିରଣକୁ ଭଲେ
ଯଥାକ୍ରମେ ବାଣ୍ଟି ଅସ୍ତ୍ର ସବୁ ନିର୍ମାଣିଲେ ।
ପ୍ରଥମରେ ବିଷ୍ଣୁଙ୍କର ସୁଦର୍ଶନ ଚକ୍ର
ଅତି ଯତନେ ଗଢ଼ିଲେ ଜାଣ ହେ ଶୌନକ ।
ତଦନ୍ତରେ ମନେ ପାଞ୍ଚ ସ୍ୱର୍ଗ ଶିଳ୍ପବର
ତ୍ରିଶୂଳ ଗୋଟି ନିର୍ମାଣ କଲେ ଶିବଙ୍କର ।
(ବ୍ରହ୍ମପୁରାଣ–ପୂର୍ବଖଣ୍ଡ)

ଶ୍ରୀ ଜଗନ୍ନାଥ ରହସ୍ୟମୟ ଦେବତା । ତାଙ୍କ ତତ୍ତ୍ୱ ହିଁ ତହୁଁ ରହସ୍ୟମୟ । ତାଙ୍କୁ କେହି ଜାଣି ନାହାନ୍ତି, ତାଙ୍କୁ ଜାଣିବା ମଧ୍ୟ ସମ୍ଭବ ନୁହେଁ । ସେ ସବୁଠି, ହେଲେ କେଉଁଠି ନାହାଁନ୍ତି । ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ତତ୍ତ୍ୱ ଯେପରି ଅବୋଧ, ତାଙ୍କର ନିର୍ମାଣ ଶୈଳୀ ମଧ୍ୟ ସେହିପରି ଅବୋଧ ଏବଂ ବିଚିତ୍ର । ଚତୁର୍ଦ୍ଧାମୂର୍ତ୍ତିଙ୍କର ଲୀଳାର ବିଚିତ୍ରତା କାରଣରୁ ପ୍ରତ୍ୟେକ ମତାବଲମ୍ବୀମାନେ ତାଙ୍କୁ ଆପଣାର ବୋଲି ଦାବି କରିଥାନ୍ତି । ତେଣୁ ଐତିହାସିକମାନେ କୁହନ୍ତି ସୁଦର୍ଶନ ସ୍ତମ୍ଭେଶ୍ୱରୀ । ବଜ୍ରଯାନ ମତରେ ସେ ବଜ୍ର । ଜୈନମାନଙ୍କ ତ୍ରୟର ଅଂଶବିଶେଷ । ବୌଦ୍ଧମାନଙ୍କର ତ୍ରିରତ୍ନର ସମାହାର । ବୈଷ୍ଣବମାନଙ୍କ ମତେ ବିଷ୍ଣୁଙ୍କର ଆୟୁଧ । ଗଣପତି ଭଟ୍ଟ ଗଣପତ ଭାବରେ ଚିନ୍ତା ପ୍ରକଟ କରିଥାନ୍ତି । ଇନ୍ଦ୍ରଭୂତି କୁହନ୍ତି ସେ ଶକ୍ତି । ସୌରବାଦୀଙ୍କ କହିବା ମତେ ସୁଦର୍ଶନ ହିଁ ସୂର୍ଯ୍ୟଙ୍କର ଅଂଶବିଶେଷ । ଯୋଗକ୍ରିୟାରେ ସେ ନାଡ଼ୀମାନଙ୍କର ଅଂଶ । ଓଁକାରବାଦର ତୁରୀୟାବସ୍ଥା । ରାମାୟଣ ପ୍ରେମୀମାନେ କୁହନ୍ତି ସେ ଭରତଙ୍କ ଅବତାର । ବୈଦିକମାନେ କୁହନ୍ତି ସେ ବେଦ । ଆଉ କେତେକ ବି କୁହନ୍ତି ନୃସିଂହଙ୍କର ରୂପାନ୍ତର । ଶବରମାନଙ୍କର ରୂପଦେବତା ସୁଦର୍ଶନ ହୋଇଥିବା ବେଳେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଧ୍ୟ ହୋଇ ପାରନ୍ତି । ମାତ୍ର ପରିଶେଷରେ ବାସ୍ତବରେ ସେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ସ୍ୱପ୍ନାବିଷ୍ଟ ଏବଂ ବିଶ୍ୱକର୍ମାଙ୍କ ଦ୍ୱାରା ଗଠିତ ଓ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ତମ୍ଭାକାର ସୁଦର୍ଶନ । ତେଣୁ ପ୍ରତ୍ୟେକ ମତାବଲମ୍ବୀମାନେ ସୁଦର୍ଶନଙ୍କୁ ସେମାନଙ୍କର ମତବାଦର ପ୍ରତୀକ ବୋଲି କହିଥାନ୍ତି ।

ସୁଦର୍ଶନ ଚକ୍ରଙ୍କୁ ବିଷ୍ଣୁଙ୍କର ଆୟୁଧ ଭାବରେ ଅବହିତ କରାଯାଇଥିଲେ ମଧ୍ୟ ସେ କେବଳ ଆୟୁଧ ନୁହନ୍ତି । ବିଷ୍ଣୁଙ୍କର ରୂପାନ୍ତର ବୋଲି କୁହାଯାଇ ପାରିବ ନାହିଁ । ବରଂ ତାଙ୍କୁ ବିଷ୍ଣୁଙ୍କର ସାହାଯ୍ୟକାରୀ ଏବଂ ଭକ୍ତ ଭାବରେ ଗ୍ରହଣ କରାଯାଇ ପାରିବ । ଦେବତାମାନଙ୍କର ଆୟୁଧମାନେ ସେମାନଙ୍କର ସେବକ ଏବଂ ଜୀବନ୍ତ । ଆୟୁଧମାନେ କେବଳ ଦେବତାମାନଙ୍କ ନିର୍ଦ୍ଦେଶଦ୍ୱାରା ପରିଚାଳିତ ନୁହନ୍ତି । ସେମାନେ ସେମାନଙ୍କର ବିବେକର ଉପଯୋଗ କରିଥାନ୍ତି । ଏହାର ପ୍ରମାଣ ମହାଭାରତ ଯୁଦ୍ଧରେ ପାର୍ଥ ଓ କୃପାଚାର୍ଯ୍ୟଙ୍କ କ୍ଷେତ୍ରରେ ପରିଲକ୍ଷିତ ହୋଇଥାଏ । ପାର୍ଥ, କୃପାଚାର୍ଯ୍ୟଙ୍କୁ ପରାସ୍ତ କରିବା ପାଇଁ ଅସମର୍ଥ ହୋଇ ଶେଷରେ ନୀଳବାଣ ଓ ଭୁଜବାଣ ପ୍ରୟୋଗ କରିଥିଲେ ମାତ୍ର ଶରଦ୍ୱୟ ତାଙ୍କର କର୍ତ୍ତବ୍ୟ ଦୃଷ୍ଟିରୁ କୃପାଚାର୍ଯ୍ୟଙ୍କର ଶିର ଛେଦନ କରିଥିଲେ ମଧ୍ୟ ତାଙ୍କୁ ନମାରି ତାଙ୍କର ଖଣ୍ଡିତ ମସ୍ତକକୁ ପଛମୁହାଁ କରି ପୁନର୍ବାର ଯୋଡ଼ିଦେଇ ତାଙ୍କର ଜୀବନ ରକ୍ଷା କରିଥିଲେ ଏବଂ କୃପାଚାର୍ଯ୍ୟଙ୍କୁ ବନରେ ତପସ୍ୟାରତ ହେବା ପାଇଁ ଉପଦେଶ ପ୍ରଦାନ କରିଥିଲେ । ଚକ୍ରରାଜ ସୁଦର୍ଶନଙ୍କୁ ଦୁର୍ବାସାଙ୍କୁ ହତ୍ୟା କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । କିନ୍ତୁ ସେ ନିଜର ବିବେକାନୁମୋଦିତ କାର୍ଯ୍ୟ କରି ଦୁର୍ବାସାଙ୍କୁ ଜୀବନ ରକ୍ଷାର ସୁଯୋଗ ପ୍ରଦାନ କରିଥିଲେ । ତେଣୁ ଚକ୍ରରାଜ ସୁଦର୍ଶନ ଏକ ସାଧାରଣ ଆୟୁଧ ନୁହନ୍ତି । ସେ ବିଷ୍ଣୁଙ୍କର ପରମ ଭକ୍ତ ଏବଂ ତାଙ୍କର ସ୍ୱତନ୍ତ୍ର ନିଷ୍ପତ୍ତି ନେବାର କ୍ଷମତା ରହିଛି ।

ସାଧାରଣ ଭାବେ ଆମେ ଜାଣୁ ଚକ୍ର ଏକ ଆୟୁଧ । ଦେବଦେବୀ ଏବଂ ବିଷ୍ଣୁଙ୍କ ଦ୍ୱାରା ଚକ୍ର ଅସ୍ତ୍ର ଭାବରେ ବ୍ୟବହୃତ ହୋଇଥାଏ । ବିଷ୍ଣୁଙ୍କ ଦ୍ୱାରା ବ୍ୟବହୃତ ଚକ୍ରକୁ ସୁଦର୍ଶନ କୁହାଯାଇଥାଏ । ତେଣୁ ସମସ୍ତ ଚକ୍ର ସୁଦର୍ଶନ ନୁହନ୍ତି । ସୁଦର୍ଶନ ଅନ୍ୟ ଦେବଦେବୀଙ୍କର ଅସ୍ତ୍ର ଭାବରେ ବ୍ୟବହୃତ ହୋଇ ନ ଥାଏ । ଏକାଧିକ ଚକ୍ରର ବ୍ୟବହାର ଦେଖା ଯାଇଥିବାରୁ ବିଷ୍ଣୁଚକ୍ର ବା ସୁଦର୍ଶନଙ୍କୁ ଚକ୍ରରାଜ କୁହାଯାଇଥାଏ । ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ଆୟୁଧ ହେଉଛି ସୁଦର୍ଶନ । କାରାଗାର ମଧ୍ୟରେ ଅଷ୍ଟମୀର ଘନ ଅନ୍ଧକାର ମଧ୍ୟରେ ଦେବକୀଙ୍କ ଗର୍ଭରୁ ଯେଉଁ ଅଦ୍ଭୁତକର୍ମା ବାଳକ ଜନ୍ମଲାଭ କରିଥିଲା, ଚତୁର୍ଭୁଜ ଶଙ୍ଖ, ଚକ୍ର, ଗଦା, ପଦ୍ମ ହସ୍ତ ଭାବରେ ପିତା ତାଙ୍କୁ ଦର୍ଶନ କରିଥିଲେ । ମାତା ଦେବକୀ ପୁତ୍ରର ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଅଲୌକିକ ଚତୁର୍ଭୁଜ ରୂପକୁ ଗୋପନ କରିବାକୁ ଅନୁରୋଧ କରିଥିଲେ । ଫଳରେ ଭଗବାନ ଶିଶୁ ରୂପ ଧାରଣ କରିଥିଲେ । ଏହାପରେ ଶ୍ରୀକୃଷ୍ଣ ପିତାମାତାଙ୍କୁ ଚତୁର୍ଭୁଜ ରୂପ ପ୍ରଦର୍ଶନ କରି ନଥିଲେ । ଅବଶ୍ୟ ସେ ତାଙ୍କର ଶ୍ରେଷ୍ଠ ଆୟୁଧକୁ ବହୁବାର ବ୍ୟବହାର କରିଛନ୍ତି । ବିଭିନ୍ନ ପରିସ୍ଥିତିରେ ନିଜବିଶ୍ୱରୂପ,

ଚକ୍ରଧାରୀ ରୂପ ସ୍ଥଳବିଶେଷରେ ବ୍ୟକ୍ତିବିଶେଷକୁ ପ୍ରଦର୍ଶନ କରିଥିବାର ବର୍ଣ୍ଣନା କରାଯାଇଛି, ମାତ୍ର ସର୍ବସାଧାରଣରେ ଏପରି ଦୃଶ୍ୟ ପ୍ରଦର୍ଶନ କରି ନ ଥିଲେ । ଆହୁରି ଏକ ବର୍ଣ୍ଣନା ଦେଖିବାକୁ ମିଳେ ଶ୍ରୀକୃଷ୍ଣଙ୍କର ଅନ୍ତିମ କ୍ଷଣରେ ସେ ଚତୁର୍ଭୁଜ ଚକ୍ରଧାରୀ ରୂପରେ ଜରାଶବରକୁ ଦର୍ଶନ ଦେଇଥିଲେ । ତେଣୁ ଏଥିରୁ ଅନୁମିତ ହୁଏ, ଚକ୍ରରାଜ ସୁଦର୍ଶନ କୃଷ୍ଣ ଅବତାରରେ ଅଦୃଶ୍ୟଭାବରେ ଶ୍ରୀକୃଷ୍ଣଙ୍କ ସହିତ ସର୍ବଦା ଅବସ୍ଥାନ କରୁଥିଲେ । ପ୍ରଭୁଙ୍କର ଅନ୍ତିମ ଯାତ୍ରାରେ ଚକ୍ରରାଜ ତାଙ୍କ ରଥରେ ବୈକୁଣ୍ଠପୁରକୁ ଗମନ କରିଥିଲେ ।

ଚକ୍ରରାଜ ସୁଦର୍ଶନଙ୍କର ବିଶେଷତ୍ୱ ହେଲା, ତାଙ୍କୁ ପୀଡ଼ାହରଣ, ପାପନାଶନ, ସୁରକ୍ଷା ପ୍ରଦାନ ଓ ଦୁଷ୍ଟ ବିନାଶନ କାର୍ଯ୍ୟରେ ବିଷ୍ଣୁଙ୍କ ଦ୍ୱାରା ବ୍ୟବହୃତ କରାଯାଇଥାଏ । ସେ ସର୍ବଦା ବିଷ୍ଣୁଙ୍କ ଦ୍ୱାରା ନିୟନ୍ତ୍ରିତ । କାର୍ଯ୍ୟ ସାଧନ ପରେ ବିଷ୍ଣୁଙ୍କ ହସ୍ତକୁ ଫେରି ଆସନ୍ତି । ଗତି ଅତ୍ୟନ୍ତ ତୀବ୍ର । ଫଳରେ କ୍ଷଣକ ମଧ୍ୟରେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରନ୍ତି । ଗତି ପଥରେ ବାଧା ଉପୁଜିଲେ ଚକ୍ରରାଜଙ୍କର ଗତି ଅତି କ୍ଷୀପ୍ର ହୋଇଥାଏ । ଗତି କଲାବେଳେ କୌଣସି ଶବ୍ଦ ଉତ୍ପନ୍ନ ହୋଇ ନ ଥାଏ । ଚିନ୍ତା କରିବାର ଶକ୍ତି ଥିବାରୁ ଯାହା କରଣୀୟ, ତାହା ହିଁ କରିଥାନ୍ତି । ସେ ସର୍ବଦା ବିଷ୍ଣୁଙ୍କର ଆଦେଶକୁ ଅପେକ୍ଷା କରି ରହିଥାନ୍ତି । ସୁଦର୍ଶନ ସର୍ବଦା ବିଷ୍ଣୁଙ୍କର ଡାହାଣ ହାତର ତର୍ଜନୀ ଆଙ୍ଗୁଠିରେ ଘୂର୍ଣ୍ଣାୟମାନ ଅବସ୍ଥାରେ ଥାନ୍ତି କିନ୍ତୁ କୃଷ୍ଣ ଅବତାରରେ ସୁଦର୍ଶନ ତାଙ୍କର ଦକ୍ଷିଣ ହସ୍ତ କନିଷ୍ଠାଙ୍ଗୁଳିରେ ଘୂର୍ଣ୍ଣାୟମାନ ଅବସ୍ଥାରେ ଥାଆନ୍ତି । ମାତ୍ର ବ୍ୟବହାର କାଳରେ ଶ୍ରୀକୃଷ୍ଣ ସୁଦର୍ଶନଙ୍କୁ ତର୍ଜନୀ ଦ୍ୱାରା ହିଁ କ୍ଷେପଣ କରିଥାନ୍ତି । ସୁଦର୍ଶନଙ୍କର ଆକାର ସ୍ଥିର ନୁହେଁ ମାତ୍ର ଆବଶ୍ୟକତା ଅନୁସାରେ ସେ ନିଜର ଆକାରକୁ ପରିବର୍ତ୍ତନ କରିଥାନ୍ତି । ସେ ଅବ୍ୟର୍ଥ ଓ ସର୍ବାୟୁଧ ବିନାଶକ ।

ପୌରାଣିକ ପ୍ରସଙ୍ଗରୁ ଜଣାପଡ଼େ ଶିବ ଜଳନ୍ଧର ବଧ ପାଇଁ ନିର୍ମାଣ କରିଥିବା ସୁଦର୍ଶନ ଚକ୍ରରେ ଜଳନ୍ଧରକୁ ସଂହାର କରିବା ପରେ ତାହାକୁ ବିଷ୍ଣୁଙ୍କ ହସ୍ତରେ ଅର୍ପଣ କରିଥିଲେ । ଶିବ ଏହି ସୁଦର୍ଶନଙ୍କୁ ବିଷ୍ଣୁଙ୍କ ହସ୍ତରେ ଅର୍ପଣ କରିଥଲେ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ । ତେଣୁ ଏହି ତିଥି ବୈକୁଣ୍ଠ ଚତୁର୍ଦ୍ଦଶୀ ନାମରେ ନାମିତ । ଚକ୍ର ବିଷ୍ଣୁଙ୍କ ହସ୍ତର ଭୂଷଣ ଭାବରେ ରହିଥାଏ । ବିଭିନ୍ନ ଅବତାରରେ ମଧ୍ୟ ଚକ୍ର ବିଷ୍ଣୁଙ୍କ ସହ ବିଭିନ୍ନ ରୂପରେ ଅବସ୍ଥାନ କରିଥିବାର ଜଣାପଡ଼େ । ବରାହ ଅବତାରରେ ଚକ୍ର ତାଙ୍କର ଦନ୍ତରେ, କୂର୍ମ ଅବତାରରେ ଚକ୍ର ତାଙ୍କର ପୃଷ୍ଠରେ, ନୃସିଂହ ଅବତାରରେ ଚକ୍ର ତାଙ୍କର ନଖରେ, ପର୍ଶୁରାମ ଅବତାରରେ ଚକ୍ର ତାଙ୍କର ପର୍ଶୁରେ । ରାମ ଅବତାରରେ ଚକ୍ର ତାଙ୍କର ଧନୁରେ, ବାମନ ଅବତାରରେ ଚକ୍ର ତାଙ୍କର ପଇତାରେ ଅବସ୍ଥାନ କରିଥିବା ବେଳେ କୃଷ୍ଣ ଅବତାରରେ ଚକ୍ର ତାଙ୍କର ହସ୍ତରେ ଅଦୃଶ୍ୟ ରୂପରେ ଅବସ୍ଥାନ କରିଥିବାର ବର୍ଣ୍ଣିତ । ମୁଖ୍ୟ ଆୟୁଧ ରୂପେ ବିଷ୍ଣୁ ଆରାଧନା ସହିତ ଚକ୍ର ପୂଜିତ ହେବା ପରେ କେତେକ ସ୍ଥାନରେ ସ୍ୱତନ୍ତ୍ର ଆରାଧନା ହେଉଥିବାର ଦେଖାଯାଏ । ଦକ୍ଷିଣ ଭାରତରେ ସୁଦର୍ଶନଙ୍କୁ ମାନବରୂପ ପ୍ରଦାନ କରାଯାଇ ପୂଜା କରାଯାଏ । ବିଷ୍ଣୁଙ୍କର ହାତର ଚକ୍ରଙ୍କୁ ସୁରକ୍ଷାର ପ୍ରତୀକ ଭାବେ ବିବେଚିତ । ଚକ୍ରଙ୍କୁ ବିଗ୍ରହ ରୂପେ ମଧ୍ୟ କେତେକ ସ୍ଥାନରେ ଆରାଧନା କରାଯାଇଥାଏ । ଶ୍ରୀଜଗନ୍ନାଥ ସଂସ୍କୃତିରେ ଏହିପରି ଅବତାରଣା ପରିଲକ୍ଷିତ ହୋଇଥାଏ । ଚକ୍ରରାଜ ସୁଦର୍ଶନ ପ୍ରଭୁଙ୍କର ଆୟୁଧ ଭାବରେ ହସ୍ତରେ କିମ୍ବା ବିଗ୍ରହ ରୂପରେ ପ୍ରଭୁଙ୍କ ନିକଟରେ ଅବସ୍ଥାନ କରିଥାନ୍ତି ।

ଉତ୍କଳୀୟ ସଂସ୍କୃତିରେ ଆକର୍ଷଣର କେନ୍ଦ୍ର ହେଲେ ଚତୁର୍ଦ୍ଧାମୂର୍ତ୍ତି ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ । ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କ ମୂର୍ତ୍ତି ଗଠନର ସମତା ପରିଲକ୍ଷିତ ହେଉଥିବା ବେଳେ ସୁଦର୍ଶନଙ୍କର ରୂପ ଏମାନଙ୍କଠାରୁ ସମ୍ପୂର୍ଣ୍ଣ ରୂପେ ଭିନ୍ନ କାହିଁକି, ତାହା ବୁଝିବା କାଠିକର । ରତ୍ନ ସିଂହାସନରେ ସୁଦର୍ଶନଙ୍କୁ ସ୍ତମ୍ଭାକାର ରୂପରେ ଅବସ୍ଥାପିତ କରାଯାଇ ଚକ୍ରରାଜ ସୁଦର୍ଶନ ଭାବରେ ଆରାଧନା କରାଯାଉଥିଲେ ମଧ୍ୟ ଅନ୍ୟ କେତେକ ସ୍ଥାନରେ ଅନ୍ୟ ରୂପରେ ଆରାଧନା କରାଯାଇଥିବାର ଦେଖିବାକୁ ମିଳିଥାଏ । କଟକ–ଭୁବନେଶ୍ୱର ପଞ୍ଚମ ଜାତୀୟ ରାଜପଥରୁ ପ୍ରାୟ ୨୫ କି.ମି ଦୂରରେ ନିଆଳି ମାଧବସ୍ଥ ମାଧବଙ୍କ ମନ୍ଦିରରେ ଚକ୍ରଙ୍କର ସ୍ୱତନ୍ତ୍ର ଅବସ୍ଥାନ ଦେଖିବାକୁ ମିଳିଥାଏ । ମାଧବ ମନ୍ଦିରର ମୁଖଶାଳାର ପ୍ରବେଶ ପଥର ଦକ୍ଷିଣ ପାର୍ଶ୍ୱରେ ଚକ୍ରଙ୍କୁ ସ୍ୱତନ୍ତ୍ର ସ୍ଥାନ ଦିଆଯାଇଛି । ପ୍ରାୟ ୩ ଫୁଟ ବ୍ୟାସବିଶିଷ୍ଟ ଏହି ଚକ୍ରଙ୍କର ୧୨ଗୋଟି ଅର ରହିଅଛି । ଚକ୍ରର ମଧ୍ୟଭାଗରେ ବଜ୍ର ଉପରେ ନାରାୟଣ ଧ୍ୟାନମୁଦ୍ରାରେ ବସିଅଛନ୍ତି । ସେ ଚତୁର୍ଭୁଜ ଯୁକ୍ତ । ତାଙ୍କର ଡାହାଣ ଉପରେ ହସ୍ତରେ ଶଙ୍ଖ ଏବଂ ବାମ ଉପର ହସ୍ତରେ ଗଦା ଶୋଭିତ । ତଳ ଦୁଇ ହସ୍ତ ଧ୍ୟାନ ମୁଦ୍ରାରେ ରହିଅଛି । ନାରାୟଣ ଚକ୍ର ଉପରେ ଅବସ୍ଥାପିତ ହୋଇଥିବାରୁ ତାଙ୍କର ହସ୍ତରେ ଚକ୍ର ବିରାଜିତ ନୁହନ୍ତି । ସେହିପରି ପୁରୀ ଜିଲ୍ଲାର ନିମାପଡ଼ାଠାରୁ ପ୍ରାୟ ୩/୪ କି.ମି ଦୂରରେ ବିଷ୍ଣୁପୁରଠାରେ ନାରାୟଣଙ୍କ ଏକ ମନ୍ଦିର ଅବସ୍ଥିତ । ମନ୍ଦିରର ବାହ୍ୟ ପ୍ରଦେଶର ପ୍ରବେଶ ପଥର ଦକ୍ଷିଣ ପାର୍ଶ୍ୱରେ ଚକ୍ର ସ୍ଥାପିତ ହୋଇଥିବାର ଦେଖାଯାଇଥାଏ । ଶ୍ରୀକ୍ଷେତ୍ର

ଶ୍ରୀଜଗନ୍ନାଥ ଧାମର ବାଙ୍କିମୁହାଣ ନଦୀ ଏବଂ ସାଗର ସଙ୍ଗମ ନିକଟରେ ଚକ୍ରନାରାୟଣ ମନ୍ଦିର ଅବସ୍ଥିତ । ଏହି ମନ୍ଦିରରେ ଚକ୍ରଙ୍କର ପୂଜା ଅନୁଷ୍ଠିତ ହୋଇଥାଏ । ଚକ୍ର ସୁଦର୍ଶନଙ୍କ ଉପରେ ନାରାୟଣ ଅବସ୍ଥାନ କରିଥିବାରୁ ବୋଧହୁଏ ମନ୍ଦିରକୁ ଚକ୍ରମନ୍ଦିର କୁହା ନଯାଇ ଚକ୍ରନାରାୟଣ ମନ୍ଦିର କୁହାଯାଉଛି । ଶ୍ରୀମନ୍ଦିରର ବାହାର ବେଢ଼ାରେ ପଶ୍ଚିମ ଦ୍ୱାର ପଟେ ନୀଳାଦ୍ରି ବିହାରର ଅପର ପାର୍ଶ୍ୱରେ ଥିବା ପୁଷ୍ପବାଟିକା ମଧ୍ୟରେ ତିନୋଟି ଛୋଟ ମନ୍ଦିର ଅବସ୍ଥିତ । ସେମାନଙ୍କ ମଧ୍ୟରୁ ପ୍ରବେଶ ପଥ ସନ୍ନିକଟ ମନ୍ଦିରଟି ଚକ୍ରନାରାୟଣଙ୍କ ମନ୍ଦିର । ମନ୍ଦିରର ପ୍ରବେଶ ପଥ ଉତ୍ତର ଦିଗରେ । ମନ୍ଦିରର ଆରାଧ୍ୟ ଦେବତା ଚକ୍ରନାରାୟଣ । ସିଂହାସନର ପୃଷ୍ଠଭୂମିରେ ଚକ୍ର ସ୍ଥାପିତ ହୋଇଅଛି । ଏହା ଶିର ଚକ୍ରରୂପେ ଅବସ୍ଥାନ ନ କରି ନାରାୟଣଙ୍କୁ ସମ୍ପୂର୍ଣ୍ଣ ରୂପେ ଧାରଣ କରିଅଛନ୍ତି । ଚକ୍ରଙ୍କୁ ପଶ୍ଚାତ୍‌ଭାଗରେ ରଖି ଅଷ୍ଟଭୁଜ ନାରାୟଣ ଦଣ୍ଡାୟମାନ । ମୂର୍ତ୍ତିଙ୍କର ଉଚ୍ଚତା ଦୁଇରେ ଅଢ଼େଇ ଫୁଟ ହେବ । ନାରାୟଣ ଅଷ୍ଟଭୁଜରେ ବିବିଧ ଆୟୁଧମାନ ଧାରଣ କରି ଅଛନ୍ତି । ଆୟୁଧମାନଙ୍କ ମଧ୍ୟରେ ଚକ୍ର ସ୍ଥାନ ପାଇ ନାହାନ୍ତି । ଚକ୍ର ଏବଂ ନାରାୟଣ ଗୋଟିଏ କଳା ମୁଗୁନି ପଥରରେ ନିର୍ମିତ । ମନ୍ଦିର ବେଢ଼ାରେ ଚକ୍ରରାଜଙ୍କର ଅନ୍ୟ ଏକ ସ୍ୱତନ୍ତ୍ର ଅବସ୍ଥାନ ଦେଖିବାକୁ ମିଳିଥାଏ । ଭିତର ବେଢ଼ାରେ ରୋହିଣୀ କୁଣ୍ଡ । ରୋହିଣୀ କୁଣ୍ଡର ବାମ ଭାଗରେ ଚକ୍ର ଓ ଦକ୍ଷିଣ ଭାଗରେ ଶଙ୍ଖ ପୂଜିତ । ଏହି ଚକ୍ରଙ୍କୁ ନାଭିଚକ୍ର ରୂପେ ବର୍ଣ୍ଣନା କରାଯାଇଥାଏ । ଏହି ପୂଜିତ ଚକ୍ର କଳାମୁଗୁନି ପଥରରେ ନିର୍ମିତ ।

ଶ୍ରୀକ୍ଷେତ୍ରର ବର୍ଣ୍ଣନାରୁ ଜଣାପଡ଼େ ନୀଳପର୍ବତ ବିଷ୍ଣୁଙ୍କର ଏକ ପ୍ରିୟ ଆବାସସ୍ଥଳ ହୋଇଥିବାରୁ ସେ ସେଠାରେ ଚତୁର୍ଦ୍ଧାମୂର୍ତ୍ତି ରୂପରେ ଅବସ୍ଥାନ ନ କରି ଶଙ୍ଖ, ଚକ୍ର, ଗଦା, ପଦ୍ମ ହସ୍ତ ହୋଇ ଏକାକୀ ଅବସ୍ଥାନ କରୁଥିଲେ । ତାଙ୍କ ସହିତ ଥିଲେ ଲକ୍ଷ୍ମୀ ଏବଂ ଅନନ୍ତ । ପରବର୍ତ୍ତୀ ସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ଦାରୁ ବିଗ୍ରହ ରୂପରେ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ ନୀଳାଚଳରେ ଅବସ୍ଥାନ କରିଥିବାର ଜୈମିନି ଋଷି ପ୍ରକାଶ କରିଛନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଚତୁର୍ଦ୍ଧାମୂର୍ତ୍ତିଙ୍କର ପୂଜନ ଆରମ୍ଭ ହୋଇଥିଲା । ତେଣୁ ତାଙ୍କୁ ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ଥାପନ ଏବଂ ସୁଦର୍ଶନଙ୍କର ସ୍ୱତନ୍ତ୍ର ପୂଜନର ଆରମ୍ଭ କର୍ତ୍ତା ଭାବରେ ଗ୍ରହଣ କରାଯାଇପାରେ । ଏହି ଚତୁର୍ଦ୍ଧାମୂର୍ତ୍ତି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରି ସୁଦର୍ଶନ ସୌଦର୍ଶନୀ ସୂକ୍ତ ମନ୍ତ୍ରରେ ପୂଜିତ ହୋଇ ଆସୁଛନ୍ତି । ବିଗ୍ରହମାନଙ୍କର ରୂପର ସର୍ବଶେଷ ବର୍ଣ୍ଣନା ଦିଆଯାଇଥିଲେ ମଧ୍ୟ ସୁଦର୍ଶନଙ୍କର ଆକୃତିର ବର୍ଣ୍ଣନା ଦିଆଯାଇନାହିଁ । ଚକ୍ରର କାର୍ଯ୍ୟ ଏବଂ ନାମ ଦୃଷ୍ଟିରୁ ଏହାଙ୍କର ଆକୃତି ଚକ୍ରାକାର ହେବା ଯୁକ୍ତିଯୁକ୍ତ ହେଲେ ହେଁ ସେ ସଂପ୍ରତି ସ୍ତମ୍ଭାକାର ଭାବେ ପୂଜିତ । ସ୍ନାନଯାତ୍ରା, ଗୁଣ୍ଡିଚା ଯାତ୍ରା ଓ ବାହୁଡ଼ା ଯାତ୍ରାରେ ସୁଦର୍ଶନଙ୍କର ପହଣ୍ଡି ପ୍ରଥମେ କରିବାର ବିଧି ଚଳି ଆସୁଛି । ଶୟନ ବିଷୟକ ବିଧି ବର୍ଣ୍ଣନାରେ ତିନି ମୂର୍ତ୍ତିଙ୍କର ଶୟନର ବ୍ୟବସ୍ଥା ପ୍ରସଙ୍ଗରେ ବର୍ଣ୍ଣନା ଥିବାବେଳେ ସୁଦର୍ଶନଙ୍କ ବିଷୟରେ କୌଣସି ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ପ୍ରଥାନୁସାରେ ସୁଦର୍ଶନ ରତ୍ନ ସିଂହାସନରେ ଶ୍ରୀଜଗନ୍ନାଥଙ୍କର ବାମ ପାର୍ଶ୍ୱରେ ଅବସ୍ଥାନ କରୁଥିବା ବେଳେ ରଥ ଉପରେ ସୁଭଦ୍ରାଙ୍କ ରଥରେ ଅବସ୍ଥାନ କରନ୍ତି ।

ଶ୍ରୀଜଗନ୍ନାଥଙ୍କ ଲୀଳାର ଏକ ମୁଖ୍ୟ ଅଂଶ ନବକଳେବର । ଆଷାଢ଼ ମଳମାସ ତ୍ରୟୋଦଶୀ ଓ ଅମାବାସ୍ୟା ସଂଯୋଗରେ ଏହା ଘଟିଥିବାରୁ ଆଷାଢ଼ ମଳମାସରେ ହିଁ ନବକଳେବର ଅନୁଷ୍ଠିତ ହୋଇଥାଏ । ସଂକ୍ରାନ୍ତି ଏବଂ ଅମାବାସ୍ୟା ଏକ ଦିନରେ ପଡ଼ିଲେ ସେହିଦିନ ବ୍ରହ୍ମ ପରିବର୍ତ୍ତନ ଅନୁଷ୍ଠିତ ହୋଇଥାଏ । ନବକଳେବର ଉଦ୍ଦେଶ୍ୟରେ ଯେଉଁ ଦାରୁ ସନ୍ଧାନ ପ୍ରକ୍ରିୟା ଅନୁଷ୍ଠିତ ହୋଇଥାଏ, ସେଥିରେ ସୁଦର୍ଶନଙ୍କର ଦାରୁ ସନ୍ଧାନ ପ୍ରଥମେ କରାଯାଇଥାଏ । ଆଜ୍ଞାମାଳ ବହନ କାଳରେ ସୁଦର୍ଶନଙ୍କର ଆଜ୍ଞାମାଳ ପ୍ରଥମେ ନିଆଯାଇଥାଏ । ସୁଦର୍ଶନଙ୍କର ଦାରୁ ବୃକ୍ଷର ବର୍ଣ୍ଣ ରକ୍ତବର୍ଣ୍ଣ ହୋଇଥିବା ବେଳେ ବୃକ୍ଷର ଶାଖା ଉପରକୁ ଥାଏ ଏବଂ ବୃକ୍ଷରେ ଚକ୍ରଚିହ୍ନ ନିଶ୍ଚୟ ରହିଥିବ । ଦାରୁବୃକ୍ଷ ଚିହ୍ନଟ ପରେ ପ୍ରଥମେ ସୁଦର୍ଶନଙ୍କ ଦାରୁବୃକ୍ଷ ନିକଟରେ ବନଯାଗ କରାଯାଇ ଛେଦନ ପ୍ରକ୍ରିୟା ସମାହିତ ହୋଇଥାଏ । ଦାରୁ ଛେଦନ ପରେ ସୁଦର୍ଶନଙ୍କର ଦାରୁ ପ୍ରଥମେ ଶ୍ରୀମନ୍ଦିର ନିକଟରେ ପହଞ୍ଚି ଥାଏ ଓ ତା'ପରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କର ଦାରୁ ଯଥାବିଧି କୋଇଲି ବୈକୁଣ୍ଠକୁ ଅଣାଯାଇଥାଏ । ସୁଦର୍ଶନଙ୍କର ନିର୍ମାଣ ଗଦାକୃତି, ୮୪ ଯବ ଓ ରକ୍ତବର୍ଣ୍ଣ ହୋଇଥାଏ ଏବଂ ପ୍ରସାର ୨୨ ଯବ । ଉଚ୍ଚତା ଜଗନ୍ନାଥ ଏବଂ ବଳଭଦ୍ରଙ୍କ ଉଚ୍ଚତା ସହ ସମାନ । ବ୍ରହ୍ମ ସ୍ଥାପନରେ ୧୬ ପଳ ଓଜନର ସୁନାର ଚକ୍ର ସ୍ଥାପନ ହୋଇଥାଏ ।

ଚକ୍ର, ସୁଦର୍ଶନ, ଚକ୍ର ସୁଦର୍ଶନ, ଚକ୍ରରାଜ ସୁଦର୍ଶନ କିମ୍ବା ସୁଦର୍ଶନ ଚକ୍ର ଯାହା କହିଲେ ମଧ୍ୟ ଉତ୍କଳୀୟମାନେ ସୁଦର୍ଶନ ଭାବରେ ଗ୍ରହଣ କରିଥା'ନ୍ତି । ସୁଦର୍ଶନଙ୍କର ବିଭିନ୍ନ ରୂପ ବିଭିନ୍ନ ସ୍ଥାନରେ ପୂଜିତ ହେଉଥିଲେ ମଧ୍ୟ ରତ୍ନ ସିଂହାସନରେ ପୂଜିତ ସୁଦର୍ଶନଙ୍କୁ ହିଁ ବୁଝି ଥାଆନ୍ତି । ଦକ୍ଷିଣାତ୍ୟରେ ସୁଦର୍ଶନଙ୍କର ସ୍ୱତନ୍ତ୍ର ପୂଜା ଅନୁଷ୍ଠିତ ହେଉଥିଲେ ମଧ୍ୟ ଉତ୍କଳୀୟ ସଂସ୍କୃତିରେ ସୁଦର୍ଶନଙ୍କର ସ୍ୱତନ୍ତ୍ର ପୂଜାର ବହୁଳତା ଦେଖିବାକୁ ମିଳି ନ ଥାଏ । ଜଗନ୍ନାଥ

ସଂସ୍କୃତିର ସୃଷ୍ଟି କାଳରୁ ହିଁ ଚକ୍ରରାଜ ସୁଦର୍ଶନଙ୍କୁ ଚତୁର୍ଦ୍ଧାମୂର୍ତ୍ତିରେ ଅନ୍ତର୍ଭୁକ୍ତ କରାଯାଇଛି । ଚକ୍ରରାଜ ସୁଦର୍ଶନଙ୍କୁ ନାରାୟଣଙ୍କର ହସ୍ତର ଭୂଷଣ ଭାବରେ ଗ୍ରହଣ କରାଯାଇଥିବା ବେଳେ ରତ୍ନ ସିଂହାସନରେ ତାଙ୍କୁ ସ୍ୱତନ୍ତ୍ର ରୂପ ପ୍ରଦାନ କରିବା ସହ ସ୍ୱତନ୍ତ୍ର ପୂଜା କରାଯିବା ଏକ ସ୍ୱତନ୍ତ୍ରତା ନିଶ୍ଚୟ । ସୁଦର୍ଶନଙ୍କୁ ସ୍ତମ୍ଭାକାର ପ୍ରଦାନ କରାଯାଇଥିଲେ ମଧ୍ୟ ତାଙ୍କର ଶୀର୍ଷରେ ଚକ୍ରର ଚିତ୍ର ଅନ୍ୟ ଏକ ପ୍ରଶ୍ନ ମନରେ ସୃଷ୍ଟି କରିଥାଏ । ତେବେ ଉତ୍କଳୀୟ ସଂସ୍କୃତିରେ ଚକ୍ର ସୁଦର୍ଶନଙ୍କର ଆରାଧନା କେବଳ ବିଷ୍ଣୁ କ୍ଷେତ୍ରମାନଙ୍କରେ ଦେଖିବାକୁ ମିଳିଥାଏ । ସମୁଦ୍ର କୂଳର ଚକ୍ରନାରାୟଣଙ୍କର ମନ୍ଦିର ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ସ୍ୱତନ୍ତ୍ର ଭାବରେ ପୂଜିତ ହେଉଥିବାର ଦେଖିବାକୁ ମିଳେ ନାହିଁ । ସୁଦର୍ଶନ ଚକ୍ର ପୂଜା ବିଷୟରେ ଚିନ୍ତା ପ୍ରକଟ କଲେ ରତ୍ନ ସିଂହାସନର ଚତୁର୍ଦ୍ଧାମୂର୍ତ୍ତି ହିଁ କେବଳ ଚିନ୍ତାର ପରିସର ମଧ୍ୟକୁ ଆସିଥାଆନ୍ତି । ତେଣୁ ଚକ୍ରରାଜ ସୁଦର୍ଶନଙ୍କର କୌଣସି ବର୍ଣ୍ଣନା ଶ୍ରୀକ୍ଷେତ୍ର ବର୍ଣ୍ଣନା ବ୍ୟତୀତ ସମ୍ଭବ ନୁହେଁ ।

ବିଶ୍ୱକୋଷ ଫାଉଣ୍ଡେସନ୍
ଗ୍ରାମ – ଲୋକାପାଳ
ପୋ– ହଳଦିଆପଡ଼ା
ଭାୟା – ବାଜପୁର
ପୁରୀ– ୭୫୨୦୬୦

# ରଥେ ବିଜେ ଶ୍ରୀବାମନ

**ନିବେଦିତା ଭଞ୍ଜ**



ବିଶ୍ୱାସ ତ ତୁମ ପାଦ ପଦ୍ମ
କୋରକ ଭିତରେ
ନିଃଶ୍ୱାସ ରହିଛି ତୁମ
କର ପଲ୍ଲବରେ
ହୃଦୟ କହିଲେ ତୁମ
ଇଛାର ଅଧୀନ
ବାକି ଯାହା ଅଛି ସବୁ
ତୁମ ଅବଦାନ ।

ସବୁ ପରା ତୁମ ଲୀଳା
ମୁଁ ବୋଲି କହିବାଟା
କେଡେ ବିଶୃଙ୍ଖଳା...
ତଥାପିତ ନ କହିଲେ
ନଚଳେ ସଂସାର
ତୁମ ନାମାମୃତ ପାନେ
ହେଉ ଏ ତ୍ରୁଟି ସଂସ୍କାର ।

ଅପଲକ ଆଖି ରଖି
ସଭିଙ୍କ ଉପରେ
ଭାବରେ ବିଭୋର କରି
ସବୁରି ମନକୁ
ତ୍ରିଗୁଣ ରଜ୍ଜୁରେ ବାନ୍ଧି
ଜଗତବାସୀଙ୍କୁ
ମଣିଷ ଚାହିଁଥାଏ ବସି
ଆସ ହୋ ଠାକୁର
ଝୁଲି ଝୁଲି ଆସେ ରାଜ ରାଜେଶ୍ୱର ।
ରଥେ ବିଜେ ଶ୍ରୀବାମନ
ମଙ୍ଗଳ ମୂରତି
ପାପୀ ତପୀ ଦରଶନେ
ଲଭନ୍ତି ମୁକତି... ।

ପ୍ଲଟ୍ ନଂ–୮୬, ସତ୍ୟନଗର
ଭୁବନେଶ୍ୱର



# ମରିସସ୍‌ର ଶ୍ରୀଜଗନ୍ନାଥ

ଅସିତ ମହାନ୍ତି

ଭାରତ ମହାସାଗରର ଏକ ଦ୍ୱୀପ-ଦେଶ ମରିସସ୍ । ସେଠି ବି ପୂଜା ପାଉଛନ୍ତି ଆମ ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ । ପୁଣି ସେଠାରେ ବି ଅନୁଷ୍ଠିତ ହେଉଛି ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା । ମହୋଦଧି ତଟଦେଶର ମୂଳପୀଠ ଶ୍ରୀକ୍ଷେତ୍ର ପୁରୀରୁ ଏହି ଦେବତା କିପରି ଯାଇ ସୁଦୂର ମରିସସ୍‌ରେ ପ୍ରତିଷ୍ଠିତ ଓ ପୂଜିତ ହେଲେ ତାହାର କାହାଣୀ ଅତ୍ୟନ୍ତ ଚମକପ୍ରଦ ।

ପୃଥିବୀର ଦକ୍ଷିଣ ଗୋଲାର୍ଦ୍ଧରେ ଠିଆହୋଇ ଦେଖିଲେ ଭୌଗୋଳିକ ଆକୃତି ଦୃଷ୍ଟିରୁ ମନୁଷ୍ୟର ହୃତ୍‌ପିଣ୍ଡ ପରି ଏବଂ ଆହୁରି ଗଭୀର ଅର୍ନ୍ତଦୃଷ୍ଟି ଦେଇ ଆଧାତ୍ମିକ ଦୃଷ୍ଟିକୋଣରୁ ଦେଖିଲେ ଶାଳଗ୍ରାମଟିଏ ପରି ଦେଖାଯାଉଥିବା ସୁନ୍ଦର ଦ୍ୱୀପ-ଦେଶଟିଏ ମରିସସ୍ । ଆଫ୍ରିକା ମହାଦେଶର ଦକ୍ଷିଣ ପୂର୍ବ ଉପକୂଳରୁ ପ୍ରାୟ ଦୁଇହଜାର କିଲୋମିଟର ଦୂରରେ ଭାରତ ମହାସାଗର ମଧ୍ୟରେ ଏହି ଦ୍ୱୀପଦେଶ ଅବସ୍ଥିତ । ଏହାର ତିନି ପଟରେ ଘେରି ରହିଛି ଘନନୀଳ ତରଙ୍ଗାୟିତ ପର୍ବତମାଳା । ସମଗ୍ର ଦ୍ୱୀପଟି କିନ୍ତୁ ଖୁବ୍ ଛୋଟ- ଆୟତନ ମାତ୍ର ୨୦୪୦ ବର୍ଗ କିଲୋମିଟର । ପୃଥିବୀର ଯେକୌଣସି ପ୍ରାନ୍ତର ପର୍ଯ୍ୟଟକ ବର୍ଷର ଯେକୌଣସି ସମୟରେ ଏ ଦ୍ୱୀପଦେଶଟିକୁ ଯାଇଛନ୍ତି, ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ମରିସସ୍ ଏକ ପରୀ ରାଜ୍ୟ ।



ଭୂତାତ୍ତ୍ୱିକ ଦୃଷ୍ଟିରୁ ମରିସସ୍ ଏକ ତରୁଣ ଭୂଖଣ୍ଡ । ଭୂତତ୍ତ୍ୱବିତ୍‌ଙ୍କ ମତରେ, ପ୍ରାୟ ଆଠ ନିୟୁତ ବର୍ଷ ପୂର୍ବେ ସାଗର ତଳରେ ଥିବା ଏକ ଆଗ୍ନେୟଗିରିର ଉଦ୍‌ଗୀରଣରୁ ସୃଷ୍ଟି ହୋଇଥିଲା ଏହି ଦ୍ୱୀପ, ମାତ୍ର ଗତ ପ୍ରାୟ ଏକଲକ୍ଷ ବର୍ଷ ଭିତରେ ଆଉ ସେହି ଆଗ୍ନେୟଗିରିରୁ ଅଗ୍ନି ଉଦ୍‌ଗୀରଣ ହୋଇନାହିଁ । ଏହି ଅଗ୍ନି ଉଦ୍‌ଗୀରଣ ଫଳରେ ସେଠାରେ ବେଳାଭୂମିଠାରୁ ଆରମ୍ଭ କରି ୬୭୦ ମିଟର ପର୍ଯ୍ୟନ୍ତ ଉଚ୍ଚଭୂମି ସୃଷ୍ଟି ହୋଇଛି । ଲାଭାରୁ ସୃଷ୍ଟି ହୋଇଥିବା ଯୋଗୁଁ ସେଠାର ମାଟିର ରଂଗ କଳା ।

ମରିସସ୍‌ରେ ଜନମାନବ ବସତିର ଇତିହାସ ବେଶୀ ଦିନର ନୁହେଁ । ଆଲବର୍ଟ କାଣ୍ଟିନୋ ନାମକ ଜଣେ ଇଟାଲୀୟ ମାନଚିତ୍ର ପ୍ରସ୍ତୁତକାରୀ ୧୫୦୨ରେ ପ୍ରଥମେ ଏହି ଦ୍ୱୀପକୁ ନିଜ ମାନଚିତ୍ରରେ ସ୍ଥାନ ଦେଇଥିଲେ । ସେଥିରୁ ସୂଚିତ ହୁଏ ଯେ ଆରବୀୟ ନୌଯାତ୍ରୀମାନେ ପ୍ରଥମେ ସେହି ଦ୍ୱୀପକୁ ଆବିଷ୍କାର କରିଥିଲେ । ତାହାର ନାଆଁ ଦେଇଥିଲେ 'ଡିନା ଆରୋବୀ' । ୧୫୦୨ରେ ପର୍ତ୍ତୁଗୀଜ ନାବିକମାନେ ଦ୍ୱୀପରେ ପାଦଦେବା ବେଳକୁ ସେଠାରେ କେହି ବସବାସ କରୁନଥିଲେ । ପର୍ତ୍ତୁଗୀଜ ମାନଚିତ୍ରରେ ତାହାର ନାଆଁ ଥିଲା 'ସିର୍ନେ' । ୧୫୯୮ରେ ଡଚ୍‌ମାନେ ପ୍ରଥମେ ସେଠାରେ ବସତି ସ୍ଥାପନ କଲେ । ଡୋମ୍ ପେଡ୍ରୋ ମାସ୍କାରେନାସ୍ ନାମକ ଆଉ ଜଣେ ପର୍ତ୍ତୁଗୀଜ ନାବିକ ଏହାର ନାଆଁ ଦେଇଥିଲେ 'ମାସ୍କାରେନ୍‌ସ ଟୁ ଦ ଆର୍କିପେଲାଗୋ' ବା 'ପକ୍ଷ୍ମଦ୍ୱୀପ' । ୱାଇବ୍ରାଣ୍ଡ ଭାନ୍ ୱାରୱିକ ନାମକ ଜଣେ ଡଚ୍ ସ୍କ୍ୱାଡ୍ରନ ଆଡମିରାଲ ୧୫୯୮ରେ ସେଠାରେ ଅବତରଣ କରି ନିଜ ଦେଶର ରାଜକୁମାର ମରିସ୍ ଭାନ୍ ନସାଓଙ୍କ ନାମାନୁସାରେ ଦ୍ୱୀପଟିର ନାମ ରଖିଥିଲେ 'ମରିସସ୍' । ସେମାନେ ସେହି ଦ୍ୱୀପରୁ ଏବୋନି ଗଛଗୁଡ଼ିକ କାଟି ସେଠାରେ ଆଖୁଚାଷ ଆରମ୍ଭ କଲେ । ଡଚ୍ ନାବିକ ଆବେଲ୍ ତାସ୍‌ମାନ୍ ସେତେବେଳେ

ସେଇଠୁ ଯାତ୍ରାକରି ଅଷ୍ଟ୍ରେଲିଆର ପଶ୍ଚିମାଞ୍ଚଳ ଆବିଷ୍କାର କରିଥିଲେ । ତେବେ ସେହି ଡଚ୍ ବସତି ସେଠାରେ ମାତ୍ର ୨୦ବର୍ଷ ରହିଥିଲା । ଆୟ ତୁଳନାରେ ବ୍ୟୟ ଅଧିକ ହେବାରୁ ସେମାନେ ମରିସସ୍ ପରିତ୍ୟାଗ କରିଥିଲେ । ଡଚ୍‌ଙ୍କ ପରେ ୧୭୧୫ରେ ସେଠାରେ ଫରାସୀମାନଙ୍କର ବସତି ଆରମ୍ଭ ହେଲା । ସେମାନେ ପୁଣି ତାକୁ ଏକ ନୂଆ ନାଆଁ ଦେଲେ । ନିଜ ଦେଶର ନାଆଁ ଅନୁସାରେ ସେମାନେ ତାହାର ନାମ ରଖିଲେ 'ଆଇଜିଲ୍ ଡି ଫ୍ରାନ୍‌ସ' ବା 'ଫ୍ରାନ୍‌ସୀୟ ଦ୍ୱୀପ' । ତାହା ଥିଲା ଫରାସୀ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକ ବସତି । ୧୭୬୭ ପର୍ଯନ୍ତ ସେମାନେ ସେଠାରେ ବସବାସ କରି ରହିଥିଲେ । ସେହି ସମୟ ମଧ୍ୟରେ ସେମାନେ ପୋର୍ଟ ଲୁଇସ୍‌ଠାରେ ଏକ ନୌବାହିନୀ ଶିବିର ଓ ଜାହାଜ ନିର୍ମାଣ କାରଖାନା ମଧ୍ୟ ସ୍ଥାପନ କରିଥିଲେ । ୧୭୬୭ରୁ ୧୮୧୦ ମଧ୍ୟରେ ତାହା ମୁଖତଃ ଥିଲା ଫରାସୀ ସରକାରଙ୍କର ପରିଚାଳନାଧୀନ । ପରେ ୧୮୧୦ରେ ତାହାକୁ ଇଂରେଜମାନେ ଅଧିକାର କଲେ । କାରଣ ଇଂରେଜମାନଙ୍କର ବାଣିଜ୍ୟ ତରୀଗୁଡ଼ିକୁ ଏହିଠାରୁ ହିଁ ଫରାସୀ ଜଳଦସ୍ୟୁମାନେ ଆକ୍ରମଣ କରୁଥିଲେ । ସେହି ସମୟରୁ 'ମରିସସ୍' ପୁଣି ତାର ପୂର୍ବନାମ ଫେରି ପାଇଲା ।

ଇଂରେଜ ଶାସନ ସମୟରେ ହିଁ ମରିସସ୍‌ର ଅନେକ ଉନ୍ନତି ହୋଇଥିଲା । ୧୮୩୫ରେ ଦାସପ୍ରଥାର ବିଲୋପ ଘଟିଲା । ଆଖୁ କ୍ଷେତରେ କାମ କରିବା ପାଇଁ ଭାରତ, ଚୀନ ଓ ଦକ୍ଷିଣଆଫ୍ରିକା ଆଦିରୁ ବହୁ ସଂଖ୍ୟାରେ ଗୋତି ଶ୍ରମିକଙ୍କୁ ଆମଦାନି କରାଗଲା । ଗୋଟିଏ ଆକଳନ କହେ ଯେ, ୧୮୩୪ରୁ ୧୯୨୧ ମଧ୍ୟରେ ମରିସସ୍‌ରେ ଥିଲେ ପ୍ରାୟ ପାଞ୍ଚଲକ୍ଷ ଗୋତିଶ୍ରମିକ । ସେମାନେ ସେଠାରେ ଆଖୁ କ୍ଷେତର ଶ୍ରମିକ, କଳକାରଖାନାର ମଜଦୁର ଏବଂ ପରିବହନ ଓ ନିର୍ମାଣ କାମର କୁଲି ଭାବରେ କାମ କରୁଥିଲେ । ଇଂରେଜମାନେ ମଧ୍ୟ ସେମାନଙ୍କ ଅଧୀନରେ ଥିବା ୮୨୪୦ ଜଣ ଭାରତୀୟ ସୈନିକଙ୍କୁ ସେଠାକୁ ନେଇ ଆସିଥିଲେ ।

ସେହିସବୁ ଲୋକ ଥିଲେ ବହୁଦେଶୀୟ । ତେବେ ସେମାନଙ୍କ ମଧ୍ୟରେ ସଂଖ୍ୟାଧିକ ଥିଲେ ଭାରତର ଲୋକେ । ଆଫ୍ରିକା, ଚୀନ ଓ ୟୁରୋପୀୟ ଦେଶର ଲୋକଙ୍କ ସଂଖ୍ୟା ଥିଲା ଭାରତୀୟଙ୍କଠାରୁ କମ୍ ।

ସେହିସବୁ ବହୁଦେଶୀୟ ଲୋକଙ୍କ ମଧ୍ୟରୁ ଭାରତୀୟମାନେ ମୁଖ୍ୟତଃ ଥିଲେ ହିନ୍ଦୁ ଓ ମୁସଲମାନ । ଫ୍ରାନ୍‌ସରୁ ଆସି ସେଠାରେ ବସତି ସ୍ଥାପନ କରିଥିବା ଲୋକେ ଥିଲେ କ୍ରିଓଲ ଏବଂ ଚୀନ୍‌ରୁ ଆସି ବସତି ସ୍ଥାପନ କରିଥିବା ଲୋକେ ଥିଲେ ଖ୍ରୀଷ୍ଟିଆନ । ତେବେ ଚୀନା-ମରିସୀୟ ଲୋକଙ୍କ ଭିତରେ କିଛି ବୌଦ୍ଧ ଓ ଅନ୍ୟାନ୍ୟ ଧର୍ମର ଲୋକ ବି ରହିଥିଲେ ।

୨୦୧୧ ମସିହାର ଜନଗଣନା ବିବରଣୀ କହେ ଯେ ସେଠାର ଲୋକସଂଖ୍ୟା ୧୨ ଲକ୍ଷ ୩୩ ହଜାର । ସେମାନଙ୍କ ମଧ୍ୟରୁ ହିନ୍ଦୁ ଧର୍ମାବଲମ୍ବୀ ମୁଖ୍ୟ । ସେମାନେ ମୋଟ ଜନସଂଖ୍ୟାର ୪୯ ପ୍ରତିଶତ । ଖ୍ରୀଷ୍ଟିଆନଙ୍କ ସଂଖ୍ୟା ୩୨ ପ୍ରତିଶତ ଏବଂ ମୁସଲମାନ ଓ ବୌଦ୍ଧଙ୍କ ସଂଖ୍ୟା ଯଥାକ୍ରମେ ୧୭ ଓ ୦.୪ ପ୍ରତିଶତ । ଏଣୁ ମରିସସ୍‌ର ମୁଖ୍ୟ ଅଧିବାସୀ ହିନ୍ଦୁ । ତେଣୁ ହିନ୍ଦୁ ପର୍ବପର୍ବାଣି ହିଁ ସେଠାରେ ମୁଖ୍ୟ ପର୍ବୋତ୍ସବ ଭାବରେ ପାଳିତ ହୋଇଥାଏ ।

ମରିସସ୍‌ରେ ନିର୍ଦ୍ଦିଷ୍ଟ ଭାବରେ ବର୍ଷାଋତୁ ନାହିଁ । ନଭେମ୍ବର ମାସରୁ ଏପ୍ରିଲ ମାସ ପର୍ଯ୍ୟନ୍ତ ଗ୍ରୀଷ୍ମଋତୁ ଭାବରେ କଥିତ । ଏହି ସମୟରେ ଗୁଳୁଗୁଳି ଓ ମଝିରେ ମଝିରେ ବର୍ଷା ହୁଏ । ଜାନୁଆରୀ- ଫେବୃଆରି ସବୁଠୁ ଉତ୍ତପ୍ତ ମାସ । ତେବେ ଏହି ସମୟରେ ହାରାହାରି ତାପମାତ୍ରା ପ୍ରାୟ ୨୯ ଡିଗ୍ରୀ ରହେ । ଜୁନ୍‌ରୁ ସେପ୍ଟେମ୍ବର ଶୀତ ଋତୁ ହେଲେ ହେଁ ହାରାହାରି ତାପମାତ୍ରା ପ୍ରାୟ ୨୦.୪ ଡିଗ୍ରୀ ହୋଇଥାଏ । ସେଠାରେ ସବୁଠୁ ଥଣ୍ଡା ସମୟ ଜୁଲାଇ ଓ ଅଗଷ୍ଟ ମାସ । ଏହି ସମୟରେ ରାତିର ତାପମାତ୍ରା ପ୍ରାୟ୧୬.୪ ଡିଗ୍ରୀ ହୁଏ । ତେବେ ଏହିସବୁ ତଥ୍ୟ କହେ ଯେ ମରିସସ୍ ସାରାବର୍ଷର ଯେକୌଣସି ସମୟରେ ବି ଏକ ସୁନ୍ଦର ସ୍ଥାନ । ଦ୍ୱୀପର ଚାରିପାଖେ ସୁନ୍ଦର ଓ ଶୁଭ୍ର ବାଲୁକା ବେଳା ଏବଂ ପ୍ରବାଳ ପ୍ରାଚୀରଦ୍ୱାରା ସମୁଦ୍ରଠାରୁ ବିଚ୍ଛିନ୍ନ ନୀଳ ହ୍ରଦ ଏହି ଦ୍ୱୀପକୁ ଆହୁରି ସୁନ୍ଦର ଓ ଆକର୍ଷଣ କରିଛି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଅନୁସାରେ ବାୟୁର ଶୁଦ୍ଧତା ଦୃଷ୍ଟିରୁ ଏହା ପୃଥିବୀର ଦ୍ୱିତୀୟ ଶ୍ରେଷ୍ଠ ସ୍ଥାନ ।

ମରିସସ୍‌ରେ ସବୁଠୁ ଭଲ ସମୟ ହେଉଛି ସେପ୍ଟେମ୍ବରରୁ ନଭେମ୍ବର ମାସ । ତେଣୁ ସେଠାର ପ୍ରାୟ ସବୁ ମୁଖ୍ୟ ପର୍ବପର୍ବାଣି ଏହି ସମୟରେ ହିଁ ଅନୁଷ୍ଠିତ ହୋଇଥାଏ । ସେସବୁ ମଧ୍ୟରେ ଫେବୃଆରି ଶେଷ ଓ ମାର୍ଚ୍ଚ ମଝାମଝି ସମୟ ମଧ୍ୟରେ ପାଳିତ ହେଉଥିବା ମହାଶିବରାତ୍ରି ପର୍ବ, ବର୍ଷର ବିଭିନ୍ନ ସମୟରେ ଅନୁଷ୍ଠିତ ହେଉଥିବା ଝାମୁଯାତ୍ରା ଏବଂ ଅକ୍ଟୋବର-ନଭେମ୍ବରରେ ପାଳିତ ହେଉଥିବା ଦୀପାବଳି ଆଦି ମୁଖ୍ୟ । ଗୋଟିଏ ବିଷୟ ଉଲ୍ଲେଖନୀୟ ଯେ, ଭାରତରେ ଅନୁଷ୍ଠିତ ପର୍ବ ଉତ୍ସବାଦି ସହିତ ଲୋକବିଶ୍ୱାସ, କିମ୍ବଦନ୍ତୀ ଓ ପୁରାଣ ପରମ୍ପରା ସମନ୍ୱିତ ଥିବା ପରି ମରିସସ୍‌ରେ ଅନୁଷ୍ଠିତ ପର୍ବପର୍ବାଣି ସହିତ ମଧ୍ୟ ଲୋକବିଶ୍ୱାସ, କିମ୍ବଦନ୍ତୀ ଓ ପୁରାଣ ପରମ୍ପରା ସମନ୍ୱିତ । ତେଣୁ ମରିସସ୍‌ର ମହା ଶିବରାତ୍ରି

ପର୍ବ ସହିତ ଶିବ–ମାହାତ୍ମ୍ୟ ବା ଦୀପାବଳିର ଆଲୋକ ଉତ୍ସବ ସହିତ ଅସୁର ନିଧନ ଉପାଖ୍ୟାନର ସମନ୍ୱୟ ଲକ୍ଷ୍ୟ କରାଯାଏ । ମରିସସ୍‌ରେ ଦୀପାବଳି ପାଳିତ ହୁଏ ଦୁଷ୍ଟ ଦଶାନନ ଉପରେ ରାମଙ୍କର ବିଜୟ ଲାଭ ଉପାଖ୍ୟାନଟିକୁ ସ୍ମରଣ କରିବାପାଇଁ । ଅନ୍ୟ ଅର୍ଥରେ ଏହା ଅନିଷ୍ଟ ଉପରେ ଇଷ୍ଟର ବିଜୟକୁ ହିଁ ଦ୍ୟୋତିତ କରିଥାଏ ।

ମରିସସ୍‌ରେ ଯେଉଁ ସବୁ ମୁଖ୍ୟ ଦେବଦେବୀ ପୂଜିତ ହୁଅନ୍ତି ସେମାନଙ୍କର ମୂଳଉତ୍ସ ଭାରତରେ ଖୋଜିଲେ ସହଜରେ ପାଇହୁଏ । ମାତ୍ର ଓଡ଼ିଶାର ଇଷ୍ଟଦେବ ଶ୍ରୀଜଗନ୍ନାଥ ଯେପରି ଭାବରେ ସେଠାରେ ପ୍ରତିଷ୍ଠିତ ହେଲେ ତାହାର ଇତିହାସ ଖୁବ୍ ଚମକପ୍ରଦ ।

୧୯୮୪ ମସିହା ଅଗଷ୍ଟ ମାସ ମଧ୍ୟଭାଗରେ ମରିସସ୍‌ରେ ପ୍ରଥମ ଥର ପାଇଁ ଅନୁଷ୍ଠିତ ହେଲା ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା । ତାହାର ପୃଷ୍ଠଭୂମିରେ ଥିବା ଘଟଣାବଳୀ ଖୁବ୍ କୌତୂହଳୋଦ୍ଦୀପକ ।

ଅଳ୍ପ କିଛି ବର୍ଷ ଆଗରୁ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ 'ଇସକନ' ସଂସ୍ଥା ପକ୍ଷରୁ ମରିସସ୍‌ଠାରେ ଏକ ରାଧା–ଗୋପୀନାଥ ମନ୍ଦିର ନିର୍ମାଣ ପାଇଁ ଉଦ୍ୟମ ଆରମ୍ଭ ହେଉଥାଏ । ପ୍ରାୟ ବର୍ଷକ ପୂର୍ବେ ଚରଣାମ୍ବୁଜ ପ୍ରଭୁ ନାମକ ଜଣେ ଇସକନ ବୈଷ୍ଣବ ସାଧୁ ସେଠାରେ ଅବସ୍ଥାନ କରୁଥା'ନ୍ତି । ସେ ଇସକନର ପ୍ରମୁଖ ସନ୍ଥ ଶ୍ରୀଲ ପ୍ରଭୁପାଦଙ୍କର ଜଣେ ପ୍ରମୁଖ ଶିଷ୍ୟ । ତାଙ୍କର ସେହି ଅବସ୍ଥାନ କାଳରେ ଦିନେ ରାତିରେ ସେ ସ୍ୱପ୍ନ ଦେଖିଲେ ଯେ ସେ ଜଗନ୍ନାଥଙ୍କର ଏକ ବିଗ୍ରହଙ୍କୁ କୋଳାଗ୍ରତ କରି ସାରା ମରିସସ୍ ଘୂରି ବୁଲୁଛନ୍ତି । ସେହି ସ୍ୱପ୍ନ ତାଙ୍କୁ ଖୁବ ବିଚିତ୍ର ମନେହେଲା । ଓଡ଼ିଶା– ଯାହା ଶ୍ରୀଜଗନ୍ନାଥଙ୍କର ମୂଳପୀଠ, ତାହାଠାରୁ ଅନେକ ଦୂରରେ, ପୁଣି ପ୍ରଶାନ୍ତ ମହାସାଗରର ଏକ ଦ୍ୱୀପଦେଶ ମରିସସ୍‌ରେ ଏପରି ଏକ ସ୍ୱପ୍ନ ସେ କାହିଁକି ଦେଖିଲେ, ସେକଥା ଚିନ୍ତା କରିବାକୁ ଲାଗିଲେ । କ୍ରମେ ତାଙ୍କ ମନରେ ତାହାକୁ ନେଇ କୌତୂହଳ ମଧ୍ୟ ଜାତ ହେଲା । ତାଙ୍କର କିପରି ଏକ ଅବବୋଧ ହେଲା ଯେ– ସେହି ସ୍ୱପ୍ନଟି ଆଦୌ ଏକ ଅଳୀକ ସ୍ୱପ୍ନ ନୁହେଁ ।

ପରଦିନ ପ୍ରତ୍ୟୁଷରେ ସେ ନିଜର ସେହି ସ୍ୱପ୍ନ ବୃତ୍ତାନ୍ତ ସେଠାର ଅନ୍ୟ ଭକ୍ତବୃନ୍ଦଙ୍କୁ ଶୁଣାଇଲେ । ବିସ୍ମୟର ବିଷୟ, ତାହା ଶୁଣି ସେଠାର ଜଣେ ଧର୍ମଯାଜକ ପ୍ରକାଶ କଲେ ଯେ ସେହି ଅଞ୍ଚଳର ଟ୍ରିଓଲେଟ ନାମକ ଏକ ଅଞ୍ଚଳରେ ଥିବା 'ଶିବାଲା' ବା ମହେଶ୍ୱରନାଥ ଶିବ ମନ୍ଦିର ପରିସରରେ ପୁରୀର ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ମୂର୍ତ୍ତି ପରି ତିନୋଟି ମୂର୍ତ୍ତି ପୂଜା ପାଇଆସୁଛନ୍ତି ।

ତାହା ଶୁଣି ସାଧୁ ଚରଣାମ୍ବୁଜ ଦାସଙ୍କର ହୃଦୟ ଭକ୍ତିଭାବରେ ବିଗଳିତ ହୋଇଗଲା । ଯୁଗପତ ବିସ୍ମୟ ଓ ଆନନ୍ଦରେ ସେ ବିହ୍ୱଳ ହୋଇଉଠିଲେ । କେତେକ ଭକ୍ତଙ୍କ ସହିତ ସଙ୍ଗେ ସଙ୍ଗେ ସେ ଟ୍ରିଓଲେଟର ଶିବାଲା ଅଭିମୁଖେ ଯାତ୍ରା କଲେ । ସେଠାରେ ପହଞ୍ଚି ଦେଖନ୍ତି ତ ଶ୍ରୀଜୀଉମାନେ ପରମ ଶାନ୍ତିରେ ସେଠାରେ ବିରାଜମାନ କରୁଛନ୍ତି ।

ମାତ୍ର ଶ୍ରୀବିଗ୍ରହମାନଙ୍କର ବର୍ଣ୍ଣ ଦେଖି ଚରଣାମ୍ବୁଜ ବିବ୍ରତ ଓ ବ୍ୟଥିତ ହେଲେ । କାରଣ ପ୍ରଭୁମାନେ ସେମାନଙ୍କର ନିଜସ୍ୱ ପାରମ୍ପରିକ ବର୍ଣ୍ଣରେ ଶୋଭିତ ହୋଇ ବିରାଜିତ ନଥିଲେ । ବିଗ୍ରହମାନଙ୍କୁ ଏକପ୍ରକାର ହାଲୁକା ଗୋଲାପି ରଂଗରେ ରଂଜିତ କରାଯାଇଥିଲା । ଫଳରେ ସେମାନେ ଆମ ଠାକୁରମାନଙ୍କ ପରି କଳା, ଧଳା ଓ ହଳଦୀ ରଙ୍ଗରେ ଶୋଭା ନପାଇ ଦେଖା ଯାଉଥିଲେ ବିଚିତ୍ର ।

ସାଧୁ ଚରଣାମ୍ବୁଜ ମରିସସ୍‌ର 'ଶିବାଲା'ରେ ଶ୍ରୀବିଗ୍ରହମାନଙ୍କୁ ସନ୍ଦର୍ଶନ କରିବାର ସମୟ ଥିଲା ୧୯୮୩ ମସିହା ଜୁନ୍ ମାସର ମଧ୍ୟଭାଗ । ପ୍ରତିବର୍ଷ ପ୍ରାୟ ସେହି ସମୟକୁ ଶ୍ରୀକ୍ଷେତ୍ରରେ ପ୍ରଭୁମାନଙ୍କର ପରମପାବନ ଶ୍ରୀଗୁଣ୍ଡିଚା ଯାତ୍ରାର ଆନୁଷଙ୍ଗିକ ଉତ୍ସବ ବିଧାନାଦି ଆରମ୍ଭ ହୋଇ ଯାଇଥାଏ । ପାରମ୍ପରିକ ବିଧାନ ଅନୁଯାୟୀ ଶ୍ରୀଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୁଏ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ । ମାତ୍ର ଏହାର ପ୍ରାୟ ଏକ ପକ୍ଷ ଆଗରୁ, ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ ଦେବସ୍ନାନ ହେବା ସହିତ ଅନବସର ନୀତି ଆରମ୍ଭ ହୁଏ । ଠାକୁରମାନଙ୍କର ଏହି ଅନବସର ସମୟରେ ଦଇତାମାନେ ପ୍ରଭୁମାନଙ୍କର କଳେବରର ସାମ୍ବତ୍ସରିକ ସଂମାର୍ଜନ କରିଥାଆନ୍ତି । ଏହାକୁ ମନ୍ଦିର ପରିଭାଷାରେ 'ଘଣାଲାଗି' କୁହାଯାଏ । ତତ୍ପରେ 'ବନକ ଲାଗି' (ପାରମ୍ପରିକ ରୀତିରେ ଅଙ୍ଗ ଚିତ୍ରଣ ବା ବର୍ଣ୍ଣ ବିନ୍ୟାସ) କରାଯାଇ ଯେଉଁଦିନ ପ୍ରଭୁମାନେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି ସେହି ଦିନଟିକୁ ନବଯୌବନ ଦର୍ଶନ କୁହାଯାଏ । ସେହି ଦିନଟି ତିଥି ଅନୁଯାୟୀ ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ ବା ଅମାବାସ୍ୟା ଦିନ ପଡ଼େ । ସେହି ସମୟ ବେଳକୁ ଅକ୍ଷୟ ତୃତୀୟା ଦିନଠାରୁ ଆରମ୍ଭ ହୋଇଥିବା ପ୍ରଭୁଙ୍କର ରଥ ନିର୍ମାଣ କାର୍ଯ୍ୟ ଶେଷ ହୋଇ ରଥମାନେ ଯଥାରୀତି ପୀତ, କୃଷ୍ଣ ଓ ହରିତ ରଂଗରେ ସଜ୍ଜିତ ହୋଇ ସାରିଥାଆନ୍ତି । ଅମାବାସ୍ୟା ଦିନ ଆଜ୍ଞାମାଳ ପ୍ରାପ୍ତ ହେବା ପରେ ରଥମାନଙ୍କୁ ରଥଖଳା (ରାଜ ନଅର ସମ୍ମୁଖସ୍ଥ ରଥ ନିର୍ମାଣ ସ୍ଥାନ) ଠାରୁ ସିଂହଦ୍ୱାରକୁ ଅଣାଯାଏ ଏବଂ ଯଥାବିଧାନ ଅନୁଯାୟୀ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ରଥଯାତ୍ରା ଅନୁଷ୍ଠିତ ହୁଏ ।

'ଇସକନ' ସଂସ୍ଥାର ଜଣେ ପ୍ରମୁଖ ଶିଷ୍ୟ ଭାବରେ ସାଧୁ ଚରଣାମ୍ବୁଜ ଦାସ ଶ୍ରୀଜଗନ୍ନାଥଙ୍କର ସେହିସବୁ ପର୍ବ, ବିଧିବିଧାନ ଆଦି ବିଷୟରେ ଅବହିତ ଥିଲେ । ସେ ଅନୁଧ୍ୟାନ କରି ଜାଣିଲେ ଯେ ସେଠାର ଅଧିବାସୀମାନେ ଏସବୁ ବିଷୟରେ ସଂପୂର୍ଣ୍ଣ ଅଜ୍ଞ । ଅବଶ୍ୟ ଯେଉଁମାନେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କର ପାରମ୍ପରିକ ବର୍ଣ୍ଣ ବିନ୍ୟାସ ସଂପର୍କରେ ମଧ୍ୟ ଅବହିତ ନୁହନ୍ତି, ସେମାନଙ୍କଠାରୁ ଏସବୁ ଉତ୍ସବ ବିଧାନାଦି ସଂପର୍କରେ ସଚେତନତା ଆଶା କରିବା ବୃଥା । ତେଣୁ ଚରଣାମ୍ବୁଜ ବ୍ୟଥିତ ହେଲେ ମଧ୍ୟ ନିରାଶ ହେଲେ ନାହିଁ । ମନ୍ଦିର କର୍ତ୍ତୃପକ୍ଷଙ୍କୁ ସେସବୁ ବିଷୟ ଅବଗତ କରାଇ ତାଙ୍କର ସମ୍ମତି ନେଲେ ଏବଂ ଅନ୍ୟ ଭକ୍ତବୃନ୍ଦଙ୍କ ସହଯୋଗରେ ଶ୍ରୀବିଗ୍ରହମାନଙ୍କର ସଂମାର୍ଜନ କରି ରଥଯାତ୍ରାର ଆୟୋଜନରେ ଲାଗିପଡ଼ିଲେ ।

ସେମାନଙ୍କର ପ୍ରଥମ କାର୍ଯ୍ୟ ଥିଲା ବନକଲାଗି ବା ଶ୍ରୀବିଗ୍ରହମାନଙ୍କର ଅଙ୍ଗରେ ବର୍ଣ୍ଣ ବିଲେପନ । ଅବଶ୍ୟ ପୁରୀର ପାରଂପରିକ ବିଧାନ ଅନୁଯାୟୀ ନିର୍ଦ୍ଦିଷ୍ଟ ତିଥି, ବାର, ନକ୍ଷତ୍ରରେ ଏହା କରାଯାଇ ନଥିଲା ମାତ୍ର ଅନବସର ସମୟରେ ଦଇତାମାନେ ଯେପରି ଅକ୍ଳାନ୍ତ କାୟିକ ଶ୍ରମ କରି ଶ୍ରୀଜୀଉମାନଙ୍କର ଅଙ୍ଗ ଗଠନ କରିଥାଆନ୍ତି– ସେହିପରି ସେମାନେ ଅହୋରାତ୍ର ଅକ୍ଳାନ୍ତ ପରିଶ୍ରମ କରି ପ୍ରଭୁମାନଙ୍କର ବିଗ୍ରହରୁ ବର୍ଣ୍ଣଲେପ ବିମୋଚନରେ ଲାଗିପଡ଼ିଲେ । ଏହି କାର୍ଯ୍ୟରେ ଅଗ୍ରଣୀ ଭୂମିକା ନେଇଥିଲେ ଇସକନ ସଂସ୍ଥାର ଅନ୍ୟତମ ଶିଷ୍ୟା ସହସ୍ରାକ୍ଷୀ ଦାସୀ ।

ତ୍ରିଓଲେଟର ମହେଶ୍ୱରନାଥ ଶିବ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ୧୮୮୮ରେ ଏବଂ ତିନିବର୍ଷ ମଧରେ ମନ୍ଦିରର ନିର୍ମାଣ କାର୍ଯ୍ୟ ସଂପନ୍ନ ହୋଇଥିଲା । ତେଣୁ ଏହି ଦୀର୍ଘ ସମୟ ବ୍ୟବଧାନ ମଧ୍ୟରେ ପ୍ରଭୁମାନଙ୍କ କଳେବରରେ ବହୁବାର ବର୍ଣ୍ଣ ବିଲେପନ କରାଯାଇଥିଲା । ମୂଳ ଲେପଟି ପାଖରେ ପହଞ୍ଚିବା ପାଇଁ ସେମାନଙ୍କୁ ପରସ୍ତ ପରେ ପରସ୍ତ କରି ସାତ ପରସ୍ତ ରଙ୍ଗ ଛଡ଼ାଇବାକୁ ପଡ଼ିଲା । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ସେହି ସାତ ପରସ୍ତ ରଂଗ କେବଳ ଗୋଲାପି ନଥିଲା ଥିଲା ବିଭିନ୍ନ ରଙ୍ଗର । ମୂଳ ରଙ୍ଗର ପୁଟଟି ପାଖରେ ପହଞ୍ଚିବା ପରେ ପାରମ୍ପରିକ କଳା, ଧଳା ଓ ହଳଦୀ ରଙ୍ଗ ପରିସ୍ଫୁଟ ହେଲା ଏବଂ ଶେଷରେ ପାରଂପରିକ କୃଷ୍ଣ, ଶ୍ୱେତ ଓ ହରିଦ୍ରା ରଙ୍ଗରେ ପ୍ରଭୁମାନଙ୍କର ବନକଲାଗି ସଂପନ୍ନ କରାଗଲା ।

ବିଧାନାନୁଯାୟୀ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଘୋଷଯାତ୍ରା ଅନୁଷ୍ଠିତ ହେବା କଥା । ମାତ୍ର ସେହି ମନ୍ଦିରର ଶ୍ରୀବିଗ୍ରହମାନେ ନିମକାଠ ତ ଦୂରର କଥା କାଠରେ ମଧ୍ୟ ନିର୍ମିତ ହୋଇନଥିଲେ । ଧଳା ମାର୍ବଲ ପଥରରେ ବିଗ୍ରହ ତ୍ରୟଙ୍କୁ ନିର୍ମାଣ କରାଯାଇଥିଲା । ତେଣୁ ମାର୍ବଲ ମୂର୍ତ୍ତିଙ୍କୁ ମନ୍ଦିର କର୍ତ୍ତୃପକ୍ଷ କ୍ଳେଶକର ରଥଯାତ୍ରାରେ ବାହାର କରାଇବାକୁ ନିରାପଦ ମଣିଲେ ନାହିଁ ବରଂ ତାହାର ବିରୋଧ କଲେ । ତେଣୁ କେବଳ ଶ୍ରୀଜଗନ୍ନାଥଙ୍କର ଏକ ନୂତନ ବିପୁଳାକାର ମୂର୍ତ୍ତି କାଠରେ ନିର୍ମାଣ କରାଯାଇ ୧୯୮୪ ଅଗଷ୍ଟ ମାସ ମଧ୍ୟଭାଗରେ ସେଠାରେ ରଥଯାତ୍ରା ସଂପନ୍ନ କରାଗଲା ।

ମରିସସ୍‌ରେ ପ୍ରଥମଥର ପାଇଁ ଅନୁଷ୍ଠିତ ସେହି ରଥଯାତ୍ରାରେ ପାରମ୍ପରିକ ଛେରାପହଁରା ନୀତି ମଧ୍ୟ ସଂପନ୍ନ ହୋଇଥିଲା । ସମବେତ ଭକ୍ତବୃନ୍ଦଙ୍କର କରତାଳି, ନୃତ୍ୟ, କୀର୍ତ୍ତନ ଓ ଉଚ୍ଛ୍ୱସିତ ଉଲ୍ଲାସ ମଧ୍ୟରେ ସେହି ପାରମ୍ପରିକ ଛେରାପହଁରା କାର୍ଯ୍ୟ କରିଥିଲେ ମନ୍ଦିର ଟ୍ରଷ୍ଟର କର୍ତ୍ତୃପକ୍ଷ । ପରେ ଏକ ବିରାଟ ଭକ୍ତି ବିଭୋର ଶୋଭାଯାତ୍ରା ସମୁଦ୍ର ତଟଦେଶ ପର୍ଯ୍ୟନ୍ତ ଯାଇଥିଲା ଏବଂ ସେଠାରେ ସଂଧ୍ୟା ଆଳତି ସଂପନ୍ନ ହେବାପରେ 'ଶ୍ରୀଜଗନ୍ନାଥ ପ୍ରସାଦମ' ସମସ୍ତଙ୍କୁ ଅର୍ପଣ କରାଯାଇଥିଲା । ତାହା ଥିଲା ମରିସସ୍‌ର ପ୍ରଥମ ରଥଯାତ୍ରା ।

କିନ୍ତୁ ବଙ୍ଗୋପସାଗରର ତଟଦେଶରେ ଅବସ୍ଥିତ ଶ୍ରୀକ୍ଷେତ୍ର ପୁରୀଠାରୁ ଅନେକ ଦୂରରେ, ଭାରତ ମହାସାଗରର ସେହି ଏକ କ୍ଷୁଦ୍ର ଦ୍ୱୀପ ଦେଶ ମରିସସ୍‌ରେ କିଏ ପ୍ରତିଷ୍ଠା କରିଥିଲେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ? ଏ ସଂପର୍କରେ ସଦ୍ୟତମ ଅନୁସନ୍ଧାନରୁ ଯେଉଁସବୁ ତଥ୍ୟ ମିଳିଛି ତାହା ଯେତିକି ଚମକପ୍ରଦ, ଓଡ଼ିଶାବାସୀଙ୍କ ପାଇଁ ସେତିକି ଗର୍ବ ଓ ଗୌରବର ବିଷୟ ।

ସେହି ଚମକପ୍ରଦ ତଥା ଆମ ପାଇଁ ଗର୍ବ ଓ ଗୌରବର ବିଷୟ ହେଉଛି, ମରିସସ୍‌ର ସେହି ସବୁଠୁ ବଡ଼ ଓ ସବୁଠୁ ପ୍ରସିଦ୍ଧ ଶିବମନ୍ଦିରର ପ୍ରତିଷ୍ଠାତା ଜଣେ ଓଡ଼ିଆ । ସେ ହିଁ ସେଠାରେ ପ୍ରତିଷ୍ଠା କରିଥିଲେ ଏହି ତ୍ରିମୂର୍ତ୍ତିଙ୍କୁ । ସେହି ସୁପ୍ରସିଦ୍ଧ ଓ ପରମ ସମ୍ମାନନୀୟ ଓଡ଼ିଆ ଜଣକ ଜାତିରେ ବ୍ରାହ୍ମଣ । ତାଙ୍କର ନାଆଁ ପଣ୍ଡିତ ସଂଜୀବନ । ସେ ପଣ୍ଡିତ ସଂଜୀବନ ଲାଲ ରାମସୁନ୍ଦର ନାଆଁରେ ବି ପରିଚିତ । ତେବେ ଓଡ଼ିଶାରେ ତାଙ୍କର ମୂଳ ଘର କେଉଁଠି ଏବଂ ତାଙ୍କର ମୂଳ ସାଂଜ୍ଞା କ'ଣ ଥିଲା ତାହା ଏଯାଏ ଜଣାଯାଇ ନାହିଁ ।

ମରିସସ୍ ନିବାସୀ ଭାରତୀୟ ଓ ଭାରତୀୟ ବଂଶୋଦ୍ଭବ ବା ସଂକ୍ଷେପରେ କହିଲେ 'ଭାରୋ–ମରିସୀୟ'ମାନଙ୍କ ଉପରେ ସବିଶେଷ ଗବେଷଣା କରିଛନ୍ତି ମରିସସ୍ ନିବାସୀ ପ୍ରହ୍ଲାଦ ରାମଶରଣ । ସେ ମଧ୍ୟ ଜଣେ ଭାରୋ–ମରିସୀୟ । 'ଲା

ମରିସିଆନ' ନାମକ ମରିସସ୍‌ର ଏକ ଇଂରାଜୀ ଦୈନିକର ୧୬ ଜୁଲାଇ ୨୦୧୧ ସଂଖ୍ୟାରେ ସେ ପଣ୍ଡିତ ସଂଜୀବନଙ୍କ ସଂପର୍କରେ ଏକ ଲେଖା ଲେଖିଛନ୍ତି । ତାହାର ଶୀର୍ଷକ, Pandit Sanjeewan(1844-1907): An Orthodox Hindu Priest and a Social Worker । ୧୮୯୮ ମସିହା ଫେବୃଆରି ୧୮ ତାରିଖର ଏକ ଗେଜେଟ The Standard, Le Vrai Progress Colonial, ୧୯୩୬ରେ ପ୍ରକାଶିତ ଆତ୍ମାରାମ ବିଶ୍ୱନାଥଙ୍କର 'Hindu Mauritius' ଶୀର୍ଷକ ଏକ ଇଂରାଜୀ ପୁସ୍ତକ, ୧୯୭୮ର ଏକ ଶିବରାତ୍ରି ବିଶେଷାଙ୍କ 'ଗଙ୍ଗା ତାଲାଓ, ତୀର୍ଥରାଜ ଅଙ୍କ', ୧୯୯୫ରେ ପ୍ରକାଶିତ ପ୍ରହ୍ଲାଦ ରାମଶରଣଙ୍କ 'ମରିସସ୍ କା ଆଦିକାବ୍ୟ କାନନ' ଶୀର୍ଷକ ହିନ୍ଦୀ ପୁସ୍ତକ ଏବଂ ୧୮୯୮ ଫେବୃଆରିର 'ଲା–ଏକ୍ସପ୍ରେସ' ଓ ୧୯୯୮ ଫେବୃଆରି୧୬ ଓ ୧୭ ତାରିଖର 'ଲା କୋତିଦିଏନ'ର ତଥ୍ୟ ଆଧାରରେ ପ୍ରହ୍ଲାଦ ରାମଶରଣଙ୍କର ସେହି ଲେଖାଟି ପ୍ରସ୍ତୁତ । (ମରିସସ୍ ନିବାସୀ, ଯାଜପୁରମୂଳ ଜଣେ ଓଡ଼ିଆ ଶ୍ରୀରାମରୂପ ଜଗନ୍ନାଥ ସେହି ଲେଖାଟିକୁ ସଂଗ୍ରହକରି ଏହି ଲେଖକ ପାଖକୁ ପଠାଇଛନ୍ତି ।)

ସେହି ଲେଖାରେ ଅବଶ୍ୟ ଶିବାଲା ମନ୍ଦିର ପରିସରରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ତ୍ରିମୂର୍ତ୍ତିଙ୍କ ସଂପର୍କରେ କୌଣସି ଉଲ୍ଲେଖ ନାହିଁ– ମାତ୍ର ସେହି ମନ୍ଦିରର ପ୍ରତିଷ୍ଠାତା ସଂଜୀବନଙ୍କ ସଂପର୍କରେ ଅଛି ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ । ପ୍ରହ୍ଲାଦ ରାମଶରଣ ଲେଖିଛନ୍ତି– ସଂଜୀବନ ଓଡ଼ିଶାର ଜଣେ ବ୍ରାହ୍ମଣ । ସେ ଜଣେ ହିନ୍ଦୁ ପଣ୍ଡିତ । ୧୮୪୪ ମସିହାରେ ଓଡ଼ିଶାରେ ତାଙ୍କର ଜନ୍ମ । ମାତ୍ର ୨୨ ବର୍ଷ ବୟସରେ, ୧୮୬୬ ମସିହା ଏପ୍ରିଲ ୪ ତାରିଖରେ 'ମୋଜାମ୍ବିକ' ନାମକ ଏକ ଷ୍ଟିମରରେ ସେ କଲିକତାରୁ ଯାଇଥିଲେ ମରିସସ୍ । ତାଙ୍କର ପାସେଞ୍ଜର ନମ୍ବର ୪୯୯୬ । ସେ ଜଣେ ଗୋତି ବା ଚୁକ୍ତିବଦ୍ଧ ଶ୍ରମିକ ନଥିଲେ, ଥିଲେ ଜଣେ ମୁକ୍ତ ଶ୍ରମଜୀବୀ । ସେଠାର ମାହେବର୍ଗ, ଭାକୋସ ଆଦି ସ୍ଥାନରେ କିଛି କିଛି କାଳ ଅବସ୍ଥାନ କରିବା ପରେ ଶେଷରେ ସେ ବସତି ସ୍ଥାପନ କରିଥିଲେ ମରିସସ୍‌ର ଉତ୍ତରାଞ୍ଚଳ ସ୍ଥିତ 'ଟ୍ରିଓଲେଟ' ଗ୍ରାମରେ । ସେଠାରେ ପୂର୍ତ୍ତ ବିଭାଗର ଜଣେ କର୍ମଚାରୀ ଭାବରେ ନିଯୁକ୍ତି ପାଇ ସେ ରାସ୍ତାନିର୍ମାଣ କାମ କରାଉଥିଲେ । ମାତ୍ର କିଛି କାଳ ପରେ ସେ ସେହି ଚାକିରି ଛାଡ଼ିଦେଲେ । ସ୍ୱାଧୀନ ଭାବରେ ଠିକାଦାରି ଓ ଜମିବାଡ଼ି ବିକା କିଣା ଆଦି କାମ ଆରମ୍ଭ କଲେ ।

୧୮୮୦ ମସିହାରେ ମରିସସ୍‌ରେ ଆରମ୍ଭ ହେଲା 'ଗ୍ରାଣ୍ଡ ମର୍ସେଲମେଣ୍ଟ' ପ୍ରକ୍ରିୟା । ଚୁକ୍ତିବଦ୍ଧ ଶ୍ରମିକ ଭାବରେ ସେଠାକୁ ଯାଇ ବିଭିନ୍ନ କଳକାରଖାନା ବା ଆଖୁ କ୍ଷେତ ଆଦିରେ କୁଲି କାମ କରୁଥିବା ବିଭିନ୍ନ ଦେଶର ଲୋକେ ସେହି ସମୟରେ ଆଉ କଳକାରଖାନାର ବସ୍ତିରେ ନରହି ସ୍ୱାଧୀନ ଭାବରେ ନିଜେ ଘରକରି ରହିବାର ସୁଯୋଗ ପାଇଲେ । ତାହା ଫଳରେ ସେଠାରେ ଏକ ସାମାଜିକ ପରିବର୍ତ୍ତନର ସୂତ୍ରପାତ ହେଲା । ଏକ ଭାରତୀୟ ଶ୍ରମଜୀବୀ ଗୋଷ୍ଠୀ ବିକାଶ ଲାଭ କଲା ।

ସଂଜୀବନ ତାହାର ସୁଯୋଗ ନେଲେ । ସେ ଥିଲେ ଅତ୍ୟନ୍ତ ଉତ୍ସାହୀ ଓ ଉଦ୍ୟୋଗୀ । ସେତେବେଳକୁ ଚାକିରି ଓ ଠିକାଦାରିରୁ ଭଲ କିଛି ପଇସା ସେ ରୋଜଗାର କରି ସାରିଥିଲେ । ସେହି ପଇସାରେ ଜୁଲିସ ଲାଙ୍ଗଲୋଇସ ନାମକ ଜଣେ ବ୍ୟକ୍ତିଙ୍କଠାରୁ ସେ ପ୍ରାୟ ୧୫୦ ଏକର ଜମି କିଣିନେଲେ । ପରେ ସେହି ଜମିକୁ ଚଢ଼ା ଦରରେ ବିକି ମୋଟା ଟଙ୍କା ଅର୍ଜନ କଲେ ।

ମାତ୍ର ଏପରି ବ୍ୟବସାୟ ବୃଦ୍ଧି ସତ୍ତ୍ୱେ ସଂଜୀବନ ମୂଳତଃ ଥିଲେ ଜଣେ ଧର୍ମପରାୟଣ ବ୍ୟକ୍ତି । ପୁଣି ସେ ଥିଲେ ଶିବ ଭକ୍ତ । ଇତିମଧ୍ୟରେ ସେ ସେଠାରେ ବିବାହ ବି କରିସାରିଥିଲେ, ମାତ୍ର ତାଙ୍କର କୌଣସି ସନ୍ତାନସନ୍ତତି ନଥିଲେ । ତେଣୁ ନିଜର ବିପୁଳ ଉପାର୍ଜନର ବିନିଯୋଗ କରି ସେ ସେଠାରେ ଏକ ଶିବମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଦେଲେ ।

ଟ୍ରିଓଲେଟର ସେହି ଶିବମନ୍ଦିର 'ମହେଶ୍ୱରନାଥ ଶିବାଲା' ନାମରେ ସାରା ମରିସସ୍‌ରେ ପରିଚିତ ଓ ପ୍ରସିଦ୍ଧ । ତାହା ମରିସସ୍‌ର ସର୍ବବୃହତ ହିନ୍ଦୁ ମନ୍ଦିର ଏବଂ ମରିସସ୍‌ବାସୀ ହିନ୍ଦୁଙ୍କର ଏକ ପୁଣ୍ୟପୀଠ । ତାହାର ନିର୍ମାଣ କାର୍ଯ୍ୟ ୧୮୮୮ରେ ଆରମ୍ଭ ହୋଇ ତିନିବର୍ଷ ମଧ୍ୟରେ ସଂପୂର୍ଣ୍ଣ ହୋଇଥିଲା । ଭିତ୍ତିଠାରୁ ତ୍ରିଶୂଳ ପର୍ଯ୍ୟନ୍ତ ସିମେଣ୍ଟ ଓ ପଥରର ସେହି ୯୦ ଫୁଟ ଉଚ୍ଚର ଭବ୍ୟ ମନ୍ଦିର ମରିସସ୍‌ର ଏକ ଅନୁପମ ସ୍ଥାପତ୍ୟ । ମହାସମାରୋହରେ ତାହାର ପ୍ରତିଷ୍ଠା ଉତ୍ସବ ସଂପନ୍ନ ହୋଇଥିଲା । ବିଶିଷ୍ଟ ପଣ୍ଡିତ ଦୌଲାତରାମ ଚତୁର୍ବେଦୀ ସେହି ମନ୍ଦିରର ଦେବାଭିଷେକ ସଂପନ୍ନ କରିଥିଲେ ।

ମନ୍ଦିରର ମୁଖ୍ୟ ଉପାସ୍ୟ ମହେଶ୍ୱରନାଥ ଶିବ ହେଲେ ହେଁ ମନ୍ଦିର ପରିସର ମଧ୍ୟସ୍ଥ ଅନ୍ୟାନ୍ୟ ମନ୍ଦିରରେ ଅନ୍ୟ ହିନ୍ଦୁ ଦେବଦେବୀଙ୍କର ବିଗ୍ରହ ମଧ୍ୟ ପୂଜିତ ହେଉଛନ୍ତି । ଏହିପରି ଏକ ମନ୍ଦିରରେ ପୂଜା ପାଉଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କର ମର୍ମର ପ୍ରତିମା । ସଂଜୀବନ ଜଣେ ଓଡ଼ିଆ ଭାବରେ ଓଡ଼ିଶାର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥଙ୍କୁ ସେଠାରେ ପ୍ରତିଷ୍ଠା କରାଇଥିବା ସଂପୂର୍ଣ୍ଣ ସ୍ୱାଭାବିକ ।

ଏକ ଲୋକପ୍ରଚଳିତ, ପ୍ରସିଦ୍ଧ ଉପାଖ୍ୟାନ ଏହି ଯେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ଓ ଶ୍ରୀବିଗ୍ରହ ପ୍ରତିଷ୍ଠା ପରେ ପୁରାଣପ୍ରସିଦ୍ଧ ଇନ୍ଦ୍ରଦ୍ୟୁମ୍ନ ନିଃସନ୍ତାନ ହେବାପାଇଁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ସେପରି ପ୍ରାର୍ଥନା ସଂଜୀବନ କେବେ କରିଥିଲେ କି ନା ତାହା ଜଣାନାହିଁ । କିନ୍ତୁ ସେ ଥିଲେ ନିଃସନ୍ତାନ । ୧୯୦୭ରେ ତାଙ୍କର ମୃତ୍ୟୁ ହେଲା । କିନ୍ତୁ ମୃତ୍ୟୁ ପୂର୍ବରୁ ମନ୍ଦିର ପାଇଁ ଦଶ ଏକରରୁ ଊର୍ଦ୍ଧ୍ୱ ଜମି ଖଞ୍ଜା କରିଦେଇ ଯାଇଥିଲେ ସେ । ତେଣୁ ତାଙ୍କର ବିୟୋଗ ପରେ ମଧ୍ୟ ମନ୍ଦିରର ନୀତିକାନ୍ତି ସୂଚାରୁ ରୂପେ ସଂପନ୍ନ ହେଉଛି । ତାଙ୍କ ପରେ ଗଠିତ ହୋଇଥିବା ଏକ ଟ୍ରଷ୍ଟ ଏବେ ମନ୍ଦିର ପରିଚାଳନା କରୁଛି । ଆଜି ବି ମନ୍ଦିର ଗାତ୍ରର ଭିତ୍ତିପ୍ରସ୍ତରରେ ସଂଜୀବନଙ୍କ ନାମ ଉତ୍‌କୀର୍ଣ୍ଣ ଥାଇ ମରିସସ୍‌ରେ ଏହି ଓଡ଼ିଆ ମନ୍ଦିର ନିର୍ମାତାଙ୍କ ନାମ ଗୌରବର ସହିତ ଉଦ୍‌ଘୋଷଣ କରୁଛି । ଇତିମଧ୍ୟରେ ଟ୍ରିଓଲେଟର ଅନତିଦୂରରେ, ଗତ୨୦୦୫ରେ 'ଇସ୍କନ' ପକ୍ଷରୁ ଏକ ରାଧାଗୋଲକାନନ୍ଦ, କୃଷ୍ଣ–ବଳରାମ ଓ ଜଗନ୍ନାଥ, ବଳଦେବ ଓ ସୁଭଦ୍ରା ମନ୍ଦିର ନିର୍ମାଣ ହୋଇଛି । ମାତ୍ର ସଂଜୀବନଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରଥମ ଓ ପ୍ରାଚୀନ ମନ୍ଦିର ଭାବରେ ଟ୍ରିଓଲେଟର ମହେଶ୍ୱରନାଥ ଶିବାଳା ମରିସସ୍‌ର ଆକାଶକୁ ଉନ୍ନତ ମଥାଟେକି ଦଣ୍ଡାୟମାନ ରହିଛି ।

ଉଲ୍ଲେଖନୀୟ ଯେ– ମରିସସ୍‌ର ଶିବାଳା ପରିସରସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିରରେ ଶ୍ରୀବିଗ୍ରହମାନଙ୍କର ସଂସ୍ଥାପନ ଊନବିଂଶ ଶତାବ୍ଦୀର ଶେଷଭାଗରେ ହୋଇଥିଲେ ମଧ୍ୟ ସେ ପର୍ଯ୍ୟନ୍ତ ଥରେ ହେଲେ ବି ସେଠାରେ ପ୍ରଭୁମାନଙ୍କର ରଥଯାତ୍ରା ଅନୁଷ୍ଠିତ ହୋଇନଥିଲା । ପୁନଶ୍ଚ ଅପାରମ୍ପରିକ ବର୍ଣ୍ଣ ବିନ୍ୟାସ ହେତୁ ଓଡ଼ିଶାଠାରୁ ସୁଦୂର ସେହି ମନ୍ଦିରର ବିଗ୍ରହତ୍ରୟ ଯେ ଉତ୍କଳର ମୁଖ୍ୟ ଆରାଧ୍ୟ ଦେବ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ତାହା ଜାଣିବାର ଅବକାଶ ମଧ୍ୟ ନଥିଲା । ସାଧୁ ଚରଣାମ୍ବୁଜଙ୍କ ସ୍ୱପ୍ନ ମଧ୍ୟରୁ ଆକସ୍ମିକ ଭାବରେ ଏହାର ସୂଚନା ମିଳିବା ଏବଂ ସେହି ସୂଚନା ଅନୁସାରେ ପ୍ରଭୁମାନେ ନିଜସ୍ୱ ରୂପରେ ସୁପ୍ରତିଷ୍ଠିତ ହେବା ଏବଂ ପରେ ପରେ ତାଙ୍କର ପ୍ରଥମ ରଥଯାତ୍ରା ସଂପନ୍ନ ହେବା ଫଳରେ ମରିସସ୍‌ରେ କେବଳ ଭାରତୀୟତାର ନୁହେଁ, ଉତ୍କଳୀୟତାର ମଧ୍ୟ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଉନ୍ମୋଚିତ ହୋଇଛି । ଏହା ସାବ୍ୟସ୍ତ କରିଛି ଯେ ସାଧୁ ଚରଣାମ୍ବୁଜ ଦାସଙ୍କ ସ୍ୱପ୍ନଟି କେବଳ ଏକ ଅଳୀକ ସ୍ୱପ୍ନ ନଥିଲା– ଥିଲା ଏକ ଗଭୀର ବ୍ୟଞ୍ଜନା । ଅନ୍ୟ ଅର୍ଥରେ ତାହାକୁ ଇଚ୍ଛାମୟଙ୍କର ଇଚ୍ଛା ବୋଲି ମଧ୍ୟ କୁହାଯାଇପାରେ– ଯେଉଁ ଇଚ୍ଛା ଏହି ନଶ୍ୱର ମନୁଷ୍ୟର ଆତ୍ମା ଓ ଆଚରଣରେ ପ୍ରତିଫଳିତ ହୁଏ ମାତ୍ର ।

୪ଆର୍, ୧/୨, ଇଉନିଟ୍–୩
ଭୁବନେଶ୍ୱର–୧

# ତୁ ମୋର ଆଲୋକ ପଥ

**ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ**

କାଠ ଖଣ୍ଡେ ବୋଲି କହି କହିବାରେ
ତୁ ପରା ଜଗତନାଥ
ଜଗତ ଲୋକଙ୍କ ହାନିଲାଭ ବୁଝୁ
ବୋଲାଉ ଅନାଥ ନାଥ ।

କୋଟିଏ ମୁହଁରେ ଗୋଟିଏ କଥାରେ
ତୋ'ର ପରା କାନ ନାହିଁ
କାନ ନଥିଲେ ତ କି ଅବା ହୋଇବ
ଡାକ ଶୁଣୁ କାନ ଦେଇ
ମାଦଳ କିଏ ସେ କହିଲେ କହୁରେ
ତୁ ମୋର ଆଲୋକ ପଥ ।



ତୋ' ଆଖିରେ ଆଖି ମିଶାଇ ଦେଲେରେ
ସବୁ ଦୁଃଖ ଯାଏ ଭୁଲି
ମନରୁ ବେଦନା ହରଣ ହୁଏରେ
ବଡଦାଣ୍ଡେ ଗଲେ ବୁଲି
ଭାବର ଦେବତା କଇବଲ୍ୟ ଦାତା
ଦେଖାଉ ମୁକତି ପଥ ।

ଏଫ୍ ୧୧/୨, ୟୁନିଟ୍–୯, ଭୋଇ ନଗର,
ଭୁବନେଶ୍ୱର–୨୨



# ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତା

ଅଧ୍ୟାପିକା ସୌଦାମିନୀ ବେହେରା

ଉତ୍କୃଷ୍ଟ କଳାର ଦେଶ ଉତ୍କଳ । ଏହାର ପୁରାତନ ନାମ ଥିଲା ଉଡ୍ର। ସମ୍ରାଟ ଖାରବେଳଙ୍କ ରାଜତ୍ୱ ସମୟରେ ଏହା କଳିଙ୍ଗ ନାମରେ ପରିଚିତ ଥିଲା। ଓଡ଼ିଶାର ଚାରୁକଳା, ଐତିହ୍ୟ ପରମ୍ପରା, ଧର୍ମ, ଭୌଗଳିକ ଅବସ୍ଥିତିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏହାର ଅନେକ ସ୍ୱାତନ୍ତ୍ରତା ପରିଲକ୍ଷିତ ହୁଏ। ସନାତନ ହିନ୍ଦୁ ଜଗତର ମୁଖ୍ୟ ଚତୁଃଧାମ ରାମେଶ୍ୱର, ଜଗନ୍ନାଥ, ବଦ୍ରୀ, ଦ୍ୱାରକା ଭିତରେ ଜଗନ୍ନାଥ ଧାମ ହିଁ ବହୁଜନ ଆକାଙ୍କ୍ଷିତ। ସାରା ବିଶ୍ୱ ଦରବାରରେ ଓଡ଼ିଶା ନିଜକୁ ଏକ ସ୍ୱତନ୍ତ୍ର ସ୍ଥାନରେ ପ୍ରତିଷ୍ଠିତ କରିପାରିଛି, କେବଳ ଶ୍ରୀଜଗନ୍ନାଥଙ୍କ ଯୋଗୁଁ । ଓଡ଼ିଶାକୁ ଚାରି ଧାମରୁ ଏକ ଧାମ ଶ୍ରୀଜଗନ୍ନାଥ ଧାମ ବୋଲି ବର୍ଣ୍ଣନା କରାଯାଏ। ଆମେ ଓଡ଼ିଶାବାସୀ ଏତେ ଗର୍ବ ଅନୁଭବ କରୁ ଯେ, ଏ ପବିତ୍ର ଉତ୍କଳ ମାଟିରେ ଜନ୍ମ ହୋଇ ଆମ ଜୀବନ ଧନ୍ୟ ହୋଇଗଲା । କି ଆତ୍ମ ସନ୍ତୋଷ ଏ ମାଟିରେ! ଏ ପାଣିପବନର ସରଳ ଜୀବନଯାପନ ମଧ୍ୟରେ ଯେମିତି ଲାଗେ ଆମ କାଳିଆ ଠାକୁର ଆମ ଘରର ଏକ ସଦସ୍ୟ, ସଖା, ସହୋଦର। ନିଷ୍କପଟ ହୃଦୟ ଓ ସରଳ ମନରେ ସ୍ମରଣ କଲେ ଶ୍ରୀଚକାଆଖି ଆମ ଭିତରେ ବିଦ୍ୟମାନ ହୁଅନ୍ତି ଓ ଖିଲିଖିଲି ହସରେ ଆମ ଜୀବନକୁ ସରସ, ସୁନ୍ଦର, ରସାଳ ଓ ସାବଲୀଳ କରି ଗଢ଼ି ତୋଳନ୍ତି ।

ହିନ୍ଦୁ ପରମ୍ପରାରେ ଜଗନ୍ନାଥ ସଂସ୍କୃତି ଶ୍ରେଷ୍ଠ ଅଟେ। ଯଦି ଜଣେ ଗବେଷକ ଶ୍ରୀଜଗନ୍ନାଥ ସଂସ୍କୃତିର ଗବେଷଣାରେ ଅତି ପ୍ରଗାଢ଼ ଭାବରେ ନିଜକୁ ସମର୍ପଣ କରନ୍ତି, ତା'ହେଲେ ସେ ଏହାର ଆରମ୍ଭ ଓ ଶେଷର ଅନ୍ତିମ ପର୍ଯ୍ୟାୟକୁ କେବେହେଲେ ପହଞ୍ଚି ପାରିବାର ସାହସ କରିପାରିବେ ନାହିଁ। କାହିଁକିନା ସେ କାଳିଆ ଠାକୁର ଅସୀମ, ଅନନ୍ତ ଓ ଅମାପ। ପୁରୀ ପ୍ରାଚୀନ କାଳରେ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ର ନାମରେ ବିଶେଷ ଭାବରେ ପରିଚିତ ଥିଲା। ପୁରାଣମାନଙ୍କରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ, ପୁରୁଷୋତ୍ତମ ମାହାତ୍ମ୍ୟ ନାମରେ ବର୍ଣ୍ଣନା ଥିବାର ଦେଖାଯାଏ । ବର୍ତ୍ତମାନ ପୁରୀ ଶ୍ରୀକ୍ଷେତ୍ର ବା ଶଙ୍ଖକ୍ଷେତ୍ର ନାମରେ ନାମିତ ହୋଇଅଛି । ନୀଳାଚଳ କ୍ଷେତ୍ର ନାମଟି ନୀଳଗିରି ବା ନୀଳାଚଳ ପର୍ବତର ନାମରୁ ଆସିଅଛି । ଶ୍ରୀଜଗନ୍ନାଥଙ୍କୁ ଶ୍ରଦ୍ଧାରେ ଓଡ଼ିଆ ଭକ୍ତମାନେ ବିଭିନ୍ନ ନାମରେ ଡାକିଥାନ୍ତି । ଯଥା– କାଳିଆ ଠାକୁର, ଚକାଆଖି,ମୟୂରଚୂଳିଆ, ରସିକନାଗର, ବାଙ୍କବିହାରୀ ଇତ୍ୟାଦି । ଶ୍ରୀକ୍ଷେତ୍ରକୁ ମଧ୍ୟ ଦଶାବତାର କ୍ଷେତ୍ର ବୋଲି କୁହାଯାଏ । କାରଣ ଏହି କ୍ଷେତ୍ରରୁ ସବୁ ଅବତାରଙ୍କର ଉତ୍ପତ୍ତି ସ୍ୱୟଂ ପୁରୁଷୋତ୍ତମ ଅବତାର ଗ୍ରହଣ କରି ଲୀଳା ଶେଷରେ ପୁଣି ସ୍ୱସ୍ଥାନ ଶ୍ରୀକ୍ଷେତ୍ରକୁ ଫେରି ଆସନ୍ତି। ତ୍ରେତୟାରେ 'ଶ୍ରୀରାମ', 'ଦ୍ୱାପରରେ 'ଶ୍ରୀକୃଷ୍ଣ' ଅବତାରରେ ଅବତୀର୍ଣ୍ଣ ହେଲାପରେ ବର୍ତ୍ତମାନ କଳିଯୁଗରେ 'ଶ୍ରୀଜଗନ୍ନାଥ' ଅବତାରରେ ଆମର ଆରାଧ୍ୟ ଦେବତା ଭାବରେ ଆମ ନିକଟରେ ଖୁବ୍ ପରିଚିତ ଅଟନ୍ତି । ଶ୍ରୀଜଗନ୍ନାଥଙ୍କ ଉଚ୍ଚାରଣରେ ମନରେ ସ୍ୱାତ୍ତ୍ୱିକ ଭାବନା ଆପେ ଆପେ ଉଦ୍‌ଭାସିତ ହୋଇଆସେ । କଳୁଷିତ ମନର ବର୍ଜ୍ୟବସ୍ତୁ ମିଳେଇଯାଏ ଶ୍ରୀଠାକୁରଙ୍କ ସ୍ମରଣରେ । ସେଇଥିପାଇଁ ବୋଧହୁଏ ପାଶ୍ଚାତ୍ୟ ଦେଶର ଲୋକଙ୍କୁ ବି ଆକୃଷ୍ଟ କରିପାରିଛି ଏ ଧାମ । ଏ ତ ବଡ଼ ଠାକୁରଙ୍କ ମାହାତ୍ମ୍ୟ। କି ଅପୂର୍ବ ଆକର୍ଷଣ ! ଲୁହାକୁ ଚୁମ୍ବକ ଟାଣି ନେଲା ପରି ବିଦେଶୀମାନେ ଟାଣି ହୋଇ ଆସନ୍ତି ଏ ଉତ୍କଳ ରାଜ୍ୟକୁ । ଏହି ରାମ ନାମ ଜପରେ ଉଚ୍ଚାରଣର ବିତୃଷ୍ଣା ଭାବ ଜାଗ୍ରତ ହୋଇଥିବା ବ୍ୟକ୍ତି ପାଇଁ ମହୋଷଧିର କ୍ଷେତ୍ର ପାଲଟିଯାଏ । ଏଠାକୁ ଆସିଲା ପରେ ବ୍ୟକ୍ତିଟି ଅନୁଭବ କରେ ତା' ମନରେ ଅପୂର୍ବ ଶାନ୍ତି, ସୁଖ, ଠାକୁରଙ୍କ ସତ୍ତାରେ ସେ ନିଜକୁ ଲୀନ କରିଦିଏ। ଏ ଜଡ଼ ବସ୍ତୁବାଦୀ ଦୁନିଆରେ ଲାଗେ ସବୁମିଛ, ଶ୍ରୀଜଗନ୍ନାଥ ହେଉଛନ୍ତି ଏକମାତ୍ର ସତ୍ୟର ପଥପ୍ରଦର୍ଶକ। ସେ ସର୍ବଲୋକନାଥ, ପତିତପାବନ, ପତିତ ରକ୍ଷକ, ସର୍ବସମ୍ପ୍ରଦାୟ ସମନ୍ୱୟର ଆଧାର, ସର୍ବଜନ କଲ୍ୟାଣ, ପକ୍ଷପାତ ବିରହିତ ସମଦୃଷ୍ଟି

ଜଗନ୍ନାଥ ତତ୍ତ୍ୱ ର ଆଧାର । ଉଦାରତା, ଜଗତ ଜନପ୍ରୀତି, ସମନ୍ୱୟ ଜଗନ୍ନାଥ ଓ ଜଗନ୍ନାଥ ଉପାସନାର ସର୍ବଶ୍ରେଷ୍ଠତ୍ୱର କାରଣ । କି ମାହାତ୍ମ୍ୟ ଏ କ୍ଷେତ୍ରର ! ପ୍ରତିଦିନ ଲକ୍ଷ ଲକ୍ଷ ଭକ୍ତଙ୍କର ସମାବେଶ ଘଟେ । ଶ୍ରୀମନ୍ଦିରର ଆହୁରି ଏକ ଆକର୍ଷଣ ହେଲା 'ବାଇଶି ପାହାଚ' । ଭକ୍ତର ପାଦ ଏ ବାଇଶି ପାହାଚରେ ଥରେ ସ୍ପର୍ଶ ହେଲେ ସେ ମୋକ୍ଷ ହୋଇଯାଏ ବୋଲି ବିଶ୍ୱାସ ରହିଛି । ବାଇଶି ପାହାଚରେ ପିତୃ ପୁରୁଷଙ୍କୁ 'ପିଣ୍ଡ ଦାନ' କଲେ ସେମାନଙ୍କ ଆତ୍ମାରେ ସନ୍ତୁଷ୍ଟ ଭାବ ମିଳେ ବୋଲି ବିଶ୍ୱାସ ରହିଛି । ଶ୍ରୀମନ୍ଦିର ଭିତରେ ଓ ବାହାର ବେଢ଼ାରେ ପ୍ରାୟ ୧୦୦ ପାଖାପାଖି ମନ୍ଦିର ରହିଅଛି ।

ଶ୍ରୀମନ୍ଦିର ଭିତରେ ଆନନ୍ଦ ବଜାର ରହିଛି । ଏଠାରେ ପ୍ରତିଦିନ ପଉଟି ଭୋଗ କିଣା ବିକା କରାଯାଏ । ବଡ଼ ଦେଉଳ ରୋଷଘରେ ଛପନ ପ୍ରକାର ଭୋଗ ହୁଏ । ଚାରି ପ୍ରକାର ପାକ ହୁଏ । ଏଗୁଡ଼ିକ ହେଲା 'ଭୀମପାକ, ନଳପାକ, ସୌରୀପାକ ଓ ଗୌରୀପାକ' । ଏଠାରେ ଚାରିପ୍ରକାର ଅନ୍ନ ହୁଏ ଯଥା– 'ଶାଳୀଅନ୍ନ, କ୍ଷୀରାଅନ୍ନ, ଦଧିଅନ୍ନ, ଶୀତଳ ଅନ୍ନ । ଏଠାରେ କୌଣସି ଜାତିଭେଦ ନଥାଏ । ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତେ ଅବଢ଼ା ଏକତ୍ର ସେବନ କରନ୍ତି ।

ଶ୍ରୀମନ୍ଦିର ଦକ୍ଷିଣ ଦ୍ୱାରରେ ମୁକ୍ତି ମଣ୍ଡପ ରହିଛି । ୩୮ ଫୁଟ୍ ଦୈର୍ଘ୍ୟ ଓ ପ୍ରସ୍ଥ ବିଶିଷ୍ଟ ଏହି ମଣ୍ଡପରେ ୧୬ ଶାସନର ବ୍ରାହ୍ମଣ ଓ ଶଙ୍କରାଚାର୍ଯ୍ୟ ବସିବାର ଅଧିକାର ରହିଛି । ଏହାକୁ 'ବ୍ରହ୍ମାସନ' ବୋଲି ମଧ୍ୟ କୁହାଯାଏ ।

ଶ୍ରୀଜଗନ୍ନାଥଙ୍କ ମହିମାରେ ବିମୋହିତ ହୋଇ ଅନେକ ଭକ୍ତକବି ତାଙ୍କ ମତ ଉପସ୍ଥାପନ କରିଛନ୍ତି । ଭକ୍ତିରେ ବନ୍ଧା ଏ ଜଡ଼ ଶରୀର ଦିବ୍ୟ ଚେତନା ଲାଭ କରେ । ସନ୍ଥ କବି ଭୀମଭୋଇଙ୍କ ମତରେ–

ନାହିଁ ଆଉ ଅଛିର ସମନ୍ୱୟର ଦେବତା ସିଏ
ଶୂନ୍ୟ ପୁଣି ଦେହୀ, ରୂପରେଖ ନାହିଁ
ତଥାପି ସେ ବିଜେ ହୋଇଅଛି ।

ଭକ୍ତ କବି ଜଗନ୍ନାଥ ଦାସ ଭାଗବତରେ ଲେଖିଲେ –

'ସକଳ ଘଟେ ନାରାୟଣ
ବସନ୍ତି ଅନାଦି କାରଣ ।

ଆଦିକବି ସାରଳା ଦାସ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟ ପୁରୁଷ ଆଖ୍ୟା ଦେଇ ତାଙ୍କ କାବ୍ୟରେ ଲେଖିଛନ୍ତି–

ଆଦ୍ୟରୁ ଶୂନ୍ୟ ହିଁ ଜାତ ଶୂନ୍ୟରୁ ପବନ ।
ପବନରୁ ଜାତ ଯୋଗ ପୁରୁଷ ସମାନ ॥
ଯୋଗ ପୁରୁଷରୁ ଜାତ ହେଲେ ଗାୟତିରୀ ।
ଏହା ତହୁଁ ଉପୁଜିଲା ଚାରିଗୋଟି ବେଦ ।
ତହିଁ ଉତପତି ହେଲା ସାତଗୋଟି ଛନ୍ଦ ॥
(ଆଦ୍ୟ ପର୍ବ, ମହାଭାରତ)

ଏହି ଶରୀର ହେଉଛି ଏକ ମନ୍ଦିର ଓ ଏଥିରେ ଜଗନ୍ନାଥ ବିଦ୍ୟମାନ ଅଟନ୍ତି । ଜଗତର ପରିବ୍ୟାପ୍ତ, ଶ୍ରୀଜଗନ୍ନାଥ ସକଳ ଘଟରେ ରହିଛନ୍ତି । ଆତ୍ମାରୂପୀ ଜଗନ୍ନାଥ ଏହି ଶରୀର ରୂପକ ରଥର ରଥୀ । ଶରୀର ରୂପକ ରଥ ହିଁ ଚଳମାନ ନନ୍ଦିଘୋଷ । ରଥର ସାରଥି ହେଉଛି ବୁଦ୍ଧି, ମନ ହେଉଛି ରଥର ଲଗାମ । ଇନ୍ଦ୍ରୀୟମାନେ ଏହି ରଥର ଯୋଖା ଯାଇଥିବା ଅଶ୍ୱ । ତେଣୁ କଥାରେ କହନ୍ତି– ସକଳ ଘଟେ ନାରାୟଣ ।

ରଥଯାତ୍ରା ବର୍ଷରେ ଥରେ ଅନୁଷ୍ଠିତ ହୁଏ । ତିନିଠାକୁର ରଥାରୋହଣ କରି ତାଙ୍କ ମାଉସୀ ଗୁଣ୍ଡିଚା ଦେବୀଙ୍କ ଗୃହକୁ ଯାଆନ୍ତି । ଏହା ସହିତ ସମଗ୍ର ବିଶ୍ୱବାସୀଙ୍କୁ ବଡ଼ଦାଣ୍ଡରେ ଭେଟ କରିବା ପାଇଁ ଶ୍ରୀମନ୍ଦିରରୁ ୩ ଠାକୁର ବାହାରକୁ ଆସନ୍ତି । ଏହି ଯାତ୍ରା ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ପଡ଼େ । ତିନି ରଥରେ ତିନିଠାକୁର ଶ୍ରୀଜଗନ୍ନାଥ, ପ୍ରଭୁ ବଳଭଦ୍ର ଓ ମା ଦେବୀ ସୁଭଦ୍ରା ବିଜେ କରନ୍ତି । ରଥଯାତ୍ରା ଗୁଣ୍ଡିଚାରୁ ବାହୁଡ଼ା ଏହିପରି ନଅଦିନ ବ୍ୟାପୀ ପାଳନ କରାଯାଏ । ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ହୋଇଥିଲେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ସମ୍ପ୍ରଦାୟର ସଂକୀର୍ଣ୍ଣ ପରିସରରେ ଆବଦ୍ଧ ନହୋଇ ଏହି ପବିତ୍ର ରଥଯାତ୍ରା ଅବସରରେ ଭକ୍ତଗଣଙ୍କର ଅସ୍ଥିର ମନକୁ ସ୍ଥିର ଓ କ୍ରୁରକୁ ସେ ଦୟାରେ ଭରି ଦେଇଥାନ୍ତି । ସାମାଜିକ ଦୃଷ୍ଟିରୁ ବିଚାର କଲେ ଏହି ଯାତ୍ରା ସବୁ ସାମାଜିକ ବିଭେଦକୁ ଲଙ୍ଘନ କରି ଜାତି, ଧର୍ମ, ବର୍ଣ୍ଣ ଓ ଭାଷା ନିର୍ବିଶେଷରେ ସମସ୍ତଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିବାର ସମର୍ଥ ହୋଇଥାଏ । ରଥଯାତ୍ରା, ମହାମାନବର ସମୁଦ୍ର ତଟରେ ଜଗତର ଏକ ମଧୁର ମିଳନ ଛବି ଅଟେ । ପୁରୀର ରଥଯାତ୍ରା ବିଶ୍ୱ ପ୍ରସିଦ୍ଧ ଲାଭ କରିଥିଲେ ମଧ୍ୟ ପୃଥିବୀର ଅନେକ ଦେଶ ତଥା ଜାଭା, ବାଲି, ସୁମାତ୍ରା ଏପରିକି ମେକ୍ସିକୋରେ ରଥଯାତ୍ରା ପାଳନର ପ୍ରମାଣ ମିଳେ ।

କଥାରେ ଅଛି, ଓଡ଼ିଆଙ୍କ ବାରମାସରେ ତେର ପର୍ବ ପାଳନ କରାଯାଏ । ରଥଯାତ୍ରାକୁ ଛାଡ଼ି ଦେଲେ ଶ୍ରୀଜଗନ୍ନାଥଙ୍କ ଆହୁରି ଅନେକ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଯଥା– ଅକ୍ଷୟ ତୃତୀୟା, ସ୍ନାନଯାତ୍ରା, କର୍କଟ ସଂକ୍ରାନ୍ତି, ଶୟନ ଯାତ୍ରା, ପାର୍ଶ୍ୱପରିବର୍ତ୍ତନ, ଦେବୋତ୍‌ଥାପନ,

ସ୍ନାନ ପୂର୍ଣ୍ଣିମା, ରଥଯାତ୍ରା, ଚନ୍ଦନଯାତ୍ରା, ଦେବସ୍ନାନ, ପ୍ରାବର ଷଷ୍ଠୀ, ପୁଷ୍ୟାଭିଷେକ, ମକର ସଂକ୍ରାନ୍ତି, ଦୋଳଯାତ୍ରା, ଚିତାଲାଗି, ଝୁଲଣଯାତ୍ରା, ବଳଭଦ୍ର ଜନ୍ମ, କୃଷ୍ଣ ଜନ୍ମ, ସାତପୁରୀ ଅମାବାସ୍ୟା,ପଣା ସଂକ୍ରାନ୍ତି ଇତ୍ୟାଦି ।

ଜଗନ୍ନାଥ ପାଞ୍ଜି ଅନୁସାରେ ଶ୍ରୀଜୀଉ ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ବେଶରେ ସଜ୍ଜିତ ହୁଅନ୍ତି ଯଥା– ହାତୀବେଶ, ସୁନାବେଶ, କାଳୀୟ ଦଳନ ବେଶ, ରାମବଳରାମ ବେଶ, ବଳିବାମନ ବେଶ, ବାଙ୍କଚୂଡ଼ା ବେଶ, ଆଡ଼କିଆ ବେଶ, ଗଜବେଶ, ରାଜବେଶ, ପଦ୍ମବେଶ, ଗଜ ଉଦ୍ଧାରଣ ବେଶ ପ୍ରଭୃତି ।

ଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର କର୍ତ୍ତା ଅଟନ୍ତି । ତେଣୁ ତାଙ୍କ ସେବାରେ ଶହ ଶହ ସେବକ ଶ୍ରୀମନ୍ଦିରରେ କେଉଁ ଆବାହମାନ କାଳରୁ ନିଯୁକ୍ତି ହୋଇ ଆସୁଛନ୍ତି । ସେମାନେ ହେଲେ ଦଇତାପତି, ପୂଜାରୀ, ବିଛଣା ନିଯୋଗନାୟକ, ସୁଆର, ପଡ଼ିହାରୀ, ଭିତରଚ୍ଛୁ ମହାପାତ୍ର, ଛାମୁଖୁଣ୍ଟିଆ, ଭଣ୍ଡାର ମେକାପ ଓ ପାଳିଆ ମେକାପ, ଗରାବଡୁ, ପତ୍ରିବଡୁ, ସୁଆର ବଡୁ ପ୍ରଭୃତି ନାମରେ ସେମାନେ ପରିଚିତ । ଏମାନେ ଦିନରାତି ୩ ଠାକୁରଙ୍କ ସେବାରେ ଲାଗିଥାନ୍ତି ।

ସମଗ୍ର ଓଡ଼ିଆମାନଙ୍କର ସେ 'କାଳିଆ' ନାମରେ ପରିଚିତ । ସେ ଦୀନର ବନ୍ଧୁ, ସଖା, ସୁହୃଦ । ସେ ପୁଣି ଦଇତାରି, ଦୁଃଖନାଶନ, ଦୁଷ୍ଟ ନିବାରି ସନ୍ଥ ପାଳେ, ଯୁଗେ ଯୁଗେ ଧରାରେ ଧର୍ମ ସଂସ୍ଥାପନ କରି ନିଜର ଦୁଃଖନାଶନ ବାନାକୁ ସାର୍ଥକ କରିଛନ୍ତି ।

ଏଇ ବଡ଼ ଠାକୁର ଯୁଗେ ଯୁଗେ ମୁଗ୍ଧ, ବିହ୍ୱଳ କରିଛି ରାଜା ରଙ୍କ, ଧନୀନିର୍ଦ୍ଧନ, ଉଚ୍ଚନୀଚ, ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ । ତାକୁ ନେଇ ଭକ୍ତ, କବି, ଭାବୁକ, ଲେଖକ, ପଣ୍ଡିତଙ୍କ କେତେ କେତେ ପରିକଳ୍ପନା । ବଡ଼ଦାଣ୍ଡରେ ଧୂଳି ଟିକେ ମୁଣ୍ଡରେ ମାରିଲେ ମନ, ଆତ୍ମା ସତେଯେମିତି ପବିତ୍ର ହୋଇଯାଏ ଓ ଆଖିରେ ଲୁହ ଜକେଇ ଯାଏ । ସତରେ ଜଗାକାଳିଆର କି ଅପୂର୍ବ ଲୀଳା ! ସେ ଦୟାଳୁ ପ୍ରଭୁ ସମସ୍ତଙ୍କ ମନକାମନା ପୂର୍ଣ୍ଣ କରନ୍ତୁ । ତାଙ୍କ କୃପାରୁ ଜଗତରେ ଖେଳିଯାଉ ଆନନ୍ଦ, ଉଲ୍ଲାସ, ଶାନ୍ତି, ମୈତ୍ରୀ ଏହା ହିଁ ଆମର ଶ୍ରୀଜଗନ୍ନାଥଙ୍କ ଠାରେ ବିନମ୍ର ଅଳି ।

ଏସ୍.ବି.ଡ଼ି. ମହିଳା ମହାବିଦ୍ୟାଳୟ
କଣ୍ଟିଆ, ଜଟଣୀ, ଖୋର୍ଦ୍ଧା

# ଘେନ ଏ ଭକତି ପ୍ରଣିପାତ

**ରାଧାନାଥ ଦାସ**



ଆଦ୍ୟ ଆଷାଢ଼ ପହିଲି ଭିଜାରେ
ଧରା ଶ୍ୟାମଳିମା ସାଜିଲାଣି
ଆଜିଏ ଶ୍ରୀକ୍ଷେତ୍ରେ ଶ୍ରୀଗୁଣ୍ଡିଚା ଯାତେ
ଦିଅଁମାନେ ବିଜେ ହେବେ ବୋଲି ରଥେ
ଘଣ୍ଟ, ମର୍ଦ୍ଦଳ ବିଜୟ କାହାଳୀ
ପହଣ୍ଡି ବିଜୟେ ବାଜିଲାଣି
ଭାବ ଭକତିରେ ହଜିଯାଇ ଭକ୍ତ–ଭକତି ଲୁହରେ ଭିଜିଲାଣି ।
ଆହାକି ସୁନ୍ଦର ସେ ପହଣ୍ଡି ଶୋଭା
ଆସୁଥାନ୍ତି ପ୍ରଭୁ ଝୁଲିଝୁଲି
ପଡୁଥାଏ ହରିବୋଲ ହୁଳହୁଳି
ନାମ ସଂକୀର୍ତ୍ତନ ପଡୁଛି ଉଚ୍ଛୁଳି
ଚାତକ ପରିକି ଚାହିଁଚି ଭକତ
ପ୍ରଭୁଙ୍କୁ ରଥେ ଦେଖିବ ବୋଲି



କାହିଁ କେତେ ଦୂରୁ ଧାଇଁ ଆସିଛି ସେ
ସଂସାର ଜଞ୍ଜାଳ ସବୁ ଭୁଲି ।
ମହୋଦଧି କୂଳେ, ସେ ନୀଳ ଶଇଳେ
ନୀଳଚକ୍ରେ ଉଡୁଅଛି ନେତ
କେଉଁ ପୁଣ୍ୟବଳେ ଆସି ଏ ଶ୍ରୀକ୍ଷେତ୍ରେ
ରଥରେ ପ୍ରଭୁଙ୍କୁ ଦେଖିଲି ମୁଁ ନେତ୍ରେ
ପବିତ୍ର ହୋଇଲା ତନୁ ମନ ମୋର
ବଡଦାଣ୍ଡେ ଭିଡି ତିନିରଥ
ଆହେ ରଥାରୂଢ଼ ଚତୁର୍ଦ୍ଧା ମୂରତି
ଘେନ ଏ ଭକତି ପ୍ରଣିପାତ ।

ପଦ୍ମସାହି, ଆଠଗଡ ଟାଉନ୍, କଟକ

# ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ କବି କଣ୍ଠରେ ଶ୍ରୀଜଗନ୍ନାଥ

ଡକ୍ଟର ମନସା ଶ୍ରୀଚନ୍ଦନ ରାୟ

ସୃଷ୍ଟିର ପ୍ରାରମ୍ଭରୁ ଏଯାବତ୍ ପ୍ରତ୍ୟେକ ମନୁଷ୍ୟ ତା'ର ଜୀବନଚକ୍ରର ଗତିପଥରେ ଏନ୍ତୁଡିଶାଳର ନିଆଁଠାରୁ ଚିତାର ନିଆଁ ପର୍ଯ୍ୟନ୍ତ ଏକ ସ୍ଥିର ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଅନେକ ରୀତିନୀତି, ସଂସ୍କୃତି, ପରମ୍ପରା ସହିତ ଅଙ୍ଗାଙ୍ଗୀଭାବେ ଜଡିତ । ବଦଳୁଥିବା ଯୁଗ ମନୁଷ୍ୟ ସହିତ ଏସବୁର ସମ୍ପର୍କକୁ ଭିନ୍ନ କରାଇ ପାରିବ ନାହିଁ । ଠିକ୍ ସେହିଭଳି ମଣିଷର ଚିନ୍ତାଚେତନା, ଭାବ–ଭାବନା ଭିତରେ ଅସ୍ଥିମଜ୍ଜାଗତ ହୋଇଥିବା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଧ୍ୟାତ୍ମିକ ଚେତନାଠାରୁ ମୁକୁଳି ମଧ୍ୟ ପାରିବ ନାହିଁ । ଏହି ଚେତନା ହିଁ ମଣିଷର ମଗ୍ନ ଚୈତନ୍ୟକୁ ଜାଗ୍ରତ କରାଏ । ପ୍ରଭୁଙ୍କର ସେହି ଚେତନାରେ ଥରେ ଆତ୍ମସ୍ଥ ହୋଇଗଲେ ସେଠି ମାୟାମୋହ ସଂସାରର ଧୂସରତା ଓ ଭୋଗବାଦୀ ଜୀବନର ପ୍ରତ୍ୟେକ ମୁହୂର୍ତ୍ତର ବ୍ୟାକୁଳତା ହାର ମାନେ । ସେହି ଚେତନା ଅଙ୍କୁରିତ ହେଲେ ସେଠି ଜୀବ, ଜୀବନ ନୂତନ ଅନୁଭୂତିରେ ଫେଣ୍ଟି ହୋଇ ସମଗ୍ର ଜଗତକୁ ଜଗନ୍ନାଥମୟ ମନେ କରେ । ସକାଳରୁ ସଞ୍ଜ ପୁଣି ସଞ୍ଜରୁ ସକାଳ ପର୍ଯ୍ୟନ୍ତ ଏବଂ ଜଡରୁ ଚେତନ ପୁଣି ଚେତନରୁ ଜଡ ପର୍ଯ୍ୟନ୍ତ ପ୍ରତ୍ୟେକଟିରେ ସେହି ପରମ ଦୟାମୟଙ୍କର ଚେତନା ଅନୁଭୂତ । ଏହି ଚେତନା ଏକ ମହାଚେତନା ହୋଇଥିବାରୁ ଏହାର ବ୍ୟାପ୍ତି ସୁଦୂରପ୍ରସାରୀ । ସାମ୍ୟ, ମୈତ୍ରୀ ଓ ପ୍ରୀତିର ପତିତପାବନ ବାନା ଉଡାଇ ନୀଳକନ୍ଦରରେ ଅଧିଷ୍ଠିତ ପ୍ରଭୁ ଶ୍ରୀଜଗନ୍ନାଥ ଚେତନାର ମହନୀୟ ଭାବନା ମଧ୍ୟରେ ଥିବା ସ୍ୱରର ଗଭୀରତା କେତେ ରସମୟ, କେତେ ଭାବମୟ ତାହା କେବଳ ଭାବୁକ ଓ ଭାବଗ୍ରାହୀ ହିଁ ବୁଝେ । ଓଡ଼ିଆ ସଂସ୍କୃତି, ପରମ୍ପରା ସହିତ ସଲଗ୍ନ ଓଡ଼ିଆ କବିତାର କାବ୍ୟପୁରୁଷଙ୍କ ପାଖରେ ଶ୍ରୀଜଗନ୍ନାଥଙ୍କର ଏହି ଅତିନ୍ଦ୍ରିୟ ଭାବଚେତନା ମଣିଷର ଆଧ୍ୟାତ୍ମିକ ଭାବଧାରାକୁ ବଳିଷ୍ଠ କରିଛି ।

ପ୍ରାକ୍ ସ୍ୱାଧୀନତା କାଳର ଓଡ଼ିଆ କବିତାକୁ ଆଲୋଚନା କଲେ ଜଣାଯାଏ ଯାହା ମଣିଷର ଦୁଃଖ–ସୁଖ, ବ୍ୟଥାବେଦନା, ଅଭିଜ୍ଞତା, ଅନୁଭୂତି, କଳ୍ପନା–ବାସ୍ତବତା ସ୍ୱପ୍ନ ଓ ସୌନ୍ଦର୍ଯ୍ୟର ଏକ ସ୍ପନ୍ଦିତ ମୂର୍ଚ୍ଛନା ଥିଲା । ଊନବିଂଶ ଶତକର ଶେଷାର୍ଦ୍ଧ ଓ ବିଂଶ ଶତକର ମଧ୍ୟବର୍ତ୍ତୀ ଅର୍ଥାତ୍ ୧୮୮୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ପ୍ରାକ୍ ସ୍ୱାଧୀନତା ବା ସ୍ୱାଧୀନତା ପୂର୍ବବର୍ତ୍ତୀ ଯୁଗ ବୋଲି ଗବେଷକମାନେ ଓଡ଼ିଆ ସାହିତ୍ୟ ଇତିହାସରେ ଗ୍ରହଣ କରିଛନ୍ତି । ଓଡ଼ିଆ ସାହିତ୍ୟର ଆଭିମୁଖ୍ୟ ଗତି, ପ୍ରକୃତି ଓ ବିଶେଷତ୍ୱ ଦିଗରୁ ଏହି ସମୟକୁ ରାଧାନାଥ ଯୁଗ, ସତ୍ୟବାଦୀଯୁଗ, ସବୁଜଯୁଗ, ପ୍ରଗତିବାଦୀଯୁଗ ରୂପେ ବିଭକ୍ତ କରି ସାମଗ୍ରୀକ ଭାବେ ଆଧୁନିକ ଯୁଗ ବୋଲି କୁହାଯାଇଛି । ଭିନ୍ନ ଭିନ୍ନ ସମୟରେ ନିଜସ୍ୱ ଚିନ୍ତାଚେତନାର ଦୃଷ୍ଟିକୋଣରୁ ସାରସ୍ୱତ ସାଧକମାନେ କବିତା ରଚନା କରୁଥିଲେ ହେଁ ଏକମାତ୍ର ସାମ୍ୟ ଥିଲା ଶ୍ରୀଜଗନ୍ନାଥ ଚେତନା ।

ଶ୍ରୀଜଗନ୍ନାଥ ଭାବଚେତନାର ସ୍ରୋତସ୍ୱିନୀରେ ପ୍ରତ୍ୟେକ କବି ନିଜ ହୃଦୟର ଗଭୀର ପ୍ରଦେଶକୁ ପ୍ଲାବିତ କରିଛନ୍ତି । ତେଣୁ କବି କେତେବେଳେ ଭାବର ବିଶ୍ୱାସରେ ଅଶ୍ରୁସିକ୍ତ ହୋଇଛି ତ ପୁଣି ଅଭାବରେ ପଡି ଅଭିମାନ କରିଛି । କେତେବେଳେ ଦୁଃଖରେ ଅଧୀର ହୋଇ କରୁଣାକୁ ମାଗିଛି ତ ପୁଣି କେତେବେଳେ ଆନନ୍ଦସୁଖରେ କୃତଜ୍ଞତା ଜ୍ଞାପନ କରିଛି । ବିଶ୍ୱାସର ଦୀପରେ ସମର୍ପଣର ବଳିତା ଦେଇ ସେଥିରେ ଶ୍ରଦ୍ଧାର ତୈଳ ଓ ଭକ୍ତିଭାବର ଅଗ୍ନିକୁ ସଂଯୋଗ କରିଛି, ସେଥିରୁ ଯେଉଁ ଐଶୀଚେତନାର ଆଲୋକ ଉଦ୍‌ଭାସିତ ତାହା ସମଗ୍ର ଜଗତକୁ ଆଲୋକିତ କରିଛି । ପ୍ରାକ୍ ସ୍ୱାଧୀନତା କାଳୀନ ସମାଜ ଚିତ୍ରର ବର୍ଣ୍ଣନାରେ ଯେଉଁ ସମସ୍ୟା, ଘାତପ୍ରତିଘାତ, ବିଶୃଙ୍ଖଳା, ଶୋଷଣ, ଅତ୍ୟାଚାରର ବର୍ଣ୍ଣନା ମଧ୍ୟରେ ଶ୍ରୀଜଗନ୍ନାଥ ଚେତନା ପରିସ୍ଫୁଟ ।

ଊନବିଂଶ ଶତକର ଆଧୁନିକ ଓଡ଼ିଆ କବିତାର ପ୍ରଥମ କାବ୍ୟପୁରୁଷ ବିଦ୍ରୋହୀ ମହାକବି ଭୀମଭୋଇ ସର୍ବାଗ୍ରେ ସ୍ମରଣୀୟ । କଢ଼ିରୁ ସମୟ ପୁଣି କାହାର ଇସାରାକୁ ଅପେକ୍ଷା କରୁନଥିବା ଫୁଲଭଳି ଫୁଟି ଉଠୁଥିବା ତାଙ୍କର ରଚନାଶୈଳୀ ପାଇଁ ସେ ଥିଲେ ସ୍ୱତନ୍ତ୍ର । ମହିମା ଧର୍ମର ନିରାକାର ଉପାସନାର ପ୍ରଚାର କରିଥିଲେ ହେଁ କେତେବେଳେ ସାକାର ଉପାସନାର ପ୍ରସଙ୍ଗ ମଧ୍ୟ ତାଙ୍କ କୃତିରେ ଦେଖିବାକୁ ମିଳେ । କବି ଆଧୁନିକ ସଭ୍ୟତାର ଅଧୋଗତି ପୁରୋହିତ ସମ୍ପ୍ରଦାୟର ହୀନମନ୍ୟତା, ଜାତିଆଣଭାବ, ଶାସକ ଓ ରାଜାର ସାଧାରଣ ମଣିଷଙ୍କ ପ୍ରତି କରୁଥିବା ଅତ୍ୟାଚାରରୁ ସମଗ୍ର ସମାଜକୁ ମୁକ୍ତ କରିବା ପାଇଁ ସର୍ବଧର୍ମ ସମନ୍ୱୟର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ତାଙ୍କର ଅଭିମାନୀ ମନ ଭିତରେ ବହୁ ଦ୍ୱନ୍ଦ୍ୱ ଓ ସଂଶୟ ଦେଖାଦେଇଛି । ପ୍ରଭୁ ପତିତପାବନ ବାନାକୁ ଉଡାଇ ଆଚାଣ୍ଡାଳ ବ୍ରାହ୍ମଣ ଏକ ସଂଗରେ ମହାପ୍ରସାଦ ସେବନ କରିବାର ଯେଉଁ ପରମ୍ପରାକୁ ପାଳନ କଲେ, ତାହା ଅନ୍ୟ ସ୍ଥାନରେ କାହିଁ ନାହିଁ । କେବଳ ଗୋଟିଏ ସ୍ଥାନରେ ଏହି ନୀତି ପାଳନ କଲେ ତାଙ୍କର ଜଗନ୍ନାଥ ନାମର ବାନା କିପରି ଉଡିବ ବୋଲି କବି ପ୍ରଶ୍ନ ପଚାରିଛନ୍ତି ।

ସାମାଜିକ ଆନ୍ଦୋଳନରେ ନିଜକୁ ସାମିଲ କରିଥିବା କବି ଭୀମଭୋଇ ଶ୍ରୀଜଗନ୍ନାଥଙ୍କର ସାକାର ରୂପକୁ ଗ୍ରହଣ କରିନଥିଲେ ମଧ୍ୟ ଅଣାକାର ରୂପ ନିକଟରେ ନିଜର ଅଭିମାନ ଓ ସଂଶୟୋକ୍ତିକୁ ପ୍ରକାଶ କରିଛନ୍ତି ।

ଆଧୁନିକ ସାହିତ୍ୟର ବାର୍ତ୍ତାବହନ କରି ଯୁଗ ପ୍ରବର୍ତ୍ତକ ରାଧାନାଥ ରାୟ ନିଜର କାବ୍ୟ କବିତାରେ ନୀଳାଚଳକ୍ଷେତ୍ର, ମହୋଦଧି, ଶ୍ରୀମନ୍ଦିର, ଶ୍ରୀଜଗନ୍ନାଥଙ୍କ ମହିମାର ବୟାନ କରିଛନ୍ତି । ତାଙ୍କର ଖଣ୍ଡକାବ୍ୟ 'ମହାଯାତ୍ରା'ରେ ପଞ୍ଚୁପାଣ୍ଡବ ଭାରତର ସମସ୍ତ ସ୍ଥାନ ଭ୍ରମଣ କରି ଉତ୍କଳର ନୀଳାଚଳରେ ପହଞ୍ଚିଛନ୍ତି । ଶ୍ରୀକ୍ଷେତ୍ରର ମହୋଦଧି କୂଳରେ ଅବସ୍ଥାନ କରିବା ସମୟରେ ଅଗ୍ନିଦେବତା ମହୋଦଧିରୁ ଆବିର୍ଭୂତ ହୋଇ ପୂର୍ବରୁ ଅର୍ଜୁନଙ୍କୁ ଦେଇଥିବା ଗାଣ୍ଡିବ ଧନୁକୁ ଫେରାଇବାକୁ କହିଥିଲେ । ଅର୍ଜୁନ ସେହି ଧନୁକୁ ସମୁଦ୍ର ଗର୍ଭରେ ଫିଙ୍ଗି ଦେଇଥିଲେ । ପରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ସମ୍ପର୍କରେ ଯୁଧିଷ୍ଠିରଙ୍କର ଜାଣିବାର ଇଚ୍ଛାକୁ ସେ ପୂରଣ କରିବା ପାଇଁ ଅଗ୍ନିଦେବତା କହିଛନ୍ତି–

'ପୁଷ୍ପକୁଣ୍ଡେ ଶ୍ରେଷ୍ଠତର କେଶର ଯେସନ
ଶ୍ରେଷ୍ଠ ଏ ନୀଳାଦ୍ରିଧାମ ସମଗ୍ର ଉତ୍କଳେ
ନିବସନ୍ତି ନାନାସ୍ଥାନେ ଦେବଦେବୀ ଯେତେ
ଭାରତ, ଭାରତଖଣ୍ଡ ଆସି ଏ ପ୍ରଦେଶେ
ବିହରିବେ ଠାବେ ଠାବେ ନିଜ ରୁଚିମନେ'

କବିଙ୍କର ପାର୍ବତୀ କାବ୍ୟର ପ୍ରାରମ୍ଭରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କର ବର୍ଣ୍ଣନା ମଧ୍ୟ ଅତୁଳନୀୟ ।

'ନୀଳାଚଳେ ଆଜି ଦୋଳ ମହୋତ୍ସବ ମର୍ତ୍ତେ ସର୍ବ ପୁରବାସୀ
ବାଦିତ୍ର–ଶବଦ ହେଲେ ପକାଉଛି ସିନ୍ଧୁ କୋଳାହଳ ଗ୍ରାସି

ଏହି ସମୟର ଅନନ୍ୟ ପ୍ରତିଭାଧାରୀ ବ୍ରାହ୍ମବାଦୀ କବି ମଧୁସୂଦନ ରାଓ ସର୍ବଧର୍ମ ସମନ୍ୱୟର ପ୍ରତୀକ ରୂପେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଗ୍ରହଣ କରି ତାଙ୍କର 'ନୀଳାଚଳ' ଗ୍ରନ୍ଥରେ ଶାବର ସଂସ୍କୃତିର ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ତୀର୍ଥେଶ୍ୱରୀ ନୀଳାଚଳ ଧାମରେ ଅଧିଷ୍ଠାନର ବିଷୟକୁ ବ୍ୟକ୍ତ କରିବା ସହ କଳ୍ପବଟ ଏବଂ ଦଇତାପତିଙ୍କ ସମ୍ପର୍କରେ ବର୍ଣ୍ଣନା କରି ତାଙ୍କ ଜନ୍ମମାଟି ଶ୍ରୀକ୍ଷେତ୍ରର ପ୍ରଶସ୍ତିଗାନ କରିଛନ୍ତି–

'ଘନବନରାଜି ନୀଳନୀଳାଚଳ ତଟ ।
ମହୋଦଧି ବେଳାଭୂମି ଯହିଁରେ ପ୍ରକଟ
ମହାବଟ ମୂଳେ ମହାଦାରୁ ଆରାଧନା,
ସରଳ ଶବର କୁଳ ଭକତି ସାଧନା

ସମସାମୟିକ ଯୁଗର ଅନ୍ୟତମ ସାରଥୀ ଯୁଗସ୍ରଷ୍ଟା ଫକୀରମୋହନ ସେନାପତି ସେହି ସମୟଖଣ୍ଡକୁ ନେଇ ତାଙ୍କ ଗଦ୍ୟ ଓ ପଦ୍ୟ ସାହିତ୍ୟ ସମୃଦ୍ଧ । ତାଙ୍କ ଶ୍ରେଷ୍ଠକୃତି 'ଉତ୍କଳଭ୍ରମଣଂ' କାବ୍ୟରେ ସମଗ୍ର ଭାରତବର୍ଷରେ ଉତ୍କଳରାଜ୍ୟ ଶ୍ରୀକ୍ଷେତ୍ର ଏବଂ ଶ୍ରୀପୁରୁଷୋତ୍ତମଙ୍କ ଯୋଗୁଁ ତାହା ପବିତ୍ରଧାମ ରୂପେ ପରିଚିତ କରାଇଛନ୍ତି । ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଶାର ସ୍ଥିତି ଗତି ପରିଚିତି ଓ ସାଂସ୍କୃତିକ ମାନ୍ୟତା ପ୍ରଦାନ କରିବା ପାଇଁ ତାଙ୍କ ଲେଖନୀ ଚଳଚଞ୍ଚଳ ଥିଲା । ତେଣୁ ତାଙ୍କର ଅନେକ କବିତାରେ ଉତ୍କଳପ୍ରୀତି, ଶ୍ରୀକ୍ଷେତ୍ର, ଶ୍ରୀଜଗନ୍ନାଥଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । କବି ଲେଖିଛନ୍ତି–

'ଉତ୍କଳ ପବିତ୍ରଭୂମି ଭାରତ ମଧ୍ୟରେ ।
କରନ୍ତି ଏଥିରେ ବାସ ପୁଣ୍ୟବନ୍ତ ନରେ
ଏହି ମହା ପୁଣ୍ୟକ୍ଷେତ୍ର ଦେଖିବାର ପାଇଁ
ଅସଂଖ୍ୟ ଅସଂଖ୍ୟ ଯାତ୍ରୀ ଆସୁଛନ୍ତି ଧାଇଁ
ଭାରତର ସର୍ବଦେଶେ ଏମନ୍ତ ପ୍ରଚାର
ପର୍ବତ ଉତ୍କଳଭୂମି ଅଟେ ସ୍ୱର୍ଗଦ୍ୱାର ।

ପତିତ ପାବନ ପାଇଁ ଶ୍ରୀମନ୍ଦିରରେ ବାନା ଉଡାଇ ରତ୍ନସିଂହାସନରେ ବିଭାଜିତ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଦୀନ ଅକିଞ୍ଚନ କବି ପ୍ରାର୍ଥନା କରିଛନ୍ତି 'ଉପହାର' କାବ୍ୟରେ–

'ନିଖିଳ ବ୍ରହ୍ମାଣ୍ଡପତି ସର୍ବମୂଳଧାର
ପତିତପାବନ ପ୍ରଭୁବିଭୁ ସାରାସାର
ଅକିଞ୍ଚନ ନିବେଦନ କରେ ଚରଣରେ
ଜୟ ଜୟ ଦେବ ଜୟ ଜଗଦୀଶ ହରେ ।'

ପଲ୍ଲୀପ୍ରାଣ କବି ନନ୍ଦ କିଶୋର ବଳ ତାଙ୍କର ନୀଳାଦ୍ରିକନ୍ଦର କବିତାରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିଭାବ ଓ ଶ୍ରୀକ୍ଷେତ୍ରର ରୂପଶୋଭାର ସୁନ୍ଦର ବର୍ଣ୍ଣନା କରିଛନ୍ତି–

ଜଗନ୍ମୟ ଦେଖି ଜଗନ୍ନାଥେ ପରମରେ ସ୍ଥିତି ଏ ଜୀବର
ଏ ବିଶ୍ୱ ସଂସାରେ ଓତଃପ୍ରୋତଃ ଭାବେ ଯେଣୁ ଛନ୍ତି ବିଶ୍ୱେଶ୍ୱର
ଏହିପରି ଏହି ପୁଣ୍ୟତୀର୍ଥେ କେତେକେତେ ସାଧୁ ମହାଜନ

ଏହି ସମୟରେ ସମସ୍ତ କବି ଉତ୍କଳମାତାର ମହନୀୟତାକୁ ବର୍ଣ୍ଣନା କରିବାରେ ଅଧିକ ମୁଖର ହୋଇଛନ୍ତି । ଉତ୍କଳର ମହନୀୟ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ଯୋଗୁଁ କିପରି ଗୌରବ ଲାଭ କରିଛି ତାହା ଦର୍ଶାଇଛନ୍ତି । ଏହି ଚିନ୍ତାଧାରାକୁ ସ୍ୱଭାବ କବି ଗଙ୍ଗାଧର ମେହେର ଉତ୍କଳଲକ୍ଷ୍ମୀ କାବ୍ୟରେ ଲେଖିଛନ୍ତି ଯେ,

ମନେ ମନେ କେତେ ମୁଁ ବୋଲି ଧନ୍ୟଧନ୍ୟ ଗୋ ଉତ୍କଳମାତା
ସର୍ବଦେବଦେବୀ ହେଉଛନ୍ତି ତୋର ବିଶୁଦ୍ଧ କୋଳରେ ଜାତ ।
ଏଣୁ ବିଜ୍ଞଜନ ବୋଲୁଥାନ୍ତି ପରା ସର୍ବ ତୀର୍ଥ ଘେନି ହରି
ପତିତପାବନ ରୂପେ ରହିଛନ୍ତି ନୀଳାଚଳେ ବିଜେ କରି ।

ପରେ ସତ୍ୟବାଦୀ ଯୁଗର ସ୍ରଷ୍ଟାମାନେ ଜାତୀୟ ଚେତନାର ଏକ ଏକ ଦୀପ୍ତି ଥିଲେ । ସୁପ୍ତ ଓଡ଼ିଆଙ୍କ ଭିତରେ ଜାତୀୟତାର ଶୁଭଶଙ୍ଖ ବଜାଇବା ନିମନ୍ତେ ସାହିତ୍ୟକୁ ଢାଲ ରୂପେ ଗ୍ରହଣ କରିଥିଲେ । ସାହିତ୍ୟର ବିଭିନ୍ନ ବିଭାଗରେ ସମାଜସଂସ୍କାର ମନୋବୃତ୍ତି, ଜାତୀୟତା ତଥା ଦେଶପ୍ରୀତି, ଧର୍ମଧାରଣା ଆଦିକୁ ପରିଚିତ କରାଇବା ବେଳେ ଓଡ଼ିଆ ସଂସ୍କୃତି ସହ ଓତଃପ୍ରୋତଃ ଭାବେ ଜଡିତ ଜଗନ୍ନାଥ ସଂସ୍କୃତିକୁ ବର୍ଣ୍ଣନା କରିବାକୁ ଭୁଲି ନାହାଁନ୍ତି । ଏହି ଯୁଗର ଅନ୍ୟତମ ବିନ୍ଧାଣୀ ଗୋପବନ୍ଧୁ ଦାସଙ୍କ କୃତିରେ ଜାତୀୟତା ସହ ଈଶ୍ୱରୀୟ ଚେତନା ଦେଖିବାକୁ ମିଳେ । 'ବନ୍ଦୀର ଆତ୍ମକଥା' କାବ୍ୟ ଗ୍ରନ୍ଥରେ ପୁଣ୍ୟଭୂମି ଶ୍ରୀକ୍ଷେତ୍ରର ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି କଳାଘୋଡା ଧଳାଘୋଡା ଚଢି ପ୍ରଭୁ ଶ୍ରୀଜଗନ୍ନାଥ ଓ ବଳଭଦ୍ର କାଞ୍ଚି ଯୁଦ୍ଧରେ ଓଡ଼ିଶାର ରାଜାଙ୍କ ସପକ୍ଷରେ ଯୁଦ୍ଧ କରିବା ପାଇଁ ଯାଇଥିଲେ । ଓଡ଼ିଶାର ଦୁର୍ଗତିମୋଚନ ନିମନ୍ତେ ସେହିପରି ଆଗେଇ ଆସିବେ ବୋଲି କବି କାମନା କରିଛନ୍ତି । କବି ପ୍ରଭୁ ଜଗନ୍ନାଥଙ୍କୁ ରାଷ୍ଟ୍ରନେତା ରୂପେ ହିଁ ଗ୍ରହଣ କରି ଲେଖିଛନ୍ତି–

'ଉତ୍କଳେ ନେତାର ନାହିଁ ପ୍ରୟୋଜନ
ଉତ୍କଳର ନେତା ସ୍ୱୟଂ ନାରାୟଣ'

ସ୍ୱାଧୀନତାର ପ୍ରାକ୍କାଳରେ ପଛୁଆ ଉତ୍କଳୀୟମାନଙ୍କର ଆର୍ଥିକ ଅବକ୍ଷୟକୁ ଦେଖି ଶ୍ରୀଜଗନ୍ନାଥ କିପରି ନିରବଦ୍ରଷ୍ଟା ସାଜିଛନ୍ତି, ବନ୍ଦୀ ଭାବରେ କବି କାରାବରଣ କରୁଥିବା ବେଳେ ନୀଳାଚଳବାସୀ କି ବାର୍ତ୍ତା ପଠାଇଛନ୍ତି ବୋଲି କବି ପବନକୁ ପଚାରିଛନ୍ତି । କେବଳ ସେତିକି ନୁହେଁ ସମୁଦ୍ରର ପବିତ୍ର ଜଳ ବାଲୁକାରାଶି ଉପରେ ଭ୍ରମଣ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆସିଥିବା ପବନ ହାତରେ ପ୍ରଭୁ କି ଆଦେଶ ଦେଇଛନ୍ତି ବୋଲି ପଚାରିଛନ୍ତି–

'ଗମ୍ଭୀରାରୁ କିବା ଶ୍ରୀମୁଖ ଆଦେଶ ପଠାଇଅଛନ୍ତି
ଦେବ ମୋ ପାଇଁ
କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ ରହିଥିବ
କେତେ କାଳ ଅନାଇ'

ସତ୍ୟବାଦୀର ଶିକ୍ଷକ କବି ପଣ୍ଡିତ ନୀଳକଣ୍ଠ ଦାସଙ୍କର କୋଣାର୍କେ କାବ୍ୟର ଦୁଇଟି ଅଂଶ ରାମଚଣ୍ଡୀରେ ରାତି ଓ ସକାଳ ଏବଂ ମାୟାଦେବୀ କବିତାର ଅନେକ ପ୍ରସଙ୍ଗରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କର ମହିମା ବର୍ଣ୍ଣନା କରିଛନ୍ତି । 'କୋଣାର୍କେ' କାବ୍ୟରେ ଉତ୍କଳାଧିପତି ଶ୍ରୀଜଗନ୍ନାଥ ଏବଂ ଉତ୍କଳବାସୀ ଯବନମାନଙ୍କର ଅତ୍ୟାଚାରକୁ କିପରି ସହିଛନ୍ତି ତା'ର ବର୍ଣ୍ଣନା କରି ଲେଖିଛନ୍ତି ।

ସେହିପରି ରାମଚଣ୍ଡୀରେ ରାତି ଓ ସକାଳରେ ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ପ୍ରସଙ୍ଗରେ ଶ୍ରୀଜଗନ୍ନାଥ ରାଜାଙ୍କର ମାନ ରକ୍ଷା ପାଇଁ ଏବଂ ଉତ୍କଳର ସମ୍ମାନ ରକ୍ଷା ପାଇଁ ଯୁଦ୍ଧକ୍ଷେତ୍ରକୁ ଓହ୍ଲାଇ ଆସିବାର ଚିତ୍ରକୁ କବି ଲେଖିଛନ୍ତି ଯେ,

'ଜଗନ୍ନାଥ ବିଜେ କରିବେ କଳା ତୁରଙ୍ଗଚଢି
ପଦ୍ମାବତୀ ଜିଣି ଆଣିବେ ନୃପ–କୁଳକେଶରୀ' ।

ସତ୍ୟବାଦୀର ଅନ୍ୟତମ ସାଧକ କବି ଗୋଦାବରୀଶ ମିଶ୍ରଙ୍କ 'ଆଲେଖିକା', 'ପଦ୍ମାବତୀ', 'କଳାପାହାଡ', 'ଗାଲମାଧବ', ଆଦି ଗାଥା କବିତାରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରତିଫଳିତ। 'କଳାପାହାଡ' ଗାଥା କବିତାରେ କବି ଶ୍ରୀଜଗନ୍ନାଥଙ୍କର ବର୍ଣ୍ଣନାକରିଛନ୍ତି ।

'ଦେଖ ଜଗନ୍ନାଥ ଜଗତ ଗୋସାଇଁ ବସି ନୀଳାଚଳ ପୀଠେ
ପୂଜା ପାଉଛନ୍ତି ମଣିଷ ସିନା ଲୋ ଗଢ଼ିଛି ଆପଣା ହାତେ' ।

'ଗାଲମାଧବ' ଗାଥା କବିତାରେ କବି ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରର ମାହାତ୍ମ୍ୟକୁ ବର୍ଣ୍ଣନା କରିଛନ୍ତି ।

'ଜଗନ୍ନାଥ କାହିଁ ନୀଳାଚଳ ବିଜେ ମଣିଷ ହାତ ଦେଉଳେ
ବସି ସ୍ୱର୍ଗ ମର୍ତ୍ତ୍ୟେ ପାତାଳେ ଅଛି ଲୋ ଶୁଣି ବୁଝୁଛନ୍ତି ଭଲେ ।

ସବୁଜ ଯୁଗରେ କଳ୍ପନାରେ କଳ୍ପଲୋକ ସୃଷ୍ଟି କରୁଥିବା କବିମାନେ ମାନବବାଦୀ ଓ ବାସ୍ତବବାଦୀ ଦୃଷ୍ଟିକୋଣରୁ ଗୋଟେ ସମୟରେ ଆପଣେଇ ସର୍ବଧର୍ମ ସମନ୍ୱୟର ପ୍ରତୀକ ଭାବରେ ଶ୍ରୀଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି । କବି କାଳିନ୍ଦୀଚରଣ ପାଣିଗ୍ରାହୀ ମାନବ ଜୀବନର ଏକମାତ୍ର ରାହାସାହା ପ୍ରଭୁଙ୍କ ପାଖରେ ବିଶ୍ୱାସ ଓ ଉପଯୁକ୍ତ ବର୍ଣ୍ଣନା କରି ପୁରୀ ମନ୍ଦିରରେ ଶିଳ୍ପୀର ଶୈଳ୍ପୀକୀର୍ତ୍ତିକୁ ଉଲ୍ଲେଖ କରିଛନ୍ତି–

'ତଥାପି ନମଇଁ ତୋରେ ହେ ନିର୍ଜୀବ କର୍କଶ ପାଷାଣ
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ' ।

ରାଧାମୋହନ ଗଡନାୟକ ପୌରାଣିକ ଆଖ୍ୟାନ କିମ୍ବଦନ୍ତୀ ଉପରେ ଆଧାରିତ 'ଦାରୁଦେବତା' ଗାଥା କବିତାରେ ବାଙ୍କୀ ମୁହାଣରେ ଦାରୁଦେବତାଙ୍କୁ ଉଠାଇବା ସମୟରେ ପ୍ରଭୁ ନିଜେ ସମାଜର ଅସ୍ପୃଶ୍ୟ ଜାତି କିପରି ପ୍ରିୟ ସେହିମାନେ କେବଳ ତାଙ୍କର ଦାରୁକୁ ଉଠାଇପାରିବେ ବୋଲି କହିଛନ୍ତି–

'ତୁମର ସମାଜେ ଅଜାତି ଯେ ଜନ
ସେମାନେ ମୋର ମମତା– ଭାଜନ
ସେମାନେ କରିଲେ ସ୍ପର୍ଶ
ସେମାନେ ଧଇଲେ ମୁଁ ପରା ଉଠିବି ତହିଁ ମୋ ଅତୁଳ ହର୍ଷ ।'

'ଶ୍ରୀୟା ଚଣ୍ଡାଳୁଣୀ' କବିତାରେ ପ୍ରାକ୍‌ସ୍ୱାଧୀନତା କାଳରେ ସାମ୍ୟବାଦୀ ଚେତନାର ସ୍ୱର ଦେଖିବାକୁ ମିଳେ । ଲକ୍ଷ୍ମୀଙ୍କୁ ଶ୍ରୀମନ୍ଦିରକୁ ଫେରାଇ ଆଣିବା ବେଳେ ଶ୍ରୀଜଗନ୍ନାଥ ନିଜେ କହିଛନ୍ତି–

ଏଣିକି ଆମ ଦେଉଳେ ଜାଣ
ସଭିଏଁ ହେବେ ଏକଇ ପ୍ରାଣ
ଦେଉଳେ ଥିଲା ଯେ ଭେଦାଭେଦ ଏଥର ହେଲା ରଦ୍ଦ
ଚଣ୍ଡାଳର ହାତରୁ ଦ୍ୱିଜ ଖାଇବେ ମହାରଦ

ସେହିପରି ପ୍ରଗତିବାଦୀ ବା ମାର୍କସ୍‌ବାଦୀ ଯୁଗର କବିମାନେ ଆଧୁନିକତାର ଦ୍ୱାହିଦେଇ ନିଜକୁ ନାସ୍ତିକ କହି ଢୋଲ ପିଟୁଥିଲେ ହେଁ ଈଶ୍ୱରଙ୍କୁ ବିଶ୍ୱାସ କରିଛନ୍ତି । ଜୀବନସାରା ସମାନତା, ବାସ୍ତବତା, ଶ୍ରେଣୀହୀନ ସମାଜଗଠନ ପାଇଁ ସାହିତ୍ୟ ମାଧ୍ୟମରେ ବିପ୍ଳବ କରି ପ୍ରାପ୍ତି ଅପ୍ରାପ୍ତିର ଊର୍ଦ୍ଧ୍ୱରେ ଏକ ଚିରନ୍ତନ ଅବବୋଧ ନେଇ କବିମାନଙ୍କ ହୃଦୟରେ ପ୍ରଭୁ ମଧ୍ୟ ଅବତରଣ କରିଛନ୍ତି । ଏହି ଯୁଗର ଅନ୍ୟତମ ବାର୍ତ୍ତାବହ ସଚ୍ଚିଦାନନ୍ଦ ରାଉତରାୟ ଶବ୍ଦ ଏବଂ ବର୍ଣ୍ଣରେ ଅନୁଭବ କରିହେଉ ନଥିବା ପ୍ରଭୁ ଶ୍ରୀଜଗନ୍ନାଥ କେବଳ ବିଶ୍ୱାସରେ ମିଳନ୍ତି ବୋଲି ଶ୍ରୀଗୁଣ୍ଡିଚା କବିତାରେ ଲେଖିଛନ୍ତି–

'ବର୍ଣ୍ଣ ନୁହେଁ ଶବ୍ଦ ନୁହେଁ କି ଶରୀରେ
ହେ ପ୍ରାର୍ଥନା, ହେ ବିଶ୍ୱାସ
ଦିଗ୍‌ବିଜୟ କର'

ଯେଉଁ କବି ଦିନେ ମାର୍କସ୍‌ଙ୍କ ଆଦର୍ଶରେ ପରିଚାଳିତ ହୋଇ ଧର୍ମକୁ ଅଫିମର ନିଶାକହି ତା'ଠାରୁ ଦୂରରେ ରହିବାକୁ ଚାହୁଁଥିଲେ ଆଜି ସେହି କବି ଯନ୍ତ୍ରଣା ଜର୍ଜରିତ ଜୀବନରେ କ୍ଷତାକ୍ତ ହୋଇଛନ୍ତି, ସମସ୍ତ ଧୈର୍ଯ୍ୟ ତାଙ୍କର ଭାଙ୍ଗିଯାଇଛି । ଜୀବନ ସଂଗ୍ରାମରେ କୌଣସି ଅସ୍ତ୍ର ଧରିବାର ସାହସ ତାଙ୍କ ପାଖରେ ନାହିଁ । ତେଣୁ ସେ ଆଜି ଶ୍ରୀଜଗନ୍ନାଥଙ୍କର ଛତ୍ରଛାୟାତଳେ ଆଶ୍ରୟ ନେଇଛନ୍ତି ଆଉ କହିଛନ୍ତି–

ତୁମେ ମୋତେ ଶାନ୍ତି ଦିଅ, ଦିଅ ନିଦ୍ରା
ଟାଣି ନିଅ ତୁମ ମାୟା ତମ୍ବୁ
ତୁମେ ପରା ଆହେ ବଉଧ ମୂରତି
ବସିଚ ଆରାମେ ଧର୍ମକୀରତି
ତୁମେ ପରା ଚିର ଶାନ୍ତି ପ୍ରତୀତି
ନୀଳଚକ୍ରରେ ବାନ୍ଧିଛ ବନାତି ଲିଭାଇବ ନିଆଁ କିଏ ହେ ?
କହ ମହାପ୍ରଭୁ କହ ହେ...

ରଥଯାତ୍ରା ସମୟରେ ରତ୍ନବେଦୀରୁ ଓହ୍ଲାଇ ଆସନ୍ତି କଳାଠାକୁର । ସେଠାରେ ଜୀବପରମ ମଧ୍ୟରେ ଥିବା ଦୂରତ୍ୱର ବ୍ୟବଧାନ କ୍ରମଶଃ ଲୀନ ହୁଏ । କବି ନିଜ ସତ୍ତା ମଧ୍ୟରେ ଏହିପରି ଏକ ଘୋଷଯାତ୍ରାକୁ ନିଜର ଭକ୍ତିକୁ ଦୃଷ୍ଟିକୋଣରୁ ଅନୁଭବ କରି 'କବି ଦୃଷ୍ଟିରେ ପୁରୀ'ରେ ସଂକଳିତ 'ରଥଯାତ୍ରା'ରେ ଲେଖିଛନ୍ତି –

ସେ ଆଖି ହିଁ ଦେହ, ତାହା ମନ, ତାହା ଆତ୍ମା
ତାହା ପରମ୍ପରା
ତାହା ଏକ ସମୁଦ୍ର ସଙ୍ଖୋଳା

ଲୌକିକ ଗବାକ୍ଷୁ
ଦୁଇଟି ବ୍ରହ୍ମାଣ୍ଡ ପରି ସେଇ ଦୁଇଡୋଳା
ଯାହାର ଚତୁର୍ଦ୍ଦିଗେ ଘୂରେ ସୂର୍ଯ୍ୟ, ଘୂରେ ଚନ୍ଦ୍ର ତାରା'

ପ୍ରାକ୍ ସ୍ୱାଧୀନତା କାଳରେ ସାମାଜିକ, ରାଜନୈତିକ, ଅର୍ଥନୈତିକ ଦୃଷ୍ଟିକୋଣରୁ ମଣିଷ ଜୀବନର ଶାନ୍ତି ବ୍ୟାହତ । ସମସ୍ତ ନିରାଶା, ଅଶାନ୍ତି ମଧ୍ୟରେ ଜୀବନର ଏକ ପରମ ମୁକ୍ତି ଖୋଜିଛନ୍ତି କବି ଅନନ୍ତ ପଟ୍ଟନାୟକ । ଯନ୍ତ୍ରଣାର କୁହୁଡି ଭିତରୁ ଶାନ୍ତିର ନରମ ସୂର୍ଯ୍ୟାଲୋକ ହିଁ ତା'ର ଏକମାତ୍ର ପାଥେୟ । ତେଣୁ 'ନିଜେ ବନ୍ଦନା ପଢେ' କବିତାରେ ନିଜକୁ ନିଜେ ପଚାରିଛନ୍ତି–

'ମୁଁ କିରେ ଖେଳୁନି ମର୍ମର ଖଣି ?
ମରୁ ଖର୍ଜ୍ଜୁରେ ଫୁଲ–ଫଲ୍‌ଗୁଧାରା, ମୁଁ କିରେ ବୁଝୁନି
ଜଗନ୍ନାଥ ବୀଜ ଓଁକାରେ
ଜାରା ଜୀବନରେ କେତେ ଝୁମୁରର ଜ୍ୱାଳା'

ସାରସ୍ୱତ ସାଧକମାନେ ସେଇ ଅପାଣିପାଦ ଚିର ଚିଦାନନ୍ଦମୟ ଅଚିନ୍ତ୍ୟ ପୁରୁଷ ପରବ୍ରହ୍ମଙ୍କୁ ଦାର୍ଶନିକ ତତ୍ତ୍ୱର ଜଟିଳତାରୁ ଆଣି ଆଧୁନିକ ଓଡ଼ିଆ କବିତା ବା ପ୍ରାକ୍ ସ୍ୱାଧୀନତା କାଳୀନ କବିତାରେ ନିଜର ପ୍ରିୟତମ ସତ୍ତାରୂପେ ପ୍ରକାଶିତ କରିଛନ୍ତି । ଏହି ସମୟର କବିତାଗୁଡିକୁ ପାଠକଲେ ଜଣାଯାଏ ଯେପରି ପ୍ରଭୁ ଜଗନ୍ନାଥ ପ୍ରତ୍ୟେକ ପରିବର୍ତ୍ତିତ ସମାଜର ଚିତ୍ରପଟ୍ଟରେ ସର୍ବତ୍ର ସଚେତ, ସତେଜ ହୋଇ ରହିଛନ୍ତି । ଜୀବନର ପ୍ରତ୍ୟେକ ଘାତପ୍ରତିଘାତ, ସୁଖଦୁଃଖରେ ଶ୍ରୀଜଗନ୍ନାଥ ହିଁ ଏକ ଚିରକାଳୀନ ସତ୍ୟ । ପ୍ରଭୁ ଓଡ଼ିଆ କବିତାର ଉତ୍ସରେ ଅବସ୍ଥାପିତ ହୋଇ ଓଡ଼ିଆ କବିମାନଙ୍କର ଲେଖନୀକୁ ଭାସ୍ୱରିତ କରିଛନ୍ତି । ତେଣୁ କବିମାନେ ତାଙ୍କର ମହିମାଗାନ କରିବାରେ କେଉଁଠି ଅଭିମାନୀ ହୋଇଛନ୍ତି ତ କେଉଁଠି ପୁଣି ସମର୍ପଣର ଭାବନେଇ ଦୁଇ ହାତ ଟେକି ଦେଇଛନ୍ତି । ଜଗନ୍ନାଥ ଚେତନା ମଧ୍ୟରେ ପ୍ରାକ୍ ସ୍ୱାଧୀନତା କାଳର ଅନେକ ସତ୍ୟ ପ୍ରସଙ୍ଗ ଛନ୍ଦରେ ଉଦ୍‌ଘାସିତ ହୋଇ ଉଠିଛି । ଆଧୁନିକ ମଣିଷର ଯନ୍ତ୍ରଣାଜର୍ଜରିତ ମନ ତଳେ ପରମପୁରୁଷ ଅନନ୍ତ ଈଶ୍ୱର ଶ୍ରୀଜଗନ୍ନାଥଙ୍କର ସ୍ଥିତିକୁ ଅନୁଭବ କରିଛି । ଓଡ଼ିଆ କବିତାରେ କବି ପୁରୁଷ ପ୍ରଭୁଙ୍କୁ ନିଜର ବିଶ୍ୱାସ ଓ ସମର୍ପଣରେ ଆତ୍ମପୁରୁଷ ଭାବରେ ଗ୍ରହଣ କରି ନିଜର ଲେଖନୀକୁ ପ୍ରବାହମାନ ସ୍ରୋତରେ ଅବଗାହନ କରି ସାରସ୍ୱତ ଭଣ୍ଡାରକୁ ରସସିକ୍ତ କରିଛି ।

ନରେନ୍ଦ୍ର କୋଣ, ପୁରୀ

# କାଳିଆ ସାଆନ୍ତ

ଭାରତୀ ଭୂଷଣ ମିଶ୍ର



କରୁଣା ନିଧାନ କମଳ ଲୋଚନ
କେତେ ଦୁଃଖ ଦେବ ସତେ ।
କରିଅଛି ଆଶ କରନି ନିରାଶ
କର ଟିକେ କୃପା ମୋତେ ।

କାଳିଆ ସାଆନ୍ତ କରମ ମୋ ବାଙ୍କ
କାହାକୁ କହିବି ଦୁଃଖ ।
କୃପା ପାରାବାର କରୀ ହରିଣୀର
କର୍ଣ୍ଣେ ଶୁଣିଥିଲ ଡାକ ।

କୁରୁ ସଭାତଳେ କରଯୋଡି ଧୀରେ
କୃଷ୍ଣା ପଶିଲେ ଶରଣ ।
କଲ ମାନରକ୍ଷା କରେ ଗିରୀଟେକା
କୋଟି ବସ୍ତ୍ର ଦେଲ ଦାନ ।

କରେ ନିବେଦନ କମଳାର ପ୍ରାଣ
କରିବ ଦୟା ମୋ ଧନ ।
କରି ଦରଶନ କାଳିଆ ବଦନ
କେବେ ଚାଲିଯାଉ ପ୍ରାଣ ।

କ୍ରୀଡା ଓ ଯୁବସେବା ବିଭାଗ
ଭୁବନେଶ୍ୱର–୧୨

# ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ବେଶ

ଶ୍ରୀନିବାସ ଆଚାର୍ଯ୍ୟ

ଶ୍ରୀକ୍ଷେତ୍ରସ୍ଥିତ ବଡ଼ ଦେଉଳ ରତ୍ନସିଂହାସନରେ ବିରାଜିତ । ଜଗତର ନାଥ ଶ୍ରୀଜଗନ୍ନାଥ, ବଡ଼ ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରା ଦେବୀଙ୍କର ପରମ୍ପରା ଓ ସଂସ୍କୃତି ଅତୀବ ମହାନ । ମାଦଳା ପାଞ୍ଜିଠାରୁ ଆରମ୍ଭ କରି ବେଦବେଦାନ୍ତ, ଧର୍ମଶାସ୍ତ୍ର ଓ ପୁରାଣକୁ ପର୍ଯ୍ୟାଲୋଚନା କଲେ ମଧ୍ୟ ଏହାର ଆଦିଅନ୍ତରେ ଉପନୀତ ହେବା ଦୁରୂହ ବ୍ୟାପାର । ଏ ବିଶ୍ୱ ପ୍ରସିଦ୍ଧ ସଂସ୍କୃତିର ସ୍ରଷ୍ଟା ଅନ୍ୟ କେହି ନୁହନ୍ତି, କେବଳ ସ୍ୱୟଂ ପରଂବ୍ରହ୍ମ ବିଷ୍ଣୁ ଅଟନ୍ତି । ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରତିବାଦକ ଗ୍ରନ୍ଥରେ ବର୍ଣ୍ଣିତ– ସତ୍ୟ ଯୁଗରେ ସୂର୍ଯ୍ୟବଂଶ ତଥା ପରମ ବିଷ୍ଣୁ ଭକ୍ତ ଇନ୍ଦ୍ରଦ୍ୟୁମ୍ନ ରାଜା ଶତସହସ୍ର ବର୍ଷ ଧରି ତପସ୍ୟା ବଳରେ ନାରଦ ମହାଋଷିଙ୍କ ସାହାଯ୍ୟରେ ଏହି ପୀଠରେ ତିନି ମୂର୍ତ୍ତିଙ୍କୁ ପ୍ରତିଷ୍ଠା କରାଇଥିଲେ । ଏହି ପୀଠର ଦାରୁବ୍ରହ୍ମ ବିଗ୍ରହଙ୍କର ପୂଜା ପଦ୍ଧତି, ରୀତିନୀତି, ଭୋଗ ସାମଗ୍ରୀ, ପର୍ବପର୍ବାଣି ଯେପରି ସର୍ବଧର୍ମର ସମନ୍ୱୟ ରକ୍ଷା କରି ବିଶ୍ୱ ପ୍ରସିଦ୍ଧି ଲାଭ କରିପାରିଛି । ଏହାର ବେଶଭୂଷା ଭାବ ରୂପକ ରଜ୍ଜୁରେ ଭକ୍ତମାନଙ୍କୁ ବାନ୍ଧି ରଖିଛି ।



ପରଂବ୍ରହ୍ମ ବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରୁ ଶ୍ରୀପୁରୁଷୋତ୍ତମ ନାମ ଅନ୍ୟତମ । ବିଭିନ୍ନ ଯୁଗରେ ବିଷ୍ଣୁ ଅଶେଷ ରୂପରେ ଧରାପୃଷ୍ଠରେ ଅବତରଣ କରି ଦୁଷ୍ଟ ଦଳନ ଓ ସନ୍ଥପାଳନ କରିବାର କିମ୍ବଦନ୍ତୀମାନ ଆଧ୍ୟାତ୍ମିକ ଇତିହାସ ପୃଷ୍ଠା ମଣ୍ଡନ କରିଅଛି । ଭଗବାନ ଶ୍ରୀପୁରୁଷୋତ୍ତମଙ୍କଠାରୁ ସମସ୍ତ ଅବତାର ସୃଷ୍ଟି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଏହି ସର୍ବଧର୍ମ ସମନ୍ୱୟ ପବିତ୍ର କ୍ଷେତ୍ରରେ ଭଗବାନଙ୍କର ସମସ୍ତ ଅବତାର ପ୍ରକାଶ ପାଇଛି । ତେଣୁ ଏହି ପୀଠ ଭଗବାନ ବିଷ୍ଣୁଙ୍କର ନିତ୍ୟଲୀଳା ସ୍ଥଳୀ ରୂପେ ବିବେଚିତ । ସାଧାରଣତଃ ଶ୍ରୀକ୍ଷେତ୍ର ଧାମରେ ଶ୍ରୀଜୀଉଙ୍କର ପାଳିତ ହେଉଥିବା ବେଶମାନ, ଅତୀତରେ ଭଗବାନ ବିଷ୍ଣୁଙ୍କ ଅବତାରର ସ୍ମରଣୀୟ ଘଟଣାବଳୀରୁ ଆଧାରିତ । ତେଣୁ ବର୍ଷକ ୧୨ ମାସରେ ତିଥି ଅନୁସାରେ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ବେଶରେ ଭୂଷିତ କରାଯାଇଥିବାର ବ୍ୟବସ୍ଥା ଆବହମାନ କାଳରୁ ପ୍ରଚଳିତ । ଏହିସବୁ ବେଶକୁ ଦର୍ଶନ କରି ସତଜନ୍ମର ପାପରୁ ମୁକ୍ତି ଲାଭ କରି ଧର୍ମ ଅର୍ଜନ କରିବା ଉଦ୍ଦେଶ୍ୟରେ ଲକ୍ଷଲକ୍ଷ ପରମ ଭକ୍ତ ଦେଶ ବିଦେଶରୁ ଛୁଟି ଆସିଥାନ୍ତି ଶ୍ରୀକ୍ଷେତ୍ରର ବଡ଼ ଦେଉଳକୁ ।

ଭଗବାନ ଶ୍ରୀବିଷ୍ଣୁଙ୍କର ବିଭିନ୍ନ ଅବତାରର ଲୀଳାକୁ ଅବଲମ୍ବନ କରି ଶ୍ରୀଜଗନ୍ନାଥଙ୍କର ବେଶମାନ ହୋଇଥାଏ । ଶ୍ରୀଜଗନ୍ନାଥଙ୍କର ସାଧାରଣତଃ ଦୁଇ ପ୍ରକାର ବେଶ ହୋଇଥାଏ । ଯଥା ଦୈନନ୍ଦିନ ଓ ବାର୍ଷିକ ବେଶ । ଦୈନନ୍ଦିନ ବେଶ ବା ଶୃଙ୍ଗାର ପ୍ରତିଦିନ ତିନିଥର ହୋଇଥାଏ । ପ୍ରଥମେ ବସ୍ତ୍ର ଶୃଙ୍ଗାର ବା ଅବକାଶ ବେଶ, ଦ୍ୱିତୀୟରେ ଭୂଷଣ ଶୃଙ୍ଗାର ବା ଧୂପ ବେଶ ଓ ତୃତୀୟରେ (ଶୟନକାଳ) ପୁଷ୍ପ ଶୃଙ୍ଗାର ବା ବଡ଼ ସିଙ୍ଗାର ବେଶ କରାଯାଇଥାଏ । ବସ୍ତ୍ର ଶୃଙ୍ଗାର ବା ଅବକାଶ ବେଶ ପ୍ରତ୍ୟହ ଶ୍ରୀଜୀଉଙ୍କର ସକାଳ ସ୍ନାନଠାରୁ ଆରମ୍ଭ ହୋଇ ମଧ୍ୟାହ୍ନ ଧୂପ ପର୍ଯ୍ୟନ୍ତ ଲାଗି ହୋଇଥାଏ । ଦ୍ୱିତୀୟଟି ମଧ୍ୟାହ୍ନ ଧୂପ ବା

ଛତ୍ର ଭୋଗପରେ ସଂଧ୍ୟା ପର୍ଯ୍ୟନ୍ତ ଓ ତୃତୀୟଟି ସଂଧ୍ୟା ଧୂପଠାରୁ ତା'ପରଦିନ ସକାଳ ପର୍ଯ୍ୟନ୍ତ ଲାଗି ହୋଇଥାଏ । ଏହି ଦୈନିକ ବେଶକୁ ସମ୍ପାଦନ କରିବା ପାଇଁ ଥରକୁ ୨୪ଜଣ ହିସାବରେ ୩ଥର ପାଇଁ ୭୨ ଜଣ ସେବାୟତ (ପୁଷ୍ପାଳକ) ନିୟୋଗ ହୋଇଥାନ୍ତି । ମାତ୍ର ବେଶ ପାଇଁ ସେମାନଙ୍କ ମଧ୍ୟରୁ ଥରକୁ ୩ ଜଣ କରି ମୋଟ ୯ଜଣ ସେବାୟତ ନିୟୋଗ ହୋଇଥାନ୍ତି । ବେଶ ସମୟରେ ଯେଉଁସବୁ ଫୁଲମାଳ, ତୁଳସୀ ପତ୍ର ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ବ୍ୟବହାର ହୋଇଥାଏ, ସେଗୁଡ଼ିକ ବିଭିନ୍ନ ମଠ ଯୋଗାଇଥାଏ । ବେଶ ସମୟରେ ଯେଉଁସବୁ ଫୁଲମାଳ ଅର୍ପଣ ହୋଇଥାଏ, ସେଥିରେ ଆଦୌ ଗଣ୍ଠିମାନ ପଡ଼ିନଥାଏ ।

ଶ୍ରୀଜୀଉଙ୍କର ବାର୍ଷିକ ବେଶ ୨୪ଟି ପ୍ରକାରର ହୋଇଥିଲେ ମଧ୍ୟ ସାଧାରଣତଃ ସର୍ବମୋଟ୍ ୩୨ଟି ପ୍ରକାରର ବେଶ ଉତ୍ସବ ପାଳନ ହୋଇଥାଏ । ଏତଦ୍‌ବ୍ୟତୀତ 'ରଘୁନାଥ ବେଶ' ପ୍ରତିବର୍ଷ ପାଳନ ହୋଇନଥାଏ । ଯେଉଁ ବର୍ଷ ବୈଶାଖ ମାସରେ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ଅଭିଷେକ ଉତ୍ସବ ପଡ଼ିଥାଏ, ସେହି ତିଥିରେ ଏହି ବେଶ ପାଳନର ବିଧି ଅଛି ।

### ଚନ୍ଦନଲାଗି ବେଶ

ଏହି ବେଶ ବୈଶାଖ ମାସ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ ଜ୍ୟେଷ୍ଠମାସ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ମହାଆଡ଼ମ୍ବରପୂର୍ଣ୍ଣ ଓ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ବିଧିବିଧାନ ସହିତ ପାଳନ ହୋଇଥାଏ । ଏହାକୁ କେହି କେହି ଚନ୍ଦନଯାତ୍ରା ଉତ୍ସବ କହିଥାନ୍ତି । ସୁସଜ୍ଜିତ ପାଲିଙ୍କିରେ ଆଧ୍ୟାତ୍ମିକ ବାଦ୍ୟଯନ୍ତ୍ର ତରଙ୍ଗରେ ଚାପ ଖେଳିବା ଓ ଚନ୍ଦନ ଲାଗି ହେବା ପାଇଁ ଜୀଉମାନେ ନରେନ୍ଦ୍ର ପୁଷ୍କରିଣୀକୁ ଯାତ୍ରା କରିଥାନ୍ତି । ସେଠାରେ ସ୍ନାନ କରାଯାଇ ବିଭିନ୍ନ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାଏ । ସେବାୟତମାନେ ଶ୍ରୀଜୀଉଙ୍କୁ ଦୁଇଥର ସୁସଜ୍ଜିତ ନୌକାରେ ବସାଇ ନୌବିହାର (ଚାପ) କରାଇଥାଆନ୍ତି । ତତ୍‌ପରେ ବନ୍ଦାପଣ ଓ ଆଳଟ ହୋଇ ଶ୍ରୀଜୀଉଙ୍କୁ ଚନ୍ଦନଲାଗି ବେଶ କରାଯାଇଥାଏ । ଏହି ଦୃଶ୍ୟ ଉପଭୋଗ କରି ଧର୍ମ ଅର୍ଜନ କରିବା ପାଇଁ ଲକ୍ଷ ଲକ୍ଷ ଭକ୍ତ ସମବେତ ହୋଇଥାନ୍ତି । ଏହି ଉତ୍ସବ ଓଡ଼ିଶାର ବିଭିନ୍ନ ଗ୍ରାମଗୁଡ଼ିକରେ ମଧ୍ୟ ପାଳନ ହେଉଅଛି ।

### ଗଜାନନ ବେଶ

ଏହି ବେଶର ପ୍ରବର୍ତ୍ତକ ମହାରାଷ୍ଟ୍ରର ସନ୍ଥ ଗଣପତି ଭଟ୍ଟ ଅଟନ୍ତି । ଏହି ବେଶ ପ୍ରତିବର୍ଷ ଜ୍ୟେଷ୍ଠ ମାସ ପୂର୍ଣ୍ଣମୀ ତିଥିରେ ହୋଇଥାଏ । କେହି କେହି ଏହି ତିଥିକୁ ସ୍ନାନ ପୂର୍ଣ୍ଣମା ଉତ୍ସବ କହିଥାନ୍ତି । ସ୍ନାନ ମଣ୍ଡପରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଗଜାନନ ବେଶ ଧାରଣ କରି ଭକ୍ତଙ୍କୁ ଦର୍ଶନ ଦେଇଥାନ୍ତି ।

### ରୁକ୍ମିଣୀ ହରଣ ବେଶ

ଜ୍ୟେଷ୍ଠମାସ ଶୁକ୍ଳ ଏକାଦଶୀ ତିଥିରେ ଭଗବାନ ବିଷ୍ଣୁ (ଶ୍ରୀକୃଷ୍ଣ) ରୁକ୍ମିଣୀ ଦେବୀଙ୍କୁ ବିବାହ କରିଥିଲେ । ସେହି କିମ୍ବଦନ୍ତୀକୁ ସ୍ମରଣ କରିବା ପାଇଁ ପ୍ରତିବର୍ଷ ସେହି ତିଥିରେ ଶ୍ରୀଜଗନ୍ନାଥଙ୍କୁ ରୁକ୍ମିଣୀ ହରଣ ବେଶରେ ଭୂଷିତ କରାଯାଇ ପୂଜା କରାଯାଏ ।

### ନବଯୌବନ ବେଶ

ସ୍ନାନ ପୂର୍ଣ୍ଣିମା ପରେ ପରେ ଶ୍ରୀଜୀଉମାନେ ଦୀର୍ଘ ୧୫ଦିନ ଅସୁସ୍ଥ ହୁଅନ୍ତି । ଏହି ୧୫ଦିନ ମହାପ୍ରଭୁ ଅଣସର ଘରେ ଶୟନ ଅବସ୍ଥାରେ ରହିଥାନ୍ତି । ବିଜୟା ଅମାବାସ୍ୟାରେ ସୁସ୍ଥ ହୋଇ ନବଯୌବନ ଲାଭ କରି ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ତେଣୁ ଏହାକୁ ନବଯୌବନ ବେଶ କୁହାଯାଏ ।

### ସୁନାବେଶ

ବର୍ଷକ ମଧ୍ୟରେ ମହାପ୍ରଭୁ ୫ଥର ସୁନାବେଶ ହୋଇଥାନ୍ତି । ଏହି ବେଶଗୁଡ଼ିକ ଆଷାଢ଼ ଶୁକ୍ଳ ଏକାଦେଶୀ, ଆଶ୍ୱିନ ଶୁକ୍ଳ ଏକାଦଶୀ କାର୍ତ୍ତିକ ପୂର୍ଣ୍ଣିମା, ପୌଷ ପୂର୍ଣ୍ଣିମା ଓ ଦୋଳ ପୂର୍ଣ୍ଣିମା ତିଥିରେ ପାଳନ କରାଯାଇଥାଏ । ଏହି ବେଶ ଚାରିଥର ବଡ଼ ଦେଉଳର ରତ୍ନସିଂହାସନରେ ପାଳିତ ହୋଇଥିଲାବେଳେ ଗୋଟିଏ ଥର ସିଂହଦ୍ୱାର ସମ୍ମୁଖରେ ବାହୁଡ଼ା ରଥ ଉପରେ ପବିତ୍ର ବଡ଼ଦାଣ୍ଡରେ ଖୋଲା ଆକାଶ ତଳେ ପାଳନ ହୋଇଥାଏ । ଏହି ଦିବସଟି ମହାନ ରଥଯାତ୍ରାର ଅନ୍ତିମ ଦିବସ ଆଷାଢ଼ ମାସର ଶୁକ୍ଳ ଏକାଦଶୀ ତିଥିରେ ପାଳିତ ହୋଇଥାଏ । ଏହି ବେଶକୁ ରାଜରାଜେଶ୍ୱର ବେଶ କୁହାଯାଉଥିବା ବେଳେ, ଅନ୍ୟ ୪ଟି ବେଶକୁ ରାଜାବେଶ କୁହାଯାଇଥାଏ । ସବୁ ବେଶଠାରୁ ଏହି ବେଶ ସ୍ୱତନ୍ତ୍ର, ମହତ୍ୱ ବହନ କରିଅଛି । କାରଣ ଶ୍ରୀଜୀଉମାନଙ୍କୁ ଏହି ବେଶ ମାଧ୍ୟମରେ ଜାତି, ବର୍ଣ୍ଣ, କଳା, ଗୋରା, ଧନି, ଦରିଦ୍ର, ସମ୍ପ୍ରଦାୟର ପରମ ଭକ୍ତ ସମାନ ଭାବରେ ଦର୍ଶନ କରିପାରନ୍ତି । ମହାପ୍ରଭୁଙ୍କ ସକଳ ବେଶରେ ମାଧୁର୍ଯ୍ୟ ଲାବଣ୍ୟ ପ୍ରକଟିତ ହେଉଥିବା ବେଳେ କେବଳ ଏହି ସୁନାବେଶରେ ଐଶ୍ୱର୍ଯ୍ୟ ପ୍ରାବଲ୍ୟ ପରିସ୍ଫୁଟ ହୋଇଥାଏ । କେହି କେହି ଏହି ବେଶକୁ ବଡ଼ ତଡ଼ାଉ ବେଶ କହିଥାନ୍ତି । ୧୩୮ଟି ପ୍ରକାରର ରତ୍ନ ସ୍ୱର୍ଣ୍ଣ ଅଳଙ୍କାରରେ ଖଚିତ ହୋଇ ମହାପ୍ରଭୁ ସଂଧ୍ୟାଠାରୁ ସମଗ୍ର ରାତିଟି ଅନିଦ୍ରା ହୋଇ ଭକ୍ତମାନଙ୍କୁ ଦର୍ଶନ

ଦେଇଥାନ୍ତି। ଏହି କାର୍ଯ୍ୟ ମଧ୍ୟାହ୍ନ ଧୂପ ପରେ ସେବାୟତମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ପାଳିଆମେକାପ, ଖୁଣ୍ଟିଆ ସେବକ, ପାଳିଆ ପୁଷ୍ପାଳକ, ଦଇତାପତି ଖୁଣ୍ଟିଆ ମେକାପ, ତଳୁଛ, ଭିତରଛୁ ସେବାୟତମାନେ ମାଜିଷ୍ଟ୍ରେଟ୍, ପୋଲିସ ଫୋର୍ସ ଓ ମନ୍ଦିର ଅଧିକାରୀଙ୍କ ସମ୍ମୁଖରେ ୩ଟି ଜୀଉଙ୍କୁ ସୁନାବେଶରେ ସଜ୍ଜିତ କରାଇଥାନ୍ତି ।

**ଚିତାଲାଗି ବେଶ**

ଶ୍ରାବଣ ମାସ ଅମାବାସ୍ୟା ତିଥିରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଚିତା ପିନ୍ଧନ୍ତି। ତେଣୁ ଏହାକୁ ଚିତାଲାଗି ବେଶ କୁହାଯାଏ ।

**ବନଭୋଜି ବେଶ**

ଏହି ବେଶର ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ଅଟନ୍ତି। ଭାଦ୍ରବ ମାସ କୃଷ୍ଣପକ୍ଷ ଦଶମୀ ତିଥିରେ ଏହି ବେଶ ହୋଇଥାଏ । ଏହା କୃଷ୍ଣଲୀଳାର ସ୍ମାରକୀ ରୂପେ ପାଳନ କରାଯାଇଥାଏ । ମଧ୍ୟାହ୍ନ ଧୂପ ପରେ ଦକ୍ଷିଣ ଘରୁ ରାମକୃଷ୍ଣ ଦୁଇ ବିଗ୍ରହଙ୍କୁ ଅଣାଯାଇ ଆଜ୍ଞାମାଳ ଲାଗି ହୋଇଥାଏ । ରାମକୃଷ୍ଣଙ୍କୁ ନିଆଯିବା ପରେ ସଂଧ୍ୟା ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥ ବନଭୋଜି ବେଶରେ ଭୂଷିତ ହୋଇ ଲକ୍ଷଲକ୍ଷ ଭକ୍ତଙ୍କୁ ଦର୍ଶନ ଦେଇଥାଆନ୍ତି । ଏହି ବେଶରେ ଠାକୁରମାନେ ସ୍ୱହସ୍ତରେ ଶିକାରେ ରୂପା ପିଙ୍ଗଳର ଶର ଧରନ୍ତି ଓ ଅନ୍ୟ ହସ୍ତରେ ନଉଡ଼ି ଧରନ୍ତି । ଠାକୁରଙ୍କୁ ପେଡ଼ାମାଳି ଲାଗି ହୋଇଥାଏ ।

**କାଳୀୟ ଦଳନ ବେଶ**

ଏହି ବେଶର ପ୍ରବର୍ତ୍ତକ ଗଜପତି ପ୍ରତାପରୁଦ୍ର ଦେବ ଅଟନ୍ତି । ଏହି ବେଶ ଭାଦ୍ରବ ମାସ କୃଷ୍ଣପକ୍ଷ ଏକାଦଶୀ ତିଥିରେ ହୁଏ । ଭଗବାନ ଶ୍ରୀକୃଷ୍ଣ ଯମୁନା ନଦୀ କୂଳରେ କାଳୀୟ ସର୍ପକୁ ମାରିଥିବାରୁ ତାହାରି ସ୍ମାରକୀ ରୂପେ ଏହି ବେଶ ହୋଇଥାନ୍ତି। ଏହିଦିନ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ମଦନମୋହନ ଓ ରାମକୃଷ୍ଣ ମାର୍କଣ୍ଡ ପୋଖରୀକୁ ଯାଇ ସେଠାରେ କାଳୀୟ ଦଳନ କରିଥାନ୍ତି ।

**ପ୍ରଳମ୍ବାସୁର ବେଶ**

ଏହି ବେଶର ପ୍ରବର୍ତ୍ତକ ବଳରାମ ଦାସ । ଏହା ଭାଦ୍ରବ ମାସ କୃଷ୍ଣପକ୍ଷ ଦ୍ୱାଦଶୀ ତିଥିରେ ପଡ଼ିଥାଏ । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ ଏହି ଦିନ ପ୍ରଳମ୍ବାସୁର ଅସୁରକୁ ବଧ କରିଥିଲେ। ଏହି ସ୍ମୃତିକୁ ବହନ କରି ସେହି ତିଥିରେ ଶ୍ରୀଜଗନ୍ନାଥଙ୍କୁ ପ୍ରଳମ୍ବାସୁର ବଧର ବେଶ କରାଯାଇ ପୂଜା ଅର୍ଚ୍ଚନାର ବିଧିବିଧାନ ଅଛି ।

**କୃଷ୍ଣବଳରାମ ବେଶ**

ଏହି ବେଶର ପ୍ରବର୍ତ୍ତକ ଶ୍ରୀବଲ୍ଲଭାଚାର୍ଯ୍ୟ । ଏହା ଭାଦ୍ରବ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ ହୋଇଥାଏ । ସେହିଦିନ ଏକ ଶାନ୍ତ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ଲକ୍ଷ ଲକ୍ଷ ଭକ୍ତଙ୍କ ସମାବେଶରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଏହି ବେଶରେ ଭୂଷଣ କରାଯାଇଥାଏ ।

**ବାମନ ବେଶ**

ଏହି ବେଶର ପ୍ରବର୍ତ୍ତକ କଳିଙ୍ଗ ବ୍ରାହ୍ମଣ ସମାଜ ଅଟନ୍ତି । ଭଗବାନ ବିଷ୍ଣୁ ବାମନ ରୂପ ଧରି ବଳିକୁ ପାତାଳପୁରୀକୁ ଛାଡ଼ିଥିଲେ । ଏଥିପାଇଁ ଶ୍ରୀଜଗନ୍ନାଙ୍କୁ ଭାଦ୍ରବ ମାସ ଶୁକ୍ଳ ଦ୍ୱାଦଶୀ ତିଥିରେ ବାମନ ବେଶରେ ଭୂଷିତ କରାଯାଇଥାଏ ।

**ରାଜବେଶ**

ଏହି ବେଶ ଆଶ୍ୱିନ ମାସ ଶୁକ୍ଳ ଦଶମୀ ତିଥିରେ ହୋଇଥାଏ । ମହାପ୍ରଭୁଙ୍କର ଅବକାଶ ଓ ଚନ୍ଦନ ଲାଗି ସରିବା ପରେ ନୂଆ ଲୁଗା ପରିଧାନ ପୂର୍ବକ ବଡ଼ ତଡ଼ାଉ (୩୨ ମୂର୍ତ୍ତି) ଲାଗି ହୋଇ ରାଜବେଶ ହୋଇଥାଏ ।

**ରାଧାଦାମୋଦର ବେଶ**

ଏହି ବେଶର ପ୍ରବର୍ତ୍ତକ ଗୌଡ଼ମାଧ୍ୱ ବୈଷ୍ଣବ ଗୋଷ୍ଠୀ ଅଟନ୍ତି। ଆଶ୍ୱିନ ଶୁକ୍ଳ ଏକାଦେଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରାଧାଦାମୋଦର ବା ରାଇ ଦାମୋଦର ବେଶ ହୁଅନ୍ତି ।

**ହରିହର ବେଶ**

ରାଧା ଦାମୋଦର ବେଶ ଆଶ୍ୱିନ ଶୁକ୍ଳ ଏକାଦେଶୀଠାରୁ କାର୍ତ୍ତିକ ମାସ ଶୁକ୍ଳ ଦଶମୀ ମଧ୍ୟରେ ଯେଉଁଦିନ ସୋମବାର ପଡ଼ିଥାଏ, ସେହିଦିନଗୁଡ଼ିକ ବଳଭଦ୍ର ହରିହର ବେଶ ହୋଇଥାନ୍ତି। ଅର୍ଦ୍ଧେକ କଳା ଓ ଅର୍ଦ୍ଧେକ ଧଳା ବେଶ ଧାରଣ କରିଥାନ୍ତି ।

**ଲକ୍ଷ୍ମୀନାରାୟଣ ବେଶ**

ଏହି ବେଶ କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ତିଥିରେ ହୋଇଥାଏ । ଏହାକୁ କେହି କେହି ଠିକାକିଆ ବେଶ ବୋଲି କହିଥାନ୍ତି ।

**ବାଙ୍କଚୂଡ଼ା ବେଶ**

ଏହି ବେଶ କାର୍ତ୍ତିକ ମାସ ଶୁକ୍ଳ ବାମନ ଦ୍ୱାଦଶୀ ଦିନ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ । କେହି କେହି ଏହି ବେଶକୁ ବାମନବେଶ ବୋଲି କହିଥାନ୍ତି ।

### ତ୍ରିବିକ୍ରମ ବେଶ

କେହି କେହି ଏହି ବେଶକୁ ଆଡ଼କିଆ ବେଶ ବୋଲି କହିଥାନ୍ତି । ଏହି ବେଶ କାର୍ତ୍ତିକ ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ପାଳିତ ହୋଇଥାଏ ।

### ଲକ୍ଷ୍ମୀ ନୃସିଂହ ବେଶ

ଏହି ବେଶକୁ କେହି କେହି ଡାଳିକିଆ ବେଶ ବୋଲି କହିଥାନ୍ତି। ଏହା କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ହୋଇଥାଏ ।

### ରାଜ ରାଜେଶ୍ୱର ବେଶ

କାର୍ତ୍ତିକ ମାସର ପୂର୍ଣ୍ଣିମା ତିଥିରେ ଏହି ବେଶ ହୋଇଥାଏ । ଏହି ବେଶରେ ସୁନାବେଶ ପରି ଶ୍ରୀଜୀଉଙ୍କୁ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାଏ ।

### ନାଗାର୍ଜ୍ଜୁନ ବେଶ

ଏହି ବେଶର ପ୍ରବର୍ତ୍ତକ ହେଉଛନ୍ତି ସ୍ୱୟଂ ପର୍ଶୁରାମ। ତେଣୁ କେହି କେହି ଏହି ବେଶକୁ ପର୍ଶୁରାମ ବେଶ ବୋଲି କହିଥାନ୍ତି। ଏହି ବେଶ ପ୍ରତିବର୍ଷ ପଡ଼ିନଥାଏ । ଯେଉଁ ବର୍ଷ କାର୍ତ୍ତିକ ମାସର ପଞ୍ଚୁକ ୫ଦିନ ପରିବର୍ତ୍ତେ ୬ଦିନ ପଡ଼ିଥାଏ, ସେହି ଷଷ୍ଠ ଦିନରେ ଶ୍ରୀଜଗନ୍ନାଥଙ୍କୁ ନାଗାର୍ଜୁନ ବେଶ ଲାଗି ହୋଇଥାଏ । ତେଣୁ ଅତୀତରେ ୧୯୯୪ ମସିହା ନଭେମ୍ବର ମାସ ୨୬ ତାରିଖରେ ଏହା ପଡ଼ିଥିଲା । ଏହି ବେଶ ସମ୍ପର୍କରେ ଏକ ପୌରାଣିକ କିମ୍ବଦନ୍ତୀ ଅଛି । ତାହା ହେଲା ମଧ୍ୟମ ପାଣ୍ଡବ ଧନୁର୍ଦ୍ଧାରୀ ଅର୍ଜ୍ଜୁନଙ୍କର ଅନ୍ୟତମ ପତ୍ନୀ ନାଗାବଳୀଙ୍କ ଗର୍ଭରୁ ନାଗାର୍ଜୁନ ନାମକ ଏକ ପୁତ୍ର ଜନ୍ମ ହୋଇଥିଲେ । ସେ ଅସୁରମାନଙ୍କୁ ନିଧନ କରିବା ପାଇଁ ନାଗା ବେଶରେ ସମ୍ମୁଖ ଯୁଦ୍ଧ କରିଥିଲେ । ଏହି ବେଶ ସ୍ୱୟଂ ଭଗବାନ କୃଷ୍ଣ ହୋଇ ଏକ ଆଧ୍ୟାତ୍ମିକ ଇତିହାସ ସୃଷ୍ଟି କରିଥିଲେ।

### ଶ୍ରାଦ୍ଧବେଶ

ଏହି ବେଶ ମାର୍ଗଶିର ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ପତିପଦା ତିଥିରେ ତିନିଦିନ ଧରି ହୋଇଥାଏ। ଶ୍ରୀଜଗନ୍ନାଥ ଶ୍ରାଦ୍ଧବେଶ ହୋଇ ନନ୍ଦ, ବାସୁଦେବ ଓ ଦଶରଥଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ଦୀପ ଦାନ କରିଥାନ୍ତି।

### ପଦ୍ମବେଶ

ଏହି ବେଶର ପ୍ରବର୍ତ୍ତକ ମହାତ୍ମା ସନ୍ଥ ରଘୁବୀର ଦାସ। ଏହା ମାଘ ମାସ ଶୁକ୍ଳପକ୍ଷ ତୃତୀୟା ତିଥିରେ ଠାକୁରଙ୍କର ଚନ୍ଦନ ଲାଗି ପରେ ହୋଇଥାଏ। ତା'ପରେ ପହଡ଼ ପଡ଼ିଥାଏ । ଶୋଲରେ ନିର୍ମିତ ପଦ୍ମଫୁଲରେ ଠାକୁରଙ୍କୁ ବେଶ ହୋଇଥାଏ । ଏହି ପଦ୍ମଫୁଲକୁ ବଡ଼ଛତା ମଠ ଯୋଗାଇ ଥାଆନ୍ତି ।

### ଗଜଉଦ୍ଧାରଣ ବେଶ

ଏହି ବେଶର ପ୍ରବର୍ତ୍ତକ ଭାଷ୍ୟକାର ରାମାନୁଯାଚାର୍ଯ୍ୟ । ମାଘମାସ ପୂର୍ଣ୍ଣିମା ତିଥିରେ ଏହି ବେଶ ଶ୍ରୀଜୀଉଙ୍କର ପାଳିତ ହୋଇଥାଏ । ସେବାୟତମାନେ ସଂଧ୍ୟା ସମୟରେ ରତ୍ନସିଂହାସନ ଉପରେ ତିନି ଠାକୁରଙ୍କୁ ବିଧିବିଧାନ ସହ ବେଶ କରିଥାନ୍ତି । ସ୍ୱର୍ଣ୍ଣ ଅଳଙ୍କାର ସହ କନା, ଜରି, ସୋଲ, ଜମ୍ଭୁରା ଓ କଇଁଥ ଅଠାରେ ବେଶ କରି ସିଂହାସନ ପାଖକୁ ନେଇଥାନ୍ତି। ଏହି ବେଶରେ କାଳିଆ ଠାକୁର ଚାରଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରି ବାହନ ଗରୁଡ଼ଙ୍କ ଉପରେ ମହାଲକ୍ଷ୍ମୀଙ୍କ ସହିତ ବିରାଜମାନ ହୋଇଥାନ୍ତି। ଠିକ୍ ସେପରି ବଡ଼ ଭାଇ ଭଳଭଦ୍ର ହସ୍ତରେ ଶଙ୍ଖ, ଚକ୍ର, ମୂଷଳ, ହଳ ଧାରଣ କରି ବାସୁଦେବ ବେଶରେ ବିରାଜମାନ କରିଥାନ୍ତି। ସମ୍ମୁଖରେ ଦୁଇଟି ହସ୍ତୀ ଶୁଣ୍ଢରେ ପଦ୍ମକଢ଼ି ଧରି ଠାକୁରଙ୍କ ଉଦ୍ଦେଶ୍ୟରେ ଭକ୍ତିଅର୍ଘ୍ୟ ଢ଼ାଳିବା ଠାଣିରେ ଦଣ୍ଡାୟମାନ ହୁଅନ୍ତି । ଆଉ ମଧ୍ୟ ଏକ କୁମ୍ଭୀର ଗଜରାଜକୁ ଆକ୍ରମଣ ପୂର୍ବକ ଉପବେଶନ ହୋଇଥାନ୍ତି । ଏହି ଅପୂର୍ବ ଦୃଶ୍ୟକୁ ଦର୍ଶନ କରିବା ପାଇଁ ଲକ୍ଷ ଲକ୍ଷ ଭକ୍ତଙ୍କର ସମବେତ ମନ୍ଦିରରର ପରିବେଶକୁ ଚଳଚଞ୍ଚଳ କରି ପକାଇବାର ଦୃଶ୍ୟର ପଟାନ୍ତର ନାହିଁ । ଏହି ବେଶକୁ ଭିତରଚ୍ଛୁ, ପୁଷ୍ପାଳକ, ଖୁଣ୍ଟିଆ ଓ ମେକାପ ସମ୍ପ୍ରଦାୟର ସେବକମାନେ ସମ୍ପାଦନ କରିଥାନ୍ତି ।

### ଚାଚେରୀ ବେଶ

ଫଗୁ ଦଶମୀରେ ମହାପ୍ରଭୁଙ୍କର ଚାଚେରୀ ଭୋଗ ଲାଗି ହୋଇଥାଏ । ଏହି ବେଶରେ ତିନି ଜୀଉଙ୍କୁ ଲାଲ୍ କପଡ଼ା ପରିଧାନ କରାଯାଇଥାଏ । ମଧ୍ୟାହ୍ନ ଭୋଗ ପରେ ଠାକୁରଙ୍କୁ ନୂଆ ଲୁଗା ଲାଗି ହୋଇଥାଏ । ଲକ୍ଷ୍ମୀ ଓ ସରସ୍ୱତୀ ଦକ୍ଷିଣ ଘରକୁ ବିଜେ କରିଥାନ୍ତି । ପରେ ଜଗନ୍ନାଥ ଓ ବଳଭଦ୍ର ବିଜେ କରିଥାନ୍ତି । ତତ୍‌ପରେ ଜଗନ୍ନାଥ ବଲ୍ଲଭକୁ ଯାତ୍ରା ହୋଇଥାଏ । ସେଠାରେ ଭୋଗ ଓ ବନ୍ଦାପନା ହୋଇ ବଟବୃକ୍ଷ ମୂଳକୁ ବାହୁଡ଼ା କରିଥାନ୍ତି । ଠାକୁରମାନଙ୍କର ପହଣ୍ଡି ଏକ ଅପୂର୍ବ ଆଧ୍ୟାତ୍ମିକ ଭାବର ବାତାବରଣ ସୃଷ୍ଟି ହୋଇଥାଏ । ଏହା ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ ହୋଇଥାଏ ।

ଦୁର୍ଗାମାଧବ ନଗର, ଭରତପୁର
ଭୁବନେଶ୍ୱର



# ଶ୍ରୀଦାରୁବ୍ରହ୍ମଙ୍କ ଚେତନାରେ ଶ୍ରୀଗୋବିନ୍ଦ ତତ୍ତ୍ୱ

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

ଶ୍ରୀଜଗନ୍ନାଥ ହେଉଛନ୍ତି ଶ୍ରୀଦାରୁବ୍ରହ୍ମ । ଏହା ବିଭିନ୍ନ ଶାସ୍ତ୍ରର ପ୍ରାମାଣିକ ମତ । ଶ୍ରୀଦାରୁବ୍ରହ୍ମ ଆବିର୍ଭାବ ଯେପରି ପ୍ରାଚୀନ ତାଙ୍କର ଉପାସନା ମଧ୍ୟ ସେହିପରି ପ୍ରାଚୀନ । ଉପାସନାରେ ଉତ୍ସବ ତଥା ମହୋତ୍ସବ ମଧ୍ୟ ଶାସ୍ତ୍ର ପରମ୍ପରା ଅନୁଯାୟୀ ସାମିଲ ହୋଇ ଆସିଛି । ଶ୍ରୀଦାରୁବ୍ରହ୍ମର ପ୍ରସିଦ୍ଧ ଦ୍ୱାଦଶଯାତ୍ରା ଗୋଟିଏ ଗୋଟିଏ ମହୋତ୍ସବ । ଉପଯାତ୍ରାଗୁଡ଼ିକୁ ଆମେ ଉତ୍ସବ ବୋଲି କହିପାରିବା । ବର୍ଷକ ମଧ୍ୟରେ ହେଉଥିବା ବାରଟି ଯାତ୍ରା ବା ମହୋତ୍ସବ ମଧ୍ୟରେ ବସନ୍ତ ମହୋତ୍ସବ ଅନ୍ୟତମ । ଏହି ମହୋତ୍ସବ ଚାରୋଟି ଚରଣରେ ଅନୁଷ୍ଠିତ ହୁଏ । ଏହି ଚାରୋଟି ଚରଣକୁ ଉପାସନାର ଚାରୋଟି ବିଧି ଭାବରେ ମଧ୍ୟ ଆମେ ଗ୍ରହଣ କରିପାରିବା ।

ଫଗୁଣ ମାସ ଶୁକ୍ଳପକ୍ଷ ଦଶମୀ, ଯାହାକି 'ଫଗୁଦଶମୀ' ଭାବରେ ପ୍ରସିଦ୍ଧ, ସେହିଦିନଠାରୁ ଏହି ବିଧି ଆରମ୍ଭ ହୋଇ ତ୍ରୟୋଦଶୀ ତିଥି ଅର୍ଥାତ୍ ଚାରିଦିନ ଧରି ପାଳନ ହୋଇଥାଏ। ଏହି ବିଧିରେ ଚାଚେରୀ ବେଶ ଓ ଚାଚେରୀ ଭୋଗ ପ୍ରଥମ ଆକର୍ଷଣ । ଆନନ୍ଦମୟ ଉତ୍ସବ ପାଇଁ ଏକ ସ୍ୱତନ୍ତ୍ର ବେଶକୁ 'ଚାଚେରୀ' କୁହାଯାଏ । ରତ୍ନସିଂହାସନରୁ ଶ୍ରୀଦେବୀ ଓ ଭୂଦେବୀ 'ଦକ୍ଷିଣଘରକୁ' ବିଜେ ହୋଇ ଏହି ବେଶ ହୁଅନ୍ତି । ଶ୍ରୀଦାରୁବ୍ରହ୍ମଙ୍କ ପ୍ରତିନିଧି ଶ୍ରୀଦୋଳଗୋବିନ୍ଦ ସେହି ଘରେ ଉପାସିତ ହେଉଥିବାରୁ ସେ ମଧ୍ୟ ସେଠାରେ ବେଶ ହୋଇ ଶ୍ରୀଦେବୀ ଓ ଭୂଦେବୀଙ୍କ ସହ ବିଜେ କରନ୍ତି । ମହାଜନମାନେ ଜୟବିଜୟ ଦ୍ୱାର ଲଣ୍ଡାବର୍ତ୍ତ ଉପରେ ଠିଆ ହୁଅନ୍ତି । ସେଠାରେ ଝିମିରଫଗୁ ଲାଗି କରିଥାନ୍ତି ମୁଦିରଥ ସେବକ । ଶ୍ରୀଦାରୁବ୍ରହ୍ମଙ୍କର ଆଜ୍ଞା ପାଇ ଏମାନେ ଫଗୁଲାଗି ଓ ସ୍ୱତନ୍ତ୍ର ନୀତି ପାଇଁ ବଡଦାଣ୍ଡରେ ଥିବା ବସନ୍ତ ଗୁଣ୍ଡିଚା ତୋଟା ବା ଶ୍ରୀଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ତାଙ୍କ ସହିତ ପଞ୍ଚପାଣ୍ଡବ ରୂପେ ଶ୍ରୀମନ୍ଦିର ଉପାସନା ସହିତ ଜଡ଼ିତ ଥିବା ଶ୍ରୀକ୍ଷେତ୍ରର ପାଞ୍ଚ ଶିବଙ୍କର ବିଜେ ମୂର୍ତ୍ତି ମଧ୍ୟ ଯାଆନ୍ତି । ପଞ୍ଚପାଣ୍ଡବ ହେଲେ– ଶ୍ରୀଯମେଶ୍ୱର, ଶ୍ରୀକପାଳମୋଚନ, ଶ୍ରୀଲୋକନାଥ, ଶ୍ରୀମାର୍କଣ୍ଡେୟ ଓ ଶ୍ରୀନୀଳକଣ୍ଠେଶ୍ୱର । ସେଠାରେ ଫଗୁଖେଳ ପରେ ପୁଣି ଫେରନ୍ତି ।

ଅଗ୍ନି ଉତ୍ସବ ବିଧି ବା ରାଜାଗ୍ନି ଉତ୍ସବ ବିଧିଫଗୁଣ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପାଳିତ ହୁଏ । ସେଦିନ ଶ୍ରୀଦେବୀ ଓ ଭୂଦେବୀ ଚାଚେରୀ ବେଶ ହୋଇ ଶ୍ରୀଦୋଳଗୋବିନ୍ଦଙ୍କ ସହିତ ପ୍ରଥମେ ଶ୍ରୀମନ୍ଦିର ବାହାର ବେଢାରେ ଥିବା ଦେବୀ ଲକ୍ଷ୍ମୀଙ୍କ ମନ୍ଦିରର ଜଗମୋହନରେ ବିଜେ କରନ୍ତି । ସେଠାରେ ଶ୍ରୀଦୋଳଗୋବିନ୍ଦଙ୍କ ପକ୍ଷରୁ ରାଜାଙ୍କ ପ୍ରତିନିଧି ମୁଦିରଥ ଓ ଶ୍ରୀଦେବୀଙ୍କ ପକ୍ଷରୁ ସମ୍ପ୍ରଦା ମାହାରୀମାନେ ଫଗୁ ଖେଳିଥାନ୍ତି । ଏଠାରେ ଚାଚେରୀ ଭୋଗ ଏବଂ ଫଗୁଲାଗି ପରେ ଦୋଳବେଦୀ ନିକଟରେ ପ୍ରସ୍ତୁତ ହୋଇଥିବା ଅଗ୍ନି ଉତ୍ସବ ସ୍ଥାନକୁ ଯାତ୍ରା କରନ୍ତି । ସେଠାରେ 'ଅଇଘର' ପ୍ରସ୍ତୁତ ହୋଇଥାଏ । ଅଇଘର ଏକ ଅପଭ୍ରଂଶ ଶବ୍ଦ । ଏହାର ଅର୍ଥ ଅଗ୍ନିଙ୍କ ଘର ବା ସ୍ଥାନ । ବୈଦିକ ଅଗ୍ନି ଉପାସନାର ଏହା ଏକ ସାର୍ବଜନୀନ ପରିପ୍ରକାଶ । ଅଗ୍ନିଙ୍କ ସ୍ଥାନ ଶାସ୍ତ୍ରରେ ଅଗ୍ନିକୋଣ ବୋଲି ନିର୍ଦ୍ଦିଷ୍ଟ କରାଯାଇଛି । ଏହି ଅଗ୍ନି ଉତ୍ସବ ଶାସନ ଗାଁମାନଙ୍କରେ ଏହିଦିନ ମନ୍ଦିର ବା ଗ୍ରାମର ଅଗ୍ନିକୋଣରେ ହୋଇଥାଏ । ଅନେକ ଶାସନ ଗାଁମାନଙ୍କ ମଶାଣି ମଧ୍ୟ ଗାଁର ଅଗ୍ନିକୋଣରେ ଦୂରେଇ ହୋଇ ରହିଛି । ଅଗ୍ନି ଉତ୍ସବ କେତେକ ଶାସନରେ ମଶାଣିର ପ୍ରବେଶ ପଥରେ ହେବାର ବିଧି ରହିଛି । ପୁରୀରେ ଦୋଳବେଦୀର ଅଗ୍ନିକୋଣରେ ନିର୍ମିତ ଅଗ୍ନିଗୃହ ଚାରିପଟେ ବିମାନ ସାତ ଥର ଅଗ୍ନି ପ୍ରଦକ୍ଷିଣ କରେ । ଆୟୁର୍ବେଦ ମତ ଅନୁଯାୟୀ 'ବସନ୍ତେ ଅଗ୍ନିସେବନ'

ଅର୍ଥାତ୍ ମାଘମାସ ପୂର୍ଣ୍ଣମୀଠାରୁ ଫଗୁଣ ମାସ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଅଗ୍ନିର ତାପ ରାତିରେ ସାମର୍ଥ୍ୟ ଅନୁଯାୟୀ ଗ୍ରହଣ କରିବା ଉଚିତ । ଶ୍ରୀଗୋବିନ୍ଦଙ୍କୁ ପୂଜା କରାଯାଇ ଅଗ୍ନିଙ୍କ ଚାରିପଟେ ଭ୍ରମଣ କରାଇବାର ବିଧି ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି । ସେଠାରେ ହେଉଥିବା ଭୋଗ ଓ ବନ୍ଦାପନାକୁ ରାଜାଗ୍ନି ଉତ୍ସବ ବିଧି କୁହାଯାଏ । ତା'ପରେ ଶ୍ରୀମନ୍ଦିରକୁ ଫେରନ୍ତି ।

ଦୋଳ ଉତ୍ସବ ବିଧି ଫଗୁଣମାସ ଦୋଳପୂର୍ଣ୍ଣମୀ ଦିନ ହୁଏ । ଶ୍ରୀଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀ ରତ୍ନସିଂହାସନ ଚାରିପଟେ ସାତଥର ପରିକ୍ରମା କରିବା ପରେ କଳାହାଟ ଦୁଆର ଦେଇ 'ନାଭିକଟା ମଣ୍ଡପ'କୁ ଯାତ୍ରା କରନ୍ତି । ନାଭିକଟା ମଣ୍ଡପରେ ମହାସ୍ନାନ, ମାଜଣା ହେବା ପରେ ଶୀତଳଭୋଗ ହୋଇ ବନ୍ଦାପନା ହୁଏ । ତାହା ପରେ ଏକ ସୁଶୋଭିତ ବିମାନରେ ଶ୍ରୀମନ୍ଦିର ଚାରିପଟେ ସାତବେଢ଼ା ବୁଲାଯାଏ । ଶେଷରେ ଦକ୍ଷିଣଦ୍ୱାର ଦେଇ ଶ୍ରୀମନ୍ଦିରକୁ ପ୍ରବେଶ କରି ବାଇଶି ପାହାଚ ଦେଇ ସିଂହଦ୍ୱାର ବାଟେ ଦୋଳବେଦୀକୁ ବିଜେ କରନ୍ତି । ଦୋଳବେଦୀ ନିକଟକୁ ଯାଇ ବେଦୀକୁ ସାତ ଥର ପରିକ୍ରମା କରି ଉପରକୁ ବିଜେ କରନ୍ତି । ସ୍କନ୍ଦପୁରାଣ ମତରେ ମଣ୍ଡପ ଉପରେ ସାତଥର, ଦୋଳିକୁ ସାତଥର ଏହିପରି ଏକୋଇଶି ବାର ପ୍ରଦକ୍ଷିଣ କରନ୍ତି । ଦୋଳମଣ୍ଡପକୁ ବୃନ୍ଦାବନ ରୂପେ ମନେ କରାଯାଇ ଶ୍ରୀକୃଷ୍ଣ ବସନ୍ତ ରାସରେ ଏକୋଇଶିବାର ପ୍ରଦକ୍ଷିଣ କରିଥିବାରୁ ଶ୍ରୀଦାରୁବ୍ରହ୍ମଙ୍କ ପ୍ରତିନିଧି ଶ୍ରୀଦୋଳଗୋବିନ୍ଦ ସେତିକି ଥର ପ୍ରଦକ୍ଷିଣ କରନ୍ତି ବୋଲି ଲୋକବିଶ୍ୱାସ ରହିଛି । ତା'ପରେ ଦୋଳିରେ ବସନ୍ତି । ଫଗୁଖେଳ ହୁଏ । ଏହି ଦିନ ରତ୍ନସିଂହାସନ ଉପରେ ଶ୍ରୀଜଗନ୍ନାଥଙ୍କୁ ରାଜାବେଶ କରାଯାଏ । ରାଜାବେଶ (ସୁନାବେଶ) ମଧ୍ୟ ଦୋଳ ଉତ୍ସବ ବିଧି ଅନ୍ତର୍ଭୁକ୍ତ ।

ହୋରି ଉତ୍ସବ ବିଧି ମହୋତ୍ସବର ଚତୁର୍ଥ ଚରଣ । ଚୈତ୍ରମାସ କୃଷ୍ଣ ପ୍ରତିପଦା ତିଥିରେ ଏହା ପାଳିତ ହୁଏ ।

ଏହି ଚାରୋଟି ଚରଣରେ ଦୋଳ ମହୋତ୍ସବ ସମାପ୍ତ ହେଉଥିଲେ ମଧ୍ୟ ଦୁଇଟି ତତ୍ତ୍ୱ ଏହା ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ। ଗୋଟିଏ ଶ୍ରୀଦୋଳଗୋବିନ୍ଦ ତତ୍ତ୍ୱ । ଅନ୍ୟଟି ଦୋଳବେଦୀ ତତ୍ତ୍ୱ ।

ଦୋଳବେଦୀ ତତ୍ତ୍ୱ– ଶ୍ରୀଜଗନ୍ନାଥ ଉପାସନାରେ ଦୋଳ ମହୋତ୍ସବର ଆରମ୍ଭ କାଳ ବହୁ ପ୍ରାଚୀନ । ଯେଉଁ ମହାପୁରାଣରେ ମହାପ୍ରଭୁ ଆବିର୍ଭୂତ ପ୍ରସଙ୍ଗ ରହିଛି, ସେହି ମହାପୁରାଣରେ କେତେକ ଯାତ୍ରା/ଉତ୍ସବର ବର୍ଣ୍ଣନା ରହିଛି । ମହାପ୍ରଭୁ ଆବିର୍ଭାବ କାଳରୁ ଦୋଳ ମହୋତ୍ସବ ଉପାସନାରେ ଅଙ୍ଗୀଭୂତ ହୋଇ ପ୍ରଚଳିତ ଅଛି । ମହୋତ୍ସବର ତୃତୀୟ ଚରଣରେ ଶ୍ରୀକୃଷ୍ଣ ତତ୍ତ୍ୱର ସମୀକରଣ ହୋଇଛି ସତ୍ୟ, ମାତ୍ର ଶ୍ରୀରାଧା ତତ୍ତ୍ୱ ନାହିଁ । ସେଠି ଗୋପୀତତ୍ତ୍ୱ ରହିଛି । ତେଣୁ ଶ୍ରୀରାଧାକୃଷ୍ଣ ତତ୍ତ୍ୱର ମିଳିତ ଉପାସନା ଆରମ୍ଭ ହେବା ସମୟରୁ ଦୋଳ ମହୋତ୍ସବ ଆରମ୍ଭ ହୋଇଛି ବୋଲି କହିବା ଯୁକ୍ତିଯୁକ୍ତ ମନେ ହେଉନାହିଁ । କାରଣ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଦୋଳିରେ 'ସୁରେଶ୍ୱରୀ' ବିଜେ କରନ୍ତି ଯେ କି ଦେବତାମାନଙ୍କ ଈଶ୍ୱରୀ ।

ଏହାର ଅନ୍ୟ ଏକ ଦିଗ ମଧ୍ୟ ବିଚାର କରିବା କଥା । ତୃତୀୟ ଚରଣରେ 'ଦୋଳବେଦୀ'କୁ ବୃନ୍ଦାବନରୂପେ ଗ୍ରହଣ କରିବାର ଯେଉଁ ବର୍ଣ୍ଣନା ରହିଛି ତାହା ପୂର୍ବରୁ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଅନ୍ୟ ନୀତି ରହିଛି । ଗୋଟିଏ ହେଲା ରତ୍ନସିଂହାସନ ପରିକ୍ରମା । ଦ୍ୱିତୀୟରେ 'ନାଭିକଟା ମଣ୍ଡପ'ରେ ନୀତି । ଏହି ଦୁଇଟି କଥାରୁ ଜଣାପଡୁଛି ଶ୍ରୀରାଧା–କୃଷ୍ଣ ଯୁଗଳ ଉପାସନା ତତ୍ତ୍ୱରୁ ଏହା ଭିନ୍ନ ଭିନ୍ନ ତତ୍ତ୍ୱର ନୀତି । ରତ୍ନସିଂହାସନ ପରିକ୍ରମା ଜଗତମୟ ଶ୍ରୀଜଗନ୍ନାଥଙ୍କର ପରିକ୍ରମା । ଜଗତର ମଙ୍ଗଳ କାମନା କଥାଟି ଅସଲ ଉଦ୍ଦେଶ୍ୟ । ନାଭିକଟା ମଣ୍ଡପ ଆନନ୍ଦର ଲୀଳାକ୍ଷେତ୍ର । ସେଠାରୁ ପରମ ଆନନ୍ଦ ବିତରଣର ଅୟମାରମ୍ଭ ।

ପ୍ରଥମେ ମହାପ୍ରଭୁଙ୍କର ଦୋଳବେଦୀ ଥିଲା ଶ୍ରୀମନ୍ଦିରର ପୂର୍ବ ଦିଗରେ ଥିବା ଦୋଳମଣ୍ଡପ ସାହିର ଅଙ୍ଗିରା ମହର୍ଷିଙ୍କ ଆଶ୍ରମ ନିକଟରେ । ମହାପ୍ରଭୁ ସ୍ୱୟଂ ସେଠାରେ ବିଜେ କରୁଥିଲେ ।

ମାଦଳାପାଞ୍ଜିରୁ ଜଣାଯାଉଛି ଗଉଡିଆ ଗୋବିନ୍ଦ ଦେବଙ୍କ ସମୟରେ ଦୋଳମଣ୍ଡପ ସାହି ଦୋଳବେଦୀର ଦୋଳିଟି ଛିଣ୍ଡି ପଡିଥିଲା । ମହାପ୍ରଭୁଙ୍କ ଶ୍ରୀବିଗ୍ରହ ବିଜେ କରିବା ତାହା ହିଁ ଥିଲା ଶେଷଥର । ତାହା ପରଠାରୁ ଶ୍ରୀଦୋଳଗୋବିନ୍ଦ ବିଜେ କରିବାର ପରମ୍ପରା ଆରମ୍ଭ ହୋଇଥିଲା । ଏଠାରେ ଅର୍ଥ ଗ୍ରହଣ କରିବା ଅନୁଚିତ ଯେ ଶ୍ରୀଗୋବିନ୍ଦ ଫଗୁଣମାସର ପ୍ରତିନିଧି ଦେବତା ହିସାବରେ ସେତେବେଳକୁ ନଥିଲେ । ୧୪୮୧ ମସିହାରେ ଗଜପତି ପୁରୁଷୋତ୍ତମ ଦେବ ଶ୍ରୀମନ୍ଦିରର ଉତ୍ତର–ପୂର୍ବ କୋଣରେ ନୂତନ ଦୋଳବେଦୀ ନିର୍ମାଣ କରାଇଥିଲେ, ଯାହା ଏବେ ପରିଦୃଶ୍ୟମାନ ।

ଶ୍ରୀଗୋବିନ୍ଦ ତତ୍ତ୍ୱ – ଶ୍ରୀଜଗନ୍ନାଥଙ୍କ ଉପାସନାରେ ଦୋଳ ମହୋତ୍ସବ ବହୁ ପ୍ରାଚୀନ । ସେହିପରି ଶ୍ରୀଦୋଳଗୋବିନ୍ଦ ତତ୍ତ୍ୱର ସମନ୍ୱୟ ମଧ୍ୟ ପ୍ରାଚୀନ । ଶ୍ରୀଗୋବିନ୍ଦଙ୍କୁ ସାକ୍ଷାତ ପୁରୁଷୋତ୍ତମ ଭାବରେ ଏକାଧିକ ଶାସ୍ତ୍ର ଗ୍ରହଣ କରିଛନ୍ତି । ଶ୍ରୀଗୋବିନ୍ଦ ତତ୍ତ୍ୱ 'ପରମଜ୍ୟୋତି' ତତ୍ତ୍ୱ ବୋଲି ବର୍ଣ୍ଣନା କରିବା ପରେ ସେହି ପ୍ରତିମା ସାକ୍ଷାତ୍ ପୁରୁଷୋତ୍ତମ ବୋଲି ପ୍ରକାଶ କରିଛନ୍ତି ।

ନୀଳାଦ୍ରି ମହୋଦୟ ଗ୍ରନ୍ଥ ବର୍ଣ୍ଣନାରୁ ଜଣାଯାଉଛି ଶ୍ରୀଗୋବିନ୍ଦ ତତ୍ତ୍ୱ ହେଉଛି ସାଧାରଣ ମଣିଷଟିଏ ପାଇଁ 'ପ୍ରୀତିଜନକ' ତତ୍ତ୍ୱ । ପ୍ରେମ ହିଁ ମଣିଷକୁ ଚତୁର୍ବର୍ଗ ଫଳ ଦେଇପାରେ ବୋଲି ଯେଉଁ ଆତ୍ମବିଶ୍ୱାସ, ତାହା ଏହି ଗ୍ରନ୍ଥ ସ୍ପଷ୍ଟ ଭାବରେ ଜଣେଇ ଦେବା ପରେ ଜଣାଯାଉଛି ଶ୍ରୀଗୋବିନ୍ଦତତ୍ୱ ହେଉଛି 'ଚତୁର୍ବର୍ଗ ଫଳଦାୟକ ତତ୍ତ୍ୱ' (୩୪/୩) । ସେ ହେଉଛନ୍ତି ପରମାନନ୍ଦ । ଯଥାର୍ଥରେ ମହାପୁରୁଷ ଅଚ୍ୟୁତାନନ୍ଦ 'ବାରମାସୀ କୋଇଲି'ରେ ତାହା ଲେଖିଛନ୍ତି– 'ଫଗୁଣ ମାସରେ ଦୋଳଗୋବିନ୍ଦ । ଫଗୁ ଖେଳୁଛନ୍ତି ପରମାନନ୍ଦ ।'

ଶ୍ରୀଜଗନ୍ନାଥଙ୍କର ଏଗାର ଜଣ ପ୍ରତିନିଧି ଦେବତା ରହିଛନ୍ତି। ଏମାନେ ମହାପ୍ରଭୁଙ୍କ ଆଜ୍ଞା ପାଇବା ପରେ ମହାପ୍ରଭୁଙ୍କ ପ୍ରତିନିଧି ହୁଅନ୍ତି । ଶ୍ରୀଗୋବିନ୍ଦ ଫଗୁଣ ମାସର ପ୍ରତିନିଧି ହୁଅନ୍ତି । ଏହି ବ୍ୟବସ୍ଥା ପ୍ରାଚୀନ । ଫଗୁଣ ମାସର ଶୁକ୍ଳ ଏକାଦଶୀ ପାପନାଶିନୀ ଏକାଦଶୀ ଭାବରେ ପ୍ରସିଦ୍ଧ । ଶ୍ରୀମନ୍ଦିର ଉପାସନାରେ ସମସ୍ତ ଏକାଦଶୀ ନୀତିରେ ଶ୍ରୀମଦନମୋହନ ମହାପ୍ରଭୁଙ୍କର ପ୍ରତିନିଧିତ୍ୱ କରନ୍ତି। ମାତ୍ର ପାପନାଶିନୀ ଏକାଦଶୀ ତିଥିରେ ଶ୍ରୀଗୋବିନ୍ଦ ହିଁ ପ୍ରତିନିଧିତ୍ୱ କରନ୍ତି । ଏହିଦିନ ମହାପ୍ରଭୁଙ୍କଠାରୁ ଆଜ୍ଞାମାଳ ପାଇବା ପରେ ଜୟବିଜୟ ଦ୍ୱାରକୁ ବିଜେ କରନ୍ତି । ବିମାନରେ ଶ୍ରୀଜଗନ୍ନାଥ ବଲ୍ଲଭ ମଠକୁ ଯାଇ ସେଠାରେ ଦୋଳ ମହୋତ୍ସବର ପ୍ରଥମଚରଣ ନୀତି ସାରି ବାହୁଡି ଆସନ୍ତି ।

ଶ୍ରୀଶଙ୍କରାଚାର୍ଯ୍ୟ ଶ୍ରୀଗୋବିନ୍ଦଙ୍କର ୨୧ ତତ୍ତ୍ୱ ନିରୂପଣ କରିଛନ୍ତି । ଶ୍ରୀକୃଷ୍ଣ ତତ୍ତ୍ୱ ସହିତ ସେ ସମନ୍ୱୟ କରିଛନ୍ତି । ଗୋବିନ୍ଦ ହେଉଛନ୍ତି– ସତ୍ୟ, ଜ୍ଞାନ, ଅନନ୍ତ ଓ ନିତ୍ୟ । ଆକାଶସ୍ୱରୂପ । ସେ ପରମାନନ୍ଦମୟ । ତ୍ରିଭୁବନର ଆଧାର ସ୍ତମ୍ଭ । ତ୍ରିକାଳ ଗତିର କାରଣରୂପେ ଆଦିଶଙ୍କର ତାହାଙ୍କୁ ନିରୂପଣ କରିବା ସହିତ କହିଛନ୍ତି– କଳିଯୁଗ ଦୋଷ ନଷ୍ଟକାରୀ । ସମସ୍ତ ଦୋଷ ବିନଷ୍ଟ ହେବା ପରେ ସେ ଆନନ୍ଦ ଦାନ କରନ୍ତି । ସେ ସମସ୍ତ ଶୁଭ ଗୁଣର ସାଗର । ମୁନି ହୃଦୟ ବନ୍ଦନୀୟ ।

ଶେଷରେ ସେ ଶ୍ରୀଗୋବିନ୍ଦଙ୍କୁ ଅଚ୍ୟୁତ, ମାଧବ, ବିଷ୍ଣୁ ଓ ଗୋକୁଳ କୃଷ୍ଣଙ୍କ ସହିତ ସମନ୍ୱିତ କରି କହିଛନ୍ତି ଯେ ଗୋବିନ୍ଦ ତତ୍ତ୍ୱରେ ଭକ୍ତ ଅନ୍ତଃକରଣରେ ବିଦ୍ୟମାନ ପରମ ଆନନ୍ଦର ଅମୃତ ରୂପ ଗୋବିନ୍ଦଙ୍କୁ ପାଇଥାଏ । ସେହିପରି 'ଅଚ୍ୟୁତାଷ୍ଟକ'ରେ ସେ ଅଚ୍ୟୁତଙ୍କ ସହିତ ଗୋବିନ୍ଦଙ୍କୁ ସମନ୍ୱୟ କରିଛନ୍ତି । ଶ୍ରୀବିଲ୍ୱମଙ୍ଗଳାଚାର୍ଯ୍ୟ ଶ୍ରୀଗୋବିନ୍ଦ ତତ୍ତ୍ୱକୁ ଦାମୋଦର ଓ ମାଧବ ତତ୍ତ୍ୱ ସହ ସମନ୍ୱିତ କରିଛନ୍ତି ।

ତତ୍ତ୍ୱରୁ ଲୋକାଚାର–

ଶ୍ରୀ ଆଦିଶଙ୍କରାଚାର୍ଯ୍ୟ, ଶ୍ରୀବ୍ରହ୍ମାନନ୍ଦସ୍ୱାମୀ ଓ ବିଲ୍ୱମଙ୍ଗଳାଚାର୍ଯ୍ୟ ଶ୍ରୀଗୋବିନ୍ଦଙ୍କର ଯେଉଁ ସ୍ୱରୂପ ନିରୂପଣ କରିଛନ୍ତି, ତାହା କେବଳ ଗଭୀର ଅଧ୍ୟୟନରୁ ଯେ କହିଛନ୍ତି ତାହା ନୁହେଁ, ତାହା ଅନୁଭବ ଓ ଆତ୍ମ ଉପଲବ୍ଧିର କଥା । ଆମେ ଶାସ୍ତ୍ରର କେତେକ ଉଦାହରଣ ବିଚାର କରିବା । ଯେଉଁଥିରୁ ସ୍ପଷ୍ଟ ହୋଇଯିବ ଯେ ସେମାନଙ୍କ ଅଧ୍ୟୟନ ଓ ଉପଲବ୍ଧି କେତେ ଗଭୀର ଥିଲା ।

ବାସ୍ତବରେ ଶ୍ରୀଗୋବିନ୍ଦ ତତ୍ତ୍ୱର ଶରୀର ବୋଲି 'ବେଦ'କୁ କହିପାରିବା । ସେହିପରି ଶ୍ରୀଗୋବିନ୍ଦ ତତ୍ତ୍ୱର ଆତ୍ମା ହେଉଛି ତନ୍ତ୍ରଦର୍ଶନ । ରୁଦ୍ରଯାମଳ ତନ୍ତ୍ରରେ କୁହାଯାଇଛି 'ଗୋବିନ୍ଦୋ ବିଶ୍ୱଜନନୀ ମହାବିଷ୍ଣୁମହେଶ୍ୱରୀ' (୪୨/୧୬), ଅର୍ଥାତ୍ ଶ୍ରୀଗୋବିନ୍ଦ ହେଉଛନ୍ତି ବିଶ୍ୱସ୍ରଷ୍ଟା ।

ଏଠାରେ ପ୍ରସଙ୍ଗ ହେଉଛି 'ରାକିଣୀ ତତ୍ତ୍ୱ' । ରାକିଣୀତତ୍ତ୍ୱ ହେଉଛି କୁଣ୍ଡଳୀବଧୂ । ଅର୍ଥାତ୍ ତନ୍ତ୍ରର କୁଣ୍ଡଳିନୀ ଶକ୍ତିର ବୋହୂ ହେଉଛି ରାକିଣୀତତ୍ତ୍ୱ । ସେଥିରେ କୁହାଯାଇଛି ରାକିଣୀ ହେଉଛନ୍ତି 'ଗୋବିନ୍ଦରାମରମଣୀ' । ଏଠି ତ ସ୍ପଷ୍ଟ ହେଉଛି ଶ୍ରୀଗୋବିନ୍ଦ ହିଁ ପରମାତ୍ମା । ଏହି ତନ୍ତ୍ରରେ ଶ୍ରୀଗୋବିନ୍ଦ ହେଉଛନ୍ତି ଭବସିନ୍ଧୁ ତାରଣକର୍ତ୍ତା ଓ ମାୟା ଅପହରଣକାରୀ ।

କେବଳ ପରମାତ୍ମା ପରିକଳ୍ପନାରେ ଭବସିନ୍ଧୁ ପାର ହେବା ସମ୍ଭବ । ତେଣୁ ଗୋବିନ୍ଦ ହେଉଛନ୍ତି ବାସ୍ତବରେ ପରମାତ୍ମା ତତ୍ତ୍ୱ ବୋଲି ତନ୍ତ୍ର ପ୍ରତିପାଦନ କରିଛନ୍ତି ।

ବ୍ରହ୍ମାଙ୍କର ଏହି ସ୍ତୋତ୍ରରେ କଳ୍ପବୃକ୍ଷ ଓ ଶତସହସ୍ର ଲକ୍ଷ୍ମୀଙ୍କ ଦ୍ୱାରା ପରିସେବିତ ପ୍ରତି ଆମର ଦୃଷ୍ଟି ଦେବା କଥା । କାରଣ ଏହା ପରେ ପରେ ବ୍ରହ୍ମାଙ୍କ ପ୍ରାର୍ଥନାରୁ ଜଣାପଡୁଛି ଏହି ଆଦିପୁରୁଷ ଶ୍ରୀଗୋବିନ୍ଦ ହିଁ ପରମାତ୍ମା । ଶ୍ରୀଗୋବିନ୍ଦ ତତ୍ତ୍ୱ ହେଉଛି ଆଦିପୁରୁଷ ତତ୍ତ୍ୱ । ଶ୍ରୀବିଷ୍ଣୁଙ୍କର ୨୪ ତତ୍ତ୍ୱ ଗ୍ରହଣ କରାଯାଇଛି । ଏହି ଚବିଶ ତତ୍ତ୍ୱର ଚତୁର୍ଥ ତତ୍ତ୍ୱ ହେଉଛି ଶ୍ରୀଗୋବିନ୍ଦତତ୍ତ୍ୱ । ପ୍ରଥମ ତତ୍ତ୍ୱଶ୍ରୀକେଶବ ତତ୍ତ୍ୱ । ତାପରେ ଶ୍ରୀନାରାୟଣ ତତ୍ତ୍ୱ । ଶ୍ରୀନାରାୟଣ ତତ୍ତ୍ୱ ପରେ ଶ୍ରୀମାଧବ ତତ୍ତ୍ୱ । ତାହାପରେ ଶ୍ରୀଗୋବିନ୍ଦ ତତ୍ତ୍ୱ ।

ଏଥିରୁ ସବୁ ତତ୍ତ୍ୱଗୁଡିକ ଶ୍ରୀଜଗନ୍ନାଥ ଚେତନା ସହିତ ସମ୍ପୃକ୍ତ । ଏହି ତତ୍ତ୍ୱ ବ୍ୟତିରେକ ଶ୍ରୀକୃଷ୍ଣ ତତ୍ତ୍ୱ ମଧ୍ୟ ରହିଅଛି । ଶ୍ରୀକୃଷ୍ଣ ତତ୍ତ୍ୱ ଓ ଶ୍ରୀଗୋବିନ୍ଦ ତତ୍ତ୍ୱ ମଧ୍ୟରେ ତାଦାତ୍ମ୍ୟ ଭାବ ଥିବାରୁ ଅନେକ ସ୍ଥଳରେ ମଥୁରା କୃଷ୍ଣ ଓ ଦ୍ୱାରକା କୃଷ୍ଣତତ୍ତ୍ୱଙ୍କ ଆଲୋଚକମାନେ ଶ୍ରୀଗୋବିନ୍ଦ ତତ୍ତ୍ୱରେ ସମାହିତ କରିଛନ୍ତି । ସେଇ ଦୃଷ୍ଟିକୋଣକୁ ଆଧାର କରି

କେହି କେହି ଶ୍ରୀମନ୍ଦିର ଉପରଜଂଘାର ପୀଢ ମୁଣ୍ଡରେ ଥିବା ବେଣୁ ବାଦନରତ ଶ୍ରୀକୃଷ୍ଣ ବିଗ୍ରହଙ୍କୁ ଶ୍ରୀଗୋବିନ୍ଦ ବିଗ୍ରହ ବୋଲି ମତ ଦେଇଛନ୍ତି । ମାତ୍ର ସେହି ବିଗ୍ରହ ତଥା ଶ୍ରୀଜଗନ୍ନାଥଙ୍କ ପ୍ରତିନିଧିରୂପେ ଦକ୍ଷିଣିଘରେ ବିରାଜିତ ଶ୍ରୀଗୋବିନ୍ଦଙ୍କ ବିଗ୍ରହତତ୍ତ୍ୱ ଏକ ନୁହେଁ ଯଥେଷ୍ଟ ଫରକ ଅଛି । ଶ୍ରୀଜଗନ୍ନାଥଙ୍କ ଉପାସନାରେ ଦୁଇଭୁଜଧାରୀ ଶ୍ରୀଗୋବିନ୍ଦ ଯୁଗଳ ବିଗ୍ରହ ନୁହଁନ୍ତି । ଏଠି ଶ୍ରୀରାଧାଙ୍କ ସ୍ଥିତି ମୋଟେ କଳ୍ପନା ହିଁ କରାଯାଇନାହିଁ । ସବୁଠାରେ ଶ୍ରୀଦେବୀ ଓ ଭୂଦେବୀ ରହିଛନ୍ତି । ତାହାହିଁ ବୈଷ୍ଣବତନ୍ତ୍ର ବା ପାଞ୍ଚରାତ୍ର ଆଗମ 'ଲକ୍ଷ୍ମୀତନ୍ତ୍ର' (୨୬/୧୬)ରେ ସ୍ୱୀକାର କରାଯାଇଛି । ଲକ୍ଷ୍ମୀତନ୍ତ୍ର ଅନୁସାରେ ଜୀବାତ୍ମା ଓ ପରମାତ୍ମାର ଏକୀଭୂତ ସତ୍ତା ହେଉଛନ୍ତି ଶ୍ରୀ ଓ ଗୋବିନ୍ଦ । ଗୃହରେ ଗୃହିଣୀ ପରି ଶ୍ରୀ ହେଲେ ଶ୍ରୀଗୋବିନ୍ଦଙ୍କର ଗୃହିଣୀ । ଦାରୁବ୍ରହ୍ମଙ୍କ ଆଜ୍ଞାମାଳ ପାଇ ଶ୍ରୀଗୋବିନ୍ଦ ଲୀଳା କରୁଥିବାରୁ ଶ୍ରୀଦେବୀ ଗୃହିଣୀ ହେବା ସ୍ୱାଭାବିକ।

ନୀଳାଦ୍ରିମହୋଦୟ (୨୪ ଅଧ୍ୟାୟ)ରେ ଶ୍ରୀଗୋବିନ୍ଦଙ୍କ ଧ୍ୟାନ ରହିଅଛି । ଶ୍ରୀଗୋବିନ୍ଦ ଦୋଳିରେ ବସିବା ପରେ ଯେଉଁ ପ୍ରାର୍ଥନା ହୁଏ ସେଥିରେ ରହିଛି– 'ଗୋବିନ୍ଦ ପ୍ରୀତିଦାୟକମ୍, ଗୋବିନ୍ଦଂ ମୋକ୍ଷଦାୟକମ୍ ।' ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗରେ ପ୍ରଜାପତି ବ୍ରହ୍ମା ଏହି ଧ୍ୟାନ ରହସ୍ୟକୁ ପ୍ରକାଶ କରିଥିଲେ । ଦୁଇଟିଯାକ ଶବ୍ଦ ଯଥା ପ୍ରୀତିଦାୟକ ଓ ମୋକ୍ଷଦାୟକ ତନ୍ତ୍ରଦର୍ଶନ ଦୃଷ୍ଟିରୁ ସମ–ପର୍ଯ୍ୟାୟର ଶବ୍ଦ । ତନ୍ତ୍ରଦର୍ଶନରେ 'ପ୍ରେମଯୋଗ'କୁ ମୋକ୍ଷପ୍ରାପ୍ତିର ଏକ ମାର୍ଗରୂପେ ଅର୍ଥାତ୍ 'ପ୍ରେମଯୋଗ' ରୂପେ ଗ୍ରହଣ କରିଥିବାରୁ ପ୍ରେମଯୋଗରେ ମଧ୍ୟ ମୋକ୍ଷପ୍ରାପ୍ତି ସମ୍ଭବ ବୋଲି ଏଠାରେ ବି ପ୍ରଜାପତି ବ୍ରହ୍ମା ସୂଚେଇ ଦେଲେ । ତେଣୁ ସୁରେଶ୍ୱରୀ ଶ୍ରୀଦେବୀ ତାଙ୍କ ସହିତ ଉପାସନା କାଳରେ ସ୍ଥାନ ପାଆନ୍ତି । ଶ୍ରୀ ଦାରୁବ୍ରହ୍ମଙ୍କଠାରୁ ଆଜ୍ଞାମାଳ ପାଇବା ପରେ ଯେଉଁ ପରମାତ୍ମା ଭବସିନ୍ଧୁ ପାର କରାଇବାର ସାମର୍ଥ୍ୟ ରଖୁଛନ୍ତି, ତାଙ୍କ ପାଖରେ ଦେବତାମାନଙ୍କ ଈଶ୍ୱରୀ ହିଁ ସ୍ଥାନ ପାଇବା କଥା ସ୍ଥାନ ପାଇଛନ୍ତି ।

ଶ୍ରୀମନ୍ଦିରରେ ଥିବା 'ନାଭିକଟା ମଣ୍ଡପ' ସହିତ ଦୋଳ ମହୋତ୍ସବର ତୃତୀୟ ଚରଣ ସଂପୃକ୍ତ । ସେଦିନ ଶ୍ରୀଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀ ଯାଆନ୍ତି । ସେଠାରେ ସେମାନଙ୍କର ମାଜଣା ହୁଏ । ନାଭିକଟା ମଣ୍ଡପ ଶ୍ରୀକୃଷ୍ଣ ତତ୍ତ୍ୱର ଏକ ଲୀଳାମଣ୍ଡପ । ଏଠି ଶ୍ରୀକୃଷ୍ଣଙ୍କର ଜନ୍ମଲୀଳା, ନନ୍ଦୋତ୍ସବ ଲୀଳା, ବାଳକେଳି ଲୀଳା, ବଣଭୋଜି ଲୀଳା, ବକାସୁର ଓ ଅଘାସୁର ବଧ ଲୀଳା, କୋଳିବିକା ଲୀଳା, କାଳୀୟଦଳନ ଲୀଳା, ପ୍ରଳମ୍ବାସୁରବଧ ଲୀଳା, ଧେନୁକାସୁରବଧ ଲୀଳା, କୃଷ୍ଣବଳରାମବେଶ ଲୀଳା ହୁଏ ।

ଶ୍ରୀଗୋବିନ୍ଦ ଦୋଳଲୀଳା କରିବାକୁ ଯିବା ପୂର୍ବରୁ ଏହି ଲୀଳା ମଣ୍ଡପରେ ଯେଉଁ ନୀତି ହୁଏ ତାକୁ ଶ୍ରୀମନ୍ଦିର ଶବ୍ଦରେ ବନକଲାଗି ଲୀଳା ବା ମାଜଣା ବା ବେଶଲୀଳା କହିବା ଯୁକ୍ତିଯୁକ୍ତ। ଏହି ଲୀଳାମଣ୍ଡପକୁ ଯିବାର ଅର୍ଥ ନୁହେଁ ଯିଏ ଶ୍ରୀକୃଷ୍ଣ ସିଏ ଶ୍ରୀଗୋବିନ୍ଦ । ତେବେ ତ ଶ୍ରୀକୃଷ୍ଣ ସାରା ଭାରତରେ ଦୋଳଲୀଳା ସହ ସମ୍ପୃକ୍ତ ରହୁଥିବାରୁ ଏଠି ବି ସେ ଅନ୍ୟାନ୍ୟ ନୀତିରେ ଶ୍ରୀଦାରୁବ୍ରହ୍ମଙ୍କଠାରୁ ଆଜ୍ଞାମାଳ ନେଇ ଯାଉଥିବା ଭଳି ଆଜ୍ଞାମାଳ ନେଇ ଦୋଳିକୁ ଯାଇଥାନ୍ତେ ! ମାତ୍ର ଏହାର ଅନ୍ତର୍ନିହିତ ରହସ୍ୟକୁ ଭେଦ କରିବାକୁ ପଡିବ ଆମକୁ । ସାରା ଭାରତରେ ଶ୍ରୀକୃଷ୍ଣଙ୍କୁ ନେଇ ଦୋଳ ଉତ୍ସବ ପ୍ରସାରଲାଭ କରିବାର ବହୁ ପୂର୍ବରୁ ଶ୍ରୀଗୋବିନ୍ଦଙ୍କୁ ନେଇ ଅର୍ଥାତ୍ ଶ୍ରୀଗୋବିନ୍ଦ ତତ୍ତ୍ୱ ହିଁ ଶ୍ରୀମନ୍ଦିରରେ ଦୋଳ ମହୋତ୍ସବରେ ସାମିଲ ହୋଇସାରିଥିଲା । ଯାହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସମସ୍ତଙ୍କ ହିତ ଓ ସମସ୍ତଙ୍କର ସୁଖ । ବାସ୍ତବରେ ଗୋପୀନାଥ ତତ୍ତ୍ୱର କ୍ରମବିକାଶ ହେଉଛି ଶ୍ରୀଗୋବିନ୍ଦ ତତ୍ତ୍ୱ । ତାହା ଗୋପାଳ ତାପନୀ ଉପନିଷଦରୁ ସ୍ପଷ୍ଟ ହୁଏ ।

ଅନେକ ଆଲୋଚକ ପରିଦୃଶ୍ୟମାନ ମନ୍ଦିରର କାରୁକାର୍ଯ୍ୟରେ ଶ୍ରୀଗୋବିନ୍ଦଙ୍କ ବିଗ୍ରହ ଦେଖି ୧୩ ଶତାବ୍ଦୀ ବେଳକୁ ଶ୍ରୀଗୋବିନ୍ଦ ତତ୍ତ୍ୱର ବିକାଶ ଘଟିଥିଲା ବୋଲି ମତ ଦିଅନ୍ତି । ବର୍ତ୍ତମାନର ମନ୍ଦିର ଶ୍ରୀଜଗନ୍ନାଥଙ୍କର ଅଷ୍ଟମ ମନ୍ଦିର । ତା'ପୂର୍ବ ମନ୍ଦିର ଗାତ୍ରରେ ଶ୍ରୀଗୋବିନ୍ଦ ବିଗ୍ରହ ନଥିଲେ ବୋଲି ଆମେ କହିପାରିବା କି ? ଶ୍ରୀମନ୍ଦିର ଉପାସନାରେ ଯେଉଁଠି ମହାରାଜ ଇନ୍ଦ୍ରଦ୍ୟୁମ୍ନ ଶ୍ରୀଗୋବିନ୍ଦଙ୍କ ଉପାସନା ସହିତ ଜଡିତ ଥିବାର ବର୍ଣ୍ଣନା ମିଳୁଛି, ସେଠି ପରେ ବିକାଶଲାଭ କରିଛି ବୋଲି କହିବା ପାଇଁ ଆମକୁ ଭାବିବାକୁ ପଡିବ । ତେଣେ ୧୩ଶ ଶତାବ୍ଦୀର ୪୦୦ ବର୍ଷ ପୂର୍ବରୁ ଅର୍ଥାତ୍ ୯ମ ଶତାବ୍ଦୀର ୨ୟ ଦଶକରେ ଆଦିଶଙ୍କରାଚାର୍ଯ୍ୟ ପୁରୁଷୋତ୍ତମ କ୍ଷେତ୍ରରେ ମହୋଦଧିରେ ମହାଗୋବିନ୍ଦ ଦ୍ୱାଦଶୀ ସ୍ନାନଯୋଗ ଅବସରରେ ଆସିଥିଲେ ବୋଲି ଆମେ ଭୁଲିଯାଇଛେ । ସମ୍ରାଟ ଯଯାତିକେଶରୀ ମଧ୍ୟ ଆସିଥିଲେ । ଦୁହିଁଙ୍କର କ୍ଷେତ୍ରରେ ଭେଟ ହୋଇଥିଲା । ୧୪୪ବର୍ଷ ଧରି ସୋନପୁରରେ ପାତାଳି ଲୀଳା କରିଥିବା ମହାପ୍ରଭୁଙ୍କୁ ଶ୍ରୀମନ୍ଦିରକୁ ଆଣିଥିଲେ । ତେଣୁ ଶ୍ରୀଗୋବିନ୍ଦ ତତ୍ତ୍ୱର ଉପାସନା ଏଠାରେ ବିକାଶଲାଭ ନକରି ସମଗ୍ର ଭାରତବର୍ଷରେ ଏପରି ଏକ ମହୋଦଧିରେ ସ୍ନାନଯୋଗ ପୁଣି ଗୋବିନ୍ଦଙ୍କ ନାମରେ ପ୍ରଚଳିତ ହୋଇନଥାନ୍ତା ! ପଣ୍ଡିତ ଶତାନନ୍ଦଙ୍କ ଶ୍ଳୋକଟି ସ୍ପଷ୍ଟ କରେ ଯେ ମୂଳରୁ ଶ୍ରୀଗୋବିନ୍ଦ ନିଶ୍ଚିତ ଭାବରେ ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି

ଭାବରେ ଦୋଳ ଉତ୍ସବରେ ସାମିଲ ଥିଲେ । ସେ ଲେଖିଛନ୍ତି– 'ଫାଲ୍‌ଗୁନେ ପୌର୍ଣ୍ଣମାସ୍ୟାଂ ତୁ କାର୍ଯ୍ୟଃ ଫଲ୍‌ଗୁ ମହୋତ୍ସବଃ, ଗୋବିନ୍ଦ ଦୋଳୟା କ୍ରୀଡେ... ।' ପଣ୍ଡିତ ଶତାନନ୍ଦଙ୍କର 'ରତ୍ନମାଳା'ର ଲିଖିତ ସମୟ ୧୦୯୯ଖ୍ରୀ–୧୧୦୫ ଖ୍ରୀଷ୍ଟାବ୍ଦ । ଅତଏବ ସେତେବେଳେ ଶ୍ରୀଗୋବିନ୍ଦ ହିଁ ଦୋଳୋତ୍ସବରେ ସମ୍ପୃକ୍ତ ଥିଲେ । ମହାପ୍ରଭୁ ସ୍ୱୟଂ ବିଜେ କରୁଥାଇ ପାରନ୍ତି । ଦୋଳି ଛିଡିଥାଇ ପାରେ, ତା'ପରେ ହୁଏତ ମହାପ୍ରଭୁ ସ୍ୱୟଂ ବିଜେ କରି ନଥାଇ ପାରନ୍ତି ମାତ୍ର ଶ୍ରୀଗୋବିନ୍ଦ ମୂଳରୁ ଦୋଳୋତ୍ସବ ସହ ସଂପୃକ୍ତ ଥିଲେ, ଏବେ ବି ଅଛନ୍ତି ।

ସେଥିପାଇଁ ଓଡ଼ିଶାର ପ୍ରାତଃସ୍ମରଣୀୟ ଅତିବଡି ଜଗନ୍ନାଥ ଦାସ ଲେଖିଥିଲେ–

ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ । ପଦୁ ଗଳୁଛି ମକରନ୍ଦ ॥
ସେ ମକରନ୍ଦ ପାନ କରି । ହେଲେ ତରିଲେ ବ୍ରଜନାରୀ ॥

ସେ ନିଜକୁ ବ୍ରଜନାରୀ ପର୍ଯ୍ୟାୟରେ ଗଣୁଥିଲେ । ଶ୍ରୀଗୋବିନ୍ଦ ତତ୍ତ୍ୱର ବାସ୍ତବ ରହସ୍ୟକୁ ଜଣେ ସମ୍ପୂର୍ଣ୍ଣ ଭାବରେ ହଜମ ନକଲେ ଏପରି ସାର ନିର୍ଯ୍ୟାସର ବାଣୀ ମୁହଁରୁ ବାହାର କରିବା କଷ୍ଟ ।

ଦିନେ ଶ୍ରୀଗୋବିନ୍ଦ ତତ୍ତ୍ୱର ପ୍ରଚାର ପ୍ରସାର ସଭିଙ୍କୁ ଏପରି ପ୍ରଭାବିତ କରିଥିଲା ଯେ ମହାଜନମାନେ ଏହି ତତ୍ତ୍ୱକୁ ଶୈବ ଉପାସନାରେ ପହଞ୍ଚାଇବାରେ ସଫଳ ହୋଇଥିଲେ । ମାଧମ ଥିଲା 'ହରିହର ଉପାସନା' । ବୈଷ୍ଣବ ଓ ଶୈବ ଉପାସନାର ମିଳିତ ଉପାସନା । ସେହି ଉପାସନାର ଉଦାରବାଦୀ ଚିନ୍ତାଧାରାରେ ଶ୍ରୀଗୋବିନ୍ଦ ଦିନେ ଶୈବ ଉପାସନାରେ 'ଶ୍ରୀଗୋବିନ୍ଦ ଭୈରବ' ରୂପେ ଉପାସିତ ହେଲେ । ଜ୍ଞାନତତ୍ତ୍ୱର ଭକ୍ତିତତ୍ତ୍ୱ ସହିତ ଏହି ଯେଉଁ ମହାମିଳନ, ତାହା ସମ୍ପୂର୍ଣ୍ଣ ଓଡ଼ିଶାର ନିଜସ୍ୱ ଚିନ୍ତାଧାରା । ଏହା ସର୍ବଭାରତୀୟ ସ୍ତରରେ ସହାବସ୍ଥାନର ନୂତନ ସୂତ୍ରରୂପେ ଚମକେଇ ଦେଇଥିଲା ।

ଗବେଷଣା ଅଧିକାରୀ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ–୭୫୨୦୦୩

# ଶୁଭହେଉ ଘୋଷଯାତ୍ରା

**ଡକ୍ଟର ସୁନାମଣି ରାଉତ**

ଚକାଆଖି ମେଲି ଦେଖୁଛ ଠାକୁରେ
ପତିତ ଜନର ଦୁଃଖ
ଶ୍ରୀମନ୍ଦିରେ ବସି ହସି ଦେଉଅଛ
କରୁଛ ଅଳସ ସୁଖ ।
ପତିତ ପାବନ ବାନା ଉଡାଉଛ
କାହାପାଇଁ ପ୍ରଭୁ କୁହ ?
ପତିତ ଜନର ଦୁଃଖ ଘୁଞ୍ଚୁନାହିଁ
ଶୁଖୁ ନାହିଁ ଆଖି ଲୁହ ।
ଦିନରାତି ଖଟି ପେଟ ପୂରୁନାହିଁ
ଦି'ଓଳି ଜଳୁନି ଚୁଲି
ବାର ଦୁଆରରେ ଭିକ୍ଷା ଥାଳ ଧରି
ପୂରୁନି ଭିକାରୀ ଝୁଲି ।
ଛତିଶା ନିଯୋଗ, ଛପନ ପଉଟି



ନିତି ଖଞ୍ଜା ତୁମ ପାଇଁ
ସାଆନ୍ତେ ବୋଲାଇ ସୁଖରେ ରହିଛ
ଆହେ ମୋ' ଜଗତ ସାଇଁ ।
ବାରମାସେ ତେର ଯାତରା ଲାଗିଛି
କୋଉଥିକି ନାହିଁ ଦକା
ତମରି କାନରେ ପଡୁନିକି ପ୍ରଭୁ
ଦୁଃଖୀର ଆକୁଳ ଡକା ?
ଆଜି ବାହାରିଛ ମାଉସୀ ଘରକୁ
ଆନନ୍ଦର ନାହିଁ ମାତ୍ରା
ବିନୀତ ଗୁହାରି କରୁଛୁ ସାଆନ୍ତେ
ଶୁଭ ହେଉ ଘୋଷଯାତ୍ରା ।

ରାଜା ବଗିଚା, କଟକ–୯

# ଭଞ୍ଜ ସାହିତ୍ୟରେ ଶ୍ରୀଜଗନ୍ନାଥ ଦର୍ଶନ

ଡକ୍ଟର ସୁରେଶ ଚନ୍ଦ୍ର ପଣ୍ଡା

ଆର୍ଯ୍ୟଭୂମି ଭାରତବର୍ଷ ଧାର୍ମିକ ତଥା ଆଧ୍ୟାତ୍ମିକ ଚେତନାର ଚାରଣ କ୍ଷେତ୍ର । ଏଥିସହ ଏହାର ସାଂସ୍କୃତିକ ଐତିହ୍ୟ ଓତଃପ୍ରୋତ ଭାବେ ଜଡ଼ିତ ହୋଇଥିବାବେଳେ ଜନଜୀବନରେ ମଧ୍ୟ ଧର୍ମର ଉତ୍କର୍ଷତା ସ୍ପଷ୍ଟ ଭାବେ ପ୍ରତିବିମ୍ବିତ । ଏହି ପରମ୍ପରାକୁ ସୁରକ୍ଷିତ ରଖି ପ୍ରାଚୀନ କାଳରୁ ଅଦ୍ୟାବଧି ସାରସ୍ୱତ ସ୍ରଷ୍ଟାଗଣ ନିଜନିଜର ସୃଷ୍ଟି ମଧ୍ୟରେ ଧର୍ମୀୟ ମାହାତ୍ମ୍ୟର ବିଶେଷତ୍ୱ ପ୍ରତିପାଦନ କରି ସମାଜରେ ଦେବାଦେବୀଙ୍କ ଠାରେ ଭକ୍ତି, ଅନ୍ୟମାନଙ୍କ ପ୍ରତି ସେବା, ବିନମ୍ରତା, ବାତ୍ସଲ୍ୟ ମମତା, ପ୍ରେମାନୁରାଗ, ଏକନିଷ୍ଠ ପତିବ୍ରତ୍ୟ, ସତ୍ୟସନ୍ଧତା, ଭ୍ରାତୃଭକ୍ତି, ପିତୃଭକ୍ତି ଗୁଣଗୁଡ଼ିକର ମୂଲ୍ୟବୋଧ ସମ୍ପର୍କରେ ବିଭିନ୍ନ ଦୃଷ୍ଟାନ୍ତ ଦେଇଯାଇଛନ୍ତି । ସେହିପରି ସର୍ବଧର୍ମ ସମନ୍ୱୟର ଲୀଳଭୂମି ଉତ୍କଳ ପ୍ରଦେଶର ଆରାଧ୍ୟଦେବ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମାଗାନ ଓଡ଼ିଆ ସାହିତ୍ୟର ଛତ୍ରେଛତ୍ରେ ଫୁଟି ଉଠିଛି । ଆଦିକବି ସାରଳା ଦାସଙ୍କ ଠାରୁ ଆରମ୍ଭ କରି ପଞ୍ଚସଖା ଯୁଗର ସାହିତ୍ୟରଥିଗଣ ଏବଂ ପରବର୍ତ୍ତୀ ରୀତିଯୁଗର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଏବଂ ତତ୍‌ପରବର୍ତ୍ତୀ ଯୁଗର ଅନ୍ୟାନ୍ୟ କବିଙ୍କ ଲେଖନୀରେ ଓଡ଼ିଆ ଜାତିର ଆରାଧ୍ୟଦେବ ଶ୍ରୀଜଗନ୍ନାଥଙ୍କ ମହିମାଗାନ ଶତମୁଖର ହୋଇଉଠିଛି । କେବଳ ଓଡ଼ିଆ ସାହିତ୍ୟରେ ନୁହେଁ ସଂସ୍କୃତ ସାହିତ୍ୟରେ ମଧ୍ୟ ଏହାର ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ସୁତରାଂ ଭାରତର ଚାରିଧାମ ମଧ୍ୟରେ ପୁରୁଷୋତ୍ତମ ଧାମର ମହତ୍ତ୍ୱ ସ୍ୱତନ୍ତ୍ର ଓ ଅସାଧାରଣ । ରୀତିଯୁଗର ଆଦ୍ୟ ଉଦ୍‌ଗାତା ଘୁମୁସର ଭଞ୍ଜବଂଶର କୁଳଚନ୍ଦ୍ରମା ଓଡ଼ିଆ ସାହିତ୍ୟ ଜଗତର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଜଗନ୍ନାଥ ସଂସ୍କୃତିର ସାରକଥାକୁ ନିଖୁଣ ଭାବେ ବର୍ଣ୍ଣନା କରି ଏତେ ଶତଜିହ୍ୱ ହୋଇଛନ୍ତି ଯେ ସାହିତ୍ୟ ରସ ପିପାସୁର ମନୋଭୂମିକୁ ଭକ୍ତିରସରେ ପ୍ଳାବିତ କରିବାର ପରାକାଷ୍ଠା ଦେଖାଇବାରେ ମଧ୍ୟ ସମର୍ଥ ହୋଇଛନ୍ତି । କବିଙ୍କ ସାରସ୍ୱତ ସମ୍ଭାରର ମଣି ବୈଦେହୀଶ ବିଳାଶରେ ଆଧ୍ୟାତ୍ମିକ ଜୀବନ ଦର୍ଶନର ବିଶେଷତ୍ୱ ପ୍ରତିପାଦନ ହୋଇଥିବା ବେଳେ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, କଳା କଉତୁକ, ରସଲେଖା, ରସିକ ହାରାବଳୀ ପ୍ରଭୃତିରେ କବିଙ୍କ ଜୀବନ ଦର୍ଶନର ଆଧ୍ୟାତ୍ମିକ ପର୍ଯ୍ୟାୟଗୁଡ଼ିକ ଅନୁରୂପ ଭାବେ ଚିତ୍ରିତ ହୋଇଛି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ରସିକ ହାରାବଳୀର ପୁରୁଷୋତ୍ତମ (ସ୍ୱୟଂନାରାୟଣ)ଙ୍କର ସ୍ନାନଯାତ୍ରା ଆଦିର ବର୍ଣ୍ଣନା ଏବଂ ଶ୍ରୀକ୍ଷେତ୍ରର ଅନିର୍ବଚନୀୟ ମହିମା କୀର୍ତ୍ତନରେ ସେ ବିଭୋର ହୋଇ ଉଠିଛନ୍ତି । ଜଗନ୍ନାଥ ବିଗ୍ରହରେ ସେ 'ଦାରୁବ୍ରହ୍ମ ସୁରୂପାୟ ଚତୁର୍ଦ୍ଧା ମୂର୍ତ୍ତିୟେ ନମଃ'ର ମହତ୍ତ୍ୱ ଉପଲବ୍ଧି କରିଛନ୍ତି ଜଣେ ପରମ ଭକ୍ତ ଓ ଗଭୀର ଆଧ୍ୟାତ୍ମିକତାର ଉପାସକ ଭାବରେ । କବି ତାଙ୍କ ଅନ୍ୟତମ ଶ୍ରେଷ୍ଠ କୃତୀ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଶ୍ରୀଜଗନ୍ନାଥଙ୍କର ମହିମା ଓ ମହତ୍ୱକୁ ପ୍ରକାଶ କରି ପ୍ରଥମ ଛାନ୍ଦର ପ୍ରାରମ୍ଭରେ ଗାଇଉଠିଛନ୍ତି–

ଶୁଣକୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ । (୧)

ଅର୍ଥାତ୍ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ର ହେଉଛି ଭାରତବର୍ଷର ଏକ ପବିତ୍ର ଧାମ ଏଠାରେ ନାରାୟଣ ଦେହବନ୍ତ ହୋଇ ପୁରୁଷୋତ୍ତମ ନାମରେ ବିଦ୍ୟମାନ । ଅତଏବ କବି ପୁରୁଷୋତ୍ତମ କ୍ଷେତ୍ରରେ ବୈଶିଷ୍ଟ୍ୟ ଚିତ୍ରଣ କରିବାରେ ଆପଣାର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି । ପୁରୀ ଶଙ୍ଖନାଭିମଣ୍ଡଳ ବା ଶଙ୍ଖକ୍ଷେତ୍ର ନାମରେ ପ୍ରସିଦ୍ଧ । ଜଗନ୍ନାଥ ନିଜେ ନାରାୟଣ ପୁରୁଷୋତ୍ତମ । ତାଙ୍କ ନାମାନୁସାରେ ପୁରୀ ପୁରୁଷୋତ୍ତମ କ୍ଷେତ୍ର ରୂପରେ ସୁବିଦିତ !

ଶ୍ରୀଜଗନ୍ନାଥ କ୍ଷେତ୍ରରେ ମାହାତ୍ମ୍ୟ ଦେବାକୁ ଯାଇ କବି ପୁଣି କହନ୍ତି–

ଶ୍ରୀମହାପ୍ରସାଦ ଗଦ ପଦ ଘଣ୍ଟଘୋଷ
ଭକ୍ଷଣେ ପ୍ରବଣେ ଯେ କଳବିଷ ନାଶହେ
ଉନ୍ନତ ପ୍ରସାଦରାଜ ପତାକା ଉଡାଇ
ଏ ପ୍ରଦେଶେ ସମବର୍ତ୍ତୀ ପଣ ନାହିଁ ନାହିଁ ହେ ।

ଅର୍ଥାତ୍ ସାପ ବିଷ ଛଡ଼ାଇବା ପାଇଁ ଗୁଣିଆ ଗଦ ଖୁଆଇଥାଏ ଏବଂ ମନ୍ତ୍ରର ପଦ ଉଚ୍ଚାରଣ କରିଥାଏ । ପୁରୀର ମହାପ୍ରସାଦ ଗଦସ୍ୱରୂପ ଏବଂ ମନ୍ଦିର ଘଣ୍ଟ ଧ୍ୱନି ହେଉଛି ପଦ । ଅତଏବ ମହାପ୍ରସାଦ ସେବନ ଏବଂ ଘଣ୍ଟ ଧ୍ୱନି ଶ୍ରବଣରେ ମଣିଷ ପାପ ନଷ୍ଟ ହୁଏ ।

କହିବାକୁ ଗଲେ କବି ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପ୍ରଥମ ଛାନ୍ଦଟି ଶ୍ରୀଜଗନ୍ନାଥ ବନ୍ଦନାରେ ଉଚ୍ଛଳ । ଏଥିରେ ସେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ, ଜଗନ୍ନାଥ ତତ୍ତ୍ୱ ତୀର୍ଥ ରହସ୍ୟ ତଥା ଶ୍ରେଷ୍ଠ ଯାତ୍ରା, ସ୍ନାନ ଯାତ୍ରାର ଯେପରି ଅବିସ୍ମରଣୀୟ ବିବରଣୀ ପ୍ରଦାନ କରିଛନ୍ତି ତାହାକୁ ଜଗନ୍ନାଥଙ୍କ ପ୍ରଶସ୍ତିରେ ଗୋଟିଏ ସଂକ୍ଷେପ ସଂସ୍କରଣ ମଧ୍ୟ କୁହାଯାଇପାରେ । ଶ୍ରୀକ୍ଷେତ୍ରକୁ କମ୍ବୁକଟକ ରୂପେ ଅର୍ଥାତ୍ ଶଂଖକ୍ଷେତ୍ର ରୂପେ ବର୍ଣ୍ଣନା କରି ଏହି ପବିତ୍ର କ୍ଷେତ୍ରରାଜର ରାଜା ଶ୍ରୀଜଗନ୍ନାଥ ଚାରିବର୍ଣ୍ଣର ଭକ୍ତ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ରଙ୍କୁ ଚଉବର୍ଗ ଧର୍ମ, ଅର୍ଥ, କାମ ମୋକ୍ଷ ରୂପ ପ୍ରଦାନ କରିବାରେ ନିପୂଣ ବୋଲି ବର୍ଣ୍ଣନା କରି ମହାପ୍ରଭୁଙ୍କ ମହିମାକୁ ବହୁଗୁଣିତ କରିଛନ୍ତି । ଭଞ୍ଜଙ୍କ ଭାଷାରେ-

ସେ କମ୍ବୁ-କଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।

(କୋ.ବ୍ର.ସୁ ୧/୧୨)

କବି ସମ୍ରାଟ ଶ୍ରୀଜଗନ୍ନାଥଙ୍କୁ ପ୍ରକୃତି ଓ ପୁରୁଷର ଅର୍ଥାତ୍ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ରୂପେ ମଧ୍ୟ ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ-

ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ,
ବୈଷ୍ଣବ ବିହୁନେ କେହୁଜାଣିବ ସଂସାରେ ।

(୧/୧୩)

ଜଗତ ବା ପ୍ରକୃତି ସ୍ୱରୂପିଣୀ ଶ୍ରୀରାଧାଙ୍କ ସହ ନାଥ ବା ବ୍ରହ୍ମରୂପୀ ଶ୍ରୀକୃଷ୍ଣଙ୍କ ମିଳନାତ୍ମକ ବିଗ୍ରହ ହେଉଛନ୍ତି ଶ୍ରୀଜଗନ୍ନାଥ । ଅର୍ଥାତ୍ ସେ ହେଉଛନ୍ତି ଉଭୟ ରାଧା ଓ କୃଷ୍ଣଙ୍କର ମିଳାନାତ୍ମକ ଦିବ୍ୟମୂର୍ତ୍ତି । ଏହି ତଥ୍ୟ ବୈଷ୍ଣବମାନେ ଜାଣନ୍ତି ଏବଂ ତାଙ୍କୁ ଉଭୟ ନାରୀ ଓ ପୁରୁଷ ରୂପେ ଗ୍ରହଣ କରି ଉପାସନା କରିବା ସହ ମହାପ୍ରଭୁଙ୍କୁ ନାକଚଣା, ମଥାମଣି, ଆଦି ବିଭିନ୍ନ ପାଟ ପଟନିରେ ଭୂଷିତ କରିଥାନ୍ତି ।

ଉତ୍କଳ ପରମ୍ପରାର ଠାକୁର ଜଗନ୍ନାଥ ମହାପ୍ରଭୁଙ୍କ ସ୍ନାନୋତ୍ସବର ମାହାତ୍ମ୍ୟ ସୁଦୂର ପରିବ୍ୟାପ୍ତ । ଉଭୟ ସ୍ନାନଯାତ୍ରା ଓ ରଥଯାତ୍ରାରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଭାଗ୍ୟରେ ଥିଲେ ମିଳେ । ଏହାଦ୍ୱାରା କୋଟିପୁଣ୍ୟ ମିଳିଥାଏ । ଭକ୍ତଟିଏ ଯଦି ଅନ୍ୟ ଦିନରେ ଜଗନ୍ନାଥଙ୍କ ଦର୍ଶନରୁ ବଞ୍ଚିତ ହୁଏ ତେବେ ଏହି ଉଭୟ ଉତ୍ସବରେ ସେ ମହାପ୍ରଭୁଙ୍କ ଦର୍ଶନ କରିଥାଏ । ଏଣୁ ସେ ହେଉଛନ୍ତି ପତିତପାବନ, କବି ଶ୍ରୀହର୍ଷ ତାଙ୍କ ନୈଷଧ କାବ୍ୟରେ ୫/୮୯ ଶ୍ଳୋକରେ ସ୍ନାନଯାତ୍ରା ନିମନ୍ତେ ଭଗବାନଙ୍କୁ ମଧୁସୂଦନ ବୋଲି କହିଛନ୍ତି । ରଥରେ ବାମନ ମୂର୍ତ୍ତିଙ୍କର ଉତ୍ସବ ହୋଇଥାଏ । କିନ୍ତୁ ଶ୍ରୀଜଗନ୍ନାଥଙ୍କ ମଧୁସୂଦନ ନାମ ଚାପ ବା ଚନ୍ଦନଯାତ୍ରା ରୂପେ ପ୍ରସିଦ୍ଧ ।

କବି ଉପେନ୍ଦ୍ର ଭଞ୍ଜଙ୍କ ଦୃଷ୍ଟିରେ ଜଗନ୍ନାଥ ଓ ବଳଭଦ୍ର ହେଉଛନ୍ତି ହସ୍ତୀଯୁଗଳ । ଜଗନ୍ନାଥ ଦକ୍ଷିଣ କୁଞ୍ଜର ବା ଦକ୍ଷିଣ ଦିଗ ହସ୍ତୀ କୃଷ୍ଣବର୍ଣ୍ଣର ବାମନ' ଏବଂ ବଳଭଦ୍ର ଶୁଭ୍ରବର୍ଣ୍ଣା ଐରାବତ ହସ୍ତୀ । ସେବକମାନେ ଉଭୟଙ୍କୁ ଝୁଲାଇ ଝୁଲାଇ ପହଣ୍ଡି ବିଜେ କରାଇଥାନ୍ତି । ଅର୍ଥାତ୍ ପାପୀମାନଙ୍କ ଉଦ୍ଧାର କରିବା ପାଇଁ ଉଭୟ ଏହି ଯାତ୍ରାରେ ବାହାରନ୍ତି ।

ଉପେନ୍ଦ୍ର ଭଞ୍ଜ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ବର୍ଣ୍ଣନାରେ ଯେ କେବଳ ପାଟବତା ଦେଖାଇଛନ୍ତି ତା'ନୁହେଁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବର୍ଣ୍ଣନାରେ ମଧ୍ୟ ସେ ମୁଖର ହୋଇଉଠିଛନ୍ତି ।

କବି ସୁଭଦ୍ରା ପରିଣୟ କାବ୍ୟର ପ୍ରଥମ ଛାନ୍ଦର ପ୍ରାରମ୍ଭରେ ଶ୍ରୀଜଗନ୍ନାଥଙ୍କୁ ବହୁ ଆଶ୍ଚର୍ଯ୍ୟରେ କ୍ଷେତ୍ରରାଜ ରୂପେ ବର୍ଣ୍ଣନା କରିଛନ୍ତି । ତୀର୍ଥରାଜ ମହୋଦଧି ସମୁଦ୍ର ତଟରେ ଶ୍ରୀପୁରୁଷୋତ୍ତମ ନାମରେ ଥିବା କ୍ଷେତ୍ରରେ ପ୍ରବେଶ ମାତ୍ରେ ମଣିଷର ବ୍ରହ୍ମ ଇତ୍ୟାଦି ସମସ୍ତ ପାପମୋଚନ ହୁଏ । ଏହା କପାଳଲୋଚନ ନାମକ ମହାରୁଦ୍ରଙ୍କ ଆଖ୍ୟାନରୁ ପ୍ରମାଣିତ ହୋଇଛି ।

ରସିକ ହାରାବଳୀ କାବ୍ୟରେ ଶ୍ରୀକ୍ଷେତ୍ରର ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି କ୍ଷେତ୍ରରାଜ ପୁରୁଷୋତ୍ତମ କଥା ଶ୍ରବଣେ ମାତ୍ରେ ଲୋକମାନଙ୍କ ଦୁଃଖ ନାଶ ହୁଏ, କଡ଼ାଏ କଉଡ଼ିର ମହାପ୍ରସାଦ କିଣି ସେବନ କରିବା ଦ୍ୱାରା ଯେଉଁ ନଗରେ ମୁକ୍ତି ଲାଭ ହୁଏ ସେହି ନଗର ଏହି ପୁରୁଷୋତ୍ତମ । ପାପୀମାନେ ବଡ଼ଦେଉଳରେ ଥିବା କଳ୍ପବଟ ଛାୟାରେ ବିଶ୍ରାମ କରି ଜଗନ୍ନାଥଙ୍କ

ଭାବନା ଭିତରେ ମୁକ୍ତିଲାଭ କରନ୍ତି । ବଡ଼ ଦେଉଳକୁ ଯମଦୂତମାନେ ମଧ୍ୟ ଭୟ କରନ୍ତି । ବଡ଼ଦେଉଳ ଉପରେ ଉଡୁଥିବା ପତାକା ଉଡୁଥିବା ବେଳେ ସତେ ଯେମିତି ପ୍ରତୀକ ହୁଏ ପାପୀମାନଙ୍କୁ ଏହା ଡ଼ାକି କହୁଛି ନୀଳଗିରି ନଗରକୁ ଆସ ତୁମକୁ ନିଷ୍ପାପ କରାଇଦେବା । କବିଙ୍କ ଭାଷାରେ–

ଯେଉଁ କ୍ଷେତ୍ର ରାଜା ବିରାଜମାନ ମକର ଧ୍ୱଜେ
ଶ୍ରବଣ ଚରିତ ତୁରିତ ଜନ ପୁରିତ ଗଞ୍ଜେ ।

ଯେବଣ କଟକେ ଛଟକେ ବିରାଟ କେ ମୁରତି
ମହାପ୍ରସାଦରେ ସାଦରେ ଜନମାନେ ଲଭନ୍ତି ।

ଅକ୍ଷଅକ୍ଷ ପବଟର ଯହିଁ ଛାୟା ଆଶ୍ରିତ
କକ୍ଷକକ୍ଷ ନର କିନ୍ନର ତରିଲା ମତ ।

ଜୟ ଜୟ ଜଗନ୍ନାଥ ଦାରୁ ରୂପଧାରୀ
ନୀଳଗିରି ଶାଗରୀଶ ବନ୍ଦନୀୟ ହରି ।

ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କୁ ଅବା
ଏ ନୀଳ ନର ନଗରୀକୁ ଆସ ଭଲ କରିବା ।

(ର.ହା–୩/୧)

କବି ଏଥିରେ ମହାପ୍ରଭୁଙ୍କ ଦାରୁରୂପ, ନୀଳଗିରି, ମହାବାହନ ଗରୁଡ଼, ମହାପ୍ରସାଦ ପ୍ରଭୃତିର ସୂଚନା ଦେଇଛନ୍ତି ।

କବିଙ୍କ 'ବ' ଅନୁପ୍ରାସରେ ରଚିତ ବୈଦେହୀଶ ବିଳାଶ ପ୍ରଥମ ଛାନ୍ଦର ପ୍ରଥମ ପାଦରେ ମହାପ୍ରଭୁ ଜଗନ୍ନାଥଙ୍କ ଠାରେ 'ଓଁ ଗଣେ ରୁଦ୍ରେ ନାରାୟଣେ ଅମ୍ବିକେ ଭାସ୍କରେ ତଥା'ର ପରିକଳ୍ପନା କରି ଶୈବଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୂର୍ଯ୍ୟ ଆଦିଙ୍କ ସାମ୍ୟରୂପ ଦେଖାଇଛନ୍ତି ଜଗନ୍ନାଥଙ୍କଠାରେ ।

କବିଙ୍କ ରଚିତ ସମସ୍ତ ରଚନା ମଧ୍ୟରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ସୁଭଦ୍ରା ପରିଣୟ, ପ୍ରେମ ସୁଧାନିଧି, ରସିକ ହାରାବଳୀ, ବୈଦେହୀଶ ବିଳାଶ, ଶ୍ରୀନୀଳାଦ୍ରୀଶ ଚଉତିଶାରେ ସବୁଥିରେ ଜଗନ୍ନାଥ ଦର୍ଶନର ଭରି ଭରି ଦୃଷ୍ଟାନ୍ତ ରହିଛି । ତେବେ ନୀଳାଦ୍ରୀଶ ଚଉତିଶାରେ କବି ଶ୍ରୀଜଗନ୍ନାଥଙ୍କୁ ଯେପରି ଓଁ କାରମୟ ଓ ଓଁକାର ସର୍ବସ୍ୱ ଭାବରେ ବିରଳ ଚିତ୍ରଣ କରିଛନ୍ତି, ଓଡ଼ିଆ ସାହିତ୍ୟ ଏପରିକି ଭାରତୀୟ ସାହିତ୍ୟରେ ମଧ୍ୟ ଏହା ଦୃଷ୍ଟିଗୋଚର ହୁଏ ନାହିଁ । ଜଗନ୍ନାଥ ଓଁ ର ପରିପ୍ରକାଶ ଯାହା ଅଭ୍ରମର ସମ୍ଭାରରେ ଗଠିତ ଯେଉଁଥିରେ ସର୍ବଧର୍ମ ସର୍ବତତ୍ତ୍ୱ ନିହିତ ଅଛି ଭାରତୀୟ ସନାତନ ଧର୍ମର ମନ୍ତ୍ର ମଧ୍ୟରେ ଓଁ ହେଉଛି ଶ୍ରେଷ୍ଠ ଓ ଭାବୋଦ୍ଦୀପକ, ଓଁ କାର କେବଳ ଏକ ଧ୍ୱନି ନୁହେଁ ବରଂ ଏହା ସଂସାରର ଦିବ୍ୟରୂପ, ଆଦି ତତ୍ତ୍ୱ । ଉପେନ୍ଦ୍ରଭଞ୍ଜ ଜଗନ୍ନାଥ ମହାପ୍ରଭୁଙ୍କୁ ଓଁ କାର ମନ୍ତ୍ର ସାର ଏବଂ ଓଁ କାର ସର୍ବଜ୍ଞାନ ଓ ଓଁକାର ଅପ୍ରକଟ ସ୍ୱର, ଓଁକାର ବ୍ରହ୍ମର ପ୍ରତୀକ ରୂପେ ବର୍ଣ୍ଣନା କରି ଜଗନ୍ନାଥ ତତ୍ତ୍ୱର ବିଶ୍ଳେଷଣ ମାଧ୍ୟମରେ ଜନମୁଖର କରିବାରେ ସମର୍ଥ ହୋଇପାରିଛନ୍ତି । କବିଙ୍କ ଭାଷାରେ–

'ଓଁକାର ମନ୍ତ୍ରସାର ଓଁକାର ଅଘହର,
ଓଁକାର ଆକାର ଧରିଲ

ଓଁକାର ବର୍ଣ୍ଣମାତ୍ରା ଓଁ କାର ସର୍ବଜ୍ଞାତା,
ଓଁକାର ବ୍ରହ୍ମରୂପ ନେଲ, ହେ ନୀଳାଦ୍ରୀଶ ।

ଓଁକାର ଅପ୍ରକଟ ସ୍ୱର,
ଓଁକାର, ବ୍ରହ୍ମର ବିକାର

ଓଁକାର ତତ୍ତ୍ୱବାରି ଓଁ କାର ନିର୍ବିକାରୀ,
ଓ କରିଲେ ଓ କର ।'

ସଂଗୀତ ସମ୍ରାଟ ଭକ୍ତକବି ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟି ସାଗର ମଧ୍ୟରେ ଶ୍ରୀ ନୀଳାଦ୍ରୀଶ ଚଉତିଶା ଏକ କ୍ଷୁଦ୍ରକାବ୍ୟ ହେଲେ ହିଁ ନୀଳଗିରି ପତି ଜଗନ୍ନାଥ ମହାପ୍ରଭୁଙ୍କ ମାହାତ୍ମ୍ୟର ସମସ୍ତ ବୈଭବ ବର୍ଣ୍ଣନା ଏହାକୁ ଲୋକପ୍ରିୟ କରିପାରିଛି, ଜନମାନସରେ ଆଧାତ୍ମିକ ସ୍ପନ୍ଦନ ସୃଷ୍ଟି କରି ସହୃଦୟ ବେଦର ମାନ୍ୟତା ଲାଭ କରିଛି । ଚଉତିଶାର ଅନ୍ତିମ ପଦରେ ଜଗନ୍ନାଥଙ୍କ ପାଦତଳେ ଶରଣାପନ୍ନ ହୋଇ ସଂସାର ଜଞ୍ଜାଳରୁ ମୁକ୍ତି ପାଇଁ ଯେପରି ପ୍ରାର୍ଥନା କରିଛନ୍ତି, ତାହା କବି ସମ୍ରାଟଙ୍କ ବିନମ୍ର ଏବଂ ସମର୍ପଣର ଭାବନା, ତାଙ୍କ କବି ପ୍ରାଣର ଭକ୍ତିମତ୍ତା ଓ ଆଧାତ୍ମିକ ନିଷ୍ଠାର ସ୍ୱଷ୍ଟ ଉପଲବ୍ଧି ମାତ୍ର । ଏହିପରି ଭଞ୍ଜ ସାହିତ୍ୟର କୋଣ ଅନୁକୋଣରେ ଭରିରହିଛି ଜଗନ୍ନାଥ ତତ୍ତ୍ୱର ଦର୍ଶନ । ଲାଗେ ଯେମିତି ଜଗନ୍ନାଥ ଚେତନା କଳିଙ୍ଗର ଧର୍ମ ଓ ସାଂସ୍କୃତିକ ଭାବଧାରାର ପ୍ରତୀକ ଯାହା ବ୍ୟତିରେକେ ଓଡ଼ିଆଙ୍କର ସ୍ଥିତି ନାହିଁ । ସୁତରାଂ କହିବା ବାହୁଲ୍ୟ ଯେ ଉପେନ୍ଦ୍ର ଭଞ୍ଜ କେବଳ ଅଳଙ୍କାର, ଶବ୍ଦ ପାଣ୍ଡିତ୍ୟ ଓ ଗତାନୁଗତିକ ବର୍ଣ୍ଣନା ପ୍ରଭାରେ ନିଜକୁ ସୀମିତ ନରଖି ଜଗନ୍ନାଥ ମହାପ୍ରଭୁଙ୍କ ଧର୍ମ, ସଂସ୍କୃତି ଓ ଚେତନାର ଉଚ୍ଚ ସ୍ତରୀୟ ବର୍ଣ୍ଣନା କରି ଉତ୍କଳୀୟ ସଂସ୍କୃତିର ବଳିଷ୍ଠ ପୃଷ୍ଠପୋଷକତା ସହ ସମାଜ ସଂସ୍କାର, ଜନଜୀବନରେ ନୈତିକତାର ବିକାଶ ନିମନ୍ତେ ଯେଉଁ ଅବିସ୍ମରଣୀୟ ପ୍ରୟାସ କରିଯାଇଛନ୍ତି, ତାହା ତାଙ୍କୁ ଚିର ଅମର କରିରଖିବ ।

କଳିଙ୍ଗ ନଗର, ଭଞ୍ଜନଗର

# ଶ୍ରୀମନ୍ଦିରରେ ଅଖଣ୍ଡମେକାପ ସେବା

ମହୀମୋହନ ତ୍ରିପାଠୀ

ପୁରୀ ଶ୍ରୀଜଗନ୍ନାଥ ମନ୍ଦିର (ଶ୍ରୀମନ୍ଦିର)ର ସ୍ୱତ୍ୱଲିପି (ରେକର୍ଡ ଅଫ୍ ରାଇଟସ୍)ରେ ୧୧୯ ପ୍ରକାର ସେବା ଉଲ୍ଲେଖ ରହିଛି । ସେଥିମଧ୍ୟରୁ ୧୬ ନମ୍ବର ସେବା ହେଲା– ଅଖଣ୍ଡ ମେକାପ ସେବା । ଏହି ସେବାର ନିୟମ, ସେବକର ଯୋଗ୍ୟତା ଓ ପ୍ରାପ୍ୟ ପାଉଣା ବିସ୍ତୃତ ଭାବରେ ସ୍ୱତ୍ୱଲିପିରେ ଲିପିବଦ୍ଧ ହୋଇଛି । ସଂକ୍ଷେପରେ ସୂଚନା ଦେବାକୁ ହେଲେ ଏହି ସେବାର ନିୟମ ହେଲା ମୁଖ୍ୟ ମନ୍ଦିର ବା ବଡଦେଉଳରେ, ଗୁଣ୍ଡିଚା ମନ୍ଦିରରେ ଦିଅଁମାନେ ଅବସ୍ଥାନ କରୁଥିବା ବେଳେ ଅଖଣ୍ଡ ବଇଠା ବା ଦୀପମାନ ଜାଳି ଆଲୋକିତ କରୁଥିବା ସେବକ । ଦଣ୍ଡଛତ୍ର ଓ ରାଜନୀତି ସେବା ହେଉଥିବା ସମୟରେ ଏହି ସେବକ ବଇଠା ଧରି ମହାପ୍ରଭୁ ଜଗନ୍ନାଥଙ୍କ ପଟରେ ଠିଆ ହୁଅନ୍ତି । ଏହି ସେବକ ବ୍ରାହ୍ମଣଙ୍କ ସେବା ବଂଶାନୁକ୍ରମିକ ଓ ଶାଢୀବନ୍ଧା ।



ପ୍ରତିନିତ୍ୟ ଶ୍ରୀମନ୍ଦିରର ଦ୍ୱାରଫିଟା ନୀତି ସକାଶେ ପାଞ୍ଚଜଣ ବିଭିନ୍ନ ସେବାର ସେବକଙ୍କ ଉପସ୍ଥିତି ଆବଶ୍ୟକ ହୁଏ । ସେମାନେ ହେଲେ ପ୍ରତିହାରୀ, ଭିତରଛୁ ମହାପାତ୍ର, ମୁଦୁଲି, ପାଳିଆ ମେକାପ ଓ ଅଖଣ୍ଡ ମେକାପ । ଦ୍ୱାରଫିଟା ଓ ମଙ୍ଗଳ ଆଳତି ସମୟରେ ଏହି ସେବକ ଭିତରଛୁ ମହାପାତ୍ର ଓଗେରଙ୍କ ସହିତ ବଡଦେଉଳ ଭିତରକୁ ଯାଇ ଆବଶ୍ୟକ ସ୍ଥାନରେ ବଇଠା ଦେଖାନ୍ତି ଓ ବସାନ୍ତି । ସକାଳେ ଅବକାଶ ପରେ ଓ ମଇଲମ ସମୟରେ ଅଖଣ୍ଡ ମେକାପ ଅଖଣ୍ଡ ବଇଠା ବସାନ୍ତି । ଏହା ରାତ୍ରି ପହୁଡ ପର୍ଯ୍ୟନ୍ତ ଜଳିବା ନିୟମ ବୋଲି ସ୍ୱତ୍ୱଲିପିରେ ଲେଖାଅଛି ।

'ବଇଠା' ଶବ୍ଦର ଅର୍ଥ ପ୍ରଦୀପ/ପ୍ରଦୀପର ଆସ୍ଥାନ । ଅଖଣ୍ଡ ବଇଠା ଅର୍ଥ ଅଖଣ୍ଡବତୀ । 'ଅଖଣ୍ଡ' ଅର୍ଥ ଖଣ୍ଡିଆ ହୋଇନଥିବା ବା ଲଗାଏତ ଭାବରେ ବ୍ୟାପି ରହିଥିବା ନିରବଚ୍ଛିନ୍ନ, ଅହୋରାତ୍ର ପ୍ରଜ୍ୱଳିତ ପ୍ରଦୀପ । କିନ୍ତୁ ଶ୍ରୀମନ୍ଦିରରେ ଜଳା ଯାଉଥିବା ଅଖଣ୍ଡବତୀ ରାତ୍ରି ପହୁଡ ଯାଏ ଜଳଯିବା ନିୟମ । ତେଣୁ ଏହି ଅଖଣ୍ଡବତୀକୁ ନିରବଚ୍ଛିନ୍ନ ଜଳୁଥିବା ବତୀ କୁହାଯିବା ଠିକ୍ ନୁହେଁ ।

ଶ୍ରୀମନ୍ଦିରରେ ଅଖଣ୍ଡ ପ୍ରଦୀପ ପାଇଁ ଆବଶ୍ୟକ ତେଲ (ରାଶିତେଲ) ଶ୍ରୀମନ୍ଦିର ପ୍ରଶାସନ ଯୋଗାଇଥାନ୍ତି । ଏହି ତେଲର ଗୋଟିଏ ବିଚିତ୍ର ନାମ ଅଛି । ତାହା ହେଲା 'ମଥାଦହି' । (ମଥାଦହି–ତେଲ, ରାଶିତେଲ । ଶୀତଳକାରୀ ଗୁଣ ଯୋଗୁ ମଥା ଦହି କୁହାଯାଇଛି । ଏହା ପୁରୀ ବୋଲି) ।

ଶ୍ରୀଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ସେବକ ଖଟଣୀ ନିଯୋଗ କର୍ଣାଙ୍ଗୀ' (ଖୋର୍ଦ୍ଧା ଭୋଇବଂଶର ଗଜପତି ରାମଚନ୍ଦ୍ର ଦେବ ୧ମ, ମତାନ୍ତରେ ୨ୟଙ୍କ ରାଜତ୍ୱ ବେଳେ ପ୍ରସ୍ତୁତ)ରେ ଅଖଣ୍ଡ ମେକାପ (ଅଖଣ୍ଡନିକାପ) ସେବା ସମ୍ପର୍କରେ ଲେଖାଅଛି– 'ଏ ମଥା ଦହି ସମ୍ପାଦିବ ।' ଗଜପତି ରାମଚନ୍ଦ୍ର ଦେବ (୧ମ)ଙ୍କର ରାଜତ୍ୱ କାଳ ଥିଲା ଖ୍ରୀଷ୍ଟାବ୍ଦ ୧୫୬୮ରୁ ୧୬୦୦ ଏବଂ ରାମଚନ୍ଦ୍ର ଦେବ (୨ୟ)ଙ୍କର ରାଜତ୍ୱ କାଳ ଥିଲା ଖ୍ରୀଷ୍ଟାବ୍ଦ ୧୭୨୭ରୁ ୧୭୩୬ ପର୍ଯ୍ୟନ୍ତ ।

'ଅଖଣ୍ଡ'ର ଅନ୍ୟନାମ ରତ୍ନଦୀପ । ଅଖଣ୍ଡମେକାପ ସେବକ ସମ୍ପର୍କରେ ଚକ୍ରଧର ମହାପାତ୍ରଙ୍କ ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ ପୁସ୍ତକରେ ଲେଖାଅଛି ଯେ ଅଖଣ୍ଡ ମେକାପ ଦୁଆର ଫିଟା ଠାରୁ ପହୁଡଯାଏ ରତ୍ନଦୀପ (ଅଖଣ୍ଡ)ର ଦାୟିତ୍ୱ ନିଅନ୍ତି ଏବଂ ପ୍ରଦୀପ ଜଳାନ୍ତି ।

ଖ୍ରୀଷ୍ଟାବ୍ଦ ୧୮୦୩ରେ ବ୍ରିଟିଶମାନେ ଓଡ଼ିଶା ଜୟ କଲାପରେ ପୁରୀର କଲେକ୍ଟର ସି.ଗ୍ରୋମ୍ ୧୦.୬.୧୮୦୫ ତାରିଖରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ଏବଂ ବ୍ୟାପାର ସମ୍ପର୍କରେ ଗୋଟିଏ ଦୀର୍ଘ ରିପୋର୍ଟ ସରକାରଙ୍କ ନିକଟକୁ ପଠାଇଥିଲେ । ସେଥିରୁ ଜଣାଯାଏ ଯେ ସେତେବେଳେ ଶ୍ରୀମନ୍ଦିରରେ ୨୫୦ ପ୍ରକାର ସେବା ପ୍ରଚଳିତ ଥିଲା । ସେଥିମଧ୍ୟରୁ ଅଖଣ୍ଡ ମେକାପ ସେବା ଥିଲା ଅନ୍ୟତମ । କିନ୍ତୁ କୌଣସି ସେବାର ବିବରଣୀ ଉକ୍ତ ରିପୋର୍ଟରେ ଉଲ୍ଲେଖ ନାହିଁ ।

ଅଖଣ୍ଡ ଦୀପର ଅନ୍ୟ ଏକ ନାମ 'ଆଖଣ୍ଡ ଦୀପ' କୁହାଯାଇଛି । ଓଡ଼ିଆ ଭାଗବତର ରଚୟିତା ଅତିବଡୀ ଜଗନ୍ନାଥ ଦାସଙ୍କର ଷୋହଳ ଜଣ ମୁଖ୍ୟ ଶିଷ୍ୟ ଥିଲେ । ପୁରୀର ବଡ ଓଡ଼ିଆ ମଠ ଥିଲା ଅତିବଡୀ ସମ୍ପ୍ରଦାୟର ପ୍ରଧାନ ପୀଠସ୍ଥଳୀ ଏବଂ ଏହାର ପ୍ରତିଷ୍ଠାତା ଥିଲେ ନିଜେ ଜଗନ୍ନାଥ ଦାସ । ଏହି ମଠର ପ୍ରଥମ ଅଧିକାରୀ ଥିଲେ ଜଗନ୍ନାଥ ଦାସଙ୍କ ଜନୈକ ଶିଷ୍ୟ ଗୋପୀନାଥ ଦାସ । ସୂର୍ଯ୍ୟବଂଶର ରାଜା ପ୍ରତାପରୁଦ୍ର ଦେବ (ଖ୍ରୀ. ୧୪୯୭ରୁ ୧୫୩୩)ଙ୍କର ପାଟରାଣୀ ଗୌରୀପାଟ ମହାଦେଈ ବଡ ଓଡ଼ିଆ ମଠ ପାଇଁ ନିଜର ପ୍ରାସାଦକୁ ଦାନ କରିଥିଲେ । ତାଙ୍କର ଆବାସ ହେଲା ବଡ ଓଡ଼ିଆ ମଠ ।

ଅତିବଡୀ ଜଗନ୍ନାଥ ଦାସଙ୍କର ଆଉଜଣେ ପ୍ରଧାନ ଶିଷ୍ୟ ଥିଲେ ଆଖଣ୍ଡଳ ଦାସ ବା ମେକାପ । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ପ୍ରଦୀପ ପ୍ରଜ୍ଜ୍ୱଳନ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା । ତାଙ୍କର ନାମ 'ଆଖଣ୍ଡଳ' ଅନୁସାରେ ଅଖଣ୍ଡ ଦୀପ ଦାନକୁ ଆଖଣ୍ଡଳ ଦୀପ କୁହାଯାଏ ବୋଲି କେହି କେହି ମତ ଦେଇଛନ୍ତି (ଦ୍ରଷ୍ଟବ୍ୟ- ଡକ୍ଟର କୃଷ୍ଣଚରଣ ସାହୁଙ୍କ ପ୍ରବନ୍ଧ ମହାପୁରୁଷ ଜଗନ୍ନାଥ ଦାସ ଓ ତାଙ୍କ ଶିଷ୍ୟ ପରମ୍ପରା) ।

ଶ୍ରୀମନ୍ଦିରରେ ଅଖଣ୍ଡ ମେକାପ ସେବା ଏକ ପ୍ରାଚୀନ ସେବା ।

ଏମ୍.ଏ/୨, ବ୍ରିଟ୍ କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର-୧୨

# ବକିବାକୁ ନାଥ ନ ମଣେ ଉଚିତ

ଗୋଲକ ବିହାରୀ ନାୟକ

ବକିବାକୁ ନାଥ ନମଣେ ଉଚିତ
ତୁମେ ତ ଜଗତ ନାଥ ହେ
ପଛେ ନ ମିଳୁ ପେଟକୁ ଭାତ ହେ...

କେ' ବୋଲେ ତୁମଙ୍କୁ ଭାତ ବିକା ବୋଲି
କେ' ବୋଲେ ଅଇଁଠା ଖିଆ ହେ
କେ' ବୋଲେ ତୁମଙ୍କୁ ନାତ ଖିଆ ବୋଲି
କେ'ବୋଲେ କାଳିଆ ମୁହାଁ ହେ

ଯା' ନାମରେ ଚାଲେ ଏ ସାରା ଜଗତ
ନାମ ଜପି ପାପୀ ପାପରୁ ମୁକତ
ସେ ପଦୁ ହଟେ କି ଚିତ୍ତ ହେ
ପଛେ ନ ମିଳୁ ପେଟକୁ ଭାତ ହେ ।



ଆସିଥିଲି ପୁଣି ଗଲେ ଯିବି ଚାଲି
ତହିଁ କି ନାହିଁ ମୋ ଖେଦ ହେ,
ଯେ' ଆସିଛି ପୁଣି ସେ ଯାଇଛି ଚାଲି
କାହିଁକି କରିବି ବାଦ ହେ,

ମୋହ ପରି ପଣେ କାହାଣେ ଭକତ
ଥିବା କି ନଥିବା କାହିଁରେ ଲେଖା ତ
ମୁଁ ଆଶ୍ରିତ ତୁମେ ନାଥ ହେ
ପଛେ ନ ମିଳୁ ପେଟକୁ ଭାତ ହେ ।

ଖଦିବୋର୍ଡ କାର୍ଯ୍ୟାଳୟ,
ଖାରବେଳ ନଗର, ଭୁବନେଶ୍ୱର-୧



# ଚକ ଯା'ଗଡ଼ି ଯା

ଦେବୀ ପ୍ରସନ୍ନ ନନ୍ଦ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଗୁଣ୍ଡିଚା ଯାତ୍ରା ଅବସରରେ ଶ୍ରୀଜୀଉମାନଙ୍କ ଯାତ୍ରା ନିମନ୍ତେ ଉଦ୍ଦିଷ୍ଟ ତାଳଧ୍ୱଜ, ଦର୍ପଦଳନ ଓ ନନ୍ଦିଘୋଷ ନାମରେ ଅନୁସୃଜିତ ତିନିଗୋଟି ସୁଦୃଶ୍ୟ ରଥ ମୁଖ୍ୟ ଆକର୍ଷଣ ଭାବେ ପରିଗଣିତ । ଉକ୍ତ ତିନିରଥର ନିର୍ମାଣ ଶୈଳୀ ଯେତିକି ଶାସ୍ତ୍ରୀୟତା ଉପରେ ଆଧାରିତ ତତୋଧିକ ପାରମ୍ପରିକତା ଉପରେ ପର୍ଯ୍ୟବସିତ । ରଥ ନିର୍ମାଣରେ ଶିଳ୍ପୀ ସେବକମାନଙ୍କର ଅବଦାନ ଅତୁଳନୀୟ । ଏଥିରେ ବଢ଼େଇ ମହାରଣାଙ୍କ ସହିତ ରୂପକାର, ଚିତ୍ରକାର, ଓଝା କମାର, ଦରଜୀ, ଆଦି ଶହ ଶହ ସଂଖ୍ୟାରେ ଶିଳ୍ପୀସେବକମାନଙ୍କର ନିଷ୍ଠାପର ସେବା ତଥା ସହଯୋଗ ବଳରେ ନିର୍ଦ୍ଧାରିତ ସମୟରେ ରଥ ନିର୍ମାଣ ସମ୍ପୂର୍ଣ୍ଣ ହୋଇଥାଏ । ସେହି କାରଣରୁ ଏଇ ଯାତ୍ରାକୁ ଶିଳ୍ପୀଯାତ୍ରା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ରଥ ସଂହିତାରେ ରଥ ନିର୍ମାଣ ପଦ୍ଧତି ବିଷୟରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଥିଲେ ପୋଥିବିଦ୍ୟା ଅପେକ୍ଷା କାର୍ଯ୍ୟକ୍ଷେତ୍ରରେ ବିଶେଷ ଅନୁଭୂତି ଶଳ୍ପୀମାନଙ୍କର ପ୍ରକୃତ କାର୍ଯ୍ୟଦକ୍ଷତା ପ୍ରତିପାଦିତ କରିବା ପାଇଁ ସହାୟ ହୋଇଥାଏ । ରଥ ନିର୍ମାଣରେ ମାପ ପଦ୍ଧତି, ପ୍ରକ୍ରିୟା ତଥା ଉପାଂଶ ଓ ଉପକରଣଗୁଡ଼ିକର ନାମକରଣ– ସବୁଥିରେ ଅନେକ ସ୍ୱତନ୍ତ୍ରତା ରହିଆସିଛି । କହିବା ବାହୁଲ୍ୟ, ତିନିବାଡ଼ର ମୁଖ୍ୟ ମହାରଣାମାନଙ୍କର ହାତ କାଠିର ମାପ ଯାହା ହାତ, ଚାଖଣ୍ଡ, ଆଙ୍ଗୁଳି ଓ ସୂତା ଉପରେ ଆଧାରିତ, ତା'ରି ସହାୟତାରେ ହସ୍ତଶିଳ୍ପର ସର୍ବବୃହତ୍ ନମୁନା ଭାବେ ସାରା ବିଶ୍ୱରେ ପରିଚିତ ପୁରୀ ରଥଯାତ୍ରାର ଏହି ତିନିଗୋଟି ରଥ ପ୍ରସ୍ତୁତ ହୋଇଥାଏ । ଏହି ହାତକାଠିର ଚିହ୍ନିତ ମାପର ରହସ୍ୟ ମହାରଣାମାନଙ୍କର କୌଳିକ ବିଦ୍ୟାର ଗୋପନୀୟତା ବହନ କରେ ଓ ଏହାର ଦୁର୍ବୋଧ ମାପ ପ୍ରଣାଳୀର ଅବଲମ୍ବନରେ ବିଶାଳ ରଥଗୁଡ଼ିକର ନିର୍ମାଣ କାର୍ଯ୍ୟ ଚରମ ସଫଳତା ଲାଭ କରିଥାଏ ।

ସଂପୂର୍ଣ୍ଣ କାଠ ବା ପଟା ଦ୍ୱାରା ନିର୍ମିତ ସୁଉଚ୍ଚ ରଥଗୁଡ଼ିକର ଚକ ସମୂହ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଅଟେ । ଚକଗୁଡ଼ିକ ନିର୍ଭୁଲ ନିୟମ ଓ ନିର୍ଦ୍ଧାରିତ ମାପ ଅନୁସାରେ ବିଶ୍ୱକର୍ମାମାନଙ୍କ ଦ୍ୱାରା ନିର୍ମିତ ହୋଇଥାଏ । ରଥ ନିର୍ମାଣ କାଳ ଅକ୍ଷୟ ତୃତୀୟାଠାରୁ ନବଯୌବନ ଦର୍ଶନ ପର୍ଯ୍ୟନ୍ତ ୫୯ ଦିନ ମଧ୍ୟରୁ ଅର୍ଦ୍ଧାଧିକ କାଳ କେବଳ ଚକ ନିର୍ମାଣରେ ଲାଗିଯାଇଥାଏ । ରଥ ନିର୍ମାଣ ପର୍ଯ୍ୟାୟ ନିର୍ଘଣ୍ଟ ଅନୁସାରେ ଚନ୍ଦନ ଯାତ୍ରାର ଅନ୍ତିମ ଦିବସ ଭଉଁରୀ ଦିନ ତିନିରଥର ଯଥା, ତାଳଧ୍ୱଜ–୧୪, ଦର୍ପଦଳନ–୧୨ ଓ ନନ୍ଦିଘୋଷ–୧୬, ସମୁଦାୟ ୪୨ଗୋଟି ଚକ ମଧ୍ୟରୁ ପ୍ରତ୍ୟେକ ରଥର ୨ଗୋଟି କରି ଚକ ଅଖ ସାହାଯ୍ୟରେ ଡେରାଯାଏ । ତା'ପରେ ସ୍ନାନ ପୂର୍ଣ୍ଣିମୀ ଦିନ ବାକି ସମସ୍ତ ଚକ ୨୧ ଗୋଟି ଅଖରେ ଡେରା ଯାଇ ଅଖ ଉପରେ ପ୍ରତ୍ୟେକ ରଥରେ ୧୧ଗୋଟି ହିସାବରେ ଦଣ୍ଡା ପକାଯାଏ । ଦଣ୍ଡା ଉପରେ ରଥର ଭୂମି ଅର୍ଥାତ୍ ୧୬ ଇଞ୍ଚରେ ୧୦ ଇଞ୍ଚ ମୋଟା ଆକାରର କାଠ ଯାହାକୁ ଗରଗରା କୁହାଯାଏ, ସେଥିରୁ ପ୍ରତ୍ୟେକ ରଥରେ ଦୁଇଟି ଲେଖାଏଁ ପକାଯାଏ । ପରସ୍ପର ଆଡ଼ବାଗରେ ପଡ଼ିଥିବା ଅଖ, ଦଣ୍ଡା ଓ ଗରଗରାର ସାଧାରଣ ଛେଦବିନ୍ଦୁରେ ବିନ୍ଧ କରାଯାଇ ଚାରି ନାହାକା (ଚାରିଗୋଟି ସୁଦୃଢ଼ କାଠ) ସଳଖ ଭାବରେ ଠିଆ କରାଯାଏ । ଏହି ଚାରି ନାହାକା ରଥର ମେରୁଦଣ୍ଡ ଭଳି ରଥର ଉପରି ଭାଗର ବିଶାଳ ଭାର ବହନ କରିଥାନ୍ତି । ଏହା ପ୍ରଚ୍ଛନ୍ନ ସତର୍କତା ଓ ନିୟମ ଅବଲମ୍ବନରେ ସମାହିତ ହୋଇଥାଏ ।

ରଥର ପ୍ରମୁଖ ଅଙ୍ଗ ଭାବେ ବିବେଚିତ ସମ୍ପୂର୍ଣ୍ଣ ଜ୍ୟାମିତିକ ସୂତ୍ରରେ ଆଧାରିତ ଚକଗୁଡ଼ିକ ୬ଫୁଟ ଉଚ୍ଚତା ବିଶିଷ୍ଟ ହୋଇଥାଏ । ସାଧାରଣତଃ ଫାସି, ଧଉରା ଓ ସାହଜ ପ୍ରଭୃତି କାଠରେ ନିର୍ମିତ

ଚକଗୁଡ଼ିକର ତୁମ୍ବ, ପହୀ ଓ ଅର ଆଦି ଉପାଂଶ ପ୍ରଥମେ ପ୍ରସ୍ତୁତ କରାଯାଏ । ସର୍ବପ୍ରଥମେ ହାତେ ବା ଦେଢ଼ଫୁଟ ବ୍ୟାସ ଓ ୨ଫୁଟ ଲମ୍ବର ମଜବୁତ ଫାସି କାଠ ଖଣ୍ଡରୁ ଗୋଲାକାର ତୁମ୍ବ ପ୍ରସ୍ତୁତ କରାଯାଇ ସେଥିରେ ୬ଇଞ୍ଚ ବ୍ୟାସର ଠେକଫିଟା ବା ଅଖ ପ୍ରବେଶ କଲାଭଳି ବିନ୍ଧ ଫିଟା ଯାଇଥାଏ । ଏଥିରେ ମହାରଣାମାନେ ମୁଖ୍ୟତଃ ନିହଣ, ମୁଗୁର ଓ ଅଗର ଆଦି ଉପକରଣ ବ୍ୟବହାର କରିଥାନ୍ତି । ତୁମ୍ବ ଗୋଲେଇର ବାହାରପଟ ମଝିରେ ଜ୍ୟାମିତି ନିୟମରେ ସମାନ ବ୍ୟବଧାନରେ ଅର ଖଞ୍ଜା ହେବା ପାଇଁ ସଠିକ୍ ଭାବରେ ୧୬ଗୋଟି ସାଲ ଖୋଳା ଯାଇଥାଏ । ପହୀ ୯ ଇଞ୍ଚ ଚଉଡ଼ା ଓ ୮ଇଞ୍ଚ ମୋଟାବିଶିଷ୍ଟ ହୋଇଥାଏ । ପହୀ ପାଇଁ ଆବଶ୍ୟକ ୪ ଖଣ୍ଡ ଧନୁ ଆକୃତିର ସମାନ ଲମ୍ବର କାଠର ଦୁଇ ମେରୁକୁ କଳଷା ବା ଚାବି କୌଶଳରେ ପ୍ରସ୍ତୁତ ଖସାଲ ସାହାଯ୍ୟରେ ଯୋଡ଼ାଯାଇ ସମାନ୍ତରାଳ ପରିଧି ସୃଷ୍ଟି କରାଯାଏ । ୧୯୭୦ ମସିହା ପରଠାରୁ ଏହି କାଠ କରତ କଳରେ କଟା ହୋଇଆସୁଥିବା ଶିଳ୍ପୀମାନଙ୍କର ଶ୍ରମ ଯଥେଷ୍ଟ ଲାଘବ ହୋଇଥିବାର ଜଣାଯାଏ । ନିର୍ଦ୍ଦିଷ୍ଟ ଭାବେ ବାଙ୍କ ରଖା ଯାଇ କାଠ କଟାଯିବାରେ ହାରାହାରି ଏକ ଚତୁର୍ଥାଂଶ କାଠ ନଷ୍ଟ ବା ଅଦରକାରୀ ହୋଇଥାଏ । ପ୍ରତି ଚକର ୧୬ ଗୋଟି ଅର ୮ଇଞ୍ଚ ଚଉଡ଼ା ଓ ୨ଇଞ୍ଚ ମୋଟା କାଠରେ ପ୍ରସ୍ତୁତ ହୋଇଥାଏ । ଏଥିରେ ଦୁଇମୁଣ୍ଡରେ ସାଲ କରାଯାଇ ତୁମ୍ବର ବାହାର ପଟେ ଖଞ୍ଜାଯାଇ ପ୍ରଥମେ ସିଙ୍ଗଡ଼ାକୁ ପୂର୍ବରୁ ପହୀର ଚଉଡ଼ା ବାଗରେ ଉଭୟପଟୁ ଫିଟା ପାଇଥିବା ବିନ୍ଧରେ ପ୍ରବେଶ କରାଇ ଅତି କୌଶଳପୂର୍ଣ୍ଣ ଉପାୟରେ ଖଞ୍ଜାଯାଇଥାଏ । ଯନ୍ତାକୀଳା ସାହାଯ୍ୟରେ ସମାହିତ ଏହି କୌଶଳଯୁକ୍ତ ପ୍ରକ୍ରିୟାରେ ଆଠ ଦଶଜଣ ବଢ଼େଇ ସେବକ ଓରାମୁଣ୍ଡା ବା ବୃହତ୍ କାଠ ହାତୁଡ଼ିରେ ଚାରିପଟୁ ସମତାଳରେ ପିଟି ପିଟି ସମାହିତ କରିଥାଆନ୍ତି । ବିଭିନ୍ନ ଆକାରରେ ପ୍ରସ୍ତୁତ ଉପାଂଶଗୁଡ଼ିକୁ ପାରମ୍ପରିକ କୌଶଳରେ ଏକତ୍ର ସଂଯୋଗ କରି ରଥର ଏହି ବୃହଦାକାର ଚକର ପସ୍ତୁତି ମୂଳରେ ସମଗ୍ର ରଥ ନିର୍ମାଣର ବୈଚିତ୍ର ନିହିତ ଥାଏ । ଚକର ବିଭିନ୍ନ ଅଂଶର ଆକାରର ନିର୍ଦ୍ଦିଷ୍ଟତା ବିଷୟରେ ପଚାରିଲେ ବୁଢ଼ାମହାରଣା ମାନେ କହନ୍ତି – 'ରଥକୁ ଚାହିଁ ଚକ' ବା 'ଚକକୁ ଚାହିଁ ରଥ' । ଅର୍ଥାତ୍ ରଥର ଭାର ବହନ କଲାଭଳି ଚକର ଆକାର ହେବା ଆବଶ୍ୟକ ।

ପହୀ ଯୋଡ଼ାହେବା ପରେ ଅଖଗୁଡ଼ିକ ପହୀରେ ଫୁଟିଥିବା ବିନ୍ଧଗୁଡ଼ିକ ବାହାରପଟୁ ଜାମ୍ କରିବା ପାଇଁ ଖୁସିଅର ନାମକ କୀଳା ଚାରିଜଣ ଭୋଇ ସେବକଙ୍କ ଦ୍ୱାରା ଅତି କୌଶଳତାର ସହ ବିଲେଇ ବା ଏକ ଝୁଲନ୍ତା କାଠଗଡ଼ ଦ୍ୱାରା ପିଟାଯାଇଥାଏ । ଏଥିରେ ବଢ଼େଇ ସେବକମାନେ ମଧ ସହଯୋଗ କରିଥାଆନ୍ତି । ପହୀର ଭିତରପଟେ ଅରକୁ ଜାମ୍ କରିବା ପାଇଁ ମଧ ଛୋଟକୀଳା ଓ ତୁମ୍ବରେ ଅରଗୁଡ଼ିକର ମୂଳକୁ ଦୃଢ଼ କରିବା ପାଇଁ ବଡ଼ ଲୁହାକଣ୍ଟା ତେର୍ଚ୍ଛା ଭାବରେ ପିଟା ଯାଇଥାଏ ଏବଂ ଏଥି ସହିତ ଚକ ନିର୍ମାଣ ଶେଷ ହୋଇଥାଏ ଏବଂ ଚକଗୁଡ଼ିକ ଅଖ ସାହାଯ୍ୟରେ ବିଶାଳ ରଥଗୁଡ଼ିକୁ ଗଡ଼ାଇନେବା ପାଇଁ ସକ୍ଷମ ହୋଇଥାନ୍ତି । ଅରରେ ଚକ ଲାଗିବା ପରେ ତୁମ୍ବ ବାହାରେ ଅରରେ ବିନ୍ଧ କରାଯାଇ ଏକ ସନ୍ଧିଆ କୀଳା ବା ଅନିକୀଳା ପିଟା ଯାଇଥାଏ, ଯାହାଦ୍ୱାରା କୌଣସି ଅବସ୍ଥାରେ ଚକ ଅରରୁ ଖସିବାର ଆଶଙ୍କା ରହିନଥାଏ । ରଥ ଗଡ଼ିବା ସମୟରେ ଅଧିକ ମୋଡ଼ ଖାଇଲେ କୌଣସି ଚକରେ ସାମାନ୍ୟ ଦୁର୍ବଳ କାଠ ବ୍ୟବହାର ହୋଇଥିଲେ ଚକ ଭାଙ୍ଗିବା ଭଳି ସମସ୍ୟା ସୃଷ୍ଟି ହୁଏ । ସେ କ୍ଷେତ୍ରରେ ଏହି ମହାରଣା ସେବକମାନେ ଯୁଦ୍ଧକାଳୀନ ଭିତ୍ତିରେ ଏହାର ମରାମତି କରିଥାଆନ୍ତି । ଆବଶ୍ୟକ ସ୍ଥଳେ ରେଳବାଇରେ ବ୍ୟବହୃତ ଜ୍ୟାକ୍ ମେସିନ୍‌ର ସହାୟତା ଲୋଡ଼ିବା ନଜିର ମଧ ରହିଛି ।

ଏକ ଆନୁମାନିକ ହିସାବରେ ଗୋଟିଏ ରଥ ଚକରେ ହାରାହାରି ୨୪ ବର୍ଗଫୁଟ କାଠ ଲାଗିଥାଏ । ଯାହାର ବଜାର ଦର ଓ ମଜୁରୀ ମିଶି ଆନୁମାନିକ ଟ ୨୫,୦୦୦ଙ୍କା ମୂଲ୍ୟ ହୋଇପାରେ । ଚଳିତ ବର୍ଷ (୨୦୧୩) ରେ ପୂର୍ବ ବର୍ଷର ରଥଗୁଡ଼ିକର ଚକ, ପ୍ରଭାପଟା, କଣଗୁଜ, ପଟାଗୁଜ ପ୍ରଭୃତି ଉପାଂଶଗୁଡ଼ିକୁ ପୁନଃ ଚିତ୍ରଣ କରାଯାଇ ଏଗୁଡ଼ିକୁ ସର୍ବସାଧାରଣ କ୍ରୟ କରିବା ଭଳି ସୁଯୋଗ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ସୃଷ୍ଟି କରାଯାଇଛି । ବିଭିନ୍ନ ସଂଗ୍ରହାଳୟ ତଥା ବିଭିନ୍ନ ଅନୁଷ୍ଠାନ ଦ୍ୱାରା ଏଗୁଡ଼ିକ ସଂଗୃହୀତ ହୋଇ ରହିଲେ ମହାପ୍ରଭୁଙ୍କ ଘୋଷଯାତ୍ରାର ଖ୍ୟାତି ଅଧିକ ବଢ଼ିବ ଏଥିରେ ସନ୍ଦେହ ନାହିଁ ।

ମୋଟାମୋଟି ବଡ଼ଦାଣ୍ଡରେ ରଥ ଗଡ଼ିବାରେ କୌଣସି ପ୍ରକାର ନିର୍ମାଣଗତ ସମସ୍ୟାକୁ ପ୍ରଶୟ ନଦେବା ପାଇଁ ବିଶ୍ୱକର୍ମା ସେବକମାନେ ସକଳ ବୁଦ୍ଧି ଓ କୌଶଳ ତଥା ବିପୁଳ ଶ୍ରମ ଖଟାଇ ପ୍ରଭୁଙ୍କ ଘୋଷଯାତ୍ରାରେ ଅତି ନିଷ୍ଠାର ସହ କାର୍ଯ୍ୟ କରିଥାଆନ୍ତି, ଯେଉଁଥିରେ କ୍ଷେୟୀ, ପ୍ରାପ୍ୟ ବା ପୁରସ୍କାର ବ୍ୟତୀତ ସେମାନଙ୍କର ଆତ୍ମସନ୍ତୋଷ ହିଁ ମହାନ ପ୍ରାପ୍ତି ବୋଲି ଧରାଯାଏ । ରଥ ନିର୍ମାଣ ପରେ ରଥଯାତ୍ରା ପୂର୍ବଦିନ ରଥଖଳାରୁ ତିନି ରଥ ସିଂହଦ୍ୱାର ଅଭିମୁଖେ ଯେତେବେଳେ ପ୍ରଥମ କରି ଟଣା ହୁଏ, ସେତେବେଳେ ସେଇ ନିର୍ମାଣୀମାନଙ୍କ ଶ୍ରମ ସାର୍ଥକ ହୋଇଥାଏ । ସେମାନେ ନୀଳଚକ୍ରକୁ ଚାହିଁ ପ୍ରଣିପାତ କରି ମନେ ମନେ କୁହନ୍ତି, ରଥ ଯା' ଗଡ଼ି ଯା....

କୁଣ୍ଡେଇବେଣ୍ଟ ସାହି, ପୁରୀ

# ଶ୍ରୀଜଗନ୍ନାଥ ଓ ଶବର ସଂସ୍କୃତି

ରୁବିରାଣୀ ଦାଶ

ଜଗନ୍ନାଥ ଚିର ରହସ୍ୟମୟ । ତାଙ୍କର କଳ୍ପନା–ଧାରଣା ଚିନ୍ତ–ଚେତନା ଅତି ପ୍ରାଚୀନ । କେଉଁ କାଳରୁ ଏହି ଦର୍ଶନର ଆରମ୍ଭ, କେଉଁଠି ଏହାର ଶେଷ କଳ୍ପନା କରିବା ଅତ୍ୟନ୍ତ କଷ୍ଟକର । ବହୁ ଧର୍ମ ଧାରଣାରେ ତାଙ୍କର ଅସ୍ତିତ୍ୱ, ସାନ୍ନିଧ ଓ ସାମଞ୍ଜସ୍ୟ ରହିଛି । ତେଣୁ ବହୁ ଦାର୍ଶନିକ ମତବାଦ ଓ ବହୁ ଧର୍ମୀୟ ଚିନ୍ତନର ସମନ୍ୱୟ ଘଟିଛି ଶ୍ରୀଜଗନ୍ନାଥଙ୍କଠାରେ । ଏହାର ପ୍ରାଚୀନତା ଏତେ ଯେ ଅନେକ ସମୟରେ ମନେ ହୁଏ, ସୃଷ୍ଟି ସହିତ ଏହି ଦର୍ଶନର ଆରମ୍ଭ, ସୃଷ୍ଟି ସହିତ ଏହାର ବିକାଶ ଓ ସୃଷ୍ଟିର ବିଲୟରେ ଏହି ଚେତନାର ବିଲୋପ ଘଟିବା ହିଁ ସମ୍ଭବ ।

ଆଦିବାସୀ ଯଥାର୍ଥରେ ଆଦିମ ଅଧିବାସୀ । ଆମେ ସମସ୍ତେ ମଧ୍ୟ ସେମାନଙ୍କର ଉତ୍ତରାଧିକାରୀ କହିଲେ ଅନେକ ଭ୍ରୂକୁଞ୍ଚନ କରିବେ । ମାତ୍ର ଆମ୍ଭେମାନେ ମର୍କଟମାନଙ୍କର ଉଦ୍‌ବର୍ତ୍ତନକୁ ଯଦି ବୈଜ୍ଞାନିକ ସତ୍ୟ ବୋଲି ସ୍ୱୀକାର କରିବା, ତେବେ ଏହାକୁ ଅସ୍ୱୀକାର କରିବାର କାରଣ କେଉଁଠି ରହିଲା ? କେତେକ ପ୍ରମାଣଭିତ୍ତିକ ତତ୍ତ୍ୱ ଓ ତଥ୍ୟକୁ ଆଧାର କରି କୁହାଯାଇପାରେ ଶ୍ରୀଜଗନ୍ନାଥ ସଂସ୍କୃତିର ମୂଳ ହେତୁ ଆଦିବାସୀ ସଂସ୍କୃତି ବୋଲି ମୁକ୍ତ କଣ୍ଠରେ ଗ୍ରହଣ କରାଯାଇପାରେ ।

ଶ୍ରୀଜଗନ୍ନାଥଙ୍କ ସ୍ଥୂଳ ରୂପର କଳ୍ପନା ସାଧାରଣତଃ ସର୍ବପ୍ରାଚୀନ ଗ୍ରନ୍ଥ ଋକ୍ ବେଦରୁ ଆହରଣ କରାଯାଇଥାଏ । ଜାତିର ଦେବ ମୂର୍ତ୍ତି ବୋଲି ଗ୍ରହଣ କରାଯାଏ । ତେବେ ଶବର ଜାତିର ଦାରୁ ମୂର୍ତ୍ତି ଜଗନ୍ନାଥଙ୍କ ଦାରୁ ମୂର୍ତ୍ତିର ପୂର୍ବ ରୂପ ବୋଲି ସ୍ୱୀକାର କରିବାକୁ ହେବ ।

'ଜଗନ୍ନାଥ' ଶବ୍ଦଟି ଯେପରି ପାଲି–ମୂଳ ନୁହେଁ, ସେହିପରି ସଂସ୍କୃତ–ମୂଳ ବି ନୁହେଁ, ବରଂ ଏହାକୁ ଶବର ମୂଳ କହିବାରେ ଅଧିକ ଯୁକ୍ତି ରହିଛି । ମନେ ହୁଏ, ଏହା ଶବର ଭାଷାରେ ବ୍ୟବହୃତ 'ଜଗନ୍ତ'ଶବ୍ଦର ସଂସ୍କୃତ ରୂପ । 'ଜଗନ୍ତ'ହେଉଛନ୍ତି ଶବର ଦେବତା । ଶବର ବା ସୌର ଭାଷାରେ 'କିତୁଙ୍ଗ୍' କହିଲେ 'ଦେବତା' । 'କିତୁଙ୍ଗ୍' ବୋଲି କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କ ନାମ ନାହିଁ । ଦେବତା ଶବ୍ଦ ଯେପରି ସାଧାରଣ ଅର୍ଥ ସୂଚକ, 'କିତୁଙ୍ଗ' ମଧ୍ୟ ସେହିପରି ଅର୍ଥବାଚୀ । କିତୁଙ୍ଗଙ୍କର ଦଶଟି ରୂପ ଅଛି ବୋଲି ଶବରମାନେ କହନ୍ତି–ଜଗନ୍ତ, ତୋଡ଼, ତୁମନ, ଭୀମ୍, ରଂରଂ, ଗର୍ସିଦ, ରାମନ୍, ଯୋଜେପଳ, ମଣ୍ଡ ଓ ତିତି । ଏମାନେ ହେଉଛନ୍ତି ଦଶ ଭାଇ । 'କିତୁଙ୍ଗ'ଙ୍କର ଦଶ ଭାଇ ଜାଗାରେ ଜଗନ୍ନାଥଙ୍କର ଦଶ ଅବତାର ଗ୍ରହଣ ଧାରଣା କରାଯାଇପାରେ । ଯେପରି 'କିତୁଙ୍ଗ୍' ରଂ–ରଂ, ରାମନ୍ ପ୍ରଭୃତି ଦଶଟି ରୂପରେ ଅବତୀର୍ଣ୍ଣ ହୁଅନ୍ତି, ସେହିପରି ଜଗନ୍ନାଥ ମଧ୍ୟ ଅବତାରୀ ରୂପେ ବର୍ଣ୍ଣିତ ହୋଇ ଆସିଛନ୍ତି ।

'କିତୁଙ୍ଗ' ସମସ୍ତ ଶବର ଜାତିର ମୂଳ ଦେବତା । ସେ ସମସ୍ତ ଶବର ଗୋଷ୍ଠୀ ସୃଷ୍ଟି କରିଛନ୍ତି ବୋଲି ସୌରାମାନେ କହନ୍ତି । ଗାଁ ବାହାର ବଣ ଭିତରେ ଗୋଟିଏ ଗଛରେ କିତୁଙ୍ଗ ରହିଥିବାର ସେମାନେ ବିଶ୍ୱାସ କରନ୍ତି । ଯେଉଁ ବୃକ୍ଷକୁ ସେମାନେ 'ଜଗନ୍ତ' (କିତୁଙ୍ଗଙ୍କର ଏକ ବିଶେଷ ନାମ) ବୋଲି କହନ୍ତି, ସେହି ବୃକ୍ଷକୁ ଏପରି କି ସେ ଥିବା ଉଦ୍ୟାନ ଭିତରେ କୌଣସି ବୃକ୍ଷକୁ ସେମାନେ ଛେଦନ କରନ୍ତି ନାହିଁ । ଏହି ପ୍ରଥାକୁ ଓଡ଼ିଆମାନେ ସୁଦ୍ଧା ସର୍ବାନ୍ତଃକରଣରେ ପାଳନ କରନ୍ତି । ଏସବୁରୁ ମନେ ହୁଏ ଯେଉଁ ବୃକ୍ଷ ବା ଦାରୁକୁ ସେମାନେ 'ଜଗନ୍ତ' ଆଖ୍ୟାରେ ପୂଜା କରୁଥିଲେ, ତାହା ପରବର୍ତ୍ତୀ 'ଜଗନ୍ନାଥ' ଶବ୍ଦର ମୂଳ ହୋଇଥାଇପାରେ । 'ଜଗନ୍ତ' ବ୍ୟତୀତ ଶବରମାନେ ସେମାନଙ୍କ ପ୍ରସିଦ୍ଧ ଦେବତାଙ୍କୁ 'ଜଗାବୋଇ' ବୋଲି ଶ୍ରଦ୍ଧାରେ ଡାକିଥାନ୍ତି । 'ବୋଇ' ଶବ୍ଦର ଅର୍ଥ ଦେବତା । ତେଣୁ ଜଗାବୋଇ ଅର୍ଥ ଜଗା ଦେବତା ବା ଜଗା ଠାକୁର । ଓଡ଼ିଆମାନେ ମଧ୍ୟ ଜଗନ୍ନାଥଙ୍କୁ 'ଜଗାଠାକୁର', 'ଜଗା

ଦେବତା'ବୋଲି ଶ୍ରଦ୍ଧାରେ ଡାକି ଥାନ୍ତି । ଶବରମାନଙ୍କ ମଧ୍ୟରେ ଜଗନ୍ନାଥଙ୍କର ଆଉ ଏକ ପ୍ରାଚୀନ ନାମ 'ଜଗନାଏଲୋ' ପ୍ରଚଳିତ । 'ଜଗନାଏଲୋ' ହେଉଛନ୍ତି ଦାରୁ ମୂର୍ତ୍ତି ଏବଂ ଶବରମାନେ ସେମାନଙ୍କର ସମସ୍ତ 'କିତୁଙ୍ଗ'ମାନଙ୍କ ମଧ୍ୟରେ ଏହାକୁ ଶ୍ରେଷ୍ଠ ବୋଲି ମାନିଥାନ୍ତି । ଏହି ଦେବତା ସମଗ୍ର ଜଗତର ଦେବତା (ଜଗତର ନାଥ ଜଗନ୍ନାଥ)ବୋଲି ସେମାନେ ବିଶ୍ୱାସ କରିଥାନ୍ତି ।

ପାଶ୍ଚାତ୍ୟ ସମାଲୋଚକ ୱିଲ୍‌କିନ୍‌ସ୍‌ଙ୍କ ମତରେ ଜଗନ୍ନାଥ ସମ୍ଭବତଃ କୌଣସି ଏକ ସ୍ଥାନୀୟ ଉପଜାତି ଦ୍ୱାରା ଉପାସିତ ହୋଇ ଆସୁଥିଲେ । କାଳକ୍ରମେ ତାଙ୍କୁ ହିନ୍ଦୁ ଧର୍ମ ଭିତରେ ଭର୍ତ୍ତି କରାଯାଇ ବିଷ୍ଣୁଙ୍କ ଅବତାର ଭାବରେ କଳ୍ପନା କରାଗଲା । ଅପରପକ୍ଷରେ ଅଧ୍ୟାପକ ଡକ୍ଟର ନବୀନ କୁମାର ସାହୁ ତାଙ୍କର History of Orissaରେ ଲେଖିଛନ୍ତି ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଧର୍ମର ଦେବତା ବୋଲି କହିବା ଅପେକ୍ଷା ଆଦିମ ଶବର ଗୋଷ୍ଠୀର ଦେବତା ବୋଲି କହିବାରେ ଅଧିକ ଯୁକ୍ତି ରହିଛି ।

ଦଇତାମାନେ ଶ୍ରୀଜଗନ୍ନାଥଙ୍କ ଜ୍ଞାତି ରୂପେ ପରିଚିତ । ସ୍ନାନ ପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଜଗନ୍ନାଥଙ୍କ ସମସ୍ତ ବିଧିବିଧାନ ଦଇତାମାନେ ହିଁ ସମ୍ପାଦନ କରିଥାନ୍ତି । ଜଗନ୍ନାଥଙ୍କ ସେବାୟତ ସଂପ୍ରଦାୟ ମଧ୍ୟରେ 'ଦଇତା' ମାନେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । 'ଦଇତା' ଶବ୍ଦ 'ଦୈତ୍ୟ' ଶବ୍ଦର ଅପଭ୍ରଂଶ । ନୀଳମାଧବଙ୍କ ପୂଜକ ଭାବରେ ବିଶ୍ୱାବସୁଙ୍କ ବଂଶଧରମାନେ 'ଶୂଦ୍ର' ଏବଂ ବିଦ୍ୟାପତିଙ୍କ ବଂଶଧରମାନେ ବ୍ରାହ୍ମଣ ସେବକ (ପତି) ରୂପେ ପରିଚିତ ହେଲେ । ଦଇତା ଶବ୍ଦଟି ବିଶ୍ୱାବସୁ ଶବର ସହିତ ସଂଶ୍ଳିଷ୍ଟ ଥିବାରୁ ଶ୍ରୀଜଗନ୍ନାଥଙ୍କ ଉପରେ ଶବର ସଂସ୍କୃତିର ପ୍ରଭାବ ନିଶ୍ଚିତ ଭାବରେ ପଡ଼ିଅଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଶ୍ରୀଜଗନ୍ନାଥଙ୍କୁ କୁହାଯାଏ 'ମାଦଳା' । 'ମାଦଳା' ଶବ୍ଦର ଅର୍ଥ ହେଉଛି ହସ୍ତପଦ ବିହୀନ ଗଣ୍ଡି । ଏବେ ମଧ୍ୟ ଶବରମାନଙ୍କ ମଧ୍ୟରେ ମାଦଳା ପୂଜା ପ୍ରଚଳିତ ଅଛି । ଏମାନେ ହସ୍ତପଦ ବିହୀନ ଓ କେବଳ ମୁଖ ଚକ୍ଷୁ ବିଶିଷ୍ଟ କାଷ୍ଠ ସ୍ତମ୍ଭ ପୂଜା କରିଥାନ୍ତି । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏହି ତିନି ମୂର୍ତ୍ତି ମଧ୍ୟ ଭଲ ଭାବରେ ପରିଷ୍କୃତ ବା କୁନ୍ଦା ହୋଇନଥିବା ବୃକ୍ଷ ଗଣ୍ଡିର ଅଂଶ ପରି ଦେଖାଯାଇଥାନ୍ତି । ପୁନଶ୍ଚ ଶ୍ରୀଯୁକ୍ତ ଗୁରୁଦାସ ସରକାର ତାଙ୍କର ପ୍ରସିଦ୍ଧ କୃତି 'ମନ୍ଦିରେର୍ କଥା' ଗ୍ରନ୍ଥରେ ଅତି ପ୍ରାଚୀନ କାଳରୁ ଜଗନ୍ନାଥ ଶବର ଦେବତା ରୂପେ ଉପାସିତ ହୋଇ ଆସୁଥିଲେ ବୋଲି କହିବାରେ ଅଧିକ ଯୁକ୍ତି ରହିଛି ବୋଲି ଦର୍ଶାଇଛନ୍ତି । ବୋଧହୁଏ ଏହି ମାଦଳା ମୂର୍ତ୍ତି କାଳକ୍ରମେ ଶବରମାନଙ୍କ ଦ୍ୱାରା ନୀଳମାଧବ ଭାବରେ ରୂପାନ୍ତରିତ ହୋଇଥିବା ସମ୍ଭବ । ଏହି ମୂର୍ତ୍ତି ମଧ୍ୟ ଦାରବୀ (ଦାରୁ ନିର୍ମାଣ) ବୋଲି ସ୍ୱୀକୃତ । ଶବରମାନଙ୍କ 'ଶବରୀ ନାରାୟଣ' ପରବର୍ତ୍ତୀ କାଳର ଶ୍ରୀଜଗନ୍ନାଥ । ଏହି ଶବରୀ ନାରାୟଣ ନିମ୍ବ କାଷ୍ଠରେ ତିଆରି ଏକ ମସ୍ତକଯୁକ୍ତ ସ୍ତମ୍ଭ ବିଶେଷ ବୋଲି ନୀଳକଣ୍ଠ ଦାସ ଉଲେଖ କରିଛନ୍ତି ।

ଜଗନ୍ନାଥଙ୍କ କଳେବରକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହା ଏକ ସର୍ପ ମୁଖମଣ୍ଡଳର ପ୍ରତିକୃତି ହୋଇଥିବା ସ୍ଥଳେ ମୁଖମଣ୍ଡଳର ତଳେ ରହିଥିବା ଗଣ୍ଡି ଶବର ଓ ଅନ୍ୟାନ୍ୟ ଜନଜାତିମାନଙ୍କ ଦ୍ୱାରା ପୂଜିତ ଖମ୍ବ ପୂଜାର ପ୍ରତୀକ ସ୍ୱରୂପ ରହିଅଛି ।

ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଧର୍ମର ଦେବତା ବୋଲି ପ୍ରମାଣ କରିବା ସକାଶେ ତାହା କୃଷ୍ଣ ବାସୁଦେବ ଉପାସନାର ପରିବର୍ତ୍ତିତ ରୂପ ବୋଲି କହିଲେ ସୁଦ୍ଧା ପ୍ରାଚୀନ କାଳରୁ ଚଳି ଆସୁଥିବା ଶବର କର୍ତ୍ତୃକ ଦାରୁ ଦେବତାଙ୍କ ମୌଳିକ ଉପାସନାକୁ ଅସ୍ୱୀକାର କରିପାରି ନାହାନ୍ତି । ସେ କହନ୍ତି ଐତରେୟ ବ୍ରାହ୍ମଣ ଓ ପଞ୍ଚବିଂଶ ବ୍ରାହ୍ମଣ ପ୍ରଭୃତି ବେଦୋତ୍ତର କାଳୀନ ଗ୍ରନ୍ଥମାନଙ୍କରେ ଶବରମାନଙ୍କର ଉଲ୍ଲେଖ ଥିବା ଦେଖୁ । ଅନୁମାନ ହୁଏ, ଜଗନ୍ନାଥଙ୍କ ଶବର ମୌଳିକତା ହିଁ ତାଙ୍କ ବିକୃତ ରୂପର ପ୍ରଧାନ କାରଣ ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଜଗନ୍ନାଥ ଉପାସନା ଦାରୁ ଉପାସନାମୂଳକ ହୋଇଥିବାରୁ ସେ ଶବର ଦେବତା ବିନା ଅନ୍ୟ କୌଣସି ଧର୍ମର ଦେବତା ବୋଲି କହିଲେ ଅସଂଗତ ହେବ । ଏଣୁ କୁହାଯାଇପାରେ, ଜଗନ୍ନାଥ ଦାରୁ ଦେବତାର ହିଁ ରୂପାନ୍ତର ଓ ସେ ଶବରମାନଙ୍କ ମୂଳ ଦେବତା ।

ଭାରତ ଇତିହାସ କହୁଛି ଅତି ପ୍ରାଚୀନ କାଳରେ ଭାରତରେ ଦୁଇଟି ମୁଖ୍ୟ ମତବାଦ ଥିଲା । ଯଦି ତାହାର ମିଳନ ଘଟିଥାନ୍ତା ତେବେ ଭେଦଭାବ ସ୍ଥାୟୀ ହୋଇଯାଇଥାନ୍ତା । ମାତ୍ର ବୁଦ୍ଧିମାନ ଆର୍ଯ୍ୟଗୋଷ୍ଠୀର ବ୍ରାତ୍ୟମାନଙ୍କ ଦ୍ୱାରା ବ୍ରାହ୍ମଣ ଓ ଶବରର ହାତକୁ ମିଳାଇ ଦେଲେ ଶ୍ରୀକ୍ଷେତ୍ରରେ । କାରଣ ସେମାନେ ମଧ୍ୟ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ଶ୍ରୀଜଗନ୍ନାଥଙ୍କ ଉପରେ ଶବରମାନଙ୍କ ପ୍ରଭାବ ପଡ଼ିଥିବା କଥାକୁ ଏଡ଼ାଇ ପାରିନାହାନ୍ତି । ଏହି କ୍ଷେତ୍ର ହିଁ ଶବର ବ୍ରାହ୍ମଣଙ୍କ ମିଳନ ସ୍ଥଳ । ଏହି ଅନୁସାରେ ଏଗାର ମାସ ଦେବତାମାନେ ବ୍ରାହ୍ମଣମାନଙ୍କ ମାର୍ଫତ୍‌ରେ ରହିଲେ ଓ ପୂର୍ଣ୍ଣ ଭାବରେ ଏକ ମାସ ଶବରମାନଙ୍କ ଭାବ ପୂଜା ମଧ୍ୟକୁ ଛାଡ଼ି

ଦିଆଗଲା । ପୁନଶ୍ଚ ସ୍କନ୍ଦ ପୁରାଣୋକ୍ତ ଉତ୍କଳଖଣ୍ଡର ଦ୍ୱାଦଶ ଅଧ୍ୟାୟରେ ଶ୍ରୀଜଗନ୍ନାଥ କହିଛନ୍ତି, ମୋର ଭକ୍ତମାନଙ୍କ ମଧ୍ୟରେ ଭେଦ ନାହିଁ । ଗଉଡ଼, ବନଚାରୀ, ଗୃହୀ, ସନ୍ନ୍ୟାସୀ, ଆଦିବାସୀ, ଅରଣ୍ୟଜୀବୀ, ବ୍ୟାଧ, ଚଣ୍ଡାଳ, ସ୍ୱପତ (ହରିଜନ) ସମସ୍ତଙ୍କ ପାଇଁ ମୋର ମୁକ୍ତିପଦ ସ୍ଥାନ ମୁକ୍ତ । ଏଥିରୁ ସ୍ପଷ୍ଟ ପ୍ରତୀତି ହୁଏ ଯେ, ଶ୍ରୀଜଗନ୍ନାଥଙ୍କ ଉପରେ ଶବର ସଂସ୍କୃତିର ପ୍ରଭାବ ପଡ଼ିନଥିଲେ ଶ୍ରୀକ୍ଷେତ୍ରର ପଥ ସେମାନଙ୍କ ପାଇଁ କେବେ ଉନ୍ମୁକ୍ତ ହୋଇନଥାନ୍ତା ?

ଶ୍ରୀଜଗନ୍ନାଥଙ୍କ ପ୍ରଥମ ନାମ ଥିଲା ଜ୍ୟୋତି ପ୍ରକାଶ ବା ନାରାୟଣ ଜ୍ୟୋତି । ପ୍ରଥମେ ଦେଉଳ ନଥିଲା, ନଥିଲା ଖ୍ୟାତି ସମ୍ପର୍ଣ୍ଣ ସ୍ଥାନ । କେବଳ ତାଙ୍କ ଦିବ୍ୟ ମାହାତ୍ମ୍ୟ ଜ୍ୟୋତି ରୂପରେ ହିଁ ଥିଲା । ତା'ପରେ ବିଶ୍ୱାବସୁ ନାମକ ଶବର ଯେତେବେଳେ ସେହି ଦିବ୍ୟଜ୍ୟୋତିକୁ ନୀଳକନ୍ଦରରେ ରଖି ପୂଜା କଲେ ସେତେବେଳେ ସେ ତାଙ୍କର ନାମ ଦେଲେ ନୀଳପର୍ବତବାସୀ ଇନ୍ଦ୍ରନୀଳମଣି ପ୍ରଭୁ । ସେ ଶବରମାନଙ୍କ ମଧ୍ୟ ଦେଇ ଝାଡ଼ଖଣ୍ଡ, ପୁରୀ, କଣ୍ଟିଲୋ ସ୍ଥାନରେ ପୂଜିତ ହେଲେ । ତାଙ୍କ ନାମ ସେତେବେଳେ 'ଶବରୀ ନାରାୟଣ' ବା 'ନୀଳମାଧବ' ନାମରେ ଖ୍ୟାତ ହେଲା । ଏହା ତାଙ୍କର ମୂର୍ତ୍ତିତ୍ୱ ବିକାଶ କାଳର ନାମ ଅଟେ ।

ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ କେଉଁ ସମୟରୁ ତାହା ଏକ ଅସମାଧିତ ପ୍ରଶ୍ନ । ଯଦି ସୃଷ୍ଟିର ଆଦ୍ୟରୁ ଶ୍ରୀଜଗନ୍ନାଥ ଦର୍ଶନର ଆରମ୍ଭ ହୋଇଥାଏ ତେବେ ଆଜିର ବିକଶିତ ମନୁଷ୍ୟ ପରିବର୍ତ୍ତେ ଆଦିମ ଅଧିବାସୀ ଆଦିବାସୀମାନଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ବିଭିନ୍ନ ରୂପରେ ପୂଜିତ ହେଉଥିଲେ ବୋଲି ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ । ଶ୍ରୀଜଗନ୍ନାଥ ରୂପ ପୂର୍ବରୁ ଶବରମାନଙ୍କ ମଧ୍ୟରେ ଶବରୀ ନାରାୟଣ ବା ନୀଳମାଧବ ହିଁ ପୂଜିତ ହେଉଥିଲେ । ଅତଏବ ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇପାରେ ଶ୍ରୀଜଗନ୍ନାଥ ଶବର ସଂସ୍କୃତି ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

ଫକୀରମୋହନ ନଗର, ଇନ୍ଦିରା ଗାନ୍ଧୀ ମାର୍ଗ
ଆଇ.ଟି.ଆଇ. ଛକ, ବାଲେଶ୍ୱର

# ତୁମେ ଓଁକାର

ବିଜୟଲକ୍ଷ୍ମୀ ରାୟ

ତୁମେତ ଓଁକାର ବ୍ରହ୍ମ ନିରାକାର କୋଟି ବ୍ରହ୍ମାଣ୍ଡର ନାଥ
ଜଗତଜନକୁ ଉଧାରିବା ପାଇଁ ନୀଳାଚଳେ ଜଗନ୍ନାଥ ।
ରାମ ଅବତାରେ ରାବଣ ବଧିଲ କୃଷ୍ଣ ରୂପେ କଂସ ନାଶି
ହେ ଦୟାସାଗର ଭକତବତ୍ସଳ ତୁମେ ପରା ଅବିନାଶି ।
ନାହିଁ ତୁମ ଅନ୍ତ କେ କରିବ ଅନ୍ତ ପତିତପାବନ ହରି
ପତିତମାନଙ୍କୁ ଉଦ୍ଧରିବା ପାଇଁ ଯାତ୍ରା ହେଉଛି ତୁମରି ।
ପାଦପାଣି ନାହିଁ ମତ୍ତଗଜ ଚାଲି ପହଣ୍ଡି ବିଜେ କି ଶୋଭା
ଚାହିଁଆ ହଲାଇ ଆଗକୁ ପଛକୁ ବଡଦାଣ୍ଡେ ହେଲ ଉଭା ।
କୋଟି ଜନତାଙ୍କ ପଲକ ନପଡେ ଦେଖିବା ପାଇଁ ଶ୍ରୀମୁଖ
ସେ ସୁଖ ଦେଖିଲେ ପ୍ରେମେ ଆଖିରୁ ଝରେ ଲୋତକ ।
ବାଜେ ଭେରି ତୂରୀ ମୃଦଙ୍ଗ କାହାଳୀ ବଡଦାଣ୍ଡ କମ୍ପୁଅଛି
ଆକାଶେ ରହିଣ ସର୍ବ ଦେବଗଣ ପୁଷ୍ପବୃଷ୍ଟି କରୁଛନ୍ତି ।
ରଥପଥେ ଦେଖି ବାମନ ମୂରତି ନାଶିଲି କଳି କଳୁଷ
ଜୀବ ଯିବା କାଳେ ଶ୍ରୀମୁଖ ଦେଖିବି ପଦ୍ମପାଦେ ଥିବ ଆସ ।
ତୋ ଚକା ଆଖିରେ ମୋ ଆଖି ମିଶିଲେ ପଲକ ନ ପଡେ ଆଉ
ତୋହବିନା ମୋର କେ ଅଛି ସଂସାରେ କହିଦିଅ ମହାବାହୁ ।
ଜୀବଥିବା ଯାଏଁ ବରଷକେ ଥରେ ଆଡପ ମଣ୍ଡପ ଯାଇ
ଦର୍ଶନ କରିବି କରୁଣାସିନ୍ଧୁ ହେ ଏତିକି ମାଗୁଛି ମୁହିଁ ।
ଜୀବନ ଜଞ୍ଜାଳେ ଜଳିଜଳି ପ୍ରଭୁ ସଳିତା ଗଲାଣି ସରି
ମୋ ଅନ୍ତିମ ଆଶା ପୂରଣ କରିବ ଆହେ ନୀଳାଦ୍ରି ବିହାରୀ ।

ପ୍ଲଟ ନଂ– ୬କେ, ଚିନ୍ତାମଣିଶ୍ୱର,
ଭୁବନେଶ୍ୱର



# ଜଗତ ପଛେ ନର୍କେ ପଡ଼ିଥାଉ

ଗଣେଶ ମହାନ୍ତି

ଥକାମନ ଚାଲଯିବା ଚକାନୟନ ଦେଖିବା,
ଶଙ୍ଖନାଭି ମଣ୍ଡଳରେ ବେନିନେତ୍ର ପଖାଳିବା ।

କିମ୍ବା

କେଣେ ଘେନିଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ....

ଏମିତି ଅନେକ ଆକୁଳ ନିବେଦନ କାହାପାଇଁ, କିଏ ସିଏ ? ତା'ର ଉଭା କେତେ ପୋତା କେତେ– ରହନ୍ତି କୋଉଠି–ଖାଆନ୍ତି କ'ଣ ? କାହାକୁ କୋଳେଇ ନିଅନ୍ତି ତ–କାହାକୁ ଫିଙ୍ଗି ଦିଅନ୍ତି– କାହାପାଇଁ ଭୟଙ୍କର ରୂପ ଧାରଣ କରନ୍ତି ତ– କାହାର ସାଙ୍ଗ ସାଥି ପାଲଟି ଯାଆନ୍ତି । ସିଏ ଠାକୁର କି ପଥର–ଦାରୁ କି ଗରୁ ! ସେ ସ୍ଥୂଳ କି ସୂକ୍ଷ୍ମ–ସେ ଜାଗ୍ରତ କି ନିଦ୍ରିତ ? ଏମିତି ଅନେକ ଅସମାହିତ ପ୍ରଶ୍ନର ସମାଧାନ ନିମନ୍ତେ ଯୁଗ ଯୁଗ ଧରି ସାଧୁ–ସନ୍ଥମାନେ ତାଙ୍କୁ ଖୋଜି ଚାଲୁଥିଲେ–ଚାଲୁଛନ୍ତି–ଚାଲୁଥିବେ, ହେଲେ କିଏ କହି ପାରିବ ସିଏ ତା ବିଷୟରେ ସବୁ ଜାଣି ଯାଇଛି ବୋଲି ? 'ତା ମାୟା ତାକୁ ଅଗୋଚର–କାହୁଁ ଜାଣିବେ ସୁର ନର' ତା ପାଦ ପଦ୍ମକୁ ଟିକିଏ ସ୍ପର୍ଶ କରିବା ପାଇଁ ଭକ୍ତମାନଙ୍କ ମଧ୍ୟରେ କେତେ ଆକୁଳତା–ବ୍ୟାକୁଳତା, ହେଲେ ସିଏ ନିଜର ପାଦକୁ କୈବର୍ତ୍ତକୁ ବଢ଼ାଇ ଦେଲେ–ଶ୍ରୀବତ୍ସ ଗୋଇଠା ମାଇଲା ତା ପାଦକୁ ଆଉଁସି ଦେଲେ– ପ୍ରତିଦିନ ବଢ଼ାଯାଉଥିବା ଅନେକ ପ୍ରକାର ବ୍ୟଞ୍ଜନକୁ ପରିତ୍ୟାଗ କରି ବିଦୁରର ଖୁଦଭଜାକୁ ଆପଣେଇ ନେଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ସିଏ ଭୋଗୀର ଭୋଗରେ ନଥାଏ–ଯୋଗୀର ଯୋଗରେ ନଥାଏ–ଗର୍ବିର ଗର୍ବରେ ନଥାଏ, ତେବେ ଥାଏ କେଉଁଠି ? ସିଏ କେବଳ ପବିତ୍ର ଭାବରେ ଥାଏ, ସେଇଥିପାଇଁ କୁହାଯାଇଛି' ଭାବକୁ ନିକଟ ସିଏ, ଅଭାବକୁ ଦୂର' । ସିଏ କେବଳ ଭକ୍ତର, ଅନ୍ୟକାହାର ନୁହେଁ–ତା ପାଖରେ ଜାତି–ଧର୍ମ–ବର୍ଣ୍ଣର ମାନେ କିଛି ନାହିଁ । ଜାତି, ମଣିଷ ଜାତି–ଧର୍ମ, ମାନବ ଧର୍ମ । ସିଏ ସାଲବେଗ, ଦାସୀଆ ବାଉରୀ, ବନ୍ଧୁ ମହାନ୍ତିଙ୍କ ଭଳି ଭକ୍ତକୁ ଆପଣେଇ ନେଇଛନ୍ତି । ପଙ୍କକୁ ଗ୍ରହଣ ନକରି ନିଜର ରୂପକୁ ମଧ୍ୟ ବଦଳାଇ ଦିଅନ୍ତି । ତେଣୁ ସିଏ କାଠରେ ଅଛି–ପଥରରେ ଅଛି । ଧର୍ମକୁ ଅତି ନିକଟ, ଧନଠାରୁ ବହୁଦୂରରେ । ତେଣୁ କବି ଅତି ଦରଦ କଣ୍ଠରେ ଗାଇଛନ୍ତି....

କେଉଁ ନାମ ଧରି ଡାକିବି ତୁମଙ୍କୁ.....
ତୁମେ ଯେ ସର୍ବନାମ.....

ପ୍ରଭୁ ଯେତେ ରୂପ ହୁଅନ୍ତି–ଯେତେ ଭାବ ପ୍ରକାଶ କରନ୍ତି ସବୁ ଭକ୍ତର ଇଚ୍ଛା ପୂରଣ ନିମନ୍ତେ ସେଥିମଧ୍ୟରୁ ଗୋଟିଏ ଉଦାହରଣ ନେବା ସ୍ନାନ ମଣ୍ଡପରେ ଗଜାନନ ବେଶ ।

ସଦା ଗଣେଶଙ୍କୁ ଆରାଧନା କରୁଥିବା ଗଣେଶ ଭଟ୍ଟ ନାମରେ ଜଣେ ଭକ୍ତ । ଶୁଣିଲା ଶ୍ରୀକ୍ଷେତ୍ର ଧାମ, ଓଡ଼ିଶାର ପୁରୀର ଗୋଟିଏ ସ୍ଥାନ, ସେଠାରେ ଜଗନ୍ନାଥ ବୋଲି ଗୋଟିଏ ଠାକୁର ପୂଜା ପାଉଛନ୍ତି ଚତୁର୍ଦ୍ଧା ମୂରତି ଭାବରେ–ତା'ର ସବୁ ବଡ଼, ଯଥା– ସିଏ ନିଜେ ବଡ଼ ଠାକୁର, ତା'ଦେଉଳ ବଡ଼ ଦେଉଳ, ତା ପୂଜକ ବଡପଣ୍ଡା, ତା ଦାଣ୍ଡ ବଡ଼ ଦାଣ୍ଡ, ତା ପ୍ରସାଦ ମହାପ୍ରସାଦ, ତା ନେତ ବଡ଼ ନେତ, ଏମିତି ସବୁ ବଡ଼ ଭିତରେ ଭକ୍ତ ପାଇଁ ସିଏ ସବୁଠାରୁ ଛୋଟ, ତେଣୁ ଭକ୍ତ ନିକଟରେ ସିଏ କଳ୍ପନାର ଠାକୁର, ତାର ରୂପ ନାହିଁ–ସିଏ ଅରୂପ, ତାର ଆକାର ନାହିଁ, ସିଏ ନିରାକାର । ହେଲେ, ଯେଉଁ ଭକ୍ତ ତାକୁ ଯେଉଁ ରୂପରେ କଳ୍ପନା କରେ ସିଏ ସେଇ ରୂପରେ ତା ଭକ୍ତ ନିକଟରେ ପ୍ରକଟ ହୁଏ । ଗଣେଶ ଭଟ୍ଟ ମନରେ ଆଗ୍ରହ ଜନ୍ମିଲା–ବାହାରିଲା ଶ୍ରୀକ୍ଷେତ୍ର ପୁରୀ, ପ୍ରଭୁଙ୍କୁ ତାର ଇଷ୍ଟ ଗଣେଶ ରୂପରେ ଦର୍ଶନ କରିବାକୁ । ପୁରୀରେ ପହଞ୍ଚି ଶ୍ରୀକ୍ଷେତ୍ର ଧାମରେ ପାଦ ପକାଉ ପକାଉ ତାଙ୍କ ଶରୀରରେ ଅହେତୁକ କମ୍ପନ ସୃଷ୍ଟିହେଲା– ସେ ଭୁଲିଗଲା ନିଜର ସ୍ଥିତିକୁ–ଭୁଲିଗଲା ନିଜର ଅବସ୍ଥିତିକୁ, ଯୁଆଡ଼େ

ତାଙ୍କ ଆଖିପଡ଼ିଲା ସିଆଡ଼େ ତାଙ୍କୁ ଗଣେଶ ଠାକୁରଙ୍କ ରୂପ ଦେଖାଗଲା–ସତେ ଯେମିତି ସିଏ ଗଣେଶ ପୁରରେ ପହଞ୍ଚିଯାଇଛି । ବୁଝିପାରିଲା ନାହିଁ, ପାଗଳ ପରି ଗଣେଶଙ୍କୁ ଆଲିଙ୍ଗନ କରିବାକୁ ବସନ୍ତେ ଗଣେଶ ଟିକିଏ ଦୂରକୁ ଚାଲିଗଲେ ପୁଣି ହଠାତ୍ ଡାକନ୍ତି– ଆଖିରେ ଇଶାରା ଦିଅନ୍ତି, ଆ, ମୋ ପାଖକୁ ଆ, ମୁଁ ପରା ତୋ ପ୍ରଭୁ– ଭଗବାନ, ତୁ ପରା ମୋ ପୁଅ– ଭକ୍ତ, ତତେ କୋଳକୁ ନେବି ନାହିଁ ତ ଆଉ ନେବି କାହାକୁ ? ବଡ଼ ଦାଣ୍ଡରେ ଭକ୍ତ ଭଗବାନଙ୍କର ଖେଳ, ଅନୁଭବି ଅନୁଭବ କରିଛି । ଭାବିଲା ଲୋକକୁ ବାଟ ପଡ଼ିଅଛି–ନଭାବିବା ଲୋକ ଅନ୍ଧ । ଏଇ ଛାଇ–ଆଲୁଅା ଖେଳ ଭିତରେ ଭକ୍ତ ଗଣେଶ ଭଟ୍ଟ ରାଜାନଅର ପାଖରେ ପହଞ୍ଚିଯାଇଛନ୍ତି– ଯୋଗକୁ ସେ ଦିନ ସ୍ନାନ ପୂର୍ଣ୍ଣିମା, ପ୍ରଭୁ ସ୍ନାନ କରିବା ଉଦ୍ଦେଶ୍ୟରେ ସ୍ନାନ ମଣ୍ଡପରେ ବିଦ୍ୟମାନ–ଭକ୍ତର ଆଖି ପଡ଼ିଗଲା ଭଗବାନଙ୍କ ଉପରେ–ଚାରି ଆଖି ମିଳନ, ଜଗା ଅଧରରୁ ସ୍ମିତହାସ୍ୟ ଝରି ପଡୁଛି ପଦ୍ମ ପାଖୁଡ଼ା ଭଳି–ବୁଝିପାରିଲାନି ଭକ୍ତ, ପ୍ରଭୁଙ୍କ କୃପା ନ ହେଲେ ତାକୁ ବୁଝିବ ବା କିପରି–ନିଜକୁ ନିଜେ ଧରା ନ ଦେଲେ–ମା ଯଶୋଦାର ଶକ୍ତି କେତେ ତାକୁ ଧରିବାକୁ, ଅଭିମାନରେ ମ୍ରିୟମାଣ ଭକ୍ତ ଆସିଲାବେଳେ ଯାହା ଭାବିଥିଲା–ପହଞ୍ଚି ଯାହା ଅନୁଭବ କଲା, ସବୁ ମିଛ–ସବୁ ଅସତ୍ୟ । ଫେରି ଯାଉଛି ଭକ୍ତ, ଗଣେଶ ଭଟ୍ଟ ମନରେ ଅନେକ ପ୍ରଶ୍ନ ନେଇ । ଲୀଳାମୟ ଲୀଳାର ଠାକୁର ପୁଣି ଲୀଳା ରଚନା କଲେ ନିଜର ଭକ୍ତକୁ ଫେରାଇ ଆଣିବାକୁ ବଡ଼ପଣ୍ଡାକୁ ନିର୍ଦ୍ଦେଶ ଦେଲେ– ବଡ଼ପଣ୍ଡାଙ୍କ ଅନୁରୋଧରେ ଭକ୍ତ ଫେରି ଆସିଲେ । ଆରେ ଇଏ କ'ଣ ଦେଖୁଛି–ନିଜର ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ଦେହ ଥରି ଉଠିଲା–ମୁଣ୍ଡ ବୁଲାଇ ଦେଲା–ଶରୀରରୁ ଶ୍ରମ ଝାଳ ବୋହି ଚାଲିଲା, ଯେଉଁଠି ଟିକିଏ ପୂର୍ବରୁ ଛିଡ଼ା ହୋଇ ତା ପ୍ରଭୁଙ୍କୁ ଦେଖି ପାରିନଥିଲା ଏବେ ସେଇଠି ଛିଡ଼ା ହୋଇ ତା ପ୍ରଭୁକୁ ଦେଖୁଛି–ତା ଗଣନାଥ, ଗଣେଶଙ୍କୁ ଦେଖୁଛି । ଆଖିରୁ ଝର ଝର ହୋଇ ଝରିପଡୁଛି ଭକ୍ତିର ଅଶ୍ରୁଧାରା–ଗଡ଼ିଯାଉଛି ବଡ଼ଦାଣ୍ଡର ଧୂଳିରେ, ଧାଇଁଗଲା ମନ୍ଦିର ଭିତରକୁ–ପଡ଼ିଗଲା ପ୍ରଭୁଙ୍କ ପାଦତଳେ, ନିବେଦନ କଲା, ଧନ୍ୟ ଧନ୍ୟ ତମେ ଭକ୍ତର କଳା ଠାକୁର–ଭକ୍ତର ପ୍ରାଣ ଧନ– ଭକ୍ତର ଜୀବନ । ନତମସ୍ତକ ଭକ୍ତ, ଗଣେଶ ଭଟ୍ଟଙ୍କୁ ଗଜାନନ ବେଶରେ ଦର୍ଶନ ଦେଇଥିବାରୁ, ସେଇ ଦିନଠାରୁ ସ୍ନାନ ମଣ୍ଡପରେ ଗଜାନନ ବେଶ ହୋଇ ଆସୁଛନ୍ତି ପ୍ରତିବର୍ଷ ।

ଏବେ ଭକ୍ତଙ୍କର ଅଭାବ ନାହିଁ–ଭକ୍ତିର ଅଭାବ । ଧନର ଅଭାବ ନାହିଁ ଧର୍ମର ଅଭାବ, ମଣିଷର ଅଭାବ ନାହିଁ ମଣିଷପଣିଆର ଅଭାବ । ପ୍ରଭୁ ଘୃଣା କରୁଥିବା ଗର୍ବକୁ ଗର୍ବୀ ମଣିଷ ଆପଣେଇ ନେଇଛି । ଧନ ବଳରେ ଧର୍ମ କିଣିବାକୁ ମନ ବଳାଇଛି–ଶକ୍ତି ବଳରେ ଭକ୍ତି ଦେଖାଇବାକୁ ଚେଷ୍ଟା କରୁଛି– ଦୀନ ବଦଳରେ, ପ୍ରଭୁର ମାନ୍ୟତା ଲାଭ କରିବାକୁ ଅଭିଳାଷ ପୋଷଣ କରୁଛି । ଭାଗବତରେ ପୌଣ୍ଡ୍ରକ ଭଳି ଏବେ ବହୁ ପୌଣ୍ଡ୍ରକଙ୍କର ଆବିର୍ଭାବ ଘଟୁଛି ।

ଭାଗବତ କହୁଛି 'ବୁଝି ବିଚାରି କାମ କଲେ– ପ୍ରମାଦ ନ ପଡ଼ଇ ଭଲେ' ହେ ଭକ୍ତଗଣ, ସମାଜ ବର୍ତ୍ତମାନ କଳୁଷିତ– ପ୍ରାୟ ଅନେକ ନିଜର ସ୍ୱାର୍ଥ ପୂରଣ କରିବା ନିମନ୍ତେ ବିଭିନ୍ନ ଆଳରେ ଆପଣମାନଙ୍କ ମନରେ ଧର୍ମର ବିଶ୍ୱାସ ଜନ୍ମାଇ ନିଜର ହୀନ ଉଦ୍ଦେଶ୍ୟ ପୂରଣ କରିଚାଲିଛନ୍ତି । ବାହ୍ୟ ଚାକଚକ୍ୟରେ ମନ ନବଳାଇ ସାତ୍ତ୍ୱିକର ଦେବତା ଜଗନ୍ନାଥଙ୍କୁ ଚିନ୍ତନ କର– ଜଗନ୍ନାଥ ବିଶ୍ୱାସର ପ୍ରତୀକ । ମାନବକୁ କୋଳେଇ ନେଇ ଉଦ୍ଧାର କରେ ଦାନବକୁ ନିଧନ କରି ଉଦ୍ଧାର କରେ, ଭୂତ–ପ୍ରେତଙ୍କୁ ଅଧରପଣା ଦେଇ ଉଦ୍ଧାର କରେ । ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ବାମନ ରୂପରେ ରଥରେ ବିରାଜମାନ କରନ୍ତି– ସତରେ କେଡ଼େ ବିଚିତ୍ର ଆମର ଏଇ କାଳିଆ ସାଆନ୍ତ । ଯଦି ଯାଉଛ ଶ୍ରୀକ୍ଷେତ୍ରକୁ ଯାଅ, ଯଦି ଦେଖୁଛ ଜଗନ୍ନାଥଙ୍କୁ ଦେଖ, ଯଦି ଖାଉଛ ମହାପ୍ରସାଦ ଖାଅ, ଯଦି ଗାଉଛ ଜଗନ୍ନାଥଙ୍କ ଭଜନ ଗାଅ, ଆଉ ସବୁ ବର୍ଜନୀୟ । କବି ଗାଇଛନ୍ତି:–

ଜୟ ଜୟ ଜଗନ୍ନାଥ– ଜଗନ୍ନାଥ– ଜଗନ୍ନାଥ
ବଳଭଦ୍ର–ସୁଭଦ୍ରା–ମା ସୁଦର୍ଶନ–ଶିରୀକ୍ଷେତ୍ର ।

ନାମରେ ତାର ଭାରି ଶରଧା । ଅନ୍ତରରେ ତାକୁଯିଏ ଡାକିଛି, ଅତୀତରେ ପାଇଥିଲେ–ବର୍ତ୍ତମାନ ପାଉଛନ୍ତି–ଭବିଷ୍ୟତରେ ମଧ୍ୟ ପାଇବେ, ଏଥିରେ ଦ୍ୱିମତର କାରଣ ନାହିଁ । ଜଗନ୍ନାଥ ଲୀଳାର ଠାକୁର । ଲୀଳା କରିବା ପାଇଁ ସାଥିରେ ପଞ୍ଚସଖାକୁ ଧରି ଆସନ୍ତି । ସତ୍ୟଯୁଗରେ ପ୍ରଭୁଙ୍କ ସଖା ଥିଲେ ସନକ, ସନାତନ, କପିଳ, କୃପାଜଳ, ଗୋଧୁ । ତ୍ରେତୟା ଯୁଗରେ ସଖା–ନଳ, ନୀଳ, ଜାମ୍ବବ, ସୁଶେଷ, ବୀର ହନୁମାନ । ଦ୍ୱାପରର ସଖା ଦାମ, ସୁଦାମ, ସୁବଳ, ବାହୁ, ସୁବାହୁ, କଳିଯୁଗର ସଖା–ଯଶୋବନ୍ତ, ଅନନ୍ତ, ଅଚ୍ୟୁତ, ବଳରାମ, ଜଗନ୍ନାଥ । ହେ ଭକ୍ତବୃନ୍ଦ, ଭୀମଭୋଇ ଯେପରି ସମର୍ପଣ ଭାବ ନେଇ ରଚନା କରିଥିଲେ– 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ–ଜଗତ ଉଦ୍ଧାର ହେଉ । ସଂସାରର ମଙ୍ଗଳ ପାଇଁ କାର୍ଯ୍ୟକର, ମନ୍ଦ ଉଦ୍ଦେଶ୍ୟ ରଖି କୁହନାହିଁ । ଜଗତ ପଛେ ନର୍କେ ପଡ଼ିଥାଉ–ମୋ ଜୀବନ ଉଦ୍ଧାର ହେଉ ।

ଭିଜିଲାନ୍ସ କଲୋନୀ
କଲ୍ୟାଣୀ ନଗର, ଘ.ନଂ–ଇ/୬
କଟକ–୭୫୩୦୧୩

# ଯାତ୍ରା ମଧ୍ୟେ ରଥଯାତ୍ରା

**ବ୍ରହ୍ମାନନ୍ଦ ମହାନ୍ତି**

ରଥ ଯାତ୍ରା । ରଥରେ ଯାତ୍ରା କରନ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ସହିତରେ ତିନି ଠାକୁର ବିରାଜିତ ହେଲେ ମଧ୍ୟ ଲକ୍ଷ ଲକ୍ଷ ଜନତାଙ୍କ କଣ୍ଠରୁ ଭାସି ଆସେ– ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ବୋଲି । ଜଗନ୍ନାଥ ବୋଲି ସମ୍ବୋଧନ କରି ଦେଲେ ଯେପରି ସର୍ବ ଦେବାଦେବୀ ବୁଝା ପଡ଼ିଯାଏ । ତିନି ଠାକୁର ବୋଲି କହି ଥାଏ । ଏ କ୍ଷେତ୍ରରେ ସୁଭଦ୍ରାଙ୍କୁ ଠାକୁରାଣୀ ବୋଲି ସମ୍ବୋଧନଟା ବାଦପଡ଼ି ଯାଉଥିଲେ ମଧ୍ୟ 'ତ୍ୱମେବ ମାତା– ପିତା ତ୍ୱମେବ' ଅର୍ଥରେ 'ଅ' 'ଉ' 'ମ' ସଂଯୁକ୍ତ ତିନିଠାକୁର ଓଁ କାର ମଧ୍ୟରେ ସ୍ୱର୍ଗତଃ ସମ୍ବୋଧିତ ହୋଇପଡ଼ନ୍ତି ।



ଏହି ବିସ୍ମୟାଭିଭୂତ ଜଗନ୍ନାଥଙ୍କର ଅଗଣିତ ପର୍ବପର୍ବାଣି ମଧ୍ୟରୁ ବାରଗୋଟି ବିଶେଷ ଯାତ୍ରା ଅଧିକ ଲୋକପ୍ରିୟ । ଏହି ବାର ପର୍ବ ହେଲା:–

୧) ସ୍ନାନ ଯାତ୍ରା, (୨) ରଥ ଯାତ୍ରା, (୩) ଶୟନ ଯାତ୍ରା, (୪) ଦକ୍ଷିଣାୟନ ଯାତ୍ରା, (୫) ପାର୍ଶ୍ୱ ପରିବର୍ତ୍ତନ ଯାତ୍ରା, (୬) ଉତ୍‌ଥାପନ ଯାତ୍ରା, (୭) ପ୍ରାବରଣ ଷଷ୍ଠୀ (ଯାତ୍ରା), (୮) ପୁଷ୍ପାଭିଷେକ ଯାତ୍ରା, (୯) ଉତ୍ତରାୟଣ ଯାତ୍ରା, (୧୦) ଦୋଳ ଯାତ୍ରା, (୧୧) ଦମନକ ଯାତ୍ରା, (୧୨) ଚନ୍ଦନ ଯାତ୍ରା ।

ଏହି ବାର ଯାତ୍ରା ମଧ୍ୟରୁ ଦୁଇଟି ଯାତ୍ରାର ଗୁରୁତ୍ୱ ଅଧିକ ଯଥା–ସ୍ନାନ ଯାତ୍ରା ଓ ରଥ ଯାତ୍ରା । ରଥଯାତ୍ରାର ବିଶେଷତ୍ୱ ବିଶ୍ୱବିଦିତ । ବିଶ୍ୱର କୋଣ ଅନୁକୋଣରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ରଥ ଯାତ୍ରା ମହାସମାରୋହରେ ପାଳନ କରାଗଲାଣି ।

ଏହି ରଥଯାତ୍ରା କେବେଠୁଁ ପାଳିତ ହୋଇ ଆସୁଛି ତାର ନିର୍ଦ୍ଦିଷ୍ଟ କୌଣସି ପ୍ରମାଣ ମିଳେ ନାହିଁ । କିଏ କହେ ଆଦି ଶଙ୍କରାଚାର୍ଯ୍ୟ ଆରମ୍ଭ କରିଥିଲେ ତ କିଏ କହେ ରାଣୀ ଗୁଣ୍ଡିଚା । ତେବେ ଗୁଣ୍ଡିଚା ଦେବୀ ଏହା ପ୍ରଚଳନ କରିବା କଥାଟିକୁ ଲୋକେ ବେଶୀ ଗୁରୁତ୍ୱ ଦେଇ ଥାନ୍ତି । ତେଣୁ ରଥ ଯାତ୍ରାର ଅନ୍ୟ ନାମ ଗୁଣ୍ଡିଚା ଯାତ୍ରା ।

ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନିକଟ ଗୁଣ୍ଡିଚା ମନ୍ଦିର ମହା ବେଦୀ ଉପରେ ଶ୍ରୀଜଗନ୍ନାଥ ପ୍ରଥମେ ଆବିର୍ଭୂତ ହୋଇଥିବା କାରଣେ ଏହିଠାରେ ରାଜା ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ । ତେଣୁ ବର୍ଷରେ ଥରେ ଏହି ମହାବେଦୀ ଉପରେ ଅବସ୍ଥାନ କରିବା ପାଇଁ ରଥଯାତ୍ରା ପ୍ରଚଳିତ ହୋଇ ଆସୁଛି ବୋଲି ବହୁ ବହୁ ପଣ୍ଡିତ ଓ ଗବେଷକ ମତ ପ୍ରକାଶ କରିଛନ୍ତି ।

ଗୁଣ୍ଡିଚା ଯାତ ସମ୍ବନ୍ଧରେ ଆଉ ଏକ ମତ ମଧ୍ୟ ପ୍ରଚଳିତ । 'ଗୁଡ଼ିସା' ଶବ୍ଦରୁ ଗୁଣ୍ଡିଚା ନାମକରଣ ହୋଇ ଥିବା ଲୋକମତ ରହିଛି । ଗୁଡ଼ିସା ଅର୍ଥ କାଠ । ତିନି ଠାକୁର ତ କାଠରେ ତିଆରି । ଏହି ଯାତ୍ରା କାଠ ଦେବତାଙ୍କ ଯାତ୍ରା ହୋଇ ଥିବାରୁ ଗୁଡ଼ିସାରୁ ଗୁଣ୍ଡିଚା ହୋଇଥିବା ମତାମତ ମଧ୍ୟ କେତେକ ଗବେଷକ ଦେଇଛନ୍ତି ।

ଚୋଡଗଙ୍ଗ ଦେବ ସିଂହାସନ ଆରୋହଣ ବେଳକୁ ପୁରାତନ ଜଗନ୍ନାଥ ମନ୍ଦିର ଅତି ପୁରୁଣା ହୋଇ ଯାଇଥିଲା । ଏଣୁ ଚୋଡ଼ଗଙ୍ଗ ଦେବ ପୁନର୍ବାର ନୂତନ ମନ୍ଦିର ନିର୍ମାଣ କଲେ । ଚୋଡଗଙ୍ଗ ଦେବଙ୍କର ରାଣୀ ନାମ 'ଗଣ୍ଡିରୋଡ଼ି' । ରାଣୀ ଗଣ୍ଡିରୋଡ଼ି ପ୍ରଥମେ ରଥଯାତ୍ରା ଆରମ୍ଭ କରିଥିବା ଲୋକମତ ମଧ୍ୟ ରହିଛି । ଏହି ଗଣ୍ଡିରୋଡ଼ି ନାମ କାଳକ୍ରମେ ଗୁଣ୍ଡିଚାରେ ପ୍ରଚଳିତ ହୋଇଥିବା ମତାମତ ମଧ୍ୟ ଅପ୍ରାସଙ୍ଗିକ ନୁହେଁ ।

ଯେଉଁ କାରଣ ଥାଉ ନା କାହିଁକି ଜନଜୀବନ ପାଇଁ ରଥ ଯାତ୍ରାହିଁ ଜୀବନ ଜ୍ୟୋତିର ଯାତ୍ରା । କଥାରେ ଅଛି– ରଥ ଉପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ମନୁଷ୍ୟ ଅଶେଷ ପୁଣ୍ୟ ଲାଭ କରିଥାଏ । ଯାହା ଫଳରେ ସେ ମୁକ୍ତିଲାଭ କରିଥାଏ ଏବଂ ଆଉ ଏ ପାପପୂର୍ଣ୍ଣ ମାୟା ସଂସାରରେ ଜନ୍ମ ଲାଭ ନକରି ଜଗନ୍ନାଥ ଅଙ୍ଗରେ ଲୀନ ହୋଇ ଯାଇ ମୋକ୍ଷ ପ୍ରାପ୍ତ ହୋଇଥାଏ ।

ମୋକ୍ଷ, ମୁକ୍ତି ହିଁ ଜୀବନର ପରମ ପଥ । ଏଥିପାଇଁ କେବଳ ଦର୍ଶନ ନୁହେଁ, ଦର୍ଶନ ସହିତ ଭକ୍ତିର କୁସୁମାଞ୍ଜଳି ତାଙ୍କ ପାଦପଦ୍ମରେ ଅଜାଡ଼ି ଦେବାକୁ ପଡ଼େ । ଭକ୍ତର ଭଗବାନ ସେ । ଭକ୍ତି ଓ ଭକ୍ତ ପାଇଁ ସେ ସଦାସର୍ବଦା ଜାଗ୍ରତ । ପତିତପାବନ ନାମ ତାର । ପତିତ ତାରଣ ପାଇଁ ବରଷକେ ଥରେ ଆସନ୍ତି ଆମ ଗହଣକୁ । କଥାରେ ପୁଣି ଅଛି ତରନ୍ତି ପତିତ, ଭକ୍ତ ମରନ୍ତି ହକତ । ଏ କି କଥା । ତରନ୍ତି ପୁଣି ମରନ୍ତି । 'ମର' ଶବ୍ଦଟି ଏଠି ଅମରତ୍ୱର ପ୍ରତୀକ । ରଥ ଯାତ୍ରାକୁ ମାନବ ଜୀବନ ସଙ୍ଗେ ତୁଳନା କରାଯାଇଛି । ପ୍ରତିଟି ମାନବ ଶରୀର ଏକ ଏକ ରଥ । ଏହି ଶରୀର ରୂପୀ ରଥରେ ଆତ୍ମା ହିଁ ରଥୀ । ପାଞ୍ଚମନ ପଚିଶି ପ୍ରକୃତି ହେଉଛି ରଥକୁ ଟାଣୁଥିବା ଘୋଡ଼ାମାନେ । ବିବେକ ହିଁ ଘୋଡ଼ାମାନଙ୍କୁ ଶୃଙ୍ଖଳିତ କରି ଉଚିତ୍ ରାସ୍ତାରେ ଚଳାଇବା ପାଇଁ ଚାବୁକ୍ ସଦୃଶ । ପ୍ରତ୍ୟେକ ଦେହ ରୂପକ ରଥରେ ବିରାଜିତ ଶ୍ରୀଜଗନ୍ନାଥ ।

ମାନବ ଶରୀର ହିଁ ପିଣ୍ଡ ବୋଲି ବର୍ଣ୍ଣନା କରାଯାଇଛି । ପିଣ୍ଡର ଲୀଳାକ୍ଷେତ୍ର ହିଁ ବ୍ରହ୍ମାଣ୍ଡ । ଜଗନ୍ନାଥ ବ୍ରହ୍ମ ରୂପରେ ବିରାଜିତ । ବ୍ରହ୍ମର ନିର୍ଦ୍ଦେଶରେ ପିଣ୍ଡ ବ୍ରହ୍ମାଣ୍ଡରେ ଶରୀର ଧାରଣ ପାଇଁ ଅର୍ଥାତ୍ ଜନ୍ମ ମରଣ ପାଇଁ ସକ୍ଷମ ହୋଇଥାଏ । ଏଣୁ ଜଗନ୍ନାଥଙ୍କ ଦରବାରରେ ଭକ୍ତ ପାଇଁ ମର–ଅମର ଶବ୍ଦ ଏକା କଥା । ମରି ମଧ୍ୟ ଅମର ଥିଲେ ଭକ୍ତ । ପତିତ ବି ପାଲଟି ଯାଏ ପରମ ଭକ୍ତରେ । ଭକ୍ତ ମର ଅମର ଯେମିତି, ଯେଉଁ ରୂପରେ ଥିଲେ ବି ଜଗନ୍ନାଥ କେବେ ପାଶୋରି ନଥାନ୍ତି । ରଥ ଯାତ୍ରାରେ ପୁଣି ବାରମ୍ବାର ମନେ ପଡ଼ିଯାନ୍ତି ଜଗନ୍ନାଥଙ୍କର । ଭକ୍ତର ଦର୍ଶନ ପାଇଁ ସତେ ପ୍ରାଣ ତାଙ୍କର ଏପରି ବ୍ୟାକୁଳ ହୋଇ ଉଠେ ଯେ ଘର ଦ୍ୱାର, ପରିବାର ସଂସାର ସବୁ ଯେପରି ଅସାର ଲାଗେ ତାଙ୍କ ମନକୁ । ଝୁଲି ଝୁଲି ବାହାରି ଯାନ୍ତି ଶ୍ରୀମନ୍ଦିରରୁ । ଝୁଲା ଦୋହଲା ଭୁଲା ମନ ବି ଭୁଲି ଯାଆନ୍ତି ଲକ୍ଷ୍ମୀ ପାଟରାଣୀଙ୍କୁ ସଙ୍ଗରେ ନେବାକୁ । ଯାହା କିଛି ଘଟି ଯାଉ ପଛେ– ଲକ୍ଷ୍ମୀଛଡ଼ା ହୁଅନ୍ତୁ ପଛେ ଭକ୍ତକୁ ଦର୍ଶନ ଦେବେ ଆଉ ଦର୍ଶନ କରିବେ ପରମ ଭକ୍ତଙ୍କୁ ।

ଅଟକି ଯାନ୍ତି ସାଲବେଗଙ୍କ ସମାଧି ପୀଠରେ । ଯାହାଙ୍କର ଭକ୍ତିରେ କୁସୁମ ମାଳ ପାଇଁ ଅଟକି ଯାଇଥିଲେ ସେଦିନ ଗଳାରେ ଲମ୍ବେଇ ଦେଇ ଥିଲେ ଭକ୍ତିର ସ୍ୱର୍ଣ୍ଣମୟ ହାର– କିପରି ଭୁଲିବେ ତାଙ୍କୁ । ସାଲବେଗଙ୍କର ଭକ୍ତି ନିକଟରେ ନିଜକୁ ସମର୍ପି ଦେଇ ଭୋଗ ଖାଇ ଚାଲି ଯାନ୍ତି ଆଶିଷ ଅଜାଡ଼ି ଦେଇ । ଜନମାନସରେ ଖେଳି ଯାଏ ସାଲବେଗଙ୍କ ସମ ଭକ୍ତିରସାମୃତ ।

ଅଟକି ବି ଯାଇ ଥାନ୍ତି କୁମ୍ଭାର ସାହିର ସେହି ନୀଳୀ କୁମ୍ଭାରୁଣୀ ଘରଟି ପାଖରେ । ଅନାନ୍ତି ନୀଳୀ କୁମ୍ଭାରୁଣୀଙ୍କୁ । କିପରି ଭୁଲିବେ ତାର ଭକ୍ତି ଗଢ଼ା–ଭକ୍ତି ସମର୍ପିତ କୁଡ଼ିଆକୁ । ସତେ ପହଞ୍ଚି ଯାଏ ପାଖରେ ନୀଳୀ କୁମ୍ଭାରୁଣୀ ବୋଧେ କଥା ଦିପଦ ହୋଇ ପଡ଼ନ୍ତି ଦୁହେଁ । ପାତ୍ର ପାଲଟି ଯାନ୍ତି ଶ୍ରୀଜଗନ୍ନାଥ । ପଦାର୍ଥ ପାଲଟି ଯାଏ ନୀଳୀ କୁମ୍ଭାରୁଣୀ । ଭକ୍ତି ପ୍ରସାଦ ପୂର୍ଣ୍ଣ ଅମୃତର ପାତ୍ରକୁ ସତେ ଲେହନ କରୁ କରୁ ଚାଲି ଯାନ୍ତି ସଦ୍ୟ ଭୋଗରାଗ ସେବନ କରି ।

ହେ, ଜଗନ୍ନାଥ ! କି ଅଲୌକିକତା ଭାବ ତୋ ପାଖରେ । କି ଲୌକିକତାର ଉପଚାର ତୋ ପାଖରେ । କି ଶକ୍ତି ଯେ ତୋ ପାଖରେ । ଟାଣି ଆଣିଛୁ ସର୍ବଧର୍ମର ଧାରକମାନଙ୍କୁ । ଆସିଛନ୍ତି ଯୀଶୁ, ଆସିଛନ୍ତି ନାନକ । ଆସିଛନ୍ତି ମହମ୍ମଦ, ଆସିଛନ୍ତି ଚୈତନ୍ୟ । ସତରେ ସର୍ବଧର୍ମ ସମନ୍ୱୟର ଦେବତା ତୁ । ସକଳ ଧର୍ମ କର୍ମ ସୃଷ୍ଟି ତୋ ପାଖରୁ । ସକଳ ଯାତନା ବି ତୋରି ପାଖରୁ ସୃଷ୍ଟି । ଯାତନା ଯନ୍ତ୍ରଣା ପାଇଁ ନୁହେଁ । ଯାତନା ହିଁ ତୋ ପାଇଁ ପରୀକ୍ଷା । ମହାପରୀକ୍ଷଣ ନିର୍ଯ୍ୟାତନାରେ ସ୍ୱଚ୍ଛ କରିବାକୁ ଚାହିଁଥାଉ ଜଗତଜନଙ୍କୁ । ଅବତାର ଧରି ଥାଉ ଜଗତଙ୍କ ମଙ୍ଗଳ ପାଇଁ ।

ହେ ଇଚ୍ଛା ମୟ ! ଇଚ୍ଛା କରିଛି ତୁମ କରୁଣାର ରେଣୁ ଟିକକ ପାଇଁ । ହାତ ପାତିଚି ପ୍ରଭୁ । ପାତିଥିବି ଅନାଦି ଅନନ୍ତ କାଳପର୍ଯ୍ୟନ୍ତ ।

ପ୍ରତିଷ୍ଠାତା ସଭାପତି, ଉତ୍କଳ ଗ୍ରାମ ସ୍ୱରାଜ୍ୟ
ନେତାଜୀ ନଗର
ମଧୁପାଟଣା, କଟକ–୧୦

# ଓଡ଼ିଶାର ଗ୍ରାମ୍ୟ ସଂସ୍କୃତିରେ ରଥଯାତ୍ରା

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତ୍‌ସ)

ପୁରୁଷୋତ୍ତମ କ୍ଷେତ୍ର ଭାବରେ ଓଡ଼ିଶା, ଭାରତ କାହିଁକି ଏହା ମଧ୍ୟ ବିଶ୍ୱ ପ୍ରସିଦ୍ଧ । ଶ୍ରୀକ୍ଷେତ୍ର ଭାବରେ ପ୍ରତିଷ୍ଠା ଅର୍ଜନ କରିଛି ଓଡ଼ିଶାର ଏହି ଜଗନ୍ନାଥ ଧାମ ପୁରୀ । ଏବେ ବି ଓଡ଼ିଶାର ଶାସକ ହେଉଛନ୍ତି ଏହି ଶ୍ରୀକ୍ଷେତ୍ର ନିବାସୀ ଠାକୁର ରାଜା ଗଜପତି । ଜଗନ୍ନାଥ ସଂସ୍କୃତିର ଖିଅରେ ବାନ୍ଧି ହୋଇ ରହିଛି ଆମ ଓଡ଼ିଶାର ପୁରପଲ୍ଲୀ । ସବୁଠି ଜଗନ୍ନାଥଙ୍କର ଆବିର୍ଭାବ, ପୂଜାବିଧି, ପର୍ବପର୍ବାଣି ଓ ଯାନିଯାତ୍ରା । ଏହି ପୁଣ୍ୟ ଭୂମିର ସର୍ବତ୍ର ଶ୍ରୀଜଗନ୍ନାଥଙ୍କ ଉପାସନା କରାଯାଏ । ତାଙ୍କୁ ନେଇ ସର୍ବତ୍ର ବାର ମାସରେ ତେର ଯାତ୍ରା ପାଳନ ହୁଏ । ଜଗନ୍ନାଥ ସଂସ୍କୃତିକୁ କାଢ଼ି ନେଲେ ମନେ ହେଉନି ଆଉ କିଛି ଓଡ଼ିଶାର ସଂସ୍କୃତି ଅଛି । ଜଗନ୍ନାଥଙ୍କ ପାଇଁ ଓଡ଼ିଶାର କି ନିପଟ ପଲ୍ଲୀ ବା ସହର ସବୁଠି ମଠ ମନ୍ଦିରମାନ କେଉଁ ଶହଶହ ବର୍ଷତଳୁ ତିଷ୍ଠି ରହି ଏ ରାଜ୍ୟର ପାଣିପବନ ଧୂଳି ମାଟିକୁ ଜଗନ୍ନାଥମୟ କରି ଦେଇଛି । ହିନ୍ଦୁ ସଂସ୍କୃତିର ପରିଚାୟକ ରୂପେ ଏ ଦେଶର ଚତୁଃସ୍କୋଣରେ ଥିବା ଚର୍ତୁଧାମ ମଧ୍ୟରୁ ଓଡ଼ିଶାରେ ରହିଛି ଜଗନ୍ନାଥ ଧାମ । ଏହା କଣ ଆମ ପାଇଁ କମ୍ ଗର୍ବ ଓ ଗୌରବର କଥା ନୁହେଁ ! ଏବେ ଆସନ୍ତୁ ଦେଖିବା ଓଡ଼ିଶାର ଗ୍ରାମ୍ୟ ମଠ ମନ୍ଦିର ସଂସ୍କୃତିରେ କିଭଳି ଭାବେ ଜଗନ୍ନାଥଙ୍କ ପୂଜାବିଧି ଓ ରଥଯାତ୍ରା ଏଯାବତ୍ ପାଳିତ ହେଉଥିବାର ଦୃଷ୍ଟାନ୍ତ ରହିଛି ।

ଦକ୍ଷିଣ ଓଡ଼ିଶାର ଉପାନ୍ତ ଅଂଚଳର ଏକ ନିପଟ ମଫସଲ ଗାଁ ବୟାଳୀ । ପ୍ରାଚୀନ ସଂସ୍କୃତି ଓ ଐତିହ୍ୟର କେନ୍ଦ୍ରଭୂମି କହିଲେ ଅତ୍ୟୁକ୍ତି ହେବନି । ଅତୀତର ସମୃଦ୍ଧି ଲାଭ କରିଥିବା ଗାଁଟିଏ ହୋଇଥିଲେ ମଧ୍ୟ ଆଜି ମଧ୍ୟ ସେ'କାଳର ନୌ–ବାଣିଜ୍ୟରେ ସାଧବ ପୁଅ, ଦରିଆପାରୀ ବଣିଜ କରିବାର କିଛିଟା କିମ୍ବଦନ୍ତୀ ହୋଇ ବଞ୍ଚି ରହିଛି ଏଇଠି । ଉତ୍ତର ଓ ଦକ୍ଷିଣରେ ଦୁଇଟି ସାହିର ବସତି । ବ୍ରାହ୍ମଣ ସାହିର ପୂର୍ବ ପଟକୁ ଶୂଦ୍ରମାନେ ରହନ୍ତି । ଦକ୍ଷିଣ – ପଶ୍ଚିମ କୋଣରେ କେତୋଟି ହରିଜନ ବସ୍ତି ଓ ସୁମନୋହର ବିରାଟ ପଦ୍ମ ପୁଷ୍କରିଣୀ ରହିଛି । ଦୁଇ ସାହିର ପଶ୍ଚିମ ମୁଣ୍ଡରେ ଗାଁଟିକୁ ମଣ୍ଡିଦେଲା ଭଳି ପ୍ରଭୁ ରାଧାକାନ୍ତ ମଠ । ଗ୍ରାମ୍ୟ ପରିବେଶକୁ ବେଶ୍ ଶାନ୍ତ, ସ୍ନିଗ୍ଧ, ଆଧ୍ୟାତ୍ମ ଭାବାବେଗକୁ ଉଦ୍ରେକ କରୁଥିଲାବେଳେ ଜନମାନସରେ ବିଭୁ ପ୍ରେମର କରୁଣା ବାରି ବର୍ଷି ଦିଏ । ମଠଟିକୁ ରାଧାରମଣ/ରାଧାକାନ୍ତ ମଠ କୁହାଯାଉଥିଲେ ମଧ୍ୟ ସିଂହାସନରେ ରାଧାକୃଷ୍ଣ, ଗୋପୀକାଙ୍କ ସହ ଲକ୍ଷ୍ମୀ ଓ ଜଗନ୍ନାଥ ମଧ୍ୟ ପୂଜା ପାଉଛନ୍ତି । ଏହି ମୂର୍ତ୍ତିମାନଙ୍କ ସହ ଆଣ୍ଠୁଆ ଗୋପାଳ, ବୀର–ହନୁମାନ, ଶାଳଗ୍ରାମ ଏବଂ ଶ୍ରୀଚୈତନ୍ୟ ଠାକୁର ମଧ୍ୟ ପୂଜିତ । ମଠର ପ୍ରତିଷ୍ଠା କାଳକୁ ନିରୀକ୍ଷଣ କଲେ ଦୁଇଟି ସୂତ୍ର ମନକୁ ଆସେ । ଶ୍ରୀଚେତନ୍ୟ ଦେବଙ୍କ ବୈଷ୍ଣବ ଧର୍ମର ପ୍ରଚାର କାଳ ହୁଏତ ପଂଚଦଶ ଶତାବ୍ଦୀ ନତୁବା ମଠରେ ସମାଧିସ୍ଥ ଥିବା ସାତଟି ମହନ୍ତ ମହାରାଜମାନଙ୍କ କାର୍ଯ୍ୟକାଳ ଓ ବର୍ତ୍ତମାନର ମହନ୍ତଙ୍କ ସମୟକାଳ, ସାତ ଆଠ ପୁରୁଷରୁ ଊର୍ଦ୍ଧ୍ୱ । ଏହିସବୁ ମହନ୍ତମାନଙ୍କ ବ୍ୟତୀତ ଅନ୍ୟ କିଛି ସମୟ ମଧ୍ୟ ଅନ୍ୟମାନଙ୍କ ପରିଚାଳନାରେ ଥିଲା । ଏଭଳି ହିସାବକୁ ନେଲେ ଏହି ମନ୍ଦିର ଅନ୍ୟୁନ ଚାରିଶହ ବର୍ଷରୁ ଊର୍ଦ୍ଧ୍ୱ ଇତିହାସ ବହନ କରେ । ଗୌଡ଼ୀୟ ସଂପ୍ରଦାୟର ନିୟମାନୁଯାୟୀ ଓ ସର୍ବଭଟ୍ଟାଚାର୍ଯ୍ୟ ଗାଦୀ ପୀଠ ଭାବରେ ଏହି ମଠ ପରିଚାଳିତ । ହିନ୍ଦୁ ଦେବୋତ୍ତର ଆଇନ୍ ଦ୍ୱାରା ପ୍ରତିଷ୍ଠିତ (ଏଣ୍ଡାମେଣ୍ଟ) ସାଧାରଣ ଟ୍ରଷ୍ଟି ପରିଚାଳନାରେ ଏହି ମନ୍ଦିର ଚଳି ଆସୁଛି । ଗଂଜାମ ଜିଲ୍ଲାର ଦେବୋତ୍ତର ବିଭାଗର ୮୩୦–ଜି ସଂଖ୍ୟକ କ୍ରମିକ ସଂଖ୍ୟାରେ ଏହି ମଠ । ଏହି ଗାଦୀ ପୀଠର ପ୍ରାୟ ଦଶ କି.ମି. ଦୂରରେ ଥିବା କୋଳଥିଗାଁରେ ଅନ୍ୟଏକ ଉପପୀଠ ମଠ ରହିଥିବା ଜଣାଯାଏ ।

ମଠ ପ୍ରାୟ ଚାରି ଏକର ଜମି ଉପରେ । ପୂର୍ବ ମୁଖର ଦ୍ୱାର, ମୁଖ୍ୟ ଦ୍ୱାର । ଦ୍ୱାର ସଂଲଗ୍ନ ଘେରା ବା ମେଘନାଦ ପାଚେରୀ ଭଳି ସୁଉଚ୍ଚ ପାଚେରୀ ରହିଛି । ସ୍ତମ୍ଭ ଉପରେ ଝିକର ଛାତ ଚତୁଃଦିଗରେ ରହିଛି । ତା'ପରେ ବଗିଚା, ଫୁଲ ଓ ତୁଳସୀ ଗଛରେ ଭର୍ତ୍ତି ପରିସର । ବିଶୁଦ୍ଧ ଓ ମିଠା ପାଣିର କୂଅଟିଏ । କୂଅଟି ସମଗ୍ର ଗାଁଟିକୁ ପାନୀୟ ଜଳ ବାରମାସୀ ଯୋଗାଇ ଥାଏ । ତା'ପଛକୁ ମଠର ମୁଖ୍ୟ ମନ୍ଦିର ଓ ମଣ୍ଡପ ରୋଷଶାଳା, ମୃଦଘର ଓ ଫଳବଗିଚା । ପ୍ରଥମେ ମୁକ୍ତି ମଣ୍ଡପ । ତାକୁ ଲାଗି ରହିଛି ମୁଖଶାଳା ମଣ୍ଡପ, ତା'ପରେ ଜଗମୋହନ, ଚନ୍ଦନପେଢ଼ି ଗୃହ । ତା'ପଛରେ ଠାକୁରଙ୍କ ଆସ୍ଥାନ ତଥା ସିଂହାସନରେ ପିତ୍ତଳର କାରୁକାର୍ଯ୍ୟ ଖଚିତ ପ୍ରଭା । ଦୁଇ କରରେ ଦୁଇଟି ଛୋଟ ଛୋଟ ପ୍ରଭା ସିଂହାସନର ସୌନ୍ଦର୍ଯ୍ୟ ବୃଦ୍ଧି କରୁଛି । ପୂର୍ବ ମୁଖର ସିଂହାସନର ଉତ୍ତର ପ୍ରାନ୍ତରେ ଦାରୁଦେବତା ଜଗନ୍ନାଥ । ଛୋଟ ହେଲେ ହେଁ ଭାରି ସୁନ୍ଦର । ତାଙ୍କର ଡ଼ାହାଣକୁ ରାଧା ଓ ରାଧାଙ୍କୁ ଲାଗି କୃଷ୍ଣ, ତା'ପରେ ରାଧାକାନ୍ତଙ୍କର ଅନ୍ୟ ଏକ ଯୁଗଳ ଅଷ୍ଟଧାତୁ ମୂର୍ତ୍ତି । ତାଙ୍କରି ଦକ୍ଷିଣକୁ ଦୋଳଗୋବିନ୍ଦ, ଯେଉଁଠାକୁର (ରାଧାକୃଷ୍ଣ)ଙ୍କୁ ବାହ୍ୟ ମଣ୍ଡପକୁ ଆଣି ଦୋଳପୂର୍ଣ୍ଣିମାରେ ଦୋଳିଖେଳ ଓ ପୂଜା ଅନୁଷ୍ଠିତ ହୁଏ । ଉପର ସିଂହାସନର ନିମ୍ନରେ ଖଟୁଲି ଉପରେ ରାଧାକୃଷ୍ଣ, ଦୂତିକା, ଶ୍ରୀଚୈତନ୍ୟ, ଆଣ୍ଠୁଆ ଗୋପାଳ, ଲକ୍ଷ୍ମୀଙ୍କ ବଡ଼ ଛୋଟ ଦୁଇ ମୂର୍ତ୍ତି ଏଠାରେ ପୂଜିତ । ଜନ୍ମାଷ୍ଟମୀରେ ପୂଜିତ କୃଷ୍ଣଙ୍କ ସହ ଏଗାରଟି ଶାଳଗ୍ରାମ, ଛୋଟ ରାଧା ମୂର୍ତ୍ତି, ହନୁମାନ ମୂର୍ତ୍ତି ପୂଜିତ । ସର୍ବତଳର ତୃତୀୟ ଆସ୍ଥାନ ବଇଠିରେ ବିଭିନ୍ନ ପୂଜା ସାମଗ୍ରୀ, ହାତଘଣ୍ଟି, ଆଳତି ବଇଠି, ପଂଚୁ ପତ୍ରୀ, ତଂବାପାତ୍ରୀ, ଚନ୍ଦନ ଗିନା ଆଦି ରହିଛି ।

ଓଡ଼ିଶାର ପ୍ରସିଦ୍ଧ ଦେବାଳୟମାନଙ୍କ ଭଳି ଏହି ମଠରେ ମଧ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ଗୁରୁଶିଷ୍ୟ ପରମ୍ପରାର ନିଦର୍ଶନରେ ଗୁରୁଦେବଙ୍କ ତିରୋଧାନ ତିଥି କାର୍ତ୍ତିକ ଶୁକ୍ଳ ଚତୁର୍ଥୀରେ ପାଳିତ ହୁଏ । ମାର୍ଗଶିର ମାସରେ, ଶ୍ରୀଦେବୀ ଲକ୍ଷ୍ମୀଙ୍କର ମାଣବସା ଗୁରୁବାର ପୂଜା ଓ ପୂର୍ଣ୍ଣମୀରେ ସ୍ୱତନ୍ତ୍ର ପର୍ବ ପାଳନ ମାଧମରେ ଓଡ଼ିଶାର ବିଭିନ୍ନ ସ୍ୱତନ୍ତ୍ର ଭଜାପିଠା, ଖିରି, କାକରା, ମଣ୍ଡା, ଆରିସା ଆଦି ଭୋଗ ଦିଆଯାଏ । ଧନୁ ମାସରେ ଧନୁ ମୁଆଁ ଭୋଗ ସହ ପୌଷ ମାସରେ ପହିଲି ଭୋଗଲାଗି କରାଯାଏ । ମକର ସଂକ୍ରାନ୍ତିରେ ମକର ଚାଉଳ, ମାଘ ମାସ ସାରା ଠାକୁରମାନଙ୍କ ପାଖରେ କାର୍ତ୍ତିକ ମାସଭଳି ପ୍ରତ୍ୟୁଷରୁ ମଙ୍ଗଳ ଆଳତି ଲାଗି କରାଯାଏ । ଏହିଭଳି ସମସ୍ତ ପର୍ବଦିନମାନଙ୍କରେ ଶ୍ରୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ରାଧାକୃଷ୍ଣ, ଲକ୍ଷ୍ମୀ, ହନୁମାନ, ଶ୍ରୀଚୈତନ୍ୟ ଆଦିଙ୍କର ସ୍ୱତନ୍ତ୍ର ଉତ୍ସବ ନିଷ୍ଠାର ସହ ଏଠାରେ ପାଳନ ହେଉଥିବା ଦେଖାଯାଏ ।

ପର୍ବପର୍ବାଣି ପାଳନ ହେବା ବ୍ୟତୀତ ଠାକୁରମାନଙ୍କର ଦୈନିକ ପୂଜାବିଧି ମଧ ଉଲ୍ଲେଖନୀୟ । ପ୍ରତ୍ୟୁଷରେ ମଙ୍ଗଳ ଆଳତି ସେବା, ଫୁଲ ଚନ୍ଦନ ତୁଳସୀ ଲାଗି କରାଯାଇ ଠାକୁରମାନଙ୍କୁ ବାଳଭୋଗ ଅର୍ପଣ କରାଯାଏ । ମଧ୍ୟାହ୍ନରେ ରାଜଭୋଗ ତଥା ଅନ୍ନ ଭୋଗ ହୁଏ । ଭୋଜନ ପରେ ତାମ୍ବୁଳ ଲାଗି ଓ ପହୁଡ଼, ସନ୍ଧ୍ୟାରେ ସନ୍ଧ୍ୟା ଆଳତୀ, ସନ୍ଧ୍ୟା ଧୂପ, ରାତ୍ର ୮ ଘଣ୍ଟା ବେଳେ ରାତ୍ରଭୋଗ, ସଂକୀର୍ତ୍ତନ ଗୀତଗୋବିନ୍ଦ ଆଦି ପରେ ପହୁଡ଼ କରାଯାଇଥାଏ । ଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟର ସର୍ବଭଟ୍ଟାଚାର୍ଯ୍ୟଙ୍କ ଗାଦିର ବିଧି ଅନୁସାରେ ଏହି ମଠର ସମସ୍ତ ପୂଜା କରାଯାଇଥାଏ । ଏହି ମଠ ମହନ୍ତ (ଆଜନ୍ମ ବ୍ରହ୍ମଚାରୀ) ଦାସ ଗୋସ୍ୱାମୀମାନଙ୍କ ଦ୍ୱାରା ପରିଚାଳିତ । ସମାଧିମାନଙ୍କର କେତେକ ସଂଗୃହିତ ତଥ୍ୟ ଅନୁଯାୟୀ ଏଠାର ପ୍ରଥମ ମହନ୍ତ ଥିଲେ ମହନ୍ତ ବୃନ୍ଦାବନ ଦାସଗୋସ୍ୱାମୀ ମହାରାଜ । ତାଙ୍କ ପରେ ରଘୁମଣି ଦାସଗୋସ୍ୱାମୀ ମହାରାଜ, ଟିକମ ଦାସମହାରାଜ, ଶ୍ୟାମଘନ ଦାସମହାରାଜ, ଗୌରଚରଣ ଦାସମହାରାଜ ଗବେଷକମାନେ ଏହି ମଠର ଐତିହ୍ୟ, ପ୍ରତିଷ୍ଠା, ଧର୍ମକର୍ତ୍ତା ଆଦିଙ୍କ ଉପରେ ଅଧିକା ଅନୁସନ୍ଧାନ କଲେ ଆହୁରି ଅନେକ ତଥ୍ୟ ପ୍ରକାଶିତ ହେବା ସହ ଦିଆଯାଇଥିବା ତଥ୍ୟଗୁଡ଼ିକର ସତ୍ୟତା ଉପରେ ଆଲୋକପାତ କରାଯାଇପାରିବ । ବର୍ତ୍ତମାନର ମଠାଧୀଶ ଶ୍ରୀଯୁକ୍ତ ଗୋପାଳକୃଷ୍ଣ ଦାସ ୧୯୭୪ରୁ ମଠ ପରିଚାଳନାର ଭାର ନେଇଛନ୍ତି ।

ଆଗ କାଳରେ ସାଧାରଣ ଲୋକେ ଆଧାତ୍ମିକ ଭକ୍ତି ଭାବରେ ଅଧିକା ଅନୁପ୍ରାଣିତ ହେଉଥିଲେ । ଅର୍ଜିତ ଧନରେ ନିଜର ସାମାନ୍ୟ ଗୁଜରାଣ ମେଣ୍ଟାଇବା ଛଡ଼ା ଅନ୍ୟ ସମସ୍ତ ଧନସମ୍ପତ୍ତିରେ ଧର୍ମକୀର୍ତ୍ତିମାନ କରୁଥିଲେ । ଭୋଗଲିପ୍ସାରୁ ଦୂରରେ ରହି ତ୍ୟାଗ ଧର୍ମକୁ ଆପଣେଇ ନେଉଥିଲେ । ଧର୍ମପ୍ରାଣ ବ୍ୟକ୍ତିମାନଙ୍କର ଇଚ୍ଛା ନଥିଲେ ମଧ ସାଧାରଣ ଲୋକେ ଏମାନଙ୍କର ଧର୍ମକାର୍ଯ୍ୟ, ଦାନଛତ୍ର ଆଦିକୁ ଦେଖି ଏମାନଙ୍କୁ ''ଧର୍ମକର୍ତ୍ତା''ଭଳି ଏକ ଦେଶୀୟ ଉପାଧିରେ ବିମଣ୍ଡିତ କରୁଥିଲେ । ଏହି ପ୍ରକାର ଧର୍ମପ୍ରାଣ ବ୍ୟକ୍ତିମାନେ ନିଜକୁ ବା ନିଜ ବଂଶରେ କାଳେ କେବେ କେହି ପରବର୍ତ୍ତୀକାଳରେ ନିର୍ମାଣ କରାଯାଇଥିବା ମଠ, ମନ୍ଦିର, ପୁଷ୍କରିଣି ତଥା ଧର୍ମକୀର୍ତ୍ତିକୁ ତାଙ୍କରି ବା ତାଙ୍କ ବଂଶ ଦ୍ୱାରା ନିର୍ମିତ କରାଯାଇଛି ବୋଲି ଗର୍ବ କରିବେ, ତେଣୁ ଧର୍ମକର୍ତ୍ତାମାନେ ନିଜ ବଂଶରେ କେହି ନରହିବା ପାଇଁ ଠାକୁରମାନଙ୍କ ପାଖରେ ଶେଷ ଇଚ୍ଛା ପ୍ରାର୍ଥନା

କରୁଥିଲେ । ଏହି ମଠର ପ୍ରତିଷ୍ଠାକାରୀ ନିଜ ସମ୍ପତ୍ତିକୁ ସମାନ ଦୁଇଭାଗ କରି ନିଜ ସନ୍ତାନମାନଙ୍କ ପାଇଁ ଗୋଟିଏ ଭାଗ ୧୭୦୦ (ଶତର ଶହ) ଭରଣ ଓ ମଠ ପାଇଁ ଅନ୍ୟ ୧୭୦୦ (ଶତର ଶହ) ଭରଣ ଜମି ଖଞ୍ଜି ଦେଇଥିଲେ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା ପରେ ଏହିସବୁ ଜମି ଆନ୍ଧ୍ର ଓ ଓଡ଼ିଶା ଅଞ୍ଚଳରେ ଭାଗ ହୋଇ ରହିଗଲା । ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ ବୟାଳୀ, ହରଡଙ୍ଗ, କୋଳଥିଗାଁ, ଦାସପୁର ଆଦି ଗ୍ରାମାଞ୍ଚଳରେ ଏହି ମଠର କିଛି ଭୂସମ୍ପତ୍ତି ରହିଥିଲା ବେଳେ ଆନ୍ଧ୍ରର ଶ୍ରୀକାକୁଲମ ଜିଲ୍ଲାର ଜଳନ୍ତର ଗଡ଼, ରେଖାଦେଇପୁର, ସାଗର ନୂଆଗାଁ, କରତଳି, କେଶପୁର ଆଦି କେତେକ ଗ୍ରାମରେ ଭୂସମ୍ପତ୍ତି ରହିଛି । ସେସବୁ ଯେଉଁ ରୟତମାନେ ଚାଷ କରି ମଠ ପରିଚାଳନା ପାଇଁ ମହାସୁଲ ଦେଉଥିଲେ, ଏବେ ଆଉ ଦେଉନାହାନ୍ତି । ସେହିସବୁ ଜମିକୁ ନିଜର ନାମରେ ପଟ୍ଟାକରି ବଂଶାନୁକ୍ରମେ ଭୋଗଦଖଲ କରୁଛନ୍ତି । ଏଣେ ଅର୍ଥାଭାବରୁ ଠାକୁରମାନଙ୍କର ଯାନିଯାତ୍ରା, ପୁଜାଉତ୍ସବ, ପର୍ବପାଳନ ଓ ଠାକୁରଙ୍କ ଭୋଗରାଗ ବନ୍ଦ ହେବାକୁ ବସିଲାଣି । ବୟାଳୀର ଏହି ରାଧାକାନ୍ତ ମଠରେ ରାଧାକୃଷ୍ଣଙ୍କର ସମସ୍ତ ମୁଖ୍ୟ ପର୍ବ ପାଳିତ ହେଉଥିଲେ ମଧ୍ୟ ଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ସମେତ ଅନ୍ୟ ସମସ୍ତ ପୂଜା ପର୍ବ ମହା ସମାରୋହରେ ପାଳନ କରାଯାଉଅଛି । କିମ୍ବଦନ୍ତୀରୁ ଜଣାଯାଏ ଯେ, ଏଠା ମନ୍ଦିରର ପ୍ରତିଷ୍ଠା କାଳରେ ଜଗନ୍ନାଥଙ୍କ ଦାରୁରୂପ ପ୍ରତିଷ୍ଠା ହୋଇ ନଥିଲା । ପରବର୍ତ୍ତୀ ସମୟରେ ସ୍ୱପ୍ନାଦେଶ ପ୍ରକାରେ ଦଧିବାମନ ମୂର୍ତ୍ତିଙ୍କୁ ଏହି ପବିତ୍ର ସଂହାସନରେ ସ୍ଥାପନା କରି ଶ୍ରୀଜଗନ୍ନାଥଙ୍କ ସମସ୍ତ ପୂଜା ଉତ୍ସବ ନିଷ୍ଠାର ସହ ପାଳନ କରାଗଲା । ବୟାଳୀ ଗ୍ରାମ ସମୀପରେ ଥିବା ପୁରାତନ ବାଣିଜ୍ୟ କେନ୍ଦ୍ର ମନ୍ତ୍ରୀଡ଼ିଠାରେ ମଧ୍ୟ ଜଗନ୍ନାଥ ସଂସ୍କୃତିର ମୂଳ ଆଲେଖ୍ୟ ଦେଖିବାକୁ ମିଳେ । ବୟାଳୀର ଆଲୋଚ୍ୟ ରାଧାରମଣ ମଠରେ ଜଗନ୍ନାଥଙ୍କ ପ୍ରାୟ ଦେଢ଼ ଫୁଟ ଉଚ୍ଚତାର ଦାରୁମୂର୍ତ୍ତି ପୂଜା ପାଇ ଆସୁଛନ୍ତି । ଠାକୁରମାନଙ୍କ ସିଂହାସନର ଉତ୍ତର କାନ୍ଥରେ ଏକ ଛୋଟ ଅଣସର ଗୃହ ନିର୍ମିତ ହୋଇଛି ଓ ଜଗନ୍ନାଥଙ୍କୁ ଦେବସ୍ନାନ ପରେ ଅନବସର ପାଇଁ ଏହି ଗୃହକୁ ସ୍ଥାନାନ୍ତର କରାଯାଇଥାଏ । ଠାକୁରଙ୍କ ଏହି ଅନବସର ବେଳେ ଦଶମୂଳ ପାଚନର ଆୟୁର୍ବେଦ ଉପଚାର ସହ ପଥି ପାଚନ ଦେବା ସହ ଫଳ ଆହାର ଓ ଗଜା ମୁଗର ଭୋଗ ଦିଆଯାଏ । ନେତ୍ର ଉତ୍ସବ ଆଗରୁ ଠାକୁରଙ୍କୁ ରଙ୍ଗ କରାଯାଇଥାଏ । ଚିକିଟିରେ ଥିବା ଚିତ୍ରକର ସାହିର ଚିତ୍ରକର ମାନଙ୍କ ଦ୍ୱାରା ବଂଶାନୁକ୍ରମରେ ଏହି ଠାକୁରଙ୍କ ଚିତ୍ର କରାଯାଇ ନେତ୍ର ଅଙ୍କାଯାଏ ଓ ସେବାକାରୀମାନଙ୍କୁ ପ୍ରସାଦ ଅର୍ପଣ ସହ ନେତ୍ର ଉତ୍ସବର ପାଳନ ବିଧି ଅନୁଷ୍ଠିତ ହୁଏ । ଜଗନ୍ନାଥ ଦଧିବାମନ ମହାପ୍ରଭୁ ବିଜେ କରି ଶ୍ରୀ ଗୁଣ୍ଡିଚା ଯାତ୍ରା କରିଥାନ୍ତି । ଗ୍ରାମବାସୀଙ୍କ ଦ୍ୱାରା ରଥ ଟଣାଯାଏ । ସଂକୀର୍ତ୍ତନ, ଘଣ୍ଟଘଣ୍ଟା, ହରିବୋଲ ହୁଳହୁଳିରେ ଦାଣ୍ଡ ଉଚ୍ଛୁଳେ । ରଥାରୂଢ଼ ଜଗନ୍ନାଥଙ୍କ ଛେରାପହଁରା ମଠର ମହନ୍ତ କରନ୍ତି । ରଥଯାତ୍ରାର ତିନିଦିନ ପରେ ଠାକୁରେ ମାଉସୀ ମା' ଘରେ ପହଞ୍ଚନ୍ତି । ପ୍ରଥମ ଦିନ ମହାନ୍ତି ଘର ପାଖରେ ରଥ ଅଟକେ ଓ ଭୋଗ ଦିଆଯାଏ । ଦ୍ୱିତୀୟ ଦିନ ଗୁଡ଼ିଆଘର ପାଖରୁ ରଥ ବୁଲାଯାଏ ଓ ଗୁଡ଼ିଆଘର ମୁଆଁ ଫୋପାଡ଼ିବାର ବିଧି ପାଳନ କରାଯାଉଥିଲା । ବେଶ୍ ଉତ୍ସାହ ଉନ୍ମାଦନା ସହ ରଥ ଟଣାଯାଇ ଭଞ୍ଜଘର ସମ୍ମୁଖରେ ରଥ ରହେ ଓ ତା'ପର ଦିନ ରଥ ମାଉସୀ ମା' ଘରକୁ ଆସନ୍ତି । ପୋଡ଼ପିଠା ଭୋଗ, ହେରାପଞ୍ଚମୀ ଓ ଆଷାଢ଼ ଶୁକ୍ଳ ଦଶମୀ ତିଥିରେ ବିଧିପୂର୍ବକ ବାହୁଡ଼ା ଯାତ୍ରା ଅନୁଷ୍ଠିତ ହୁଏ । ମାଉସୀ ମା' ଘର ରହଣୀକାଳରେ ଦଧିବାମନଙ୍କର ଦଶ ଅବତାର ପୂଜା ବେଶ ଦେଖିବାକୁ ମିଳେ । ବଡ଼ଏକାଦଶୀରେ ରଥ ଉପରେ ଜଗନ୍ନାଥଙ୍କୁ ସୁନାବେଶ ବିଧି ପାଳନ କରାଯାଇଥାଏ । ପରମ୍ପରାକ୍ରମରେ ଲକ୍ଷ୍ମୀଙ୍କ ରଥଭଙ୍ଗା, କଳି, ବଚନିକା, ଅଧରପଣା ସହ ଡାହୁକ ଓ ଅନ୍ୟାନ୍ୟ ସେବାୟତମାନଙ୍କୁ ଶାଢ଼ୀ ଅର୍ପଣ କରାଯାଇ ଠାକୁରଙ୍କୁ ମନ୍ଦିରରେ ପ୍ରବେଶ ବିଧି ପ୍ରଚଳିତ ହେଉଅଛି । ବାହୁଡ଼ାଘରେ ଅବସ୍ଥାନ କାଳରେ ଠାକୁରଙ୍କୁ ପ୍ରତିଦିନ ବେଶ ବଦଳା ଯାଇ ଦଶଅବତାର ବେଶରେ ପୂଜା ଦିଆଯାଏ । ଯାତ୍ରା ସମାପ୍ତି ପରେ ଦେବସଭା ମଣ୍ଡପରେ ପଞ୍ଚାମୃତରେ ଠାକୁରଙ୍କୁ ସ୍ନାନ କରାଯାଇ ସିଂହାସନ ଆରୋହଣ କରାଯାଏ । ରଥ ନିର୍ମାଣ ପାଇଁ ଆବଶ୍ୟକ କାଠ ମଠର ତୋଟାରୁ ଅଣାଯାଏ । ଆବଶ୍ୟକ ସ୍ଥଳେ କ୍ରୟକରି ହରଡ଼ଙ୍ଗ ମହାରଣାମାନଙ୍କ ଦ୍ୱାରା ପୁରୁଷାନୁକ୍ରମେ ରଥ ନିର୍ମାଣ ସହ ଯାତ୍ରା କରିବାର ପରମ୍ପରା ମହାସମାରୋହରେ ପାଳନ କରି ଏ ଅଞ୍ଚଳରେ ଜଗନ୍ନାଥ ସଂସ୍କୃତିକୁ ଋଦ୍ଧିମନ୍ତ କରାଯାଇ ପାରୁଛି । ଅର୍ଥାଭାବଜନିତ କଷ୍ଟରେ ଠାକୁରଙ୍କ ମଠ, ମନ୍ଦିର ଗୃହ ଭଗ୍ନାବସ୍ଥାରେ ପହଞ୍ଚିଛି । ଏହାକୁ ସୁଧାରିବା ପାଇଁ ଭକ୍ତ ଓ ସରକାରଙ୍କର ଆର୍ଥିକ ଅନୁଦାନ ଓ ପରିଚାଳନାର ଆବଶ୍ୟକତା ରହିଛି ।

ଅବସରପ୍ରାପ୍ତ ଅଧ୍ୟକ୍ଷ,
ସଂସ୍କୃତି ସଦନ, କଚେରୀ ଘର, ବୟାଳୀ, (ମନ୍ତ୍ରୀଡ଼ି)
ଜିଲ୍ଲା: ଗଞ୍ଜାମ– ୭୬୧୦୦୮

# ଐତିହ୍ୟ ଓ ସଂସ୍କୃତିରେ ଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରା

ଡକ୍ଟର ପ୍ରମୋଦିନୀ ଜେନା

ଶ୍ରୀଜଗନ୍ନାଥ ଓଡିଶାର ଇଷ୍ଟ ଦେବତା । ଓଡିଶାର ଧର୍ମ କହିଲେ ଜଗନ୍ନାଥ ଧର୍ମ, ସଂସ୍କୃତି କହିଲେ ଜଗନ୍ନାଥ ସଂସ୍କୃତି, ଇତିହାସ କହିଲେ ଜଗନ୍ନାଥଙ୍କ ଇତିହାସକୁ ବୁଝାଏ । ସମଗ୍ର ବିଶ୍ୱରେ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ପାଳିତ ହେଉଥିବାରୁ ଯଥାର୍ଥରେ ସେ ସମଗ୍ର ବିଶ୍ୱର 'ସାର୍ବଭୌମ ଦେବତା' । ବିଶ୍ୱ ଐତିହ୍ୟ ଓ ସଂସ୍କୃତିରେ ଜଗନ୍ନାଥଙ୍କ ଘୋଷଯାତ୍ରାର ଭୂମିକା ଅତୁଳନୀୟ । ସମୁଦ୍ରର ଯେପରି କ୍ଷୟ, ବୃଦ୍ଧି ନଥାଏ, ଆକାଶର ଯେପରି ଆଦି ଅନ୍ତ ନଥାଏ, ବାୟୁର ଯେପରି ଦିଗ ବିଦିଗ ନଥାଏ, ଠିକ୍ ସେହିପରି ଶ୍ରୀଜଗନ୍ନାଥ କଥାମୃତର ଆରମ୍ଭ କିମ୍ବା ଶେଷ ନଥାଏ । ସମୁଦ୍ରର ଗଭୀରତା, ଆକାଶର ସୀମା ଓ ପବନର ଦିଗ କଳନା ନହେବା ଭଳି ଜଗନ୍ନାଥ ତତ୍ତ୍ୱର ଗଭୀରତା, ସୀମା ଓ ଦିଗ କେବେହେଲେ ନିର୍ଣ୍ଣୟ କରିହୁଏ ନାହିଁ । ସମସ୍ତ ପ୍ରକାର ମନ୍ତ୍ର, ଯନ୍ତ୍ର, ଓ ତନ୍ତ୍ର ମଧ୍ୟରୁ ସେ ସ୍ୱତନ୍ତ୍ର । ସମସ୍ତ ପ୍ରକାର ନୀତି, ନିୟମ ଓ କ୍ରମକୁ ଅତିକ୍ରମ କରି ସେ ବ୍ୟତିକ୍ରମ । ବିସ୍ମୟ, ବିଚିତ୍ର ରହସ୍ୟମୟ ଓ ତତ୍ତ୍ୱମୟ ଦେବତା ।



ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଅନେକ ଇତିହାସ ଓ ସାହିତ୍ୟ ମଧ୍ୟ ଅସଂପୂର୍ଣ୍ଣ ଓ ରହସ୍ୟମୟ ହୋଇ ରହିଛି । ଅନେକ ସାଧୁ ସ୍ୱଧର୍ମର ପ୍ରଚାର କରିବାକୁ ଏ କ୍ଷେତ୍ରକୁ ଆସି ଦେଖନ୍ତି ଯେ ସେସବୁ ବହୁତ ଆଗରୁ କୁହାଯାଇ ସାରିଛି ଓ ସେସବୁ ଏଠି ପ୍ରଚଳିତ ହେଉଅଛି । ସେଥିପାଇଁ ଏ କ୍ଷେତ୍ର ଓ କ୍ଷେତ୍ରାଧିପତି ସମଗ୍ର ଜଗତର ଶ୍ରେଷ୍ଠତ୍ୱ ଲାଭ କରି ଅଛନ୍ତି ।

ଉଡ୍ରଦେଶର ଦକ୍ଷିଣ ସମୁଦ୍ରତୀର ପବିତ୍ର ତୀର୍ଥରେ ଜଗତର ନାଥ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ଶଙ୍ଖ, ଚକ୍ର ଓ ଗଦାପଦ୍ମ ଧରି ପ୍ରାଣୀମାନଙ୍କୁ ଦର୍ଶନ ଦେଇ ମୁକ୍ତି ପ୍ରଦାନ କରନ୍ତି । ସେହି ଅନନ୍ତ, ଅସୀମ, ଅନାଦି, ନିର୍ଗୁଣ ବ୍ରହ୍ମଙ୍କର ଆଦି ଅନ୍ତ ସମ୍ବନ୍ଧରେ ଦେବତାମାନେ ମଧ୍ୟ ଜାଣିପାରି ନାହାନ୍ତି । ମନୁଷ୍ୟ ସାମାନ୍ୟ ମାତ୍ର । ଶ୍ରୀଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ହେଉଛି ଏହାର ସମନ୍ୱୟ ଧର୍ମତା ଆଜି ବୈଷ୍ଣବ ଧର୍ମର ମୁଖ୍ୟ ଦେବତା ଭାବରେ ଶ୍ରୀଜଗନ୍ନାଥଙ୍କ ଉପାସନା ହେଉଥିଲେ ମଧ୍ୟ ବ୍ରାହ୍ମଣ ଧର୍ମର ଅନ୍ୟାନ୍ୟ ସଂପ୍ରଦାୟର ଶୈବ, ଶାକ୍ତ, ଗାଣପତ୍ୟ ସୌର ପ୍ରଭୃତି ଶ୍ରୀଜଗନ୍ନାଥଙ୍କୁ ପରମ ଆରାଧ୍ୟ ଦେବତା ରୂପେ ଆରାଧନା କରିଥାନ୍ତି । ବୌଦ୍ଧମାନଙ୍କ ଦୃଷ୍ଟିରେ ସେ ବୁଦ୍ଧ, ଜୈନମାନଙ୍କ ଦୃଷ୍ଟିରେ ସେ ଜିନ, ଆଦିବାସୀମାନଙ୍କ ଦୃଷ୍ଟିରେ ସେ ତାଙ୍କର ମୂଳଦେବତା 'କିତୁଙ୍ଗ'ର ଏକ ଅବତାର 'ଜଗନ୍ତ' । ଜଗନ୍ନାଥଙ୍କ ଉପାସନା କେବେ ଓ କେଉଁଠାରୁ ହେଲା, ତାହା ନିର୍ବିବାଦରେ ନିର୍ଣ୍ଣିତ ହୋଇପାରି ନାହିଁ । କିଏ କହେ ଶବର ଦେବତା କାଳକ୍ରମେ ଜୈନ, ବୌଦ୍ଧ ଓ ବୈଷ୍ଣବ ଆଦି ଧର୍ମରେ ଗୃହୀତ ହୋଇ ଜଗନ୍ନାଥରେ ପରିଣତ ହୋଇଛନ୍ତି । କାରଣ ସେ ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ସଂସ୍କୃତିର ପରମ ଆଶ୍ଚର୍ଯ୍ୟଜନକ ବୈଶିଷ୍ଟ୍ୟ । ଡକ୍ଟର କାହ୍ନୁ ଚରଣ ମିଶ୍ରଙ୍କ ମତରେ ଜଗନ୍ନାଥ ଧର୍ମ ଏକ ବହୁମତ ସମନ୍ୱିତ ଧର୍ମ ଏବଂ ବିଭିନ୍ନ ଧର୍ମର ମତ ଜଗନ୍ନାଥଙ୍କର ସାର୍ବଜନୀନ ଉଦାର ଦୃଷ୍ଟିଭଙ୍ଗୀ ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହୋଇ ସାରିଛି ।

ଦାରୁଦେବତା ଶ୍ରୀଜଗନ୍ନାଥ ଶବରମାନଙ୍କ ଦେବତା । ଶ୍ରୀଜଗନ୍ନାଥଙ୍କୁ କୁହାଯାଏ ମାଦଳା । ମାଦଳା ଶବ୍ଦର ଅର୍ଥ ହେଉଛି ହସ୍ତପଦ ବିହୀନ ଗଣ୍ଡି । ଏବେ ମଧ୍ୟ ଶବରମାନଙ୍କ ମଧ୍ୟରେ ମାଦଳା ପୂଜା ପ୍ରଚଳିତ ଅଛି । ଏମାନେ ହସ୍ତପଦ ବିହୀନ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏହି ତିନି ମୂର୍ତ୍ତି ମଧ୍ୟ ଭଲ ଭାବରେ କୁନ୍ଦା ହୋଇନଥିବା ବୃକ୍ଷଗଣ୍ଡିର ଅଂଶ ପରି ଦେଖାଯାଇ ଥାଆନ୍ତି । ସମୁଦ୍ର ତୀରରେ ନୌକା ସଦୃଶ କ୍ଷେତ୍ର ପୁରୀରେ ଯୂପଭଳି ମହାନ ନ୍ୟଗ୍ରୋଧ ଦାରୁପୂଜା ପାଉଥିବାର ସୂଚନା ସ୍କନ୍ଦପୁରାଣରୁ ମଧ୍ୟ ମିଳିଥାଏ । ଜୈନମାନଙ୍କର ଦେବତା ଜିନେଶ୍ୱର ବା ଆଦିନାଥ ଋଷଭନାଥ ରୂପେ ଜୈନ ସମାଜ ଗ୍ରହଣ କରି ଥିବାର ଜଣାଯାଏ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତ ଅନୁସାରେ ମହାକାଳୀନ ଆଷାଢ଼ ଶୁକ୍ଳ ଦ୍ୱୀତୀୟା ଦିନ ଗର୍ଭଗତ ହୋଇଥିଲେ । ଜିନ ପ୍ରତିମାମାନଙ୍କର ଅଭିଷେକ ବା ସ୍ନାନଯାତ୍ରା, ରଥଯାତ୍ରା ବାଇଶ ତୀର୍ଥକରଙ୍କୁ ନେଇ 'ବାଇଶିପାହାଚ, ନୀଳଚକ୍ର, କଳ୍ପବଟ ଓ କୈବଲ୍ୟ ଇତ୍ୟାଦି ଜୈନ ଧର୍ମରେ ପ୍ରଚଳିତ ଥିଲା' ଯାହାସବୁ ଏବେ ଜଗନ୍ନାଥଙ୍କଠାରେ ଅଛି । ତେଣୁ ଜୈନମାନେ ଜଗନ୍ନାଥଙ୍କୁ ସେମାନଙ୍କର ଦେବତା ବୋଲି କହନ୍ତି ।

ବୌଦ୍ଧଧର୍ମର ବୁଦ୍ଧ, ଧର୍ମ ଓ ସଂଘକୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପେ ଧରାଯାଏ । ବୌଦ୍ଧ ଧର୍ମରେ ରଥଯାତ୍ରା ଥିବାର ଜଣାଯାଏ । ଆଜି ଜଗନ୍ନାଥଙ୍କ ରଥଯାତ୍ରା ହେଉଅଛି । ସାରଳା ଦାସ ତାଙ୍କ ମହାଭାରତରେ ଲେଖିଛନ୍ତି– ନବମେ ବନ୍ଦଇ ଶ୍ରୀବଉଧ ଅବତାର, ବିବିଧ ରୂପେ ବିଜେ ଶ୍ରୀନୀଳକନ୍ଦର, ସଂସାରଜନଙ୍କୁ ତାରିବା ନିମନ୍ତେ, ବଉଧ ରୂପେ ବିଜେ ଜଗନ୍ନାଥ । ସେତେବେଳେ ପୁରୀରେ ବୌଦ୍ଧମାନଙ୍କ ପ୍ରଭାବ ବହୁତ ଥିଲା । ବୌଦ୍ଧମାନେ ଜଗନ୍ନାଥଙ୍କୁ ସେମାନଙ୍କର ଦେବତା ରୂପେ ଗ୍ରହଣ କରି ନେଇଥିଲେ ।

ଗୌଡ଼ୀୟ ବୈଷ୍ଣବମାନଙ୍କର ମତାମତକୁ ଉତ୍କଳୀୟ ବୈଷ୍ଣବମାନେ ମଧ୍ୟ ଗ୍ରହଣ କରିଛନ୍ତି । ଶ୍ରୀଜଗନ୍ନାଥ ହିଁ ଶ୍ରୀକୃଷ୍ଣ । ଚୈତନ୍ୟ ଦେବ କହିଛନ୍ତି– ବୃନ୍ଦାବନେ ଛଲେନ୍ନ କୃଷ୍ଣ, ଅଛି ନୀଳାଚଳେ । ଶ୍ରୀରାମ ଜନ୍ମ ଓ କୃଷ୍ଣ ଜନ୍ମ ନିମନ୍ତେ ଆଜ୍ଞାମାଳ ଦିଆଯାଏ । କେତେକ ଜଗନ୍ନାଥଙ୍କୁ 'ବାମନ' ମଧ୍ୟ କହିଥାନ୍ତି । 'ରଥେ ତୁ ବାମନଦୃଷ୍ଟ୍ୱା, ପୁନର୍ଜନ୍ମ ନ ବିଦ୍ୟତେ' । ଓଁକାର ଭେଦରେ ବେଦର ପ୍ରଣବ ଅକ୍ଷର ହେଉଛି ଓଁ ।' ଅ + ଉ + ମ = ଓଁ 'ଅ' ହେଉଛି ସୁଭଦ୍ରା, 'ଉ' ହେଉଛି ଜଗନ୍ନାଥ ଓ 'ମ' ହେଉଛି ବଳଭଦ୍ର । ଗୁଣ ଭେଦରେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ସୁଭଦ୍ରାଙ୍କୁ ତମ, ସତ୍ୱ, ରଜ ତଥା ଶ୍ୱେତ, କୃଷ୍ଣ ଓ ପୀତବର୍ଣ୍ଣର ରୂପ ଦିଆଯାଇଛି । କେତେକଙ୍କ ମତରେ ଶ୍ରୀବିଷ୍ଣୁଙ୍କର ଅଂଶ ରୂପେ ଶ୍ରୀଜଗନ୍ନାଥ କାଳ ସ୍ୱରୂପ, ସୁଭଦ୍ରା ପ୍ରକୃତି ସ୍ୱରୂପ ଓ ଶ୍ରୀବଳଭଦ୍ର ବିଷ୍ଣୁଙ୍କର ସ୍ୱରୂପ ରୂପେ ବିରାଜମାନ କରିଛନ୍ତି । ତ୍ରିବୀଜ ଭେଦରେ ବଳଭଦ୍ର 'ଶ୍ରୀ'ବୀଜ, ସୁଭଦ୍ରା 'ହ୍ରିଂ' ବୀଜ ଓ ଜଗନ୍ନାଥ ହେଉଛନ୍ତି 'କ୍ଲିଂ' ବୀଜ ରୂପେ ପୂଜା ପାଉଛନ୍ତି । ଚତୁର୍ଦ୍ଧା ମୂର୍ତ୍ତିର ମୂଳବୀଜ ବା ମୂଳାଧାର କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀଜଗନ୍ନାଥ । ସମସ୍ତ ବିଗ୍ରହମାନଙ୍କର ଏକ ରୂପ ବା ଏକ ଅକ୍ଷର ରୂପେ ଶ୍ରୀଜଗନ୍ନାଥଙ୍କୁ ଗ୍ରହଣ କରାଯାଇଛି । ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି :

'ଜ' କାରଣୁ ଜଗନ୍ନାଥ, 'ଗ' କାରଣୁ ବଳଦେବକଃ
ଭଦ୍ରା 'ନ' କାର ଭାବେନ, 'ଥ' କାରଣୁ ସୁଦର୍ଶନଃ ॥

ଶ୍ରୀଜଗନ୍ନାଥ ହେଉଛନ୍ତି ସମସ୍ତ ବିଗ୍ରହମାନଙ୍କ ସୃଷ୍ଟିକର୍ତ୍ତା । ସମସ୍ତ ବିଗ୍ରହ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କ ଅଂଶ ବିଶେଷ । ସେ ପୁରୁଷୋତ୍ତମ ।

ସମସ୍ତେ ଜଗନ୍ନାଥଙ୍କୁ ନିଜର କରିବାକୁ ଆସିଛନ୍ତି । ସେ ଜଗତର ନାଥ । ଜୈନ ଓ ବୌଦ୍ଧ ଧର୍ମର ବହୁତ ଆଗରୁ ରଥଯାତ୍ରା ପ୍ରଚଳିତ ଥିଲା । ଜଗନ୍ନାଥଙ୍କୁ ମଧ୍ୟ ନୀଳମାଧବ କୁହାଯାଏ । ନୀଳଚକ୍ରର ନୀଳକନ୍ଦରରେ ନୀଳମାଧବ ରୂପେ ସେ ପୂଜା ପାଉଥିଲେ । ସେତେବେଳେ ଉତ୍କଳରେ ମାଧବ ଉପାସନା କରାଯାଉଥିଲା । ପ୍ରାଚୀନଦୀ ଉପତ୍ୟକାରେ ଲଳିତ ମାଧବ ନିଆଳୀ ମାଧବ, ଲତାହରଣ ମାଧବ, ମୁଦ୍‌ଗର ମାଧବ, ତ୍ରିବେଣୀ ମାଧବ, ଅମର ମାଧବ, ପଦ୍ମମାଧବ, ପୁରୀର ଶ୍ୱେତ ମାଧବ, କଣ୍ଟିଲୋର ନୀଳମାଧବ ଇତ୍ୟାଦି ପ୍ରସିଦ୍ଧିଲାଭ କରିଥିଲା । ଏହିପରି ଅନେକ ମାନସିକ ପରିକଳ୍ପନାକୁ ନେଇ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ପ୍ରକାରରେ ବର୍ଣ୍ଣନା କରାଯାଇଛି ।

ଭାରତ ପ୍ରସିଦ୍ଧ ରଥଯାତ୍ରା କେବେଠାରୁ ଆରମ୍ଭ ହେଲା ସେ ସଂପର୍କରେ ନାନା ପୌରାଣିକ ଓ ଐତିହାସିକ ତଥ୍ୟ ଅନୁଧାନ ପରେ ଏକ ସର୍ବଜନଗ୍ରାହ୍ୟ ତଥ୍ୟ ଆବିଷ୍କୃତ ହୋଇପାରି ନାହିଁ । ପୌରାଣିକ କଥନ ଅନୁଯାୟୀ ଏକ ସମୟରେ ବିଶ୍ୱାବସୁ ନାମକ ଶବର ରାଜା ଜଗନ୍ନାଥଙ୍କୁ ଗୋଟିଏ ନିବୃତ ଗିରି ଗହ୍ୱର ମଧ୍ୟରେ ରଖି ଏକନିଷ୍ଠ ଭକ୍ତିର ସହ ପୂଜା କରୁଥିଲା । ବିଦ୍ୟାପତି ଚୋରି କରି ଠାକୁରଙ୍କୁ ଆଣି ଇନ୍ଦ୍ରଦ୍ୟୁମ୍ନଙ୍କ ହସ୍ତରେ ଅର୍ପଣ କଲେ ଏବଂ ବିଶ୍ୱାବସୁ ରାଜାଙ୍କ ପାଖରେ ଅତ୍ୟନ୍ତ ବିନୟର ସହ ଠାକୁରଙ୍କ ଦର୍ଶନ ମାତ୍ରେ ପ୍ରାର୍ଥନା କଲେ । କିନ୍ତୁ ଅସ୍ପୃଶ୍ୟ ବୋଲି ରାଜା ତାଙ୍କର

ନିବେଦନକୁ ପ୍ରତ୍ୟାଖ୍ୟାନ କଲେ । ଭକ୍ତ ବତ୍ସଳ ଦୟାମୟ ପ୍ରଭୁ ଜଗନ୍ନାଥ ଏଥିରେ କ୍ଷୁବ୍ଧ ହୋଇ ଅର୍ଦ୍ଧରାତ୍ରରେ ଧର୍ମପ୍ରାଣା ରାଣୀ ଗୁଣ୍ଡିଚା ଦେବୀଙ୍କୁ ସ୍ୱପ୍ନାଦେଶରେ ରଥଯାତ୍ରା ଭଳି ଗୋଟିଏ ଉତ୍ସବ ବିଧାନ କରିବାକୁ କହିଲେ । ଫଳତଃ ଭକ୍ତ ବିଶ୍ୱାବସୁ ସମେତ ଜାତି, ବର୍ଣ୍ଣ ନିର୍ବିଶେଷରେ ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତେ ଜଗନ୍ନାଥଙ୍କ ଦର୍ଶନ ଲାଭ କଲେ । ସେହି ସମୟରୁ ମହାପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ପାରମ୍ପରିକ ରୀତିରେ ପ୍ରତିବର୍ଷ ଆଷାଢ଼ ମାସରେ ପାଳିତ କରାଯାଉଛି । ରଥଯାତ୍ରାର ଉତ୍ପତ୍ତି ପ୍ରସଙ୍ଗରେ ବ୍ରହ୍ମପୁରାଣରେ ଉଲ୍ଲେଖ ଅଛି 'ଇନ୍ଦ୍ରଦ୍ୟୁମ୍ନ ଶ୍ରୀବିଷ୍ଣୁଙ୍କୁ ନିବେଦନ କରିଥିଲେ ଯେ ତାଙ୍କର ପୁଷ୍କରିଣୀ ତୀରରେ ଏକ ସପ୍ତାହ ବ୍ୟାପୀ 'ଗୁଣ୍ଡିଚା ନାମକ' ଯାତ୍ରା ହେଉ । ଭଗବାନ ଶ୍ରୀପୁରୁଷୋତ୍ତମ ଏଥିରେ ସମ୍ମତ ହୋଇ ଏହି ବର ପ୍ରଦାନ କରିଥିଲେ ଯେ, ଯେଉଁ ମନୁଷ୍ୟମାନେ ଗୁଣ୍ଡିଚା ମଣ୍ଡପରେ ଅଧିଷ୍ଠିତ ଥିବା ତିନି ବିଗ୍ରହଙ୍କୁ ଭକ୍ତି ସହକାରେ ପୂଜାର୍ଚ୍ଚନା କରିବେ, ସେମାନଙ୍କର ଅଶେଷ ପୁଣ୍ୟଫଳ ପ୍ରାପ୍ତି ହେବ । (ବ୍ରହ୍ମପୁରାଣ ୬୩ ଅଧ୍ୟାୟ)

ସ୍କନ୍ଦ ପୁରାଣରେ ଉତ୍କଳ ଖଣ୍ଡରେ ଏହି ଯାତ୍ରାକୁ 'ମହାଦେବୀ ମହୋତ୍ସବ' ବୋଲି ସ୍ୱୀକାର କରାଯାଇଛି । ଏହି ସ୍ୱତନ୍ତ୍ର ଓ ମହତ୍ୱପୂର୍ଣ୍ଣ ଉତ୍ସବ ସମ୍ପର୍କରେ ଭଗବାନ ବିଷ୍ଣୁ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଛନ୍ତି– ଏହି ଦିବସରେ ଭଉଣୀ ସୁଭଦ୍ରା ଓ ଜ୍ୟେଷ୍ଠଭ୍ରାତା ବଳରାମଙ୍କ ସହ ମୋତେ ରଥରେ ବସାଇ ବ୍ରାହ୍ମଣମାନଙ୍କୁ ପ୍ରୀତି କରି ଓ ରଥଯାତ୍ରାର ରୂପ ମହୋତ୍ସବ ସମ୍ପାଦନ କରି ଯେଉଁ ସ୍ଥାନରେ ମୁଁ ପୂର୍ବେ ଆର୍ବିଭୂତ ହୋଇଛି ଓ ଯେଉଁ ସ୍ଥାନରେ ତୁମର ସହସ୍ର ଅଶ୍ୱମେଧ ଯଜ୍ଞର ବେଦୀ ବିଦ୍ୟମାନ, ସେହି ଗୁଣ୍ଡିଚା ମଣ୍ଡପକୁ ଆମକୁ ନେଇଯିବ । ଏହି ସ୍ଥାନରେ ମୁଁ ବହୁଦିନ ଧରି ଅଧିଷ୍ଠିତ ଥିଲି । ମୁଁ ସେଠାକୁ ନବଦିନ ବ୍ୟାପୀ ଗମନ କରିବି । (ସ୍କନ୍ଦପୁରାଣ, ଉତ୍କଳଖଣ୍ଡ–୨୯ ଅଧ୍ୟାୟ)

ଏହି ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ 'ମଣିମା', 'ମହାପ୍ରଭୁ' ଡାକରେ ବଡଦାଣ୍ଡର ଗଗନ ପବନ ପ୍ରକମ୍ପିତ ହୋଇଉଠେ । କୋଟି କୋଟି ଜନତାର ହୃଦୟ କନ୍ଦରରେ ନିନାଦିତ ହୋଇଉଠେ ତ୍ୟାଗର ମହାନତା, ଭକ୍ତିର ଅପୂର୍ବ ଉଦ୍‌ବେଳନ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଭିଏଁ ଆପଣାର ଦେବତାଙ୍କୁ ଦର୍ଶନ କରିବା ପାଇଁ ରୁଣ୍ଡ ହୁଅନ୍ତି ପବିତ୍ର ବଡଦାଣ୍ଡରେ । ଘଣ୍ଟଘଣ୍ଟା ସଂକୀର୍ତ୍ତନ ଓ ଭକ୍ତର ଜୟଜୟକାର ଧ୍ୱନିରେ, ଗଗନ ପବନ ପ୍ରକମ୍ପିତ ହୋଇଉଠେ । ଭକ୍ତମାନସର ସ୍ଥିତି ନିବଦ୍ଧ ହୋଇଯାଏ ଚକାନୟନ କଳାକଳା ନୟନଦ୍ୱୟରେ । ଭକ୍ତ ଓ ଭଗବାନଙ୍କର ଏହା ହେଉଛି ଭାବର ବନ୍ଧନ ବେଳ । ଆଚାଣ୍ଡାଳ, ବ୍ରାହ୍ମଣ ମହାପ୍ରସାଦ ସେବନକରି ଧନ୍ୟ ହୁଅନ୍ତି ।

ସୁତରାଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା କେବଳ ଉତ୍କଳର ନୁହେଁ ବରଂ ଏକ ସର୍ବଭାରତୀୟ ଗଣପର୍ବ । ଜଗନ୍ନାଥ ହେଉଛନ୍ତି ଜଗତର ନାଥ ବିଶ୍ୱଦେବତା । ସେହି ମହାବାହୁଙ୍କର ପବିତ୍ର ଘୋଷଯାତ୍ରା ଧନୀ, ଗରିବ, ଉଚ୍ଚ, ନୀଚ ଓ ଜାତିଧର୍ମ ନିର୍ବିଶେଷରେ ସମସ୍ତ ମାନବ ଜାତି ପାଇଁ ପ୍ରେମ ଓ ମୈତ୍ରୀର ବାର୍ତ୍ତା ପ୍ରଦାନ କରୁଛି ।

ରଥାରୂଢ଼ ବାମନରୂପୀ ଭଗବାନ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ଆଉ ପୁନର୍ଜନ୍ମ ହୁଏ ନାହିଁ । ମନୁଷ୍ୟ ଜନ୍ମ ମୃତ୍ୟୁର ଚକ୍ର ବନ୍ଧନରୁ ଚିରଦିନ ପାଇଁ ମୁକ୍ତ ହୋଇଯାଏ । ଯେଉଁଠିକି ଯାଇ ଆଉ ଲେଉଟିବାକୁ ହୁଏନାହିଁ । ସେହି ଧାମ ବିଷ୍ଣୁଙ୍କର । ଶାସ୍ତ୍ରରେ ରଥାରୂଢ଼ ଜଗନ୍ନାଥଙ୍କୁ ଦର୍ଶନଦ୍ୱାରା ପ୍ରୋକ୍ତ ଫଳ ପ୍ରାପ୍ତି ହୁଏ ବୋଲି ଉଲ୍ଲେଖ ଅଛି ।

ଅଣ୍ଡିଆ ସାହି, ନିମାପଡ଼ା,
ଜି–ପୁରୀ –୭୫୨୧୦୬

# ଘୋଷ ଯାତ୍ରା

ଉର୍ମିଳା ମିଶ୍ର

ବିଶ୍ୱ ଐତିହ୍ୟରେ ଶ୍ରୀଶ୍ରୀଜଗନ୍ନାଥଙ୍କର ଘୋଷଯାତ୍ରାର ଅୟମାରମ୍ଭ କେତେକ ତଥ୍ୟରେ ରହିଥିଲେ ମଧ୍ୟ ଏହା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ବିଶ୍ୱ ସଂସ୍କୃତିକୁ ପ୍ରଭାବିତ କରିବା ସହ ଏକ ସର୍ବ ଜନୀନ ଗଣ ମହୋତ୍ସବରେ ପରିଣତ ହୋଇ ଯାଇଛି । ଆଉ ମଧ୍ୟ ଓଡ଼ିଶାର ସଂସ୍କୃତି କହିଲେ, ଶ୍ରୀଜଗନ୍ନାଥ ସଂସ୍କୃତିକୁ ହିଁ ବୁଝାଇଥାଏ । ସଂସ୍କୃତିର ମୂଳାଧାର ମଧ୍ୟ ପ୍ରଭୁ ସ୍ୱୟଂ ଶ୍ରୀଜଗନ୍ନାଥ । ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ମାନବବାଦର ପ୍ରତୀକ । ସେ ବିଶ୍ୱଦେବତା ଭାବେ ହିଁ ପରିଚିତ । ତାଙ୍କଠାରେ ସମସ୍ତେ ସମାନ । ତାଙ୍କର ହାତ ନାହିଁ, ପାଦ ନାହିଁ ଅଥଚ ସେ ସମସ୍ତଙ୍କୁ ଧରି ରଖିଛନ୍ତି ଓ ସବୁଆଡ଼େ ଯାଇ ପାରୁଛନ୍ତି । ସବୁ ଦେଖି ପାରୁଛନ୍ତି ଓ ସବୁ ଶୁଣିପାରୁଛନ୍ତି ମଧ୍ୟ । ମହାପ୍ରଭୁ ସମସ୍ତଙ୍କ ଅନ୍ତର କଥା ଜାଣି ପାରୁଛନ୍ତି କିନ୍ତୁ ତାଙ୍କୁ କେହି ଜାଣିପାରୁ ନାହାନ୍ତି ବା କଳନା ମଧ୍ୟ କରି ପାରୁ ନାହାନ୍ତି । ଏଣୁ ସେ ପୁରୁଷୋତ୍ତମ । ତାଙ୍କର ଦାରୁପିଣ୍ଡ ମଧ୍ୟରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ପରିକଳ୍ପନା । ଏଣୁ ସେ ଅନନ୍ତ ଓ ଅସୀମ । ପୁଣି ସମଗ୍ର ମାନବ ଜାତିର ମୁକ୍ତିଦାତା । ତାଙ୍କ ଲୀଳାର ଅନ୍ତନାହିଁ । ସର୍ବଧର୍ମ ସମନ୍ୱୟରେ ସେ ପ୍ରତୀକ । ପୃଥିବୀର ସବୁଧର୍ମ, ପ୍ରତ୍ୟେକ ବର୍ଣ୍ଣ ଓ ବିଭିନ୍ନ ଆଦର୍ଶ ତଥା ବହୁ ଦର୍ଶନ ଶ୍ରୀଜଗନ୍ନାଥଙ୍କଠାରେ ହିଁ କେନ୍ଦ୍ରିଭୂତ । ସମଗ୍ର ହିନ୍ଦୁ ଜନତାର ମଧ୍ୟ ଶ୍ରେଷ୍ଠ ଦେବତା ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ ।

ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ
ସୁଭଦ୍ରା ପ୍ରାଣନାଥାୟ ଜଗନ୍ନାଥାୟ ମଙ୍ଗଳମ୍ ।
ନୀଳ ସୁନ୍ଦର ପର୍ବତ କଳ୍ପବଟ ତଳେ
ଦକ୍ଷିଣ କୁଶସ୍ଥଳୀ ଶ୍ରୀକ୍ଷେତ୍ର ମଣ୍ଡଳେ ।
ବିଜେୟ ଶ୍ରୀରାମ କୃଷ୍ଣ ସୁଭଦ୍ରା ଏ ତିନି
ଚାରିଲକ୍ଷ ବତିଶ ସହସ୍ର ଦେବ ଘେନି ।

ନୀଳାଚଳ କ୍ଷେତ୍ର ନାମଟି ନୀଳଗିରି ବା ନୀଳ ପର୍ବତ ନାମରୁ ହିଁ ଆସିଅଛି । ଏହି କ୍ଷେତ୍ରର ମଧ୍ୟସ୍ଥଳରେ ବିଦ୍ୟମାନ ଶ୍ରୀମନ୍ଦିର ରତ୍ନ ସିଂହାସନ ଉପରେ ବିରାଜମାନ କରିଛନ୍ତି ମହାପ୍ରଭୁ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ମା'ସୁଭଦ୍ରା, ସୁଦର୍ଶନ ।

ମା'ସୁଭଦ୍ରା ହେଉଛନ୍ତି ବ୍ରହ୍ମମୟୀ, ଶକ୍ତିମୟୀ, ତତ୍ତ୍ୱମୟୀ ଓ କ୍ରିୟାମୟୀ ରୂପରେ ପ୍ରମାଣିତା ହୋଇ ଜୀବାତ୍ମାର ଗତି ନିୟନ୍ତ୍ରିକା ରୂପରେ ସୃଷ୍ଟି, ସ୍ଥିତି, ପାଳନ ଓ ବିଲୟର ସମସ୍ତ ଭାର ବହନ କରିଥାନ୍ତି । ଏଣୁ ଚାରିଧାମ ମଧ୍ୟରୁ ଶ୍ରୀଜଗନ୍ନାଥଧାମ ଶ୍ରେଷ୍ଠ ଅଟେ । ଶ୍ରୀଜଗନ୍ନାଥ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ହେଲେ ମଧ୍ୟ ପୃଥିବୀର ବିଭିନ୍ନ କୋଣ ଅନୁକୋଣରୁ ବିଭିନ୍ନ ଧର୍ମାବଲମ୍ବୀମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସିଥାନ୍ତି । ତାଙ୍କଠାରେ କୌଣସି ଜାତିଭେଦ ନଥାଏ । ଶୈବ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ଜୈନ ଓ ବୁଦ୍ଧ, ନାନକ, ଆର୍ଯ୍ୟ ଅନାର୍ଯ୍ୟ ସମସ୍ତଙ୍କର ସେ ଆରାଧ୍ୟ ଦେବତା ଅଟନ୍ତି । କାରଣ 'ଭକ୍ତ ଓ ଭଗବାନ ଉଭୟେ ଉଭୟଙ୍କର ପରିପୂରକ ।' ମାଟି ଥିଲେ ସିନା ପାତ୍ର ଗଠିତ ହେବ । ଭଗବାନ କୁମ୍ଭକାର ହେଲେ, ଭକ୍ତ ହେଉଛି ମୃତ୍ତିକା । ଉଭୟଙ୍କର ଅବଦାନରେ ହିଁ ଭକ୍ତି ରୂପକ ପାତ୍ର ନିର୍ମିତ ହୋଇଥାଏ । ଏଣୁ ସମସ୍ତ ଭକ୍ତଗଣଙ୍କୁ ନେଇ ଭଗବାନ ଏହି ଲୀଳା ଖେଳା କରିଛନ୍ତି ।

ଏହି ଘୋଷଯାତ୍ରା ଏକ ଧାର୍ମିକ ଉପଚାର ନୁହେଁ । ଏହା ଉତ୍କଳୀୟର ପ୍ରାଣତନ୍ତ୍ରୀରେ ଏକ ଲଳୀତ ମୂର୍ଚ୍ଛନା ରଥାରୂଢ଼ା ଶ୍ରୀଜଗନ୍ନାଥଙ୍କର ଦର୍ଶନ ଭକ୍ତମାନଙ୍କ ପ୍ରାଣରେ ଆନନ୍ଦର ଲହରୀ ଖେଳାଇ ଦେଇଥାଏ ।

ପ୍ରତିବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ରଥଯାତ୍ରା ଆରମ୍ଭ ହୁଏ । ନବଦିନ ପାଇଁ ଶ୍ରୀଜଗନ୍ନାଥ ଭାଇ ଭଉଣୀ ସହିତ ନିଜେ

ରଥାରୋହଣ କରି ମାଉସୀ ମା' ମନ୍ଦିର ଅର୍ଥାତ୍ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରନ୍ତି । ସମସ୍ତଙ୍କ ପାଇଁ ମଙ୍ଗଳ ଉଦ୍‌ଘୋଷଣ କରୁଥିବାରୁ ଏହାକୁ ଘୋଷଯାତ୍ରା କୁହାଯାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୂର୍ବଦିନ ପ୍ରତିପଦା ତିଥିରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ପ୍ରାତଃ କୃତ୍ୟ ସମାପନ କରନ୍ତି । ମହାସ୍ନାନ କରନ୍ତି । ମହାପ୍ରଭୁ ସେହିଦିନ ନବ ଯୌବନ ବେଶ ଧାରଣ କରନ୍ତି । ଏହାପରେ ବିଧି ବିଧାନର ସହ ପାରମ୍ପରିକ ରୀତିରେ ନିତ୍ୟ ଉପଚାର ପୂଜା ଗ୍ରହଣ କରନ୍ତି । ପୂର୍ବରୁ ପ୍ରସ୍ତୁତ କରାଯାଇଥିବା ରଥତ୍ରୟକୁ ସେହିଦିନ ଶ୍ରୀମନ୍ଦିରର ସିଂହଦ୍ୱାର ସମ୍ମୁଖରେ ସ୍ଥାପନ କରାଯାଏ ଏବଂ ବିଧିବିଧାନ ସହ ରଥକୁ ପ୍ରତିଷ୍ଠା କରାଯାଏ । ଏହାପରେ ଦ୍ୱିତୀୟା ତିଥିରେ ବ୍ରାହ୍ମ ମୁହୂର୍ତ୍ତରେ ବିଶ୍ୱାବସୁ ଓ ବିଦ୍ୟାପତି ବଂଶଜ ସେବକମାନେ ପ୍ରଭୁଙ୍କ ନିଦ୍ରା ଭଙ୍ଗ କରନ୍ତି । ମହାପ୍ରଭୁ ପ୍ରାତଃ କୃତ୍ୟ ସମାପନ କରି ବିଧିବିଧାନର ସହ ସମସ୍ତ ଉପଚାର ପୂଜା ଗ୍ରହଣ କରନ୍ତି । ଏହି ସମୟରେ ମଙ୍ଗଳା ରୋପଣ ଏବଂ ବନ୍ଦାପନା ସମସ୍ତ କର୍ମ ଖୁବ୍‌ଶୀଘ୍ର ସମାପ୍ତ ହେବାପରେ ଗଜପତି ମହାରାଜା ଶ୍ରୀଶ୍ରୀମହାପ୍ରଭୁଙ୍କୁ ପୁଷ୍ପାଞ୍ଜଳି ପ୍ରଦାନ କରି ଘୋଷଯାତ୍ରାକୁ ବିଜେ କରିବାଲାଗି ନିବେଦନ କରନ୍ତି । ମୃଦଙ୍ଗ, କଂସାଳ, ଶଙ୍ଖ, ଘଣ୍ଟା, ଭେରୀ, ତୂରୀ ଆଦି ନାନାଦି ବାଦ୍ୟ ବାଦନରେ ଶ୍ରୀକ୍ଷେତ୍ର ଆନନ୍ଦ ମୁଖରିତ ହୋଇ ଉଠେ । ଛତ୍ର ଚାମର, ଆଲଟ, ତରାସ ଆଦି ଆନ୍ଦୋଳିତ କରିବା ପାଇଁ ନିଯୁକ୍ତ ହୋଇଥିବା ସେବକମାନେ ସେବା କରୁଥାନ୍ତି । ବ୍ରାହ୍ମଣ ପଣ୍ଡିତଙ୍କର ବେଦପାଠ, ଭକ୍ତମାନଙ୍କର ହରିବୋଲ ଧ୍ୱନି ମଧ୍ୟରେ ମହାପ୍ରଭୁଙ୍କର ପହଣ୍ଡି ବିଜେ ଆରମ୍ଭ ହୋଇଥାଏ । ପହଣ୍ଡିରେ ଶ୍ରୀସୁଦର୍ଶନ, ଶ୍ରୀବଳଭଦ୍ର, ମା'ସୁଭଦ୍ରା ଓ ଶ୍ରୀଜଗନ୍ନାଥ କ୍ରମାନ୍ୱୟରେ ପହଣ୍ଡି ଯାତ୍ରା ଆରମ୍ଭ କରନ୍ତି । ପହଣ୍ଡି ପରେ ବଡ଼ ଠାକୁର ବଳଭଦ୍ର ତାଳଧ୍ୱଜ ରଥରେ ବିଜେ କରନ୍ତି । ତାଙ୍କର ଆୟୁଧ ହଳ ଓ ମୂଷଳ ଅଟନ୍ତି । ଏହି ରଥର ଚକ ସଂଖ୍ୟା ୧୪ । ଏହା ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ଏହି ରଥଟି ୭୬୩ଟି କାଠଦ୍ୱାରା ନିର୍ମିତ ହୋଇଥାଏ । ରଥର ଆବରଣ ରକ୍ତନୀଳ । ଏହି ରଥର ରକ୍ଷକ ହେଲେ ବାସୁଦେବ । ରଥର ସାରଥିଙ୍କ ନାମ ହେଲା ମାତଳୀ । ଏହାର ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦ । ରଥ ରଜ୍ଜୁ ହେଉଛନ୍ତି ବାସୁକୀ । ଏହାର ଦେବତା ଦ୍ୱୟ ହେଲେ ବ୍ରହ୍ମା ଓ ଶିବ । ରଥ ନେତର ନାମ ହେଲା ଉନ୍ନନୀ ।

ଦେବୀ ସୁଭଦ୍ରା ଓ ସୁଦର୍ଶନ ଦ୍ୱିତୀୟ ରଥ ଦର୍ପଦଳନ ବା ଦେବୀଦଳନ ରଥରେ ବିଜେ କରନ୍ତି । ପହଣ୍ଡି ସମୟରେ ସୁଦର୍ଶନ ସର୍ବପ୍ରଥମେ ଏହି ରଥରେ ବିଜେ ହୁଅନ୍ତି । ଦେବୀ ସୁଭଦ୍ରାଙ୍କର ଆୟୁଧ ପଦ୍ମକହ୍ଲାର ଅଟେ ।ରଥର ଉଚ୍ଚତା ୩୧ ହାତ । ଏହି ରଥଟି ୫୯୩ ଖଣ୍ଡ କାଠରେ ନିର୍ମିତ ହୋଇଥାଏ । ଏହି ରଥରେ ୧୨ଟି ଚକ ଲାଗିଥାଏ । ଏହି ୧୨ଟି ଚକ ୧୨ ମାସର ପ୍ରତୀକ । ରଥର ଆବରଣ ହେଲା କୃଷ୍ଣ ଲୋହିତ । ରଥର ରକ୍ଷକ ହେଲେ ଜୟଦୁର୍ଗା । ରଥର ସାରଥିଙ୍କ ନାମ ହେଲା ଅର୍ଜ୍ଜୁନ । ଏହାର ଦ୍ୱାରପାଳିକା ହେଲେ ଭୁବନେଶ୍ୱରୀ, ଚକ୍ର, ଗଙ୍ଗା ଓ ଯମୁନା । ଦର୍ପଦଳନର ଚାରୋଟି ଅଶ୍ୱ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ରଥର ରଜ୍ଜୁ ହେଲେ ସ୍ୱର୍ଣ୍ଣଚୂଡ଼ ନାମକ ନାଗ । ରଥର ରକ୍ଷକ ହେଲେ ଉଗ୍ରଚଣ୍ଡୀ । ଏହି ରଥର ନେତର ନାମ ନାଦାମ୍ବିକା ।

ମହାପ୍ରଭୁ ସ୍ୱୟଂ ଜଗନ୍ନାଥ ତୃତୀୟ ରଥ ନନ୍ଦିଘୋଷରେ ବିଜେ କରନ୍ତି । ଶ୍ରୀଜଗନ୍ନାଥଙ୍କର ଆୟୁଧ ହେଲା ଚକ୍ର ଓ ଶଙ୍ଖ । ନନ୍ଦିଘୋଷ ରଥର ଉଚ୍ଚତା ୩୩ହାତ ୫ ଆଙ୍ଗୁଳି । ଏହି ରଥଟି ୮୩୨ ଖଣ୍ଡି କାଠରେ ନିର୍ମିତ ହୋଇଥାଏ । ଏହି ରଥରେ ରହିଛି ୧୬ଟି ଚକ । ଯାହାକି ୧୬ କଳାର ପ୍ରତୀକ । ରଥର ଆବରଣ ହେଲା ରକ୍ତପୀତ । ରଥର ରକ୍ଷକ ହେଲେ ଗରୁଡ଼ । ରଥର ସାରଥି ହେଲେ ଦାରୁକ । ଏହି ରଥର ଦ୍ୱାରପାଳ ହେଲେ ଜୟ ଓ ବିଜୟ । ରଥର ଚାରି ଅଶ୍ୱ ହେଲେ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦ୍ୱାଶ୍ୱ । ରଥର ରଜ୍ଜୁ ହେଲା ଶଙ୍ଖଚୂଡ଼ ନାମକ ନାଗୁଣୀ । ରଥର ଦେବୀ ହେଲେ ଯୋଗମାୟା । ରଥରେ ୯ଜଣ ପାର୍ଶ୍ୱଦେବତାଗଣ ହେଲେ ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନଧାରୀ, ଚିନ୍ତାମଣି, ରାଘବ ଏବଂ ନୃସିଂହ । ରଥର ଶକ୍ତି ହେଲେ ବିମଳା ଓ ବିରଜା । ରଥର ଧ୍ୱଜାଧିପତି ହେଲେ ମହାବୀର ହନୁମାନ । ନନ୍ଦିଘୋଷ ରଥର ନେତର ନାମ ତୈଲୋକ୍ୟ ମୋହିନୀ । ରଥର ଅଧିଶ୍ୱର ହେଲେ ସ୍ୱୟଂ ଶ୍ରୀଜଗନ୍ନାଥ ।

ଶ୍ରୀଶ୍ରୀ ଠାକୁରଙ୍କ ପହଣ୍ଡି ବିଜେପରେ ପୁରୀର ଠାକୁର ରାଜା ନିଜେ ରୂପା ପାତ୍ରରେ ଚନ୍ଦନ ପୁଷ୍ପାଦିକୁ ରଥ ଉପରେ ବିକ୍ଷିପ୍ତଭାବେ ପକାଇବା ପରେ ଗଜପତି ମହାରାଜା ତାକୁ ସୁବର୍ଣ୍ଣ ମାର୍ଜନରେ ପହଁରିବା ପରେ ରଥରେ ସୁବାସିତ ଜଳ ଛିଞ୍ଚାଯାଏ । ଗଜପତି ମହାରାଜା ଠାକୁରମାନଙ୍କୁ ସ୍ୱତନ୍ତ୍ର ଭାବେ ପୂଜାର୍ଚ୍ଚନା କରିଥାନ୍ତି । ଏହି ନୀତିକୁ ଛେରାପହଁରା କୁହାଯାଏ । ଏହାପରେ ରଥତ୍ରୟରେ ଅଶ୍ୱମାନେ ଯୋଚାଯାନ୍ତି । ରଥରେ ସେବାୟତମାନେ ଘଣ୍ଟ, କାହାଳୀ ବଜାନ୍ତି । ପ୍ରତି ରଥରେ ତିନୋଟି ଲେଖାଏଁ ଦଉଡ଼ି ବନ୍ଧାଯାଏ । ତା'ପରେ କ୍ରମାନ୍ୱୟରେ ତାଳଧ୍ୱଜ, ଦେବଦଳନ ଓ

ନନ୍ଦିଘୋଷ ରଥଗୁଡ଼ିକୁ ଭକ୍ତମାନେ ଅତି ଆନନ୍ଦରେ ହରିବୋଲ ହୁଳହୁଳି ଦେଇ ଗୁଣ୍ଡିଚା ଘର ଆଡ଼କୁ ଟାଣି ନିଅନ୍ତି ।

ଗୁଣ୍ଡିଚା ମନ୍ଦିରରେ ନବଦିନ ରହିବା ପରେ ପୁନଶ୍ଚ ପହଣ୍ଡି ହୋଇ ତିନି ରଥ ବିଜେ ହୋଇ ବାହୁଡ଼ା ଯାତ୍ରା କରନ୍ତି ଓ ସିଂହଦ୍ୱାରରେ ପହଞ୍ଚିବା ପରେ ସୁନାବେଶ ହୁଅନ୍ତି । ଏହି ସୁନାବେଶ ଦେଖିବାପାଇଁ ଭାରତ ତଥା ପୃଥିବୀର ବିଭିନ୍ନ ଦେଶର ବିଭିନ୍ନ ଜାତି ଧର୍ମ ଓ ବର୍ଣ୍ଣର ଲକ୍ଷାଧିକ ଭକ୍ତମାନେ ବଡ଼ଦାଣ୍ଡରେ ସମାଗମ ହୋଇଥାନ୍ତି । ଏହାପରେ ମହାପ୍ରଭୁଙ୍କର ଅଭିନ୍ନ ନୀତିମାନ ସମାପନ କରି ସେବକମାନେ ପୁନଶ୍ଚ ପହଣ୍ଡି କରି ରତ୍ନ ସିଂହାସନକୁ ନେଇଯାନ୍ତି ।

ପୃଥିବୀରେ ଏତେବଡ଼ ଆଖି କାହାର ନାହିଁ । ତାଙ୍କର ବଡ଼ ଦେଉଳ, ବଡ଼ ଦାଣ୍ଡ, ଭୁଜ ତାଙ୍କର ବଳିଆର ଭୁଜ । ସେ ହେଉଛନ୍ତି ମହାବାହୁ । ବଡ଼ ଭୋଗଖିଆ, ପ୍ରସାଦ ତାଙ୍କର ମହାପ୍ରସାଦ । ତାଙ୍କର କ୍ଷୟ ନାହିଁ । ସେ ଅକ୍ଷୟ । ଅପରପକ୍ଷରେ ସେ ହିଁ ସ୍ୱୟଂ ସର୍ବ ସଂହାରକ । ଆଉ ମଧ୍ୟ ଏହି ଭବସାଗରରୁ ପାରି ହେବାର ନୌକା ହିଁ–ଏହି ଚକାଡୋଳା ।

ଗ୍ରା–ମହୁଲିଆ
ଭାୟା–ବଡ଼ମ୍ବା, ଜି–କଟକ

# ଉତ୍କଳର ପ୍ରଭୁ ଜଗନ୍ନାଥ

କାଞ୍ଚନ ମିଶ୍ର



ଆମ ଉତ୍କଳର ପ୍ରଭୁ ଜଗନ୍ନାଥ
ଶ୍ରୀକ୍ଷେତ୍ରରେ ବିରାଜିତ
ମହୋଦଧି ତଟେ ତାଙ୍କ ପ୍ରିୟସ୍ଥଳୀ
ପୁରୀ ନାମେ ପରିଚିତ ।

ଅନଙ୍ଗଭୀମଙ୍କ ରାଜତ୍ୱର କୀର୍ତ୍ତି ବର୍ତ୍ତମାନ ଶ୍ରୀମନ୍ଦିର
ଲଭିଛି ଆଦର ସାରା ଜଗତରେ
ନାହିଁ ତା'ର ପଟାନ୍ତର ।

ଅତୀତରେ ରାଜା ବିଷ୍ଣୁ ଉପାସକ ଆସିଥିଲେ ଇନ୍ଦ୍ରଦ୍ୟୁମ୍ନ
ଚତୁର୍ଦ୍ଧା ମୂରତି ଦାରୁବ୍ରହ୍ମ ଗଢି
ପୂଜା କଲେ ଆୟୋଜନ ।

ମହୋଦଧି ତଟେ ଶ୍ରୀକ୍ଷେତ୍ର ଆମର
ବ୍ୟାପିଲା ଦିନକୁ ଦିନ
ସର୍ବଶ୍ରେଷ୍ଠ ଧାମ ଲଭିଲା ମାନ୍ୟତା
ବଢ଼ିଲା ଉତ୍କଳ ମାନ ।

ବରଷକେ ତାଙ୍କ ଶ୍ରେଷ୍ଠ ରଥଯାତ
ଆଷାଢ଼ ଦ୍ୱିତୀୟା ଦିନ
ପତିତ ଜନଙ୍କୁ ଉଦ୍ଧରିବା ପାଇଁ ରଥେ ପ୍ରଭୁ ଆଗମନ ।



ଶଙ୍କର ଚୈତନ୍ୟ, କବୀର, ତୁଳସୀ
ଆଦି କେତେ ସାଧୁ ସନ୍ଥ
ଦେଶ ବିଦେଶରେ ପ୍ରଚାର କରିଲେ
ଜଗନ୍ନାଥ ଧର୍ମ ତତ୍ତ୍ୱ ।

ପୃଥିବୀର ବଡ ହୋଟେଲ ଆମର
ପୁରୀ ଆନନ୍ଦ ବଜାର
ମୁକ୍ତି ପଥ ବୋଲି ଲଭିଛି ଶ୍ମଶାନ
ଶ୍ରୀକ୍ଷେତ୍ରର ସ୍ୱର୍ଗଦ୍ୱାର ।

କୋଣ ଅନୁକୋଣ ଜନ ସମାଗମ
କରିବାକୁ ଦରଶନ
ସୁଦୀର୍ଘ ବିସ୍ତାରୀ ବେଳାଭୂମି ତାର
ଆକର୍ଷଣ କରେ ମନ ।

ଉତ୍କଳର ଆମ ଆରାଧ୍ୟ ଦେବତା ଜଗତର ଜଗନ୍ନାଥ
ବିଶ୍ୱ ବ୍ରହ୍ମାଣ୍ଡର ସେ ବଡ ଠାକୁର
ତାଙ୍କ ପାଦେ ପ୍ରଣିପାତ ।

୧୦୧୧, ଜୟଦୁର୍ଗା ନଗର,
ବମିଖାଲ, ଭୁବନେଶ୍ୱର

# ସର୍ବପ୍ରଥମ ରଥଯାତ୍ରା

**କୃଷ୍ଣପ୍ରିୟା ଦାସ**

ବେଦ, ପୁରାଣ, ଧର୍ମ ଓ ଦର୍ଶନ ସବୁଥିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପରିବର୍ତ୍ତନଶୀଳ ଜଗତର ଅପରିବର୍ତ୍ତନୀୟ ପରମ ସତ୍ତା ଭାବରେ ପ୍ରତିପାଦିତ କରାଯାଇଛି । ତଥାପି ସେ ପରମାତ୍ମା, ପରଂବ୍ରହ୍ମ, ପରାତ୍ପର, ପରମେଷ୍ଠି, ନିରାକାର ହୋଇ ମଧ ଭକ୍ତଜନ ହିତାର୍ଥାୟେ ସାକାରରୂପ ଧାରଣକରି ଧରାବତରଣ ହୁଅନ୍ତି । କେଉଁ ଅନାଦି କାଳରୁ ଶଙ୍ଖନାଭି କ୍ଷେତ୍ର ନୀଳାଦ୍ରି ମଣ୍ଡଳର ରତ୍ନସିଂହାସନରେ ଉପବେଶନ ହୋଇ ଜନମାନସରେ ଭକ୍ତି, ରସ, ତତ୍ତ୍ୱର ତ୍ରିଗୁଣାତ୍ମକ ଭାବ, ସଂହତି, ସଂଚାର କରାଇବା ସହ ଧର୍ମପରାୟଣ ମାନବ ସମାଜକୁ ଅନାୟସରେ ସାମାଜିକ ଶାନ୍ତି, ସଦ୍‌ଭାବନା ଓ ସଂହତିର ପ୍ରତିଷ୍ଠା ଆଡକୁ ଅଗ୍ରସର କରାଇଛନ୍ତି ।

ଉତ୍କଳର ପ୍ରାଣକେନ୍ଦ୍ରରେ ଶ୍ରୀଜଗନ୍ନାଥ ହେଉଛନ୍ତି ପରମ ରହସ୍ୟମୟ ଦେବତା । ସେ ଇଚ୍ଛାମୟ ଏବଂ ତାଙ୍କରି ଇଚ୍ଛାରେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ପରିଚାଳିତ । ସେତିକି ନୁହେଁ ସେ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତୀଭୂ । ତାଙ୍କୁ ଯିଏ ଯେଉଁ ଭାବରେ ଖୋଜିଛି, ସେ ସେହି ଭାବରେ ପାଇଛି । ଦିନର ଚବିଶି ପ୍ରହରରେ ଚବିଶି ବେଶ ହେଉଥିବା ଠାକୁର ବାରମାସରେ ତେରଯାତ୍ରା ଓ ଅଠେଇଶ ଉପଯାତ୍ରାରେ ମଧ ଭାଗ ନେଇ ଭକ୍ତ ବତ୍ସଳତା ପ୍ରଦାନ କରାଇଥାନ୍ତି । ସବୁ ପର୍ବପର୍ବାଣି, ଯାତ୍ରାମାନଙ୍କ ମଧ୍ୟରୁ ରଥଯାତ୍ରା ହେଉଛି ଅନ୍ୟତମ, ଯାହା ସ୍ୱୟଂ ଲୀଳା ନାମରେ ବିଦିତ । ପତିତ ଉଦ୍ଧାର ପାଇଁ ସ୍ୱୟଂ ରତ୍ନସିଂହାସନରୁ ଓହ୍ଲାଇ ଆସନ୍ତି ବଡଦାଣ୍ଡର ନନ୍ଦିଘୋଷକୁ । ନବଦିନାତ୍ମକ ଉତ୍ସବ ମଧରେ ପ୍ରିୟା, ପ୍ରୀତି, ସାଖ୍ୟ, ସୁହୃଦ ଭାବର ପଟ୍ଟାନ୍ତର ନଥାଏ । ଭକ୍ତ ଭଗବାନ ହୋଇଯାଆନ୍ତି ଏକାକାର ।

ରଥ ଯାତ୍ରାକୁ ନେଇ ଅନେକ କିମ୍ବଦନ୍ତୀ ରହିଛି, ସେଥିମଧ୍ୟରୁ ଗୋଟିଏ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରଥମ ରଥଯାତ୍ରାର ଉତ୍ପତ୍ତି ସତ୍ୟଯୁଗର ପ୍ରଥମ ଚରଣରେ ଭକ୍ତ ପ୍ରହ୍ଲାଦଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା ବୋଲି ଶୁଣାଯାଏ ।

ସେ ଲୀଳାରେ ଭକ୍ତମାନଙ୍କ ମଧ୍ୟରୁ ଶଙ୍କର ଭଗବାନ ହେଲେ ଅନ୍ୟତମ । ହରିଙ୍କ ଲୀଳା ହରଙ୍କ ବ୍ୟତୀତ ଜ୍ଞାନର ଗଭୀରତାରେ କିଏ ପଶିପାରିବ ? ପ୍ରାଣପ୍ରିୟା ଶ୍ରଦ୍ଧା ସ୍ୱରୂପିଣୀ ପାର୍ବତୀଙ୍କ ଆଗରେ ପ୍ରତ୍ୟହ ଶ୍ରୀଜଗନ୍ନାଥ ସଂସ୍କୃତିର ଧାରା ପ୍ରବାହ ବର୍ଣ୍ଣନା କରି ପ୍ରଗାଢ ଅନୁରାଗ ଓ ଭକ୍ତିରେ ତଲ୍ଲୀନ ହୋଇଉଠନ୍ତି ଦେବ ଦେବ ମହାଦେବ ! ଏ କଥା ମଧ ମର୍ମେ ମର୍ମେ ଅନୁଭବ କରନ୍ତି ଦେବୀ ଶୈଳସୁତା ।

ସେଦିନ ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିର ମାହେନ୍ଦ୍ର ବେଳାରେ ଉମା, ମହେଶଙ୍କ କଥୋପକଥନ ଚାଲିଥାଏ । ହଠାତ୍ ମର୍ତ୍ତ୍ୟଲୋକରୁ ଘଣ୍ଟ, ଘଣ୍ଟା, ବାଦ୍ୟ ନାଦର ଗହ ଗହ ଶବ୍ଦ ଭାସି ଆସିଲା । ଶଙ୍କର ଭଗବାନ ଦଣ୍ଡାୟମାନ ହୋଇ ପ୍ରଣାମ ମୁଦ୍ରାରେ ପୁଲକି ଉଠିଲେ । ଅନେକ ସମୟ ପରେ ପ୍ରକୃତିସ୍ଥ ହୋଇ କହିଲେ ଆଜି ମର୍ତ୍ତ୍ୟବୈକୁଣ୍ଠରେ ଘୋଷଯାତ୍ରା ଆରମ୍ଭ । ପ୍ରଭୁ ଜଗନ୍ନାଥ ନନ୍ଦିଘୋଷରେ ବିଜେ ହୋଇ ସ୍ୱୟଂ ଲୀଳା କରୁଅଛନ୍ତି । ଏ ଯାତ୍ରାର ଆୟମାରମ୍ଭ କିପରି ଓ କେବେ ହୋଇଥିଲା ଜାଣିଛ ପାର୍ବତୀ !

ଅତ୍ୟନ୍ତ ଆଗ୍ରହ ସହକାରେ ପାର୍ବତୀ କହିଲେ, ହରିକଥା ଯେତେ ଜାଣିଲେ ବି ତୃଷ୍ଣା ମେଣ୍ଟେ ନାହିଁ । ସେ ବି ଆନନ୍ଦମୟ, ପ୍ରେମମୟ, ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟମଣ୍ଡିତ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ । ମହାପ୍ରଭୁଙ୍କ ଚରିତ୍ର ଶ୍ରବଣର ସୁଖ ଆପଣ ହିଁ ଦେଇପାରିବେ । କୁହନ୍ତୁ ସ୍ୱାମୀ !

ପାର୍ବତୀଙ୍କ ଆବେଗ ଅନୁରୋଧରେ ବକ୍ତବ୍ୟ ଆରମ୍ଭ କରିଦେଲେ ଶଙ୍କର ! ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କ କଥାତ ନିଶ୍ଚୟ ସ୍ମରଣ

ଥିବ । ଯାହାଙ୍କ ଅଖଣ୍ଡ ଭକ୍ତି ବଳରେ ସ୍ୱୟଂ ପରଂବ୍ରହ୍ମ ନରସିଂହ ରୂପ ଧାରଣ କରି ସ୍ତମ୍ଭ ମଧ୍ୟରୁ ପ୍ରକଟ ହୋଇ ହିରଣ୍ୟ କଶ୍ୟପୁକୁ ବିଦୀର୍ଣ୍ଣ କରି ଧରାଭାର ଲାଘବ କରିଥିଲେ ଏବଂ ପ୍ରହ୍ଲାଦଙ୍କୁ ସର୍ବଶ୍ରେଷ୍ଠ ଇନ୍ଦ୍ର ପଦରେ ମଧ୍ୟ ଅଭିଷିକ୍ତ କରାଇଥିଲେ ।

ଭକ୍ତି ! ସମ୍ପତ୍ତି ଓ ସୁନ୍ଦରୀ ! ଏ ତିନି ନାରୀବର୍ଗ । ଏ ତିନି ବର୍ଗର ଏକତ୍ରୀକରଣ ହେଲେ ସଂସାର ଉଜୁଡିଯାଏ, ଓଲଟ ପାଲଟ ହୋଇଯାଏ ନିୟମାବଳୀ । ପ୍ରହ୍ଲାଦଙ୍କ କ୍ଷେତ୍ରରେ ତାହାହିଁ ଘଟିଥିଲା । ଅନନ୍ୟା ସୁନ୍ଦରୀ ଶଚୀ । ଅତୁଳନୀୟ ଇନ୍ଦ୍ର ସମ୍ପଦ ଓ ଅଳକାଭୁବନର ଅସଂଖ୍ୟ ସୁଖ ଭିତରେ ଅତିଷ୍ଠ ହୋଇ ହଜି ଯାଇଥିଲେ ଭକ୍ତି ଦେବୀ ! ଅହରହ ଇନ୍ଦ୍ରାଣୀଙ୍କ ସହିତ ପ୍ରେମରେ ନିମଗ୍ନ ପ୍ରହ୍ଲାଦ ଭକ୍ତିଭାବକୁ ସ୍ମରଣ କରିବା ସହଜ ନଥିଲା । ଅମରାବତୀର ଭୋଗ, ଭାଗ୍ୟରେ ସେ ଏକପ୍ରକାର ବିମୂଢ଼ ପାଲଟି ଯାଇଥିଲେ । ହେଲେ ଭକ୍ତର ଅଧପତନ ଜାଣୁ ଜାଣୁ ଜଗନ୍ନାଥ ସହନ୍ତେ କିପରି... ? ସେ'ତ ଭକତ ତାରିବାର ଆଶେ, ବ୍ରହ୍ମ ପ୍ରକାଶି ଅଛି ଅଂଶେ'' ।

ମୋହ, ମାୟା ବନ୍ଧନରୁ ଉଦ୍ଧାର କରି ଶୁଦ୍ଧ ସୁବର୍ଣ୍ଣରେ ପରିଣତ କରିବା ପାଇଁ ହଠାତ୍ ମୋହନ ମନୋହର ବେଶରେ ଅଳକାପୁରୀର ଦ୍ୟୁତ ମଣ୍ଡପ ନିକଟରେ ଆବିର୍ଭାବ ଘଟିଲା । ସେତେବେଳକୁ ପ୍ରହ୍ଲାଦ ଶଚୀଦେବୀଙ୍କୁ କୋଳାଗ୍ରତ କରି ଦ୍ୟୁତ କ୍ରୀଡାରେ ନିମଗ୍ନ ଥାଆନ୍ତି । ନୀଳାଭ ପ୍ରତିଫଳନରେ ଉଦ୍ଭାଷିତ ହୋଇଉଠିଲା ଅମରାବତୀ ! ଅବସନ୍ତରେ ବସନ୍ତର ମାଦକତା ପୁଷ୍ପ, ତୁଳସୀ, ଚନ୍ଦନର ମହ ମହ ବାସ୍ନାରେ ଦିଗଭାଗ ବିଭୋରୀତ ବିସ୍ମିତ । ନୀଳ, ପୀତର ଝଲକରେ କ୍ରୀଡା ମଣ୍ଡପ ଝଲକିତ ହେଉଥିଲେ ମଧ୍ୟ ଖେଳ ନିଶାରେ ଅଚେତ ଥିବା ପ୍ରହ୍ଲାଦ ପ୍ରିୟା ପରିତୋଷଣରେ ପଶାକାଠିର ଦାନ ଉପରେ ଧ୍ୟାନ ଜମାଇ ଉତ୍ସାହିତ ହେଉଥିଲେ ଅଧିକ ।

ଶୂନ୍ୟରେ ଥାଇ ଲୀଳା ଦର୍ଶନ କରୁଥିବା ନାରଦ ଚମକି ଉଠିଲେ । ମନରେ ଭରିଗଲା ହାହାକାର । ପ୍ରହ୍ଲାଦଙ୍କ ଭାଗ୍ୟ ଉପରେ ଦୟା ଆସିଲା । ଯିଏ ଜନ୍ମରୁ ହରି ନାମ ବିନା ଜଗତକୁ ତୁଚ୍ଛ ମଣୁଥିଲେ, ଆଜି ତାଙ୍କର ଏକି ଗତି ? ଛାର ଇନ୍ଦ୍ରପଦ ରମଣୀ ସାନ୍ନିଧ୍ୟରେ ଅନ୍ଧହୋଇ ପ୍ରଧାନ ପୁରୁଷ ଶ୍ରୀହରିଙ୍କୁ ଚିହ୍ନିପାରିଲେ ନାହିଁ ! ଧିକ୍କାରୀ ଉଠିଲେ ନାରଦ । ଆରାଧ୍ୟଙ୍କ ଅବମାନନାରେ ଜର୍ଜରିତ ହୋଇ ଏପରି ଆହ୍ୱାନ ଦେଲେ ଯେ ଖସି ପଡିଥିଲା ପଶାକାଠି । ଅନ୍ତର ହୋଇଗଲେ ଇନ୍ଦ୍ରାଣୀ ! ଶଙ୍କିତ ପ୍ରହ୍ଲାଦ ଯୋଡହସ୍ତ ହୋଇ କାରଣ ପୁଛିବା ଆଗରୁ ନାରଦଙ୍କ ମେଘ ଗମ୍ଭୀର ଉଦ୍‌ଘୋଷଣ... ତୁମେ ପତନ ଉନ୍ମୁଖୀ ହୋଇଛ ପ୍ରହ୍ଲାଦ ! ମୁକ୍ତିପସରାକୁ ହତାଦର କରି ଜ୍ଞାନ ଶୂନ୍ୟ ହୋଇଛ... ଆଉ କଣ କୁମ୍ଭିପାକକୁ ଗଲେ ତୁମର ଚୈତନ୍ୟ ଉଦୟ ହେବ ?

ଦେବର୍ଷି ନାରଦ କହିଲେ ପାପର ପ୍ରାୟଶ୍ଚିତ ପ୍ରାଣ ପାତରେ ନୁହେଁ... ପଶ୍ଚାତାପର ଅଗ୍ନିରେ ଝାସ ଦେବାକୁ ହେବ । ଅନ୍ୟଥା ଆତ୍ମାହୂତିର ମହାପାପର ଶୀକାର ନହୋଇ ତୀର୍ଥ ପର୍ଯ୍ୟଟନକୁ ବାହାରିଯାଅ । ହରି ନାମାମୃତ ପାନକରି ପୃଥିବୀ ପର୍ଯ୍ୟଟନ କର। ବୋଧହୁଏ ଦୟାସାଗରଙ୍କ ଅପାର ଦୟାରୁ ବୁନ୍ଦାଏ ମିଳିଗଲେ କୃତାର୍ଥ ପାଲଟିଯିବ ।

ତାହାହିଁ ହେଲା...। ଦ୍ୱାଦଶବର୍ଷ ପଶ୍ଚାତାପର ଅଗ୍ନିରେ ଜଳି ଜଳି ସମଗ୍ର ତୀର୍ଥସ୍ଥଳୀରେ ପାପ ସମୂହକୁ ଆହୂତି ଦେଇ ପଦବ୍ରଜରେ ଯାଉ ଯାଉ ଉତ୍କଳ ମାଟିରେ ପହଞ୍ଚି ଯାଇଥିଲେ ପ୍ରହ୍ଲାଦ ! ମହୋଦଧିର ବାୟୁକୋମଳ ସତେଯେପରି ଅପେକ୍ଷାରତ ଥିଲା । ଭକ୍ତ ଶିରୋମଣିଙ୍କ ଶ୍ରମ ଲାଘବ କରି ଚାମର ସେବାରେ କୃତାର୍ଥ ହେବାକୁ। ସାଗର ସ୍ନାନରେ ଧୋଇ ଯାଇଥିଲା ଆତ୍ମଗ୍ଲାନି । ଅନନ୍ତ ପ୍ରଶାନ୍ତିରେ ଭରିଯାଇଥିଲା ଦେହମନ । ଶିଖରୀ ଶିଖର କଳ୍ପବଟ ମୂଳେ ଧ୍ୟାନସ୍ଥ ହୋଇଯାଇଥିଲେ ସେ । ତାଙ୍କ କଣ୍ଠରୁ କ୍ଷରିତ ହେଉଥିଲା 'ଓଁ'କାର ।

ଏକବର୍ଷ ଷଡ଼ଋତୁରେ ଦେହାତୀତ ତପସ୍ୟା ଭଙ୍ଗ ହୋଇଥିଲା ବାତ୍ସଲ୍ୟମମତା ଭରା କଣ୍ଠସ୍ୱରରେ । ଚକ୍ଷୁ ନିମିଳିତ ପ୍ରହ୍ଲାଦଙ୍କ ଆପାଦ ମସ୍ତକ ଶିହରୀ ଉଠିଲା । ସମ୍ମୁଖରେ ଦିବ୍ୟବପୁ ଇନ୍ଦ୍ରନୀଳ କାନ୍ତି ଚତୁର୍ଭୁଜ ପ୍ରସାରୀ ଆହ୍ୱାନ କରୁଅଛନ୍ତି ଆଲିଙ୍ଗନକୁ। ପାଦ ପଦ୍ମରେ ଲୋଟିପଡିଲେ ପ୍ରହ୍ଲାଦ । ମୁକୁଳି ପଡିଲା ଜ୍ଞାନ ଚକ୍ଷୁରୁ ଅବାରିତ ଅଶ୍ରୁ ଗଙ୍ଗା, ଯମୁନାର ସହସ୍ରଧାରାରେ ଧୋଇଯାଉଥିଲା ଚରଣ ଯୁଗଳ । କୋହଭରା ଗଦ୍‌ଗଦ୍ କଣ୍ଠରେ କହୁଥିଲେ... 'ସେବ୍ୟ ସେବକ ସମନ୍ଧାତ୍ ଅପରାଧ କ୍ଷମସ୍ୱମେ ।'

ଭକ୍ତକୁ କୋଳାଗ୍ରତ କରି ଭଗବାନ କହିଲେ... ମୁଁ ପ୍ରସନ୍ନ ହୋଇଛି ବତ୍ସ ! ଯାହା ଇଚ୍ଛା ମାଗ । ଇନ୍ଦ୍ରପଦ ଅରୁଚି ହେଲେ, ବିଷ୍ଣୁପଦରେ ସ୍ଥାପନ କରାଇଦେବି । ତୁମକୁ ମୋର କ'ଣ ବା ଅଦେୟ ଅଛି ?

ଲଜ୍ଜିତ କରନ୍ତୁ ନାହିଁ ପ୍ରଭୁ ! ଯେଉଁ 'ପଦ' ପତନର କାରଣ, ସେ 'ପଦ' ମୋର ଅତ୍ୟନ୍ତ ତୁଚ୍ଛ । ଦର୍ଶନ ଫଳସ୍ୱରୂପ ଗୋଟିଏ ଇଚ୍ଛାପୂର୍ଣ୍ଣ କରି ଦିଅନ୍ତୁ । ଅଭୟ କଣ୍ଠରୁ ଝରିଆସିଲା... ଅସ୍ତୁ ! ତୁମ ଇଚ୍ଛାହିଁ ମୋର ସମ୍ମତି ।

ତଥାପି ଆଜିଭଳି ପବିତ୍ର ଦିବସର ସ୍ମୃତିକୁ ଅମର ରଖିବା ପାଇଁ କିଛିତ ଯାଚନା କର । ତୁମ ପାଇଁ ନହେଉ ପଛେ... ଜଗତବାସୀଙ୍କ ଉଦ୍ଦେଶ୍ୟରେ ତ କାମନା କରିପାର, ଏଥିରେ ଅସୁବିଧା କ'ଣ ?

ସବୁତ ଇଚ୍ଛାମୟଙ୍କ ଇଚ୍ଛା... ତାକୁ ବା ଟାଳିବ କିଏ... ? ପ୍ରହ୍ଲାଦଙ୍କ ମନରେ ଅଙ୍କୁରିତ ହେଲା ଏକ ଦିବ୍ୟାତି ଦିବ୍ୟ ବାସନା । ସେ କହିଲେ ପ୍ରଭୁ ! ମୁଁ ଇନ୍ଦ୍ରପଦରେ ପ୍ରମତ୍ତ ହୋଇ ସେବା ସମ୍ପଦକୁ ଭୁଲି ଯେଉଁ ଅନ୍ୟାୟ କରିଛି... ଆପଣଙ୍କ ବିଷ୍ଣୁତାଣ୍ଡବକୁ କେଉଁ ଗନ୍ଧର୍ବର ସେବା ମନେକରି ହେୟ ଜ୍ଞାନରେ ଦୃଷ୍ଟି ଫେରାଇ ନଥିଲି । କମଳା ସେବିତ କୋମଳ ପାଦପଦ୍ମ ଫଳରେ ନାଚି ନାଚି ବ୍ୟଥିତ ହୋଇ କି କଷ୍ଟ ପହଞ୍ଚ ନଥିଲା ! ଆଜିର ଅବସରରେ ସେହି ଅମଳ କମଳ ଚରଣ ଯୁଗଳ ସମାର୍ଜନା କରି ରଥାରୂଢ଼ କରାଇ ଏ ପୁଣ୍ୟ କ୍ଷେତ୍ର ପରିକ୍ରମା କରିବା ସହ ନବଧା ଭକ୍ତିରେ ସେବା କରିବାକୁ ଚାହେଁ ପ୍ରଭୁ ।

ଶ୍ରୀଜଗନ୍ନାଥଙ୍କ ଆଜ୍ଞାରେ ମହାଶୂନ୍ୟରୁ ଖସିଆସିଥିଲା ଇଚ୍ଛାଧାରୀ ନନ୍ଦିଘୋଷ ବିମାନ । ମହାନନ୍ଦରେ ସମସ୍ତ ପୂଜା ବିଧି ବଢାଇ ପ୍ରଭୁଙ୍କୁ ପହଣ୍ଡି ମଣାଇ ରଥ ଉପରକୁ ସ୍ୱାଗତ ଜଣାଇଲେ ପ୍ରହ୍ଲାଦ । ଆକାଶମାର୍ଗରୁ ଗନ୍ଧର୍ବ, ଅପ୍ସରାମାନଙ୍କ ନୃତ୍ୟ ସାଙ୍ଗକୁ ଘଣ୍ଟ ଘଣ୍ଟା ବିବିଧ ବାଦ୍ୟ ନାଦରେ ପ୍ରକମ୍ପିତ ହେଉଥିଲା ମେଦିନୀ । ପାରିଜାତର ବର୍ଷଣରେ ପୁଷ୍ପିତ ହୋଇଗଲା ବିଜେ ସରଣୀ । ପ୍ରହ୍ଲାଦଙ୍କ ଇଙ୍ଗିତରେ ଶ୍ୱେତାଶ୍ୱମାନେ ମଧୁର ଗତିରେ ରଥ ଆଗେଇ ନେଲେ । ଭକ୍ତର ସେବା ପରିଚାଳନାରେ ଶ୍ରୀଜଗନ୍ନାଥ ଶାନ୍ତି ଅନୁଭବ କଲେ ଓ ତାଙ୍କ ଶରୀର ବାମନ ରୂପ ଧାରଣ କଲା ।

ରଥ ସ୍ଥଗିତ ହୋଇଥିଲା ସମୁଦ୍ରକୂଳ ବାଲୁକା ପ୍ରାନ୍ତର ମଧ୍ୟରେ । ଭକ୍ତ ଭଗବାନଙ୍କ ଐକାନ୍ତିକ ମିଳନରେ ନବଦିନ ବ୍ୟାପି ଭିନ୍ନ ଭିନ୍ନ ବେଶରେ ସଜାଇ ଆନନ୍ଦ ଭିତରେ ବୁଡି ଯାଇଥିଲେ ପ୍ରହ୍ଲାଦ । ହଠାତ୍ ଶ୍ରୀମୁଖ ନିଃସୃତ ବାଣୀ... ଏଥର ବାହୁଡା ବିଜୟକୁ ପ୍ରସ୍ତୁତ ହୁଅ । ତୁମ ସେବା ଭକ୍ତି ଏବଂ ରଥଯାତ୍ରାର ସ୍ମୃତି, କଳିଯୁଗରେ କଳି କଳୁଷିତ ଜନସମାଜକୁ ନିଶ୍ଚୟ ଉପକୃତ କରାଇବ । ମୁଁ ଚତୁର୍ଦ୍ଧାମୂର୍ତ୍ତି ହୋଇ ଏହି ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ଦିବସରେ ମୋର ରଥଯାତ୍ରା ବିଧିବଦ୍ଧ ଭାବରେ ପାଳିତ ହେବ । ତୁମେ ରଥାରୋହଣ କରାଇ ଯେଉଁ ଦଶ ଯୋଜନ ଭୂମି ପରିକ୍ରମା କରାଇଛ, ସେହି ବିସ୍ତୀର୍ଣ୍ଣ କ୍ଷେତ୍ର ହିଁ ପୁରୁଷୋତ୍ତମ କ୍ଷେତ୍ର ନାମରେ ବିଦିତ ହେବ । ଯାହା ଅତ୍ୟନ୍ତ ଦୁର୍ଲ୍ଲଭ 'ଦଶ ଯୋଜନ ବିସ୍ତୀର୍ଣ୍ଣ କ୍ଷେତ୍ରଂ ପରମ ଦୁର୍ଲ୍ଲଭମ୍' ।

ଶ୍ରୀଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ଜ୍ୟୋତିରୂପ, ଜ୍ଞାନରୂପ, ସର୍ବ ରୂପର ସମୂହ ବିଗ୍ରହ । ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁଃବର୍ଗର ସେ ଆଦିସ୍ୱରୂପ । ପରଂବ୍ରହ୍ମ ପ୍ରତୀକ ରୂପ ଯେତେବେଳେ ରଥାରୂଢ଼ ହୋଇ ରଥକୁ ସାମାଗ୍ରୀକ ଭାବରେ ପ୍ରତୀକଧର୍ମୀ କରାଇଥାନ୍ତି ସେତେବେଳେ ଇନ୍ଦ୍ରିୟମାନଙ୍କୁ ଅଶ୍ୱଭାବରେ ପରିଚାଳିତ କରି ସକଳ ଦେବାଦେବୀ ପରିଚାର ଭାବରେ ଆଜ୍ଞାଧୀନ ହୋଇ କୃତାର୍ଥ ପାଲଟି ଯାଆନ୍ତି ।

ଶ୍ରୀଜଗନ୍ନାଥ ହେଉଛନ୍ତି ପୂର୍ଣ୍ଣବ୍ରହ୍ମର ପ୍ରତୀକ । ତାଙ୍କ ସ୍ଥିତିରେ ପୂର୍ଣ୍ଣ ହୁଏ ସୃଷ୍ଟି । ତାଙ୍କ ବିହୁନେ ସବୁ କିଛି ଶୂନ୍ୟ ଜଗତ ଜଡ ପାଲଟିଯାଏ । ତାଙ୍କ ଆଗମନରେ ରଥ, ପଥ ସବୁ କିଛି ଚେତନାର ପ୍ରବାହରେ, ଔଦାର୍ଯ୍ୟ, ମାଧୁର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟ, ଗାମ୍ଭୀର୍ଯ୍ୟରେ ପରିପ୍ରକାଶ ଓ ଆନନ୍ଦମୟ । ତେଣୁ ସମସ୍ତ ଯାତ୍ରା ମଧ୍ୟରୁ ରଥଯାତ୍ରା ହେଉଛି ଶ୍ରେଷ୍ଠ ଯାତ୍ରା । ପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କ ଅବସ୍ଥାନ ସ୍ଥଳ ହେତୁ ଏ ଧାମ ପୁରୁଷୋତ୍ତମ ଧାମ, ଯାହା ସମସ୍ତ ତୀର୍ଥ ମଧ୍ୟରେ ତୀର୍ଥରାଜ । ପ୍ରହ୍ଲାଦକୃତ ରଥଯାତ୍ରା ହିଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରଥମ ରଥଯାତ୍ରା ।

ଗଜପତି ନଗର–୫୮
ମୈଥିଳୀ ନିବାସ
ପୁରୀ–୨

# ଅବର୍ଣ୍ଣନୀୟ ଶ୍ରୀଜଗନ୍ନାଥ

ରମାକାନ୍ତ ରାଉତ

ଶ୍ରୀଜଗନ୍ନାଥ ବେଦାନ୍ତର ପରଂବ୍ରହ୍ମ, ଯୋଗୀର ପରମେଶ୍ୱର ଭକ୍ତର ଭଗବାନ । ଶ୍ରୀଜଗନ୍ନାଥଙ୍କୁ କିଏ କେବେ କଳନା କରିପାରିବେ ନାହିଁ । ସେ ଅବର୍ଣ୍ଣନୀୟ ଦେବତା । ନିରାକାର ସର୍ବବ୍ୟାପି ପରଂବ୍ରହ୍ମଙ୍କର ସାକାର ଉପାସନା ହେଉଛି ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଉପାସନା । ସତ୍‌ଚିତ ଆନନ୍ଦର ସ୍ୱରୂପ ଶ୍ରୀଜଗନ୍ନାଥ ଅବର୍ଣ୍ଣନୀୟ ରୂପ । ସେ ଅନାଦି, ଅନନ୍ତ, ଆଦିମୂଳ ସ୍ୱୟଂ ପ୍ରକାଶ । ଜଗନ୍ନାଥ ବହୁନାମ ବହୁ ରୂପରେ ପ୍ରକାଶିତ ବିଶ୍ୱରୂପ ।

ଅବର୍ଣ୍ଣନୀୟ ପରଂବ୍ରହ୍ମ ସାକାର ରୂପରେ ଶ୍ରୀକ୍ଷେତ୍ରରେ କେବେ ସ୍ୱୟଂ ପ୍ରକାଶିତ ହେଲେ, ତାହା କଳନା କରିବା ଦୁଃସାଧ୍ୟ । ଭକ୍ତର ବିଶ୍ୱାସ, ମହାପ୍ରଭୁ ଚିରନ୍ତନ କାଳରୁ ଶାଶ୍ୱତ କ୍ଷେତ୍ର ଶ୍ରୀକ୍ଷେତ୍ରରେ ନିତ୍ୟ ନୂତନ ସ୍ୱରୂପରେ ପ୍ରକାଶିତ ହୋଇ ସଂସାରର ସମସ୍ତ ଧର୍ମବିଶ୍ୱାସ ଓ ଦର୍ଶନ ପ୍ରତୀଭୂ ଭାବରେ ଉପାସିତ ।

ଅବର୍ଣ୍ଣନୀୟ, ଅକଳନୀୟ, ଅବ୍ୟକ୍ତ, ଅଚିନ୍ତ୍ୟ, ଅପ୍ରକାଶ୍ୟ ଓ ଅସରନ୍ତ ରହସ୍ୟର ଘନୀଭୂତ ବିଗ୍ରହ ହିଁ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ । ଅବର୍ଣ୍ଣନୀୟ ତତ୍ତ୍ୱ ଓ ଦର୍ଶନର ବ୍ୟାଖ୍ୟା ବେଦ ଓ ପୁରାଣ ସମୂହରେ ହୋଇଥିବା ବେଳେ ଯେଉଁଥିରେ ଜଗନ୍ନାଥଙ୍କ ମନ୍ଦିରର ଦୈନନ୍ଦିନ ଧାରାବାହିକ ତଥ୍ୟ ଉପଲବ୍ଧ, ତାହା ହେଉଛି ମାଦଳା ପାଞ୍ଜି । ଶ୍ରୀଜଗନ୍ନାଥ ଲୀଳାମୟ, ରହସ୍ୟମୟ ଗୂଢତତ୍ତ୍ୱମୟ, କାରଣ ତାଙ୍କର ଲୀଳା ଅବର୍ଣ୍ଣନୀୟ । କେତେବେଳେ ସ୍ୱାଭିମାନୀତ କେତେବେଳେ ଉତ୍ସବ ମୁଖର । ସେ ରହସ୍ୟମୟ, କାରଣ ତାଙ୍କର ମାୟା ସର୍ବ ବିରାଜମାନ । ତାଙ୍କୁ ନିରେଖିବା, ବୁଝିବା ଓ ଜାଣିବା ଅତ୍ୟନ୍ତ ଗୋପନ ତଥା ଗୂଢତମ ଅଟେ । ସେ ସର୍ବବ୍ୟାପି । ତାଙ୍କର ମହିମା ଏ ସଚରାଚର ପୃଥିବୀରେ ସର୍ବବ୍ୟାପି । ତାଙ୍କୁ ତନ, ମନ, ଚେତନା, ଭାବନା ଓ ଚିନ୍ତାର ଊର୍ଦ୍ଧ୍ୱରେ ସ୍ଥାପନ କଲେ, ସେ ଦେଖାଦେଇ ପାରନ୍ତି । ତାଙ୍କୁ ଅନ୍ତରରେ ଧ୍ୟାନ କଲେ ସେ ଆସନ୍ତି, ବସନ୍ତି, ପୁଣି ଅପସରି ଯାନ୍ତି । ଋଷି, ମୁନିମାନେ ବର୍ଷ ବର୍ଷ ଧରି ତପସ୍ୟା କରି ମଧ୍ୟ ତାଙ୍କୁ ପାଇ ପାରି ନାହାନ୍ତି । ଯାହା କିଛି ଉପଲବ୍ଧ କରନ୍ତି, ତାହା ସମୁଦ୍ରକୁ ଶଙ୍ଖେ । ଏଣୁ ତାଙ୍କୁ ଧ୍ୟାନ ମନରେ ଓ ହୃଦୟର କନ୍ଦରରେ ଉପସ୍ଥାପନା କଲେ ସେ ଶୁଣିପାରନ୍ତି । ସେ ମନୁଆ ଠାକୁର । ତାଙ୍କର ଇଚ୍ଛାରେ ସେ ନିଜେ ପ୍ରକଟ ହୁଅନ୍ତି ।

ଶ୍ରୀଜଗନ୍ନାଥଙ୍କ ମହିମା କହିଲେ କେବେ ସରେନି । ସେ ଦୁଃଖ ଦେଲେ ବି ସହିବ ଓ ସୁଖ ଦେଲେ ବି ସହିବ କାରଣ ସେ ସବୁ ଉତ୍ସର ମୂଳ । ସେ ଭକ୍ତଙ୍କୁ ଅତି ନିକଟରେ ରଖି ବିଭିନ୍ନ ପରୀକ୍ଷା କରିଥାନ୍ତି । ସେ ଭାବଗ୍ରାହୀ, ଅଲୋକିତ ମାୟାଧାରୀ ଓ ତାଙ୍କ ନିର୍ଦ୍ଦେଶରେ ସଚରାଚର ପୃଥିବୀ ଆତଯାତ । ସେ ମୁକ୍ତା, ସୁନା, ପବନ, ଆହାର, ଜଳ, ସର୍ବତ୍ର ବିରାଜମାନ ।

ଶ୍ରୀଜଗନ୍ନାଥ ହେଉଛନ୍ତି ସମଗ୍ର ବିଶ୍ୱମାନବର ଏକ ବିସ୍ମୟ ଦେବତା । ତାଙ୍କର ଦାରୁପିଣ୍ଡ ମଧ୍ୟରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ପରିକଳ୍ପନା । ସେ ଅନନ୍ତ ଓ ଅସୀମ । ପୁଣି ସମଗ୍ର ମାନବ ଜାତିର ମୁକ୍ତିଦାତା । ତାଙ୍କ ଲୀଳାର ଅନ୍ତ ନାହିଁ । ଶ୍ରୀଜଗନ୍ନାଥ ହେଉଛନ୍ତି ପତିତପାବନ, ସର୍ବଧର୍ମ ସମନ୍ୱୟର ପ୍ରତୀକ । ପୃଥିବୀର ସବୁଧର୍ମ ପ୍ରତ୍ୟେକ ବର୍ଣ୍ଣ ଓ ବିଭିନ୍ନ ଆଦର୍ଶ ତଥା ବହୁ ଦର୍ଶନ ଶ୍ରୀଜଗନ୍ନାଥଙ୍କଠାରେ ହିଁ କେନ୍ଦ୍ରୀଭୂତ । ଅବର୍ଣ୍ଣନୀୟ ଶ୍ରୀଜଗନ୍ନାଥ କହିବାର ଅର୍ଥ ଆମ୍ଭେମାନେ ବେଦ ଉପନିଷଦ ଓ ପୁରାଣମାନଙ୍କରୁ ଯେ ଭଗବାନ ଗୋଲକ ଧାମରୁ ବିଭିନ୍ନ ଅବତାର ଲୀଳା କରିବା ପାଇଁ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ନିଜ କାର୍ଯ୍ୟାବଳୀ ଶେଷରେ ସ୍ୱଧାମ ଗୋଲକ ଧାମକୁ ଫେରିଯାଆନ୍ତି । ଯେହେତୁ ନୀଳାଚଳ ଧାମ ଗୋଲକଧାମ ଅଟେ ଏବଂ ଶ୍ରୀଜଗନ୍ନାଥ ଗୋଲକ

ପତି ଅଟନ୍ତି । ସମସ୍ତ ଅବତାରମାନ ନୀଳାଚଳ ଧାମରୁ ପ୍ରକଟ ହୋଇ ଧରାଧାମରେ ଲୀଳା କରି ନୀଳାଚଳ ଧାମକୁ ଫେରିଆସନ୍ତି ।

ଶ୍ରୀଜଗନ୍ନାଥ ସ୍ୱୟଂ ଓଁକାର ରୂପୀ ହେତୁ ସବୁ ଦେବଦେବୀଙ୍କର ସ୍ରଷ୍ଟା ବ୍ରହ୍ମ ଭାବରେ ଉପାସିତ । ଶ୍ରୀଜଗନ୍ନାଥ ଦିବ୍ୟ ଅମୂର୍ତ୍ତ ପୁରୁଷ ପୁରୁଷୋତ୍ତମ ।

ଶ୍ରୀମଦ୍ ଭଗବତ ଗୀତାରେ ଜଗନ୍ନାଥଙ୍କୁ କ୍ଷର ପୁରୁଷଠାରୁ ଭିନ୍ନ ଏବଂ ଅକ୍ଷର ପୁରୁଷଠାରୁ ଶ୍ରେଷ୍ଠ ଭାବରେ ପ୍ରତିପାଦିତ କରାଯାଇଛି ।

ଶ୍ରୀଜଗନ୍ନାଥ ଅସୀମ, ଅନନ୍ତ ସର୍ବବ୍ୟାପି । ଶ୍ରୀମଦ୍ ଭଗବତ ଗୀତାରେ ଅର୍ଜୁନ ଦର୍ଶନ କରିଥିବା ବିଶ୍ୱରୂପ ହିଁ ଶ୍ରୀଜଗନ୍ନାଥଙ୍କର ପ୍ରକୃତ ସ୍ୱରୂପ ।

ମହାଭାରତ ଯୁଗ ପରେ ଜୈନ ଓ ବୌଦ୍ଧ ଯୁଗ । ବୌଦ୍ଧ ଯୁଗ ପୂର୍ବରୁ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଉପାସନା ପ୍ରତିଷ୍ଠିତ ଥିଲା ବୋଲି ଐତିହାସିକମାନେ ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି ।

ଷୋଡଶ ଶତାବ୍ଦୀରେ ଦିବାକର ଦାସ ଜଗନ୍ନାଥଙ୍କର ଏକକଳା ଭାବେ ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା କରିଛନ୍ତି । 'ଜଗନ୍ନାଥ ଯେ ଷୋଳକଳା, ତହୁଁ କଳା ଏ ନନ୍ଦବଳା । କଳାକୁ ଷୋଳକଳା କରି, ଗୋପେ ବିହରେ ନରହରି । ଆଦିକବି ସାରଳା ଦାସ ମହାଭାରତରେ ଜଗନ୍ନାଥଙ୍କୁ ବୁଦ୍ଧି ବା ଜ୍ଞାନ 'ବ୍ରହ୍ମଜ୍ଞାନ' ଭାବରେ ବର୍ଣ୍ଣନା କରିଛନ୍ତି । ବଳଭଦ୍ର, ସୁଭଦ୍ରା ଏବଂ ଜଗନ୍ନାଥ ଯଥାକ୍ରମେ ଶିବ, ବ୍ରହ୍ମା ଏବଂ ବିଷ୍ଣୁ ଭାବରେ ସାରଳା ମହାଭାରତ ମୂଷଳୀ ପର୍ବରେ ପ୍ରତିପାଦିତ ହୋଇଛନ୍ତି ।

ଶ୍ରୀଜଗନ୍ନାଥଙ୍କ ଉପରେ ବର୍ଣ୍ଣନା କଲେ ସେ ହେଉଛନ୍ତି ସର୍ବବ୍ୟାପକ, ସର୍ବଶକ୍ତିମାନ, ସର୍ବଜ୍ଞ ଓ ଜ୍ଞାନର ପ୍ରତୀକ ମଧ୍ୟ । ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ । ସେ ଅନାଦି ଓ ଅନନ୍ତ । ତେଣୁ ସେ ସଚ୍ଚିଦାନନ୍ଦ । ଏ ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ଘଟୁଛି, ସେ ସବୁର କାରଣ ହେଉଛନ୍ତି ବ୍ରହ୍ମାଣ୍ଡର ନାଥ ସ୍ୱୟଂ ଭଗବାନ । ମହାପ୍ରଭୁ ହେଉଛନ୍ତି ସତ୍ୟ, ଶିବ, ସୁନ୍ଦର ।

ଗ୍ରା–ରାଣୀଗୋଡା, ପୋ– ଶୁକ୍ଳେଶ୍ୱର
କଟକ–୭୫୪୨୨୧

# ପ୍ରଭୁ ଦେଖାଦିଅ ଥରେ

**ବିଜୟଲକ୍ଷ୍ମୀ ରାଉତରାୟ**



କହିଲି ପ୍ରଭୁ ଦେଖାଦିଅ ଥରେ
ସତରେ ନହେଲେ ନାହିଁ ସପନରେ
ଭାବିଲକି ଦେଖାଦେଲେ କାଳେ
ଗରବ କରିବି କି ମୋହର ମନରେ ।

ସେଥିପାଇଁ ବୋଧେ ବଂଶୀ ଦେଖାଇଲ ସ୍ୱପ୍ନରେ
କାହିଁ ତ ନଥିଲ ସେହି ମୁରଲି ପାଖରେ ।
ଭାବିଲି ହେଉ ପଛେ ମିଛରେ
କଳା ଧଳା ଅଶ୍ୱରେ ଦୁଇଭାଇ ଆସିବେ ସ୍ୱପ୍ନରେ ।

ତୁମେ ମୋ ହୃଦୟର ପ୍ରତିଟି କୋଣରେ
ରଙ୍ଗ କଳା ବୋଲି ଊଣା କରୁଚ କି ମନରେ
ସେଥିପାଇଁ ନାଉଚି ମୁଁ ମୋ ନୟନରେ
କୋଟି ରଙ୍ଗ ନତମସ୍ତକ ତୁମରି ପାଖରେ ।

ସେ ରଙ୍ଗ ଲାଗି କାଳେ ମୁଁ ଲାଗିବି ଆହୁରି ସୁନ୍ଦର
ଆଖିରେ ମୁଁ ନାଉଚି ସେ ଲାଗି ବାରମ୍ବାର ।

ସୂଚନା ଓ ଲୋକସମ୍ପର୍କ ବିଭାଗ
ଭୁବନେଶ୍ୱର

# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

ମନୋରଞ୍ଜନ ନନ୍ଦ



ପଣ୍ଡିତ ନୀଳକଣ୍ଠ ଦାଶ କହିଛନ୍ତି– 'ଓଡ଼ିଆର ଶବର ଦେବତା ଜଗନ୍ନାଥ । ସେ କୌଣସି ସ୍ଥାନ ବା ବ୍ୟକ୍ତିର ନାଥ ନୁହଁନ୍ତି । ସେ ରାମନାଥ ନୁହନ୍ତି, ଦ୍ୱାରକାନାଥ ନୁହନ୍ତି, ବଦ୍ରିନାଥ ନୁହଁନ୍ତି । ସେ ଚାରିଧାମରେ ଶ୍ରେଷ୍ଠ ଧାମ ଜଗତର ନାଥ 'ଶ୍ରୀଜଗନ୍ନାଥ ।'

ବିଶ୍ୱର ଶ୍ରେଷ୍ଠ ଧାମ ଜଗନ୍ନାଥ ଧାମର ମହତ୍ତ୍ୱ ସମସ୍ତେ ଜାଣନ୍ତି । ଅପାଣିପାଦ ପ୍ରଭୁ ସାରା ଜଗତ ଭ୍ରମଣ କରି ଭକ୍ତର ଦୁଃଖ ହରଣ କରନ୍ତି । ଶ୍ରୀକ୍ଷେତ୍ର ପୁରୀଠାରେ ଥିବା ଶ୍ରୀମନ୍ଦିରର ପ୍ରଭୁ ଦର୍ଶନ କଲେ ନାନା ତୀର୍ଥ ଭ୍ରମଣ କରିବାକୁ ପଡ଼ିବ ନାହିଁ ବୋଲି ଭକ୍ତ ଚିନ୍ତା କରି ଯଥାର୍ଥରେ ଗାଇଉଠିଛି–

'ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ?'

ଗଣଦେବତା ଭାବେ ପରିଚିତ ଶ୍ରୀଜଗନ୍ନାଥ, ଦ୍ୱୈତ ବା ଅଦ୍ୱୈତ, ବୈଷ୍ଣବ ବା ଶୈବ, ଜୈନ ବା ବୌଦ୍ଧ, ହିନ୍ଦୁ ବା ମୁସଲମାନ ସମସ୍ତଙ୍କର ଦେବତା । 'ବସୁଧୈବ କୁଟୁମ୍ବକମ୍' କରି ସମ ଦୃଷ୍ଟିରେ ସମସ୍ତଙ୍କୁ ଦେଖୁଥିବା ପ୍ରଭୁ ନୀଳଚକ୍ର ପତାକାକୁ ଉଡ଼ାଇ ବିଶ୍ୱମୈତ୍ରୀ ପ୍ରତିଷ୍ଠା କରିବା ସହ ଜଗନ୍ନାଥ ଧାମର ଉତ୍କର୍ଷତାକୁ ପ୍ରତିପାଦିତ କରି ପାରିଛନ୍ତି । ତେଣୁ ଜଗନ୍ନାଥ ଦାସ ଲେଖିଛନ୍ତି–

'କ୍ଷେତ୍ର ତୀର୍ଥ ନାମେ ଭକତ
ତିନି ଭୁବନରେ ବିଦିତ
ସେ ସର୍ବେ ଜାଣ ବହିଃରଙ୍ଗ
ପୁରୁଷୋତ୍ତମ ଅନ୍ତରଙ୍ଗ ।'

ଜଗନ୍ନାଥ ଧାମର ଅଧୀଶ୍ୱର ହିଁ ସକଳ ସୃଷ୍ଟିର ରହସ୍ୟ । ଧର୍ମ ସଂସ୍ଥାପନା ପାଇଁ ଶ୍ରୀଜଗନ୍ନାଥ ବିଭିନ୍ନ ସମୟରେ ଅବତାର ଗ୍ରହଣ କରି ଦୁଷ୍ଟ ସଂହାର କରିଛନ୍ତି ଓ ସନ୍ଥମାନଙ୍କୁ ଆଶୀର୍ବାଦ ଦେଇଛନ୍ତି । ଜଗନ୍ନାଥଙ୍କ ସ୍ୱରୂପ କଥା ବର୍ଣ୍ଣନା କରି ପୁଣି ଜଗନ୍ନାଥ ଦାସ କହିଛନ୍ତି–

'ଯେତେ ସବୁ ବିଷ୍ଣୁ ଅବତାର
ଏହି କ୍ଷେତ୍ରରୁ ସେ ବାହାର
ଏ ଦେବ ଦେବଙ୍କ ଉତ୍ତମ
ଏ କ୍ଷେତ୍ର ଶ୍ରେଷ୍ଠ ପୁରୁଷୋତ୍ତମ ।'

କୃଷ୍ଣ–ବିଷ୍ଣୁ ଓ ଜଗନ୍ନାଥ ଏକ ଓ ଅଭିନ୍ନ । ଅବତାରୀ ପୁରୁଷ ଭାବେ ଅବତାର ଗ୍ରହଣ କରୁଥିବା କଥା ବୈଷ୍ଣବ କବି ଦିବାକର ଦାସ ସ୍ୱୀକାର କରି ଲେଖିଛନ୍ତି–

'ପରମ ବ୍ରହ୍ମ ଜଗନ୍ନାଥ, ଅବତାର ପରମ ସଂସ୍କୃତି
କୋଟି କୋଟି ଯେ ଅବତାର, ଜଗନ୍ନାଥ ଅଙ୍ଗୁ ବାହାର ।'

(ଜଗନ୍ନାଥ ଚରିତାମୃତ)

କବି ଦୀନକୃଷ୍ଣ ଦାସ ମଧ୍ୟ ଜଗନ୍ନାଥଙ୍କ ସ୍ୱରୂପ ଓ ଅବତାର ସମ୍ପର୍କରେ ଉଲ୍ଲେଖ କରି ରସକଲ୍ଲୋଳରେ କହିଛନ୍ତି–

'କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ
କରିବାକୁ ଜାତ ଜଗନ୍ନାଥ ଜନକ ।'

ପୁରୁଷୋତ୍ତମ କ୍ଷେତ୍ରରେ ସମ୍ପୂର୍ଣ୍ଣ ବ୍ରହ୍ମକୁ ପ୍ରକାଶ କରି ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଦୀନ ଦୁଃଖ ହରଣ କରି ନିଜର ଲୀଳାକୁ ପ୍ରକାଶ କରୁଥିବା କବି ବ୍ରଜନାଥ ବଡ଼ଜେନା ମଧ୍ୟ ରାଜସଭା କାବ୍ୟରେ ପ୍ରକାଶ କରିଛନ୍ତି ।

'ଶ୍ରୀପୁରୁଷୋତ୍ତମ କ୍ଷେତ୍ର ତିନି ଭୁବନେ ପବିତ୍ର
ମହିମା ମହାବିଚିତ୍ର କଥନ ନୁହେଁ
ସମ୍ପୂର୍ଣ୍ଣ ବ୍ରହ୍ମସ୍ୱରୂପ ସାକ୍ଷାତ୍ ପ୍ରକାଶି ରୂପ
ନାଶୁଛନ୍ତି ପାପୀ ପାପ ହୋଇ ଉଦୟେ ।'

ଜଗନ୍ନାଥ ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା । ଲୀଳାମୟ ପୁରୁଷ ସେ । କେତେବେଳେ ଶ୍ରୀକୃଷ୍ଣ ରୂପେ ତ, କେତେବେଳେ ରାମ ରୂପେ, ଆଉ କେତେବେଳେ ବାମନ ରୂପ ଧାରଣ କରୁଛନ୍ତି । କଳିଯୁଗରେ ବୌଦ୍ଧ ରୂପ ଗ୍ରହଣ କରିବା ସହ ବିଭିନ୍ନ ଯୁଗରେ ଅବତାର ଗ୍ରହଣ କରିଛନ୍ତି । ଶ୍ରୀକୃଷ୍ଣ ହେଉଛନ୍ତି ଜଗନ୍ନାଥ ବୋଲି ଦିବାକର ଦାସ 'ଜଗନ୍ନାଥ ଚରିତାମୃତ'ରେ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିଛନ୍ତି ।

ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବଳା
କଳାକୁ ଷୋଳକଳା କରି
ଗୋପେ ବିହରେ ନରହରି ।'

ସେହି ସର୍ବବ୍ୟାପୀ ଶ୍ରୀଜଗନ୍ନାଥଙ୍କୁ ପାଇବାକୁ ହେଲେ ଏକନିଷ୍ଠ ତପସ୍ୟାର ଆବଶ୍ୟକ । ସମର୍ପିତ ମନୋଭାବ ନେଇ ଶରଣ ଗଲେ ସେ ଭକ୍ତର ଦୁଃଖ ବୁଝନ୍ତି ଓ ଯଥାସମୟରେ ଯଥା ସହଯୋଗ ମଧ୍ୟ କରନ୍ତି । ଶ୍ରୀଜଗନ୍ନାଥଙ୍କ ସତ୍ତା ଧନୀ ଦରିଦ୍ର, ସୁଖୀ ଦୁଃଖୀ, ବ୍ରାହ୍ମଣ ଚଣ୍ଡାଳ ସମସ୍ତଙ୍କଠାରେ ବିଦ୍ୟମାନ । ତାଙ୍କର ଅପୂର୍ବ ଲୀଳା ଦେଖାଇବା ପାଇଁ ବଡ଼ଭାଇ ବଳଭଦ୍ର ଓ ସୁଭଦ୍ରାଙ୍କୁ ଧରି ବଡ଼ଦାଣ୍ଡରେ ଅବତୀର୍ଣ୍ଣ ହୁଅନ୍ତି ପବିତ୍ର ରଥଯାତ୍ରାରେ । ମୁଖ୍ୟ ଉଦ୍ଦେଶ୍ୟ ହେଲା ଭକ୍ତମାନଙ୍କୁ ଦର୍ଶନ ଦେବା । ରଥାରୂଢ଼ ଅବସ୍ଥାରେ ବଡ଼ଦାଣ୍ଡରେ ଅସଂଖ୍ୟ ଭକ୍ତ ଏକତ୍ରିତ ହୋଇ ରଥ ଟାଣି ନିଅନ୍ତି ଗୁଣ୍ଡିଚା ମନ୍ଦିରକୁ । ସତେଯେପରି ସମସ୍ତେ ସ୍ନେହ, ପ୍ରେମ ଓ ଭ୍ରାତୃତ୍ୱ ଡୋରିରେ ବନ୍ଧା । ଜାତି ଅଜାତି ଭେଦ ନଥାଏ । ରାଜା ଓ ପ୍ରଜା ବି ସମସ୍ତେ ସମାନ । ଏଭଳି ସାମ୍ୟବାଦୀ ଠାକୁରଙ୍କ ଆଶୀର୍ବାଦ ପାଇଁ ଭକ୍ତମାନେ ହୁଳହୁଳି, ହରିବୋଲ, ଘଣ୍ଟଧ୍ୱନି ଭିତରେ ନିଜର ମଙ୍ଗଳ କାମନା କରିବା ସହ ସମାଜର ମଙ୍ଗଳ କାମନା କରିଥାନ୍ତି । ସମାଜର ଦୁଃଖ ଦୈନତା, ଶୋଷଣ, କଷଣ ନିଶ୍ଚୟ ଲୋପ ପାଇବ ବୋଲି ବିଶ୍ୱାସ ରଖିଥାନ୍ତି । ତେଣେ ଯଥାର୍ଥରେ ଉତ୍କଳମଣି ଗୋପବନ୍ଧୁ ଦାସ ଗାଇ ଉଠିଛନ୍ତି–

'ନୀଳାଚଳ ନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶ ରଖ ଏ ବିଶ୍ୱାସ ।' (ବନ୍ଦୀର ଆତ୍ମକଥା)

ଓଡ଼ିଶାରେ ଜନସାଧାରଣଙ୍କ ବିଶ୍ୱାସ ଭଳି ପୃଥିବୀର ବହୁ ଭକ୍ତ ଆଜି ଶ୍ରୀକ୍ଷେତ୍ର ବଡ଼ଦାଣ୍ଡରେ ଉପସ୍ଥିତ ରହି ଘୋଷଯାତ୍ରାରେ ବିଜେ କରିଥିବା ଶ୍ରୀଜଗନ୍ନାଥ ଦର୍ଶନ କରୁଛନ୍ତି । ଆଜି ଶଙ୍କରାଚାର୍ଯ୍ୟ, ଶ୍ରୀଚୈତନ୍ୟ, ପଦ୍ମପାଦ ପ୍ରମୁଖ ବହୁ ସାଧୁସନ୍ଥଙ୍କ ମନେ ପକାଇବା ସହ ସାଲବେଗଙ୍କ ଜଗନ୍ନାଥ ଦର୍ଶନ, ଭକ୍ତ ଦାସିଆଙ୍କ ନଡ଼ିଆ ଗ୍ରହଣ, ବଳରାମଙ୍କର ବାଲି ରଥରେ ଜଗନ୍ନାଥ ଦର୍ଶନ, ଦ୍ରୌପଦୀଙ୍କ ବସ୍ତ୍ର ପ୍ରଦାନ ଇତ୍ୟାଦି ଅନେକ ଘଟଣାକୁ ଭକ୍ତମାନେ ମନେ ପକାଇ ଜଗନ୍ନାଥଙ୍କ ସହ ଏକାକାର ହୋଇଯାଇଛନ୍ତି । ସତେ ଯେମିତି ଶ୍ରୀଜଗନ୍ନାଥଙ୍କ ସମ୍ପର୍କ ଏକ ଓ ଅଭିନ୍ନ । ଯାହା ହିଁ ବାସ୍ତବିକ୍ ଉତ୍କଳୀୟ ପରମ୍ପରା । ପ୍ରତ୍ୟକ୍ଷ ତଥା ଜୀବନ୍ତ ଦେବତା ଜଗନ୍ନାଥଙ୍କ ଆଶୀର୍ବାଦ ପାଇବାକୁ ସମସ୍ତେ ବ୍ୟସ୍ତ ହୋଇ ଗାଇଉଠୁଛନ୍ତି–

'ଜଗନ୍ନାଥ ହୋ କିଛି ମାଗୁ ନାହିଁ ତୋତେ
ଧନ ମାଗୁ ନାହିଁ, ଜନ ମାଗୁ ନାହିଁ
ମାଗୁଛି ଶରଧା ବାଲିରୁ ହାତେ ।'

ଜୟଗୋପାଳ ସାହି
ଢ଼େଙ୍କାନାଳ ୭୫୯୦୦୧

# ଇତିହାସରେ ଗୁଣ୍ଡିଚା ଯାତ୍ରା

ଡକ୍ଟର ଜନ୍ମେଜୟ ଚୌଧୁରୀ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଶ୍ୱପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରା ମହାକାଳର ପ୍ରବାହରେ ଅନେକ ଘାତ ପ୍ରତିଘାତ ଓ ପରିବର୍ତ୍ତନ ଅତିକ୍ରମ କରି ବର୍ତ୍ତମାନ ଏହା ମହାଜାତିର ମହୋତ୍ସବରେ ପରିଣତ ହୋଇଛି । ଅତି ପ୍ରାଚୀନ କାଳର କଥାକୁ ବାଦ୍ ଦେଲେ ପ୍ରଥମ ଭାନୁଦେବଙ୍କ ସମୟରେ ୧୨୭୦ ଖ୍ରୀଷ୍ଟାବ୍ଦରେ ଛଅଗୋଟି ରଥ ହୋଇଥିବା ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଏଥିରେ ଆହୁରି ଉଲ୍ଲେଖ ଅଛି ଯେ, ପ୍ରଥମ ଭାନୁଦେବ ବାଙ୍କି ମୁହାଣ ପୋତାଇଲେ, ଛଅରଥ ପରିବର୍ତ୍ତେ ତିନିରଥ କଲେ । ତତ୍ ସହିତ ଗୁଣ୍ଡିଚା ଘରର କାଠ ମଣ୍ଡପକୁ ପଥର ମଣ୍ଡପରେ ପରିଣତ କଲେ । ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ବିଭିନ୍ନ ସମୟରେ ଆକ୍ରମଣକାରୀ ଓ ଲୁଣ୍ଠନକାରୀମାନେ ଶ୍ରୀମନ୍ଦିର ଓ ଏହାର ରତ୍ନଭଣ୍ଡାରକୁ ଲୁଣ୍ଠନ କରିଆସିଛନ୍ତି । ବିଶେଷକରି ସମ୍ରାଟ ଆକବରଙ୍କ ମୃତ୍ୟୁପରେ ମୋଗଲ ଓ ମୁସଲ୍‌ମାନମାନଙ୍କ ଆକ୍ରମଣ ଅଧିକ ଉତ୍କଟ ରୂପ ନେଲା । ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳ (୧୬୦୦ ଖ୍ରୀ.ଅ-୧୬୨୧ ଖ୍ରୀ.ଅ)ରେ ମୀର୍ଜାଖୁରମ୍ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିଥିଲା । ଏହି ସମୟରେ ରାଜା ବିଗ୍ରହମାନଙ୍କୁ କପିଳେଶ୍ୱରପୁରରେ ଲୁଚାଇ ରଖିଥିଲେ । ଏହା ସ୍ଥାନୀୟ ଲୋକଙ୍କୁ ଅଜଣା ଥିଲା । ପୁରୁଷୋତ୍ତମ ଦେବ ବୁଦ୍ଧିମାନ ନଥିଲେ । ସେଥିପାଇଁ ଅଲାଣ୍ଡି ପୁରୁଷୋତ୍ତମ ଦେବଙ୍କ ଅମଳେ ଜଗନ୍ନାଥଙ୍କ ଦେଉଳରୁ ମୋଗଲ ଲାଣ୍ଡି କରିବାକୁ ବସିଲେ ବୋଲି ଲୋକ ମୁଖରେ ପ୍ରଚଳିତ ଅଛି । କେବଳ ଯେ ମୋଗଲ ଓ ମୁସଲମାନମାନେ ନୁହଁନ୍ତି, ଏମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ କେହି କେହି ଚରମ ବିଦ୍ୱେଷୀ ହିନ୍ଦୁ ମଧ୍ୟ ଶ୍ରୀମନ୍ଦିର ଉପରେ ଜଘନ୍ୟ ଆକ୍ରମଣ କରିବାକୁ ପଛାଇ ନାହାନ୍ତି । ମୋଗଲ ସମ୍ରାଟ ଜାହାଙ୍ଗିରଙ୍କ ସମୟରେ କେଶବ ଦାଶ ମାର ବା କେଶୋ ଦାସ ମାରୁ ନାମକ ଜଣେ ଶାସନ କର୍ମଚାରୀ ମନ୍ଦିର ଲୁଣ୍ଠନ କରିବାକୁ ଶ୍ରୀକ୍ଷେତ୍ର ଆସିଥିଲା ।



କେଶୋଦାସ ମାରୁ ଥିଲେ ରାଜପୁତ । ସୁବାଦର ହାସିମ୍ ଖାଁର କେଶୋଦାସ ଥିଲେ ଜଣେ ପଦାଧିକାରୀ । ହାସିମ୍ ଖାଁ ୧୬୦୬ ଖ୍ରୀ.ଅରେ ଓଡ଼ିଶାର ପ୍ରଥମ ସୁବେଦାର ହୋଇ ଆସି ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଏହାପରେ ସେ ପୁନର୍ବାର ଓଡ଼ିଶା ନ ଆସି କେଶୋ ଦାସଙ୍କୁ ହିନ୍ଦୁ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ ପାଇଁ ଓଡ଼ିଶାକୁ ପଠାଇଥିଲେ । କେଶୋଦାସ ଓଡ଼ିଶାର ଜାଗିରଦାର ପଦବୀ ହାସଲ କରିଥିଲେ । ସେତେବେଳେ ଓଡ଼ିଶାରେ 'ଜାଗିରଦାର' ପଦବୀ ଏକ ସମ୍ମାନସ୍ପଦ ପଦବୀ ଥିଲା । କେଶୋଦାସ ଜାଗିରଦାର ପଦବୀ ପାଇବା ପରେ ମୋଗଲ ଦରବାରର ଦୃଷ୍ଟି ଆକର୍ଷଣ କରିବାର ସୁଯୋଗରେ ଥିଲେ । ପୁରୀର ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରି ରାଜା ପୁରୁଷୋତ୍ତମ ଦେବଙ୍କ ସ୍ୱାଧୀନ କାର୍ଯ୍ୟଧାରାକୁ ଚୂର୍‌ମାର କରିବା ଉଦ୍ଦେଶ୍ୟରେ ହିଁ ଶ୍ରୀକ୍ଷେତ୍ର ଆସିଥିଲେ ।

କେଶୋଦାସ ମାରୁ ପ୍ରଥମେ ରାଜପୁତନାର ପଣ୍ଡା ଅନନ୍ତରାମ ପଣ୍ଡାଙ୍କୁ ସାକ୍ଷାତ କରିବାକୁ ଆସୁଛନ୍ତି ବୋଲି ବାର୍ତ୍ତା ପ୍ରେରଣ କରିଥିଲେ । ରାଜପୁତ୍‌ମାନେ ଶ୍ରୀଜଗନ୍ନାଥଙ୍କ ପ୍ରତି

ଅଚଳାଚଳ ଭକ୍ତି ଓ ସମ୍ମାନ ରଖୁଥିବା ଦୃଷ୍ଟିରୁ କେଶୋଦାସଙ୍କ ଆଗମନର ଅନ୍ତର ରହସ୍ୟ କେହି ଜାଣିପାରିଲେ ନାହିଁ । ଦୁର୍ଭାଗ୍ୟବଶତଃ ସେତେବେଳେ ଓଡ଼ିଶାରେ କିଛି ଲୋକ ମୋଗଲ ଶାସନ ବ୍ୟବସ୍ଥାକୁ ବେଶ୍ ସମର୍ଥନ କରୁଥିଲେ । ସେମାନଙ୍କ ମଧ୍ୟରେ ଗୋପାଳ ରଥ ଦାସ ସମର୍ଥା, କଟକର ନରସିଂହ କରଣ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଗୋପାଳ ରଥ ପାର୍ସି ଭାଷା ଜାଣିଥିଲେ । ସେ ମୋଗଲ ଦରବାରକୁ ଏକପତ୍ରରେ ଲେଖିଥିଲେ ଯେ ମୋଗଲ ସମ୍ରାଟ ଚାହୁଁଥିବା ପଦ୍ମିନୀ କନ୍ୟା ଯଦି କେଉଁଠି ଥା'ନ୍ତି, ତେବେ ଏ ଯୁଗରେ ସେ ମହାରାଜା ପୁରୁଷୋତ୍ତମ ଦେବଙ୍କ ଶ୍ରୀନଅରରେ ଶକୁନ୍ତଳା ପାଟଜେମା । ସେ ହିଁ କେବଳ ମୋଗଲ ବେଗମ୍ ପାଇଁ ସଂପୂର୍ଣ୍ଣ ଉପଯୁକ୍ତ । ସେ ଅତ୍ୟନ୍ତ ରୂପବତୀ । ସେ ଚାଲିଲେ ପଦ୍ମ ଫୁଟେ ଆଦି ଅନେକ କାଳ୍ପନିକ କଥା ବର୍ଣ୍ଣନା କରାଯାଇଥିଲା । ଏହି କାଳ୍ପନିକ ବର୍ଣ୍ଣନାରେ ଅନ୍ଧ ହୋଇ ସମ୍ରାଟ ଜାହାଙ୍ଗିର ପ୍ରଚୁର ସମ୍ପଦ ଓ ରୂପବତୀ ଶକୁନ୍ତଳାଙ୍କୁ ପ୍ରାପ୍ତି ପାଇଁ କେଶୋଦାସଙ୍କୁ ପଠାଇଥିଲେ ବୋଲି ଅନେକ ବିଶ୍ୱାସ କରିଥାନ୍ତି ।

କେଶୋ ଦାସ ପ୍ରଥମେ କଟକରେ ପହଞ୍ଚି ଏକ ସୁପରିକଳ୍ପିତ ଷଡଯନ୍ତ୍ର ରଚନା କଲେ । ଚାରିଆଡ଼େ ପ୍ରଚାର କରାଗଲା ଯେ ରାଜା କେଶୋ ଦାସ ଶ୍ରୀକ୍ଷେତ୍ର ଆସୁଛନ୍ତି । ବହୁ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରାରେ କେଶୋ ଦାସ ପୁରୀ ଆସିବା ବାଟରେ ବ୍ରାହ୍ମଣମାନଙ୍କୁ ସିକ୍କାମାନ ଦାନ କରିଥିଲେ । ତା'ର ଉଦ୍ଦେଶ୍ୟ ଥିଲା ଯେ ବର୍ତ୍ତମାନ ତିନିଠାକୁର ଶ୍ରୀଗୁଣ୍ଡିଚା ଯାତ୍ରାରେ ଥିବାରୁ ଶ୍ରୀମନ୍ଦିର ଶୂନ୍ୟ ହୋଇଥିବ ଓ ରାଜା ମଧ୍ୟ ଛେରାପହଁରା ସେବା ପାଇଁ ଆସି ପୁରୀର ପୁରୁଣା ନଅରରେ ଥିବେ । ତା'ସହିତ ପାଟ ଜେମା ଓ ଅନ୍ୟ ଜେମାମାନେ ଶ୍ରୀନଅରରେ ମଧ୍ୟ ଥିବେ । ହଠାତ୍ ଅତର୍କିତ ଭାବେ କୌଣସି ଆକ୍ରମଣ ହେଲେ କେହି କାହାକୁ ସୁରକ୍ଷା ଦେବା ଅବସ୍ଥାରେ ନ ଥିବେ ଓ ଏହି ମଉକାରେ ଅକଳନ ସମ୍ପତ୍ତି ଓ ପଦ୍ମିନୀ କନ୍ୟାକୁ ଧରି ଚାଲିଯିବା ସମ୍ଭବ ହେବ । କିନ୍ତୁ ସେହିବର୍ଷ ଶ୍ରୀଗୁଣ୍ଡିଚା ଯାତ୍ରାକୁ ମହାରାଜା ପୁରୁଷୋତ୍ତମ ଦେବ ପୁରୀ ଆସି ନଥିଲେ । ରଥ ଯାତ୍ରାରେ ଗଜପତି ମହାରାଜାଙ୍କର ଛେରାପହଁରା ସେବା ତାଙ୍କ ଅନୁପସ୍ଥିତିରେ ଗଜପତିଙ୍କ ପ୍ରତିନିଧି ରୂପେ 'ମୁଦିରଥ' ସମ୍ପାଦନା କରିବାର ନିୟମ ଥିବାରୁ ଶ୍ରୀଗୁଣ୍ଡିଚା ପାଇଁ ମହାରାଜାଙ୍କର ଭାରାକ୍ରାନ୍ତ ହେବାର କୌଣସି କାରଣ ନ ଥାଏ । କିନ୍ତୁ ଏ କଥା ଜାଣି ନ ପାରି କେଶୋ ଦାସ ମହାଆଡ଼ମ୍ବରରେ ପୁରୀ ମଧ୍ୟକୁ ପ୍ରବେଶ କଲା । ଏ ସମୟରେ ତିନି ଠାକୁର ଗୁଣ୍ଡିଚା ମନ୍ଦିରରେ ଥିଲେ ଓ ଶ୍ରୀମନ୍ଦିରର ରତ୍ନସିଂହାସନ ଶୂନ୍ୟ ଥିଲା । କେଶୋ ଦାସ ଦେବ ଦର୍ଶନ ଆଳରେ ଶ୍ରୀମନ୍ଦିରରେ ପ୍ରବେଶ କରି ପଣ୍ଡା ଓ ସେବାୟତଙ୍କୁ ଅର୍ଥ ଦ୍ୱାରା ବଶୀଭୂତ କରିନେଲା । ଖବର ପଠାଗଲା ପୁରୁଣା ନଅରକୁ, ମୋଗଲ ବାଦଶାହଙ୍କ ପ୍ରତିନିଧି ଆସିଛନ୍ତି । ତେଣୁ ରାଜା ଦଶ ହଜାର ସୁନିଆ ଓ ହାତୀ ପାଞ୍ଚଘର ନେଇ ଶୀଘ୍ର ତାଙ୍କୁ ଭେଟନ୍ତୁ । ନଚେତ୍ ତାକୁ ବନ୍ଦୀ କରାଯିବ । ଏ ଖବର ପାଇ ରାଜା ତଟସ୍ଥ ହୋଇଥିଲେ । ମହାରାଜା ପୁରୁଷୋତ୍ତମ ଦେବଙ୍କ ରାଜଗୁରୁ ବଳଭଦ୍ର ରାଜଗୁରୁ ଥିଲେ ଜଣେ ଭୀରୁ ପ୍ରକୃତିର ବ୍ୟକ୍ତି । ସୁତରାଂ ଯୁଦ୍ଧ ପରିବର୍ତ୍ତେ ସେ ରାଜାଙ୍କୁ ଖୋର୍ଦ୍ଧା ଦୁର୍ଗରୁ ଅନ୍ୟତ୍ର ଯାଇ ଗୋପ୍ୟ ହୋଇଯିବାକୁ ପରାମର୍ଶ ଦେଲେ । ଇତିମଧ୍ୟରେ କେଶୋ ଦାସ ଗୁଣ୍ଡିଚା ଘରକୁ ଦର୍ଶନ ଆଳରେ ଯାଇ ଦେଖିଲା ସେଠି ରତ୍ନଭଣ୍ଡାର ଓ ଧନ ସମ୍ପତ୍ତି କିଛି ନାହିଁ । ଏଥିରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ କେଶୋ ଦାସ ଓ ତା'ର ନିମକହାରାମ ଓଡ଼ିଆ ସହଯୋଗୀମାନେ ଗୁଣ୍ଡିଚା ମନ୍ଦିର ସାମ୍ନାରେ ନାକଚଣା ଦ୍ୱାର ନିକଟରେ ଛିଡ଼ା ହୋଇ ରହିଥିବା ତିନିରଥରେ ପୋଲାଙ୍ଗ ତେଲ ଢ଼ାଳି ଅଗ୍ନି ସଂଯୋଗ କରିଦେଲେ । ଏଭଳି ଅପ୍ରତ୍ୟାଶିତ ଜଘନ୍ୟ କାଣ୍ଡ ଦେଖି ଯିଏ ଯୁଆଡ଼େ ପାଇଲେ ଦୌଡ଼ି ପଳାଇଲେ । ଏହା ପରେ କେଶୋ ଦାସ ତା'ର ସହଯୋଗୀମାନଙ୍କୁ ଧରି ଶ୍ରୀମନ୍ଦିର ମଧ୍ୟକୁ ପ୍ରବେଶ କଲା ଓ କୋଟି କୋଟି ଟଙ୍କାର ଦ୍ରବ୍ୟ ଲୁଣ୍ଠନ କଲା । କେବଳ ସେତିକି ନୁହେଁ, ସମସ୍ତ ମୂଲ୍ୟବାନ ଦ୍ରବ୍ୟ ଲୁଣ୍ଠନ ପରେ ସେ ମନ୍ଦିର ବାହାରେ ବସି ରାଜାଙ୍କୁ ଆସିବା ପାଇଁ ଖବର ଦେଲା । ଏ ସମୟରେ ରାଜଗୁରୁଙ୍କ ପରାମର୍ଶରେ ରାଜା ଗୋପ୍ୟ ହୋଇଛନ୍ତି ଓ ଜେମା, ପାଟଜେମା, ବସ୍ତ୍ରସ ମହାପାତ୍ରଙ୍କ ଗୃହରେ ଆତ୍ମଗୋପନ କରିଥିଲେ । କେଶୋ ଦାସ ପୁରୀ ନଅର ମଧ୍ୟରେ ପଶି ସୁନ୍ଦରୀ ରମଣୀମାନଙ୍କୁ ଖୋଜିବାକୁ ଲାଗିଲା । କାହାକୁ ନ ପାଇ ଅତ୍ୟନ୍ତ କ୍ରୋଧରେ ଯିଏ ସାମ୍ନାରେ ପଡ଼ିଲା, ତା'ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କଲା । ଫଳରେ ପୁରୀ ସହରରେ ଆତଙ୍କ ଖେଳିଗଲା । ପଣ୍ଡା, ସେବାୟତ କେହି ବାଦ୍ ଗଲେନି । ସେତେବେଳର ହିସାବରେ କେଶୋ ଦାସ ଅନ୍ୟୂନ ତିନି କୋଟି ଟଙ୍କାର ଧନସମ୍ପତ୍ତି ଲୁଣ୍ଠନ କରିଥିଲା ।

ମହାରାଜା ପୁରୁଷୋତ୍ତମ ଦେବ କେଶୋ ଦାସର ବର୍ବରତା ଖବର ପାଇ ବିବ୍ରତ ହୋଇ ପଡ଼ିଲେ ଓ ସଙ୍ଗେ ସଙ୍ଗେ ଯୁଦ୍ଧଯାତ୍ରା ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଲେ । ଦଶ ହଜାର ଅଶ୍ୱାରୋହୀ, ତିନି– ଚାରି ହଜାର ପାଇକ ଏବଂ ବହୁ ରଥ ଓ ରଥାରୋହୀଙ୍କୁ ସଙ୍ଗରେ ଧରି ମହାରାଜା ପୁରୀ ଅଭିମୁଖେ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ । ପ୍ରତି ରଥରେ ପାଞ୍ଚଶହରୁ ହଜାରେ ସୈନ୍ୟଙ୍କୁ ବସାଇଲେ, ରଥ ଟାଣିଲେ ତିନି ହଜାର ସୈନିକ । ଏହିଭଳି ଶହ ଶହ ରଥ ମେଳା ମେଳା କରି ନେଇ ଶ୍ରୀମନ୍ଦିର ପ୍ରାଚୀର ପାଖେ

ରଖିଲେ । ମହାରାଜାଙ୍କ ନିର୍ଦ୍ଦେଶରେ ବାହାର ପଟୁ ଶ୍ରୀମନ୍ଦିର ଘେରାଉ କରାଗଲା । ଚାରିଦ୍ୱାରରେ ଦୁର୍ଦ୍ଧର୍ଷ ଗଡ଼ୁଆ ପାଇକମାନେ ଜଗି ରହିଥିଲେ । ଯୁଦ୍ଧ ରଥ ଗୁଡ଼ିକ ଶ୍ରୀମନ୍ଦିର ବାହାର ପଟ ମେଘନାଦ ପ୍ରାଚୀରକୁ ଲାଗି ରଖାଯାଇଥିଲା । ରଥ ଉପରେ ଚଢ଼ି ମେଘନାଦ ପ୍ରାଚୀର ଡେଇଁ ସୈନ୍ୟମାନେ ଶ୍ରୀମନ୍ଦିରକୁ ପ୍ରବେଶ କରି କେଶୋଦାସଙ୍କୁ ସମ୍ମୁଖୀନ ହେବାର ଯୋଜନା ଥିଲା । କାରଣ କେଶୋ ଦାସର ସୈନ୍ୟମାନେ ଶ୍ରୀମନ୍ଦିର ଚାରିଦ୍ୱାର ଭିତରପଟୁ ବନ୍ଦ କରି ଶ୍ରୀମନ୍ଦିର ମଧ୍ୟରେ ଲୁଚି ରହିଥିଲେ । ଗଜପତି ମହାରାଜାଙ୍କ ଲଢ଼ୁଆ ପାଇକ ବୀରମାନଙ୍କ ରଣହୁଙ୍କାରରେ ବଡ଼ଦାଣ୍ଡ ପ୍ରକମ୍ପିତ ହେଉଥାଏ । ଏଥିରେ କେଶୋଦାସ ଭୟଭୀତ ହୋଇପଡ଼ିଥିଲା । ଏହି ସମୟରେ କେଶୋ ଦାସର ସୈନିକମାନେ ଶ୍ରୀମନ୍ଦିରରେ ଥିବା ବଡ଼ ବଡ଼ ବାଉଁଶମାନଙ୍କରେ ଲୁଗା ଓ ଚାନ୍ଦୁଆ ଗୁଡ଼ାଇ, ଏଥିରେ ତେଲ ଓ ଘିଅ ବୋଳି ଅଗ୍ନି ସଂଯୋଗ ପୂର୍ବକ ଶ୍ରୀମନ୍ଦିର ବାହରକୁ ଫୋପାଡ଼ିବା ଦ୍ୱାରା ଗଜପତିଙ୍କର ଯୁଦ୍ଧରଥରେ ଥିବା ଶହ ଶହ ସୈନିକ ଜଳିଗଲେ ଏବଂ ଶହ ଶହ ଲୋକ ଦଳାକୁଦାରେ ପ୍ରାଣ ହରାଇଲେ । ଲଢ଼ିବା ଅସମ୍ଭବ ମନେ କରି ରଥ ଛାଡ଼ି ଅନେକ ସୈନିକ ଚାଲିଗଲେ । ଗଜପତିଙ୍କର ଯୋଜନା ପରାହତ ହେଲା । ରଥପୋଡ଼ିର ବୀଭତ୍ସ ଦୃଶ୍ୟ ରାଜାଙ୍କୁ ସ୍ତବ୍ଧ କରିଦେଲା । ଶ୍ରୀଗୁଣ୍ଡିଚା ଯାତ୍ରା ଦେଖିବା ପାଇଁ ଆସିଥିବା ବିଦେଶାଗତ ଯାତ୍ରୀ ଓ ଦର୍ଶନାର୍ଥୀମାନେ ଶ୍ରୀକ୍ଷେତ୍ର ପରିତ୍ୟାଗ କଲେ । ବଡ଼ଦାଣ୍ଡରେ ଶୁଭୁଥାଏ କେବଳ ରଣହୁଙ୍କାର । ଗଜପତି ଧୈର୍ଯ୍ୟହରା ନହୋଇ ପୁଣି କେଶୋ ଦାସଙ୍କୁ ସମ୍ମୁଖୀନ ପାଇଁ ପ୍ରସ୍ତୁତ । ବ୍ରାହ୍ମଣ, ସେବକ, ଲୋକ ସମସ୍ତେ ସଶସ୍ତ୍ର । ମହାପ୍ରଭୁଙ୍କର ସମସ୍ତ ନୀତି ବନ୍ଦ । ରାଜଗୁରୁ, ମନ୍ତ୍ରୀ ଓ ସେବାୟତ ସମସ୍ତେ ଚଳଚଞ୍ଚଳ । ଏହା ଦେଖି କେଶୋ ଦାସର ମନୋବଳ ଦୁର୍ବଳ ହୋଇଯାଇଥିଲା । କେଶୋ ଦାସର ଏ ବିପଦ ସମ୍ବାଦ ବଙ୍ଗ ସୁବେଦାର ଇସଲାମ ଖାଁଙ୍କ ନିକଟରେ ପହଞ୍ଚିବାରୁ ସେ ଖ୍ୱାଜା ତହିର ମହମ୍ମଦ ବକ୍ସି ନାମକ ଜଣେ ସେନାପତିଙ୍କୁ ଓଡ଼ିଶା ସୁବେଦାର ହାସିମ୍ ଖାଁଙ୍କ ନିକଟକୁ ପ୍ରେରଣ କରିଥିଲେ । ଏକ ବିଶାଳ ସେନାବାହିନୀର ନେତୃତ୍ୱ ନେଇ ପୁରୀକୁ ସାମରିକ ଅଭିଯାନ ଆରମ୍ଭ କରିବାକୁ ହାସିମ୍ ଖାଁକୁ ନିର୍ଦ୍ଦେଶ ଦେଇଥିଲେ । କେଶୋ ଦାସଙ୍କୁ ସାହାଯ୍ୟ କରିବା ପାଇଁ ହାସିମ ଖାଁ ଓ ମହମ୍ମଦ ବକ୍ସି କଟକରୁ ସୈନ୍ୟବାହିନୀ ଧରି ପୁରୀରେ ପହଞ୍ଚିଲେ । ଓଡ଼ିଶା ସୁବେଦାର ଓ ବଙ୍ଗର ସେନାପତି ନେତୃତ୍ୱରେ ଶତ୍ରୁପକ୍ଷ ସେନାମାନେ ବାହାରୁ ଆକ୍ରମଣ କରି ଗଜପତିଙ୍କ ସୈନ୍ୟବାହିନୀକୁ ଦୁର୍ବଳ କରିଥିଲେ । ଫଳରେ ମହାରାଜା ପୁରୁଷୋତ୍ତମଦେବ ମନ୍ତ୍ରୀ ବିଦ୍ୟାଧରଙ୍କ ପରାମର୍ଶରେ ସନ୍ଧି ସ୍ୱାକ୍ଷରିତ କଲେ । କେଶୋଦାସ ଆକ୍ରମଣ ସମ୍ବନ୍ଧରେ ମାଦଳାପାଞ୍ଜିରେ ଏପରି ବର୍ଣ୍ଣିତ ଅଛି, 'ଏ ମହାରାଜାଙ୍କ ଯାତ୍ରିପଣେ କେଶୋମାରୁ ଆସି ଗୁଣ୍ଡିଚା ଯାତ୍ରା ଦେଖି ଦୁଇ ଦେଉଳ ଧରିଲା । ପରମେଶ୍ୱର ଗୁଣ୍ଡିଚା ଘରେ ବିଜେ କରିଥିଲେ । ତିନିରଥ ପୋଡ଼ିଦେଲା । ପରମେଶ୍ୱରଙ୍କୁ ଚଉଦୋଳରେ ବିଜେ କରାଇଲେ । ୮ମାସ ପର୍ଯ୍ୟନ୍ତ ଦରବନ୍ଧାରେ ରହିଲା । ପରମେଶ୍ୱରଙ୍କୁ ଶୀତଳ ଭୋଗ ମଣୋହି ହେଉଥିଲେ । ରାଜାଙ୍କ ସଙ୍ଗେ ପୀରତି ହୋଇଗଲା । ଗୁଣ୍ଡିଚାଘରଠାରେ ଅନେକ ମାଇଲା ।' କେଶୋ ଦାସ ମାରୁ ଜାତିରେ ହିନ୍ଦୁ ଥାଇ, ଛଦ୍ମ ବେଶରେ ଗୁଣ୍ଡିଚାଯାତ୍ରା ଦେଖିବାକୁ ଆସି ତିନିରଥ ପୋଡ଼ି ଦେଲା ଓ ପୁରୁଷୋତ୍ତମଦେବଙ୍କ ସହିତ ସନ୍ଧି ସ୍ଥାପନ କରିବ ବୋଲି ଆଶା ପ୍ରକାଶ କରି ବିଶ୍ୱାସଘାତକ ହୋଇ ପୁରୁଷୋତ୍ତମଦେବଙ୍କର ଅନେକ ସୈନ୍ୟଙ୍କୁ ହତ୍ୟା କଲା ।' ସନ୍ଧି ହେବା ପରେ କେଶୋ ଦାସ ଶ୍ରୀମନ୍ଦିର ଭିତରୁ ନିଜର ୪୦୦ ସୈନିକଙ୍କ ସହ ବଡ଼ଦାଣ୍ଡକୁ ବାହାରି ଆସିଥିଲେ । ସନ୍ଧିର ସର୍ତ୍ତ ଥିଲା ଯେ ଜେମା ଓ ପାଟ ଜେମାଙ୍କୁ ସେ ବିବାହ କରିବ ଓ ପଦ୍ମିନୀ କନ୍ୟାକୁ ବାଦ୍‌ଶାହାକୁ ଭେଟି ଦେବ । ସନ୍ଧି ବାବଦରେ ଆଲୋଚନା ଚାଲିଥିବା ବେଳେ କେତେକ ବିଶ୍ୱସ୍ତ କର୍ମଚାରୀଙ୍କ ସହାୟତାରେ ଉଭୟ ଜେମା ରାଜପ୍ରାସାଦ ଛାଡ଼ି ଘୋଡ଼ାରେ ପଳାଇ ଥିବାରୁ କେଶୋ ଦାସ ମୁହଁ କଳା ପଡ଼ିଗଲା । ଜେମା ହାତଛଡ଼ା ହେବା ପରେ କେବଳ ଲୁଟ ସମ୍ପତ୍ତି ଧରି କେଶୋ ଦାସ କଟକ ଅଭିମୁଖେ ବାହାରିଲା ଓ ରାଜା ତିନି ଲକ୍ଷ ସାଲବାର ତମାମି ନେଇ ବିପଦରୁ ରକ୍ଷା ପାଇଲେ ।

କେଶୋ ଦାସ ଓ ଅନ୍ୟ ହିନ୍ଦୁ ବିଶ୍ୱାସଘାତକ ମାନଙ୍କ ଦ୍ୱାରା ରଥ ପୋଡ଼ି ଦେବା ପରେ ବାହୁଡ଼ା ଯାତ୍ରାର ବିଳମ୍ବ ହୋଇଥିଲା । ମହାପ୍ରଭୁ ଦୀର୍ଘ ୮ ମାସ ବାହାରେ ରହି ଥିବାରୁ ମହାପ୍ରସାଦ ହୋଇପାରି ନଥିଲା । କ୍ଷମତା ଲୋଭୀ କେଶୋ ଦାସ ମାରୁ ଭଳି ଏକ କଳଙ୍କିତ ମହାନାୟକର ବର୍ବରତା ଓଡ଼ିଆ ଜାତିର ଇତିହାସରେ ଏକ କଳଙ୍କମୟ ଅଧ୍ୟାୟ ଅଟେ ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ଶ୍ରୀଜଗନ୍ନାଥ ସଂସ୍କୃତି ଓ ହସ୍ତୀ ବେଶ ଦର୍ଶନ

**ବୈକୁଣ୍ଠ ନାଥ ମହାପାତ୍ର**

ଶ୍ରୀଜଗନ୍ନାଥ ସଂସ୍କୃତିରେ ଗାଣପତ୍ୟ ଧର୍ମର ପ୍ରଭାବ ବେଶ୍ ପରିଲକ୍ଷିତ ହୁଏ । ଓଡ଼ିଶାର ଧର୍ମ ସଂସ୍କୃତି ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଗଢ଼ି ଉଠିଛି । ତେଣୁ ଗାଣପତ୍ୟ ଧର୍ମର ପ୍ରଭାବ ମଧ୍ୟ ଓଡ଼ିଆ ସଂସ୍କୃତିରେ ଯଥେଷ୍ଟ ପରିମାଣରେ ପଡ଼ିଛି । ଯେକୌଣସି ଦେବତାଙ୍କ ପୂଜା କଲେ ପ୍ରଥମେ ଗଣେଶଙ୍କୁ ପୂଜା କରିବାକୁ ହୁଏ । କାହିଁକି ନା ସେ ହେଉଛନ୍ତି ବିଘ୍ନରାଜ । ତାଙ୍କୁ ପ୍ରଥମେ ଆରାଧନା ନ କରି କୌଣସି କାର୍ଯ୍ୟ କଲେ ବିଘ୍ନର ସମ୍ଭାବନା ଅଧିକ । ଲୋକମୁଖରେ ଓ ଶ୍ରୀଜଗନ୍ନାଥ ସଂସ୍କୃତିରେ ରହିଛି ଷୋଡ଼ଶ ଶତାବ୍ଦୀର ଗଜପତି ପୁରୁଷୋତ୍ତମ ଦେବ ଦକ୍ଷିଣର କାଞ୍ଚି ସହିତ ଯୁଦ୍ଧ କରିଥିଲେ । କାଞ୍ଚି ନରପତି ଶାଳ୍ୱ ନରସିଂହ ଗଣେଶଙ୍କୁ ଆରାଧନା କରି ଜୟୀ ହେଉଥିଲେ ବା ରାଜାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ କଳିଙ୍ଗ ରାଜାଙ୍କ ସହ ଯୁଦ୍ଧ କରୁଥିଲେ । ସେହି ଯୁଦ୍ଧରେ ପରାସ୍ତ ହୋଇ ଗଜପତି ମହାରାଜା ପୁରୁଷୋତ୍ତମ କଳିଙ୍ଗ ଫେରି ଆସୁଥିଲା ବେଳେ ବାଟରେ ସୈକେତାଚାରୀ ନାମରେ ଜଣେ ବୈଷ୍ଣବ ମହାରାଜା ପୁରୁଷୋତ୍ତମଙ୍କୁ କହିଲେ, ବଳ ଓ କୌଶଳରେ କାଞ୍ଚୀଠାରୁ କଳିଙ୍ଗ ବହୁ ଊର୍ଦ୍ଧ୍ୱରେ । ମାତ୍ର ଏହି ଯୁଦ୍ଧରେ ନିଜେ ଗଣେଶ ଯୁଦ୍ଧ କରିଥାନ୍ତି । ତେଣୁ ଶ୍ରୀଜଗନ୍ନାଥ ନିଜେ ଯୁଦ୍ଧକୁ ନଆସିଲେ କଳିଙ୍ଗ ଜୟଲାଭ କରିବା ସମ୍ଭବପର ନୁହେଁ । ତେଣୁ ତାଙ୍କରି କଥା ମୁତାବକ ପୁରୁଷୋତ୍ତମ ଦେବ ଶ୍ରୀଜଗନ୍ନାଥଙ୍କୁ ଉପାସନା କରି ତାଙ୍କୁ କାଞ୍ଚି ନେଇ ଯାଇଥିଲେ । ଗଲାବେଳେ ବାଟରେ ତାଙ୍କୁ ଶୋଷ କରିବାରୁ ଚିଲିକା କୂଳରେ ଦହି ପିଇଥିଲେ ମାଣିକ ଗଉଡୁଣୀଠାରୁ । ପରେ ଗଜପତି ପୁରୁଷୋତ୍ତମ ତାର ଉପଯୁକ୍ତ ପ୍ରମାଣ ପାଇବାରୁ ମାଣିକ ବାସ କରୁଥିବା ଗ୍ରାମଟିକୁ ତାହାରି ନାମରେ ନାମିତ କରି ତାକୁ ଦାନ କରି ଦେଇଥିଲେ । ତେଣୁ ଆଜି ମଧ୍ୟ ସେହି ଗ୍ରାମ ମାଣିକ ପାଟଣା ନାମରେ ଖ୍ୟାତ । ଶ୍ରୀଜଗନ୍ନାଥ ସବୁଧର୍ମ ସଂସ୍କୃତିର ଆଧାର । ତେଣୁ ଗଣେଶ ତାଙ୍କ ସହିତ ଯୁଦ୍ଧ କଲେ ନାହିଁ ଓ କାଞ୍ଚିର ପରାଜୟ ପରେ ସେ ତାଙ୍କ ମନ୍ଦିର ପଛପଟରେ ଅବସ୍ଥାନ କଲେ । ଏବେ ମଧ୍ୟ ତାଙ୍କୁ କାଞ୍ଚିଗଣେଶ ବା ଭଣ୍ଡଗଣେଶ କହନ୍ତି ।



ସେହିଭଳି କେତେକ ଗ୍ରନ୍ଥରେ ଉଲ୍ଲିଖିତ ଅଛି ଗଣପତି ଭଟ୍ଟ ନାମରେ ଜଣେ ଗଣେଶଙ୍କ ଭକ୍ତ ଶୁଣିଲେ ଶ୍ରୀଗଣେଶ କଳିଙ୍ଗରେ ଜଗନ୍ନାଥଙ୍କ ନାମରେ ପୂଜା ପାଉଛନ୍ତି । ସେ ତାଙ୍କୁ ଦର୍ଶନ କରିବାକୁ ଆସି ସ୍ନାନ ପୂର୍ଣ୍ଣିମା ଦିନ ସ୍ନାନମଣ୍ଡପରେ ତାଙ୍କୁ ଦର୍ଶନ କରିଥିଲେ । ମାତ୍ର ଜଗନ୍ନାଥଙ୍କଠାରେ ଗଣେଶଙ୍କର କୌଣସି ସଂକେତ ନ ଦେଖି ଫେରି ଯାଉଥିଲାବେଳେ ଗଣେଶଙ୍କ ଆଜ୍ଞାରେ ଆସି ଦେଖିଲେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଗଣେଶ ରୂପରେ ଅବସ୍ଥାନ କରିଛନ୍ତି । ସେ ତାଙ୍କୁ ଇଷ୍ଟ ବୋଲି ଜାଣି ଆରାଧନା କଲେ । ତେଣୁ ସ୍ନାନପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥ ମହାଗଣପତି, ବଳଭଦ୍ର ଖଦିର ଗଣପତି ଓ ସୁଭଦ୍ରା ମାତଙ୍ଗୀ ବେଶ୍ ଧାରଣ କରନ୍ତି ।

ଶ୍ରୀମନ୍ଦିର ସମାଚାରରେ ଉଲ୍ଲେଖ ଅଛି, ରାଘବ ଦାସ ନାମରେ ଜଣେ ବାବାଜୀ ଗଣେଶଙ୍କୁ ପୂଜା କରୁଥିଲେ । ଦ୍ୱାଦଶ ଶତାବ୍ଦୀରେ ବର୍ତ୍ତମାନର ଶ୍ରୀମନ୍ଦିର ତୋଳାହେଲା ବେଳେ ବାରମ୍ବାର ଚାର ଛିଡ଼ିବାରୁ ଗଣେଶଙ୍କୁ ପୂଜା କରି ଚାର ସ୍ଥିର ରଖିଥିଲେ । ଏବେ ବି ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ସେହି ଗଣେଶ ପୂଜା ପାଇଥାନ୍ତି ଓ ତାଙ୍କୁ ଚାର ଗଣେଶ କୁହାଯାଏ । ତାଙ୍କ ଛଡ଼ା ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ବଟଗଣେଶ ନୃତ୍ୟଗଣେଶ ପୂଜା ପାଇଥାନ୍ତି । ତେଣୁ ଗାଣପତ୍ୟ ଧର୍ମର ପ୍ରଭାବ ଶ୍ରୀଜଗନ୍ନାଥ ସଂସ୍କୃତିରେ ବହୁ ପରିମାଣରେ ପରିଲକ୍ଷିତ ହୁଏ । ଖ୍ରୀଷ୍ଟାବ୍ଦ ଆରମ୍ଭର ବହୁପୂର୍ବରୁ ଲୋକମାନେ ଯକ୍ଷନାଗାଦିଙ୍କ ପୂଜା କରୁଥିଲେ । ଯକ୍ଷଙ୍କ ରୂପ ବର୍ଣ୍ଣନା ସମ୍ପର୍କରେ ମୂର୍ତ୍ତି ଶାସ୍ତ୍ରକାରମାନେ ଏହାଙ୍କୁ ତୁନ୍ଦିଲ ଅର୍ଥାତ ଲମ୍ବୋଦର ଆଖ୍ୟାରେ ଆଖ୍ୟାୟିତ କରିଛନ୍ତି । ଆଉ ନାଗ ଶବ୍ଦର ଅନ୍ୟ ଅର୍ଥ ହେଉଛି ହସ୍ତୀ । ପଣ୍ଡିତମାନେ ଜାଣନ୍ତି ହସ୍ତିନାପୁରର ଅନ୍ୟ ପ୍ରତିଶବ୍ଦ ନାଗସାହ୍ୱୟ । ଗଣେଶ ମୂର୍ତ୍ତିରେ ଏହି ଦୁଇ ବ୍ୟନ୍ତର ଦେବତାଙ୍କ ଆକୃତିଗତ ବୈଶିଷ୍ଟ୍ୟ କେତେ ପରିମାଣରେ ଦେଖାଯାଏ । ଶ୍ରୀଜଗନ୍ନାଥଙ୍କୁ କେତେକ ବଡ଼ ପେଟୁଆ କହିଲାବେଳେ ବଳଭଦ୍ରଙ୍କ ମସ୍ତକରେ ନାଗଚିତ୍ର ଅଙ୍କିତ । ଉତ୍କଳଖଣ୍ଡ ବ୍ୟକ୍ତ କରିଛି ଜଗନ୍ନାଥ ଓ ବଳଭଦ୍ରଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏକମୂର୍ତ୍ତିଙ୍କୁ ଦୁଇ କରାଯାଇ ତାଙ୍କଠାରେ ଯକ୍ଷ ନାଗଙ୍କ ସଂଙ୍କେତ ସନ୍ନିବେଶିତ କରାଯାଇଛି । ପୁଣି ପୁରାଣ ଓ ଶିଳ୍ପଶାସ୍ତ୍ରମାନଙ୍କରେ ଗଣେଶଙ୍କର ଯେଉଁ ୨୪ଟି ମୂର୍ତ୍ତି ବର୍ଣ୍ଣିତ ହୋଇଛି, ତନ୍ମଧ୍ୟରୁ ଲକ୍ଷ୍ମୀ ଗଣେଶଙ୍କ ମୂର୍ତ୍ତି ଅନ୍ୟତମ । ଉଭୟେ ଧନଦାତ୍ରୀ ଓ ଧନଦାତା । ପଣ୍ଡିତମାନେ ତାଙ୍କୁ ଯକ୍ଷ ଓ ଯକ୍ଷଣୀ ବୋଲି ଧାରଣା କରନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତିରେ ଶ୍ରୀଜଗନ୍ନାଥଙ୍କ ଶକ୍ତି ହେଉଛନ୍ତି ଲକ୍ଷ୍ମୀ । ଲକ୍ଷ୍ମୀ ଶବ୍ଦ ବେଦରେ ଥିଲେ ମଧ୍ୟ ତାହା ଧନଦାୟିନୀ ଭାବେ ବ୍ୟବହୃତ ହୋଇନାହିଁ । ଋକବେଦ ୧୦.୭୧.୨ମନ୍ତ୍ରରେ ଉଦ୍ରେିତାଂ ଲକ୍ଷ୍ମୀ ନିର୍ହିତାଧି ବାଚି ଉଲ୍ଲେଖ ହୋଇଛି । ଏହାର ଅର୍ଥ ଧନ ନୁହେଁ । ଅର୍ଥାତ୍ ତାଙ୍କ ବାକ୍ୟ ଚମତ୍କାର ଲକ୍ଷ୍ମୀ ନିହିତ । ତେଣୁ ଲକ୍ଷ୍ମୀ ଏଠାରେ ଧନ ନୁହନ୍ତି । ସେହିଭଳି ଶ୍ରୀଶବ୍ଦ ଋଗ୍‌ବେଦରେ ୮୧ଥର ବ୍ୟବହୃତ ହୋଇଛି । ମାତ୍ର ତାହା କୌଣସିଠାରେ ଧନଦାୟିନୀ ଅର୍ଥରେ ବ୍ୟବହୃତ ହୋଇନାହିଁ । ବରଂ ତାହା ବ୍ୟବହୃତ ହୋଇଛି ଶୋଭାମୟ ଅଥବା ସୌନ୍ଦର୍ଯ୍ୟମୟ ଅର୍ଥରେ । ବଳରାମ ଦାସ ତାଙ୍କ ଲକ୍ଷ୍ମୀପୁରାଣରେ ଉଲ୍ଲେଖ କରିଛନ୍ତି ଚଣ୍ଡାଳୁଣୀଙ୍କ ଦ୍ୱାରା ଲକ୍ଷ୍ମୀ ଆରାଧିତା । ଦ୍ୱାଦଶ ଶତାବ୍ଦୀରେ ରାମାନୁଜ ପୁରୀ ଆସିଥିଲେ ଓ ସେହି ସମୟରେ ସେ ଶ୍ରୀଜଗନ୍ନାଥଙ୍କ ବେଢ଼ା ମଧ୍ୟରେ ଲକ୍ଷ୍ମୀଙ୍କ ମନ୍ଦିର ନିର୍ମିତ ହୋଇଥିଲା । ତତ୍ ପୂର୍ବରୁ ରତ୍ନ ଗିରି ବୌଦ୍ଧ ତୋରଣରେ, ମେଘେଶ୍ୱର, ଶିଶିରେଶ୍ୱର, ପରଶୁରାମେଶ୍ୱର , ମହାବିନାୟକ , ମୁକ୍ତେଶ୍ୱର ଆଦି ମନ୍ଦିରରେ ଗଜଲକ୍ଷ୍ମୀଙ୍କ ଚିତ୍ର ଖୋଦିତ ହୋଇଛି । ନିଶ୍ଚିତ ଭାବେ ସେତେବେଳେ ସେ ବିଷ୍ଣୁଙ୍କ ଘରଣୀ ରୂପେ ଗୃହୀତ ହୋଇ ନଥିଲେ । ତାହା ହୋଇଥିଲେ ଶିବ ମନ୍ଦିରମାନଙ୍କରେ କାହିଁକି ଖୋଦିତ ହୁଅନ୍ତେ ? ଖୁବ୍ ସମ୍ଭବ ସେତେବେଳେ ସେ ସୌଭାଗ୍ୟର ଦେବତା ରୂପେ ପ୍ରସିଦ୍ଧ ଲାଭ କରିଥିବେ । ସେହିଭଳି ଗଣେଶ ସିଦ୍ଧିଦାତା ହେତୁ ସେ ମଧ୍ୟ ସୌଭାଗ୍ୟର ଦେବତା ଓ ଅଣ ଆର୍ଯ୍ୟମାନେ ତାଙ୍କୁ ଉପାସନା କରୁଥିଲେ ସୌଭାଗ୍ୟ ପାଇଁ । ସେଥିପାଇଁ ଗଣେଶଙ୍କ ସହିତ ଲକ୍ଷ୍ମୀଙ୍କୁ ସଂଯୋଗ କରାଯାଇଛି ଓ ଶ୍ରୀଜଗନ୍ନାଥଙ୍କୁ ଗଣେଶ ଭାବେ ଆରାଧନା କରି ତାଙ୍କ ସହିତ ଲକ୍ଷ୍ମୀଙ୍କୁ ଯୋଗ କରାଯାଇଛି ଏବଂ ପରବର୍ତ୍ତୀ କାଳରେ କେବଳ ସାଙ୍କେତିକ ଭାବେ ସ୍ନାନ ପୂର୍ଣ୍ଣୀମା ଦିନ ଗଣେଶ ବେଶ କରାଯାଏ । ଗଣେଶଙ୍କୁ ପ୍ରଥମେ କିଏ ପୂଜା କରିଥିଲେ ତାହାର ପ୍ରମାଣ ମିଳି ନାହିଁ । ଖୁବ୍ ସମ୍ଭବତଃ ଗୁପ୍ତଯୁଗ ଶେଷରେ ଗ୍ରନ୍ଥକର୍ତ୍ତା ତାଙ୍କୁ ଗ୍ରନ୍ଥ ମଧ୍ୟକୁ ଆଣିଥିଲେ । ଶ୍ରୀଜଗନ୍ନଥ ମନ୍ଦିରରେ ପ୍ରଥମେ ସୂର୍ଯ୍ୟ ପୂଜା ବେଳେ କଳସ ବସେ । କଳସ ଗଣେଶଙ୍କ ପ୍ରତୀକ । ସେ ବିଘ୍ନରାଜ, ଗଣମାନଙ୍କ ଈଶ ହୁଅନ୍ତି ତ କେତେବେଳେ ତାଙ୍କ ବେଢ଼ାରେ ସ୍ୱତନ୍ତ୍ର ମନ୍ଦିରରେ, ପୁଣି ପୂଜା ପାର୍ବଣରେ କଳସ ରୂପେ ପୂଜା ପାଇଥାନ୍ତି। ତେଣୁ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଗାଣପତ୍ୟଙ୍କ ପ୍ରଭାବ ଯେ ଯଥେଷ୍ଟ ଭାବେ ପରିଲକ୍ଷିତ ହୁଏ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଚିତ୍ରକର ସାହି
ପୋ/ଜି– ନୟାଗଡ଼

# ଅଣସର ସେବା ଓ ନେତ୍ରୋତ୍ସବ

ମିନତୀ ଷଡ଼ଙ୍ଗୀ

ସମଗ୍ର ସୃଷ୍ଟିର ଆଧାର ଜଗତକର୍ତ୍ତା ପରଂବ୍ରହ୍ମ ପରମାତ୍ମା ମହାପ୍ରଭୁ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପରେ ଶ୍ରୀକ୍ଷେତ୍ରରେ ବିରାଜମାନ। ପରଂବ୍ରହ୍ମ ଶ୍ରୀପୁରୁଷୋତ୍ତମଙ୍କର ଆବିର୍ଭାବ ରହସ୍ୟମୟ । ତାଙ୍କର ଲୀଳା ମଧ୍ୟ ଅଭେଦ୍ୟ । ବିଶ୍ୱାସର ଅଖଣ୍ଡ ଦୃଢ଼ତାରେ ହିଁ ତାଙ୍କୁ ଅନୁଭବ କରିହୁଏ । ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ହେଉ ତାଙ୍କରି କୃପା ବିନା ଜୀବନ ନିରର୍ଥକ । ମାନବଙ୍କ ଗହଣରେ ବିଜେ କରି ମହାପ୍ରଭୁ ଦାରୁବ୍ରହ୍ମ ହେଲେ ମଧ୍ୟ ମାନବୀୟ ଲୀଳାରେ ତାଙ୍କର ଦୈନନ୍ଦିନ ନୀତି ଓ ପୂଜାର୍ଚ୍ଚନା ପରିଚାଳିତ ହେଉଛି । ପ୍ରାତଃ କାଳର ନିଦ୍ରାଭଙ୍ଗଠାରୁ ଆରମ୍ଭ କରି ଦନ୍ତଶୋଧନ, ସ୍ନାନ, ଭୋଜନ ଆଦି ସମସ୍ତ ଆଙ୍ଗିକ କର୍ମ ସଂପାଦିତ ହୋଇଥାଏ ରାତ୍ରିର ବିଶ୍ରାମ ପର୍ଯ୍ୟନ୍ତ । ପାରମ୍ପରିକ ରୀତିରେ ଏହା ପାଳିତ ହେବା ସହ ପ୍ରଭୁଙ୍କର ସ୍ୱତନ୍ତ୍ର ଯାତ୍ରା ଉତ୍ସବର କର୍ମ କର୍ମାଣୀ ନିର୍ଦ୍ଦିଷ୍ଟ ବିଧିବିଧାନରେ ପାଳନ କରାଯାଏ । ଏହି ଯାତ୍ରା ଉତ୍ସବରେ ଭକ୍ତମାନେ ଅତି ଆନନ୍ଦ ଉଲ୍ଲାସରେ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ ପାଇଁ ତତ୍ପର ହୋଇ ଉଠନ୍ତି । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ଦୂରତ୍ୱ ହ୍ରାସ ପାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଯାତ୍ରାମାନଙ୍କ ମଧ୍ୟରେ ଆଦ୍ୟଯାତ୍ରା ହେଉଛି ସ୍ନାନଯାତ୍ରା । ସ୍ନାନଯାତ୍ରା ଶେଷରେ ଠାକୁରମାନଙ୍କୁ ଅଣସର ଗୃହରେ ରଖାଯାଏ । ବାଉଁଶତାଟିର ଆବରଣ ମଧ୍ୟରେ ଯେଉଁ ପନ୍ଦରଦିନ ଅଣସରରେ ମହାପ୍ରଭୁ ଅବସ୍ଥାନ କରନ୍ତି, ସେସମୟରେ ତାଙ୍କର ସେବା କର୍ମ ସଂପୂର୍ଣ୍ଣ ଗୋପନରେ କରାଯାଏ ।

ସ୍ନାନୋତ୍ସବ ସମାପ୍ତି ପରେ ବାଉଁଶତାଟିର ଆବରଣରେ ବହୁ ଚିତ୍ର ବିଚିତ୍ର ବସ୍ତ୍ର ଉପରେ ଅତି ସୁନ୍ଦର ତିନିହାତ ଲମ୍ବ ଦେଢ଼ହାତ ଓସାର ସୂକ୍ଷ୍ମ ବସ୍ତ୍ରରେ ଚିତ୍ର ପ୍ରତିମା କରି ସେହି ଚିତ୍ର ପ୍ରତିମା ଙ୍କୁ ସୁନ୍ଦର କରି ବାନ୍ଧି ତାହା ସମ୍ମୁଖରେ ଖଟ ପକାହୁଏ । ତାହାପରେ ଶୁଭ୍ରବର୍ଣ୍ଣର ରାମ ଓ ଚତୁର୍ଭୁଜ କୃଷ୍ଣ ଶଙ୍ଖ, ଚକ୍ର, ହଳ ଓ ମୂଷଳ ଚିତ୍ର କରି ସୁନ୍ଦର ଭୂଷଣମାନଙ୍କରେ ଭୂଷିତ କରାଯାଏ । ଏହିଭଳି ତିନୋଟି ପଟ୍ଟ ଏହି ପ୍ରମାଣରେ ପ୍ରସ୍ତୁତ କରି ପଦ୍ମାସନରେ ବସିଥିବା ପୀତବର୍ଣ୍ଣର ସୁଭଦ୍ରାଙ୍କୁ ଚତୁର୍ଭୁଜା କରି ଚିତ୍ର କରାଯାଏ । ତାଙ୍କର ଦୁଇ ହସ୍ତରେ ଦୁଇଟି ପଦ୍ମ ଏବଂ ଅନ୍ୟ ହସ୍ତରେ ଅଭୟ ମୁଦ୍ରା ଚିତ୍ରିତ ହୋଇଥାଏ । ଆଭରଣ ଓ ଭୂଷଣରେ ଭୂଷିତ ଏହି ଚିତ୍ର ପ୍ରତିମା ଖୁବ୍ ସୁନ୍ଦର ଦିଶୁଥାନ୍ତି ।

ପଟ୍ଟ ମଧ୍ୟରେ ବିଷ୍ଣୁଙ୍କର ନୀଳ ମେଘବର୍ଣ୍ଣର ଚିତ୍ର କରାଯାଏ । ତାଙ୍କର ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ସୁନ୍ଦର ଭାବରେ ଚିତ୍ରିତ ହୋଇଥାଏ । ପ୍ରଭୁଙ୍କର ନେତ୍ର ପଦ୍ମପତ୍ର ସଦୃଶ ଦିଶୁଥାଏ । ବକ୍ଷରେ ଶ୍ରୀବତ୍ସ ଚିହ୍ନ ଓ କୌସ୍ତୁଭ ଅଙ୍କନ କରାଯାଏ । ବନମାଳାରେ ବିଭୂଷିତ ଏହି ମୂର୍ତ୍ତି ସୁନ୍ଦର ଦିଶୁଥାନ୍ତି । ପଟ୍ଟରେ ଚିତ୍ରିତ ଦେବତାଙ୍କର ଉଭୟ ପାର୍ଶ୍ୱରେ ବ୍ରହ୍ମା ଓ ନାରଦଙ୍କୁ ଚିତ୍ରପଟ ପୀଠରେ ସୁନ୍ଦର ଭାବେ ଚିତ୍ରିତ କରି ପୂଜକ ଭକ୍ତି ସହକାରେ ପୂଜା କରନ୍ତି ।

ଛତ୍ର, ଚାମର, ଘଣ୍ଟବାଦ୍ୟ ଆଗରେ ବଜାଇ ବଜାଇ ସେହି ତିନୋଟି ପଟକୁ ପୂର୍ବଦ୍ୱାର ବାଟେ ଆଣି ସେହି ବାଉଁଶତାଟିକୁ ମନ୍ଦିର ମନେକରି ସ୍ଥାପିତ କରାଯାଏ । ତାପରେ ଖଟରେ ତୂଳାଶେଯ ପକାଇ ରାମ, ନୃସିଂହ ଓ କୃଷ୍ଣଙ୍କର ପ୍ରତିମାକୁ ସ୍ଥାପନ କରାଯାଏ । ବଳଦେବଙ୍କ ଆଗରେ ଏହି ତିନି ପ୍ରତିମାକୁ ରଖି ସୁଭଦ୍ରାଙ୍କ ଆଗରେ ବିଶ୍ୱଧାତ୍ରୀ ଭୂଦେବୀ ଓ ଲକ୍ଷ୍ମୀ ପ୍ରତିମାଙ୍କୁ ରଖାଯାଏ । ସେହି ପଟ୍ଟରେ ଜଗନ୍ନାଥଙ୍କ ହସ୍ତରେ ଚକ୍ରରୂପୀ ସୁଦର୍ଶନଙ୍କ ମୂର୍ତ୍ତି ଚିତ୍ରିତ ହୋଇ ପୂଜିତ ହୁଅନ୍ତି ।

ଏହିଭଳି ପଟ୍ଟଚିତ୍ରିତ ଠାକୁରଙ୍କୁ ଆଚାର୍ଯ୍ୟ ପ୍ରତିବିମ୍ବରେ ବିଧିପୂର୍ବକ ପଞ୍ଚାମୃତରେ ମହାସ୍ନାନ କରାଇଥାନ୍ତି । ତା'ପରେ ଶୁଚିପୂର୍ବକ ମଧ୍ୟାହ୍ନ ପୂଜା କରିଥାନ୍ତି । ସେତେବେଳେ ପୂଜା ସମୟରେ

ତାହା ମଧ୍ୟକୁ କେହି ପ୍ରବେଶ କରିବା ନିଷେଧ । ବାଉଁଶ ତାଟିର ଆବରଣ ମଧ୍ୟକୁ କେବଳ ବିଶ୍ୱାବସୁ ଓ ବିଦ୍ୟାପତିଙ୍କ ବଂଶର ସେବକମାନେ ପ୍ରବେଶ କରିଥାନ୍ତି । ସେମାନଙ୍କ ବ୍ୟତୀତ ଅନ୍ୟ କାହାରି ପ୍ରବେଶକୁ ବାରଣ କରାଯାଇଥାଏ । ଯେହେତୁ ଦାରୁ ବିଗ୍ରହଧାରୀ ଠାକୁର ପଟ୍ଟରେ ଅଧିଷ୍ଠିତ ଥାଆନ୍ତି, ତେଣୁ ପଟ୍ଟରେ ହିଁ ପୂଜାର୍ଚ୍ଚନା ହୋଇଥାଏ । ସେଥିପାଇଁ ଭିତରକୁ ଯିବା ଅନାବଶ୍ୟକ ବୋଲି ଘୋଷଣା କରାଯାଏ ।

ଜଗତପତି ଜଗନ୍ନାଥଙ୍କର ଭୋଜନ ସମୟରେ କୌଣସି ଅଙ୍ଗସେବା କରାଯାଏ ନାହିଁ । ଯଦି ଆବଶ୍ୟକ ହୁଏ ତେବେ ପୂଜା ପରେ କରିବାକୁ ହୁଏ । ଦାରୁରୂପୀ ଜଗନ୍ନାଥ ପନ୍ଦର ଦିନ ଯାଏ ପଟ୍ଟକୁ ଆଧାର କରି ଥାଆନ୍ତି ଏହା ନିଃସନ୍ଦେହ । ନୀଳାଦ୍ରି ମହୋଦୟଃ ଗ୍ରନ୍ଥରୁ ଜଣାଯାଏ ବ୍ରହ୍ମଦେବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି କଥା କହି ନିଶ୍ଚିତ କରାଇଛନ୍ତି ।

ପଟ୍ଟରେ ଆବେଶିତ ଦେବତାଙ୍କର ନିର୍ମାଲ୍ୟରେ ଆଦୌ ଅବିଶ୍ୱାସ କରିବା ଉଚିତ୍ ନୁହେଁ । କାରଣ ଦାରୁବ୍ରହ୍ମ ସେହି ପନ୍ଦର ଦିନ ପର୍ଯ୍ୟନ୍ତ ପଟବ୍ରହ୍ମ ଭାବରେ ପୂଜିତ ହୁଅନ୍ତି । ଏଥିରେ ଯିଏ ସନ୍ଦେହ କରିବ ତାର ନର୍କ ଗତ ହେବ ।

ଏବେ ଅଣସର ଗୃହରେ ଜୀଉମାନଙ୍କର ସେବାକୁ ଲକ୍ଷ୍ୟ କରାଯାଉ । ସେଠାରେ ବିଦ୍ୟାପତିଙ୍କ ବଂଶର ସେବକମାନେ ପନ୍ଦର ଦିନ ପର୍ଯ୍ୟନ୍ତ କର୍ପୂର ମିଶା ମିଶ୍ରିପଣା ବିଷ୍ଣୁଙ୍କୁ ଭୋଗ ଲଗେଇ ପୂଜା କରନ୍ତି । ଅଣସର ଗୃହରେ ଥିବାବେଳେ ଜଗନ୍ନାଥଙ୍କର ଶ୍ରୀଅଙ୍ଗମାଲ୍ୟ ଚନ୍ଦନାଦି ନିର୍ମାଲ୍ୟ ବାହାରକୁ ଅଣାଯାଏ ନାହିଁ ।

ବିଶ୍ୱାବସୁ ଓ ବିଦ୍ୟାପତିଙ୍କ ବଂଶର ସେବକମାନେ ଦାରୁବ୍ରହ୍ମଙ୍କର ଶ୍ରୀଅଙ୍ଗରୁ ଧୀରେ ଧୀରେ ଛଅଦିନ ପର୍ଯ୍ୟନ୍ତ ଲେପ ଛଡ଼ାଇଥାନ୍ତି । ସପ୍ତମ ଦିନ ଶ୍ରୀଅଙ୍ଗରେ ସୁବାସିତ ତୈଳ ସହ ରାଶିତେଲ ମର୍ଦ୍ଦନ କରାଯାଏ । ଅଷ୍ଟମ ଦିନ ଶ୍ରୀଅଙ୍ଗରେ ପଟବସ୍ତ୍ର ବାନ୍ଧି ତାହାପରେ ଶାଳତରୁର କ୍ଷୀରକୁ ଶୁଖାଇ ଝୁଣା ପ୍ରସ୍ତୁତ କରି ତାହାର ଚୂର୍ଣ୍ଣ ସାଥିରେ ସୁବାସିତ ରାଶିତେଲ ମିଶାଇ ଠାକୁରଙ୍କ ମୂଳଶରୀରର 'ମଜ୍ଜା' କଳ୍ପନା କରି ମର୍ଦ୍ଦନ କରାଯାଏ । ନବମ ଦିନ ଠାକୁରଙ୍କ ଶ୍ରୀଅଙ୍ଗରେ ଉକ୍ତ ଲେପକୁ ସୂକ୍ଷ୍ମ ପତଳା ଓଦାକନାରେ ଆଚ୍ଛାଦିତ କରି ରଖାଯାଏ । ଦଶମ ଦିନ ଠାକୁରଙ୍କର ସର୍ବାଙ୍ଗକୁ ଲୋହିତ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରି ଶରୀରରେ 'ରକ୍ତ' କଳ୍ପନା କରାଯାଏ । ଚନ୍ଦନ, କସ୍ତୁରୀ, କୁଙ୍କୁମ, କର୍ପୂର ଓ ଚନ୍ଦନସାର ଏକତ୍ର ମିଶାଇ ପେଷି ସେହି ଲେପକୁ ନେତ୍ର ପଟରେ ଦିଆଯାଏ । ଏକାଦଶୀ ଦିନ ସଂଧ୍ୟା ପୂଜା ସମାପ୍ତ ହେବା ପରେ କାହାଳୀ ଘଣ୍ଟ ପ୍ରଭୃତି ବାଦ୍ୟଧ୍ୱନୀ ମଧ୍ୟରେ ଠାକୁରଙ୍କ ସର୍ବାଙ୍ଗରେ ଚନ୍ଦନ ପ୍ରଭୃତି ଲେପ ଦେଇ 'ମାଂସ'ର କଳ୍ପନା କରାଯାଏ । ଦ୍ୱାଦଶୀ ଦିନ ଶୁକ୍ଳ ବସ୍ତ୍ର ଶ୍ରୀଅଙ୍ଗରେ ଗୁଡ଼ାଇ ପୁଣି ଭଲ ଭାବରେ ଚନ୍ଦନ ଲେପ ଦେଇ ଭଲ ରୂପେ ଶ୍ରୀଅଙ୍ଗକୁ ଦୃଢ଼ କରାଯାଏ । ଏହି ଲେପ ଦେବାବେଳେ ପ୍ରଭୁଙ୍କ ଶ୍ରୀଅଙ୍ଗରେ 'ଚର୍ମ'ର ପରିକଳ୍ପନା କରାଯାଏ । ସେହି ଦ୍ୱାଦଶୀ ଦିନ ମଧ୍ୟରାତ୍ରରେ ସମସ୍ତେ ଶୟନ କରିସାରିବା ପରେ ନୂତନ ବସ୍ତ୍ର ଓ ପାଟ ଦ୍ୱାରା ପ୍ରଭୁଙ୍କ ପାଦ ରଚନା କରାଯାଏ । ସେତେବେଳେ ଘଣ୍ଟ, ମର୍ଦ୍ଦଳ ଓ ଶଙ୍ଖ ପ୍ରଭୃତି ବାଦ୍ୟରେ ଖୁବ୍ ଉଚ୍ଚଧ୍ୱନି ସୃଷ୍ଟି କରାଯାଏ । ଫଳରେ କେହି ପ୍ରଭୁଙ୍କର ପାଦରଚନା ଶବ୍ଦ ଶୁଣି ପାରନ୍ତି ନାହିଁ ।

ବ୍ରହ୍ମଦେବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏଥିପାଇଁ ସତର୍କ କରାଇ କହିଛନ୍ତି–

''ତଦ୍ ବିଧୟେ ନୃପଶ୍ରେଷ୍ଠ ତସ୍ମିନକାଳେ ପୁନଃ ପୁନଃ ।
ତସ୍ୟାକର୍ଣ୍ଣନତଃ କର୍ଣ୍ଣୌ ଜାୟତେବଧିରୋ ଯଥା'' ।

ହେ ରାଜା ! ସେହି ସମୟରେ ଏହି ପାଦ ରଚନା ଧ୍ୱନିକୁ ଯିଏ କର୍ଣ୍ଣରେ ଶୁଣିବ, ତାହାର କର୍ଣ୍ଣ ବଧିର ହୋଇଯିବ । ତେଣୁ ଏହି ଧ୍ୱନି କେହି ଶୁଣିବା ଉଚିତ ନୁହେଁ । ଏହା ପରେ ଗଜପତିଙ୍କ ପ୍ରତିନିଧିମାନେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଅତି କଠିନ କର୍ପୂର ଲେପ ଦେଇଥାନ୍ତି । ତ୍ରୟୋଦଶୀ ଦିନ କୁଶଳୀ ଚିତ୍ରକରଙ୍କ ଦ୍ୱାରା ଠାକୁରଙ୍କ ଶ୍ରୀଅଙ୍ଗକୁ ନାନା ବର୍ଣ୍ଣରେ ରଞ୍ଜିତ କରି 'ଲୋମ'ର ପରିକଳ୍ପନା କରାଯାଏ । ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଏହି ଦୁଇଦିନ ଚିତ୍ରବିଚିତ୍ର କର୍ମ ଯଥାବିଧି କରି ପ୍ରଭୁଙ୍କ ଶ୍ରୀଅଙ୍ଗରେ ଚନ୍ଦନାଦି ଲେପ ଦିଆଯାଏ । ତାପରେ ଅଣସର ଘରୁ ଠାକୁରଙ୍କୁ ବାହାରକୁ ଅଣାଯାଏ । ଅଣସର କାଳୀନ ପ୍ରଭୁଙ୍କ ଶ୍ରୀଅଙ୍ଗ ଚନ୍ଦନ ପାଇବା ମାତ୍ରକେ ଯେଉଁ ନର ଭକ୍ତି ପୂର୍ବକ ସେବନ କରନ୍ତି, ତାଙ୍କର ପାପନାଶନ ହୋଇଯାଏ । ଦୂରାରୋଗ୍ୟରୁ ରକ୍ଷା ମିଳେ ଓ ବୈକୁଣ୍ଠ ପ୍ରାପ୍ତି ହୋଇଥାଏ । ତେଣୁ ଦ୍ୱାଦଶୀ ଦିନ ସମସ୍ତେ ଆତ୍ମ କଲ୍ୟାଣ ପାଇଁ ପ୍ରଭୁଙ୍କ ଶ୍ରୀଅଙ୍ଗ ଲାଗି ଚନ୍ଦନ ଗ୍ରହଣ କରିବା ଉଚିତ ।

ଅମାବାସ୍ୟା ରାତ୍ର ତିନିଘଡ଼ି ଉତ୍ତାରୁ ଆଚାର୍ଯ୍ୟ ସ୍ନାନ କରି ପଟ୍ଟ ଅରୋପିତ ଦେବତାଙ୍କୁ ବିସର୍ଜନ କରିଦିଅନ୍ତି । ଝଟ ଉଠାଇ ତାଟି ଖୋଲି ଠାକୁରଙ୍କ ସମ୍ମୁଖ ସ୍ଥାନ ଧୌତ କରନ୍ତି । ଠାକୁରଙ୍କ ଆଗରେ ଦୁଇଟି ଛତ୍ର ସହ ଘଣ୍ଟ ଘଣ୍ଟାଦି ଧ୍ୱନି କରାଯାଏ । ଗୀତ,ନୃତ୍ୟ ଓ ବାଦ୍ୟର ଆସର ଚାଲେ । ଏହି ଧ୍ୱନି ମହୋତ୍ସବ

ମଧ୍ୟରେ ପୂଜକ ଠାକୁରମାନଙ୍କର ନେତ୍ରପଦ୍ମରେ ଦୁଇଟି ନେତ୍ର ପ୍ରଦାନ କରନ୍ତି । ଏହାକୁ ନେତ୍ରୋତ୍ସବ କୁହାଯାଏ । ଏହି ସମୟରେ ଗଜପତି କିମ୍ବା ତାଙ୍କ ଅନୁଚର ଉପସ୍ଥିତ ଥାଆନ୍ତି । ନେତ୍ରୋତ୍ସବ କାର୍ଯ୍ୟ ସମାପ୍ତ ହେବାପରେ ବିଦ୍ୟାପତି ବଂଶର ସେବକମାନେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ସର୍ବତ୍ର ଚଉଷମ ଲେପନ କରି ଭକ୍ତି ଭାବରେ ବନ୍ଦାପନା କରନ୍ତି ।

ବନ୍ଦାପନା ପରେ ଠାକୁରମାନଙ୍କ ସମ୍ମୁଖରେ ପଞ୍ଚବର୍ଣ୍ଣ ମୁରୁଜରେ ପୃଥକ ପଦ୍ମ ଲେଖି ତାହା ଉପରେ ନୂତନ କଳସ ରଖି ଅଲଗା ଅଲଗା ପୂର୍ଣ୍ଣପାତ୍ର ରଖାଯାଏ । ସ୍ନାନ ନିମନ୍ତେ ଜଳରେ ନାନା ସୁବାସିତ ଦ୍ରବ୍ୟ ପକାଇ ସୂର୍ଯ୍ୟପୂଜା କରାଯାଏ । ଏହାପରେ ଠାକୁରଙ୍କ ପ୍ରତିବିମ୍ବରେ ମନ୍ତ୍ର ଉଚାରଣ ପୂର୍ବକ ସ୍ନାନ କରାହୁଏ । ସ୍ନାନାନ୍ତେ ନୂତନ ବସ୍ତ୍ରରେ ପ୍ରଭୁଙ୍କ ଶ୍ରୀଅଙ୍ଗ ପୋଛାଯାଏ । ତାପରେ ଅଲଗା ଅଲଗା ପୂଜକ କଳସଗୁଡ଼ିକୁ ଧରି ପ୍ରଥମେ 'ଆପୋହିଷ୍ଠା'ମନ୍ତ୍ରରେ କୁଶରେ ତିନିଥର ଜଳ ଠାକୁରଙ୍କ ଉପରେ ସିଞ୍ଚନ କରନ୍ତି । ପୁଣି 'ସମୁଦ୍ର୍ୟାପଃ'ଓ 'ସହସ୍ରାକ୍ଷ' ମନ୍ତ୍ରରେ ବାରବାର ଅଭିମନ୍ତ୍ରିତ ଜଳ ସିଞ୍ଚାଯାଏ ।

ଏହାପରେ ଚନ୍ଦନଲାଗି ହୋଇ ନୂତନ ବସ୍ତ୍ର, ମାଲ୍ୟ ଓ ମନୋହର ଅଳଙ୍କାର ଦ୍ୱାରା ଠାକୁରଙ୍କୁ ବେଶ କରାଯାଏ । ତାପରେ ଭୋଗମଣ୍ଡଳ କରାଯାଏ । ଛତ୍ର ଓ ଚକ୍ରଧରି ଘଣ୍ଟା କାହାଳୀର ଶୁଭଧ୍ୱନି ଗହଣରେ ପାକଶାଳାରୁ ନୈବେଦ୍ୟ ମାନ ଆଣି ଚାରିଧାଡ଼ିରେ ରଖାଯାଏ । ତାହାପରେ ଅଗ୍ନିଶର୍ମା ଚନ୍ଦନ, ଉତ୍ତମମାଲ୍ୟ ଦୁଇଖଣ୍ଡି ପୀତବସ୍ତ୍ର ବିଷ୍ଣୁଙ୍କୁ ଅର୍ପଣ କରନ୍ତି । ଏହାପରେ ଆଚାର୍ଯ୍ୟ ଭକ୍ତିପୂର୍ବକ ପ୍ରାତଃକାଳୀନ ପୂଜା କରନ୍ତି । ପୂର୍ବପରି ଆସାଦିତ ଉପଚାର ଦ୍ୱାରା ବିଧିପୂର୍ବକ ପୁଜା କରି ପରମେଶ୍ୱରଙ୍କୁ ବନ୍ଦାପନା କରାଯାଏ । କର୍ପୂର ଆରତି ପରେ ଦୁର୍ବାକ୍ଷତରେ ବନ୍ଦାପନା କରି ପିଠଉ ଓ ସାତଟି ବତୀରେ ଆରତି କରାଯାଏ ।

ଏହିପରି ଷୋଡ଼ଶ ଦିନ ଜଗନ୍ନାଥଙ୍କ ନେତ୍ରୋତ୍ସବ ପାଳିତ ହୋଇଥାଏ । ତିଥିର କ୍ଷୟ କିମ୍ବା ବୃଦ୍ଧି ହେଲେ ପଞ୍ଚଦଶ ଦିବସର ଶେଷରେ ପ୍ରାତଃ କାଳରେ ନେତ୍ରୋତ୍ସବ କରାଯାଏ ।

ଦୈବବଶତଃ ତିଥି କ୍ଷୟ ହେବା ଦ୍ୱାରା ଯଦି ଏହି କୃଷ୍ଣ ପକ୍ଷଟି ତେରଦିନ ବିଶିଷ୍ଟ ହୁଏ ତଥାପି ଅଣସର ପନ୍ଦରଦିନ ପର୍ଯ୍ୟନ୍ତ ପାଳନ କରି ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଶ୍ରୀଗୁଣ୍ଡିଚା ଦିନ ନେତ୍ରୋତ୍ସବ କରାଯାଏ । ତାପରେ ପ୍ରାତଃକାଳୀନ ପୂଜା ଓ ବନ୍ଦାପନା କରାହୁଏ । ଠାକୁରଙ୍କର ଏହି ନୀତି ପରେ ତ୍ରିଲୋକ ପବିତ୍ର ଘୋଷଯାତ୍ରା ବା ରଥଯାତ୍ରା ଅନୁଷ୍ଠିତ ହୁଏ । ନେତ୍ରୋତ୍ସବ ଦିନ ଯଦି ଦୈବାତ୍ ସୂର୍ଯ୍ୟପରାଗ ପଡ଼େ ତେବେ ନେତ୍ରୋତ୍ସବଠାରୁ ସ୍ନାନ ପର୍ଯ୍ୟନ୍ତ ସମସ୍ତ ବିଧି ଯତ୍ନପୂର୍ବକ ଅନୁଷ୍ଠାନ କରାଯାଏ । ତାହାପରେ ଛେନା ଓ ପଇଡ଼ଜଳ ଦ୍ୱାରା ନୈବେଦ୍ୟ କରି ଯଥାବିଧି ପୂଜା କରାଯାଏ । ପ୍ରାତଃକାଳୀନ ପୂଜାରେ ପକ୍ୱାନ୍ନ ଅର୍ପଣ କରାଯାଏ ନାହିଁ । ପୂଜା ପରେ ବନ୍ଦାପନା କରାଯାଏ । ସେହିଦିନ ରଥକୁ ଆଜ୍ଞାମାଳ ନିଆଯାଏ । ରଥ ସିଂହଦ୍ୱାରକୁ ଅଣାଯାଇ ପ୍ରତିଷ୍ଠା ଓ ପୂଜା କରାଯାଏ ।

ଉପରାଗ ଅର୍ଥାତ୍ ସୂର୍ଯ୍ୟପରାଗରୁ ମୁକ୍ତି ପରେ ଠାକୁରମାନଙ୍କର ମହାସ୍ନାନ କରାହୁଏ । ତାହା ପରେ ପୂର୍ବପରି ଦେବକୀପୁତ୍ର ମାଧବ ଶ୍ରୀଜଗନ୍ନାଥଙ୍କୁ ପାକଶାଳାରେ ପ୍ରସ୍ତୁତ ନାନା ପ୍ରକାରର ପାକଦ୍ରବ୍ୟ ସୁମିଷ୍ଟ ପାୟସ ପ୍ରଭୃତି ନୈବେଦ୍ୟ କରି ତୃପ୍ତ କରାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ନେତ୍ରୋତ୍ସବ ପରେ ଘୋଷଯାତ୍ରା ଅନୁଷ୍ଠିତ ହୋଇଥାଏ । ପ୍ରଭୁଙ୍କର ଏହି ପବିତ୍ର ନେତ୍ରୋତ୍ସବ ଯେଉଁମାନେ ଦର୍ଶନ କରନ୍ତି, ସେମାନଙ୍କର ବୈକୁଣ୍ଠପ୍ରାପ୍ତି ହୋଇଥାଏ ।

ନବୀନ ମେଘମାଳାର ଅଭିନବ ଶ୍ୟାମଳିମା ଆକୃତି ପରି ଶ୍ୟାମଳବର୍ଣ୍ଣ ପରମ ବିଷ୍ଣୁ ଜଗନ୍ନାଥଙ୍କର ପବିତ୍ର ନେତ୍ରୋତ୍ସବକୁ ଯେଉଁମାନେ ଦର୍ଶନ କରନ୍ତି ସେହି ସଜ୍ଜନମାନେ ଭବସାଗରରୁ ପାର ହୋଇ ହରିଙ୍କର ଦେବଦୁର୍ଲଭ ସ୍ଥାନକୁ ଅର୍ଥାତ୍ ବୈକୁଣ୍ଠକୁ ସତ୍କାରପୂର୍ବକ ଲାଭ କରନ୍ତି ।

ପୁଷ୍ପହାସ, ଏଏଲ୍–୬୨
ଭୀମଟାଙ୍ଗି, ଭୁବନେଶ୍ୱର

# କୃପା ସାଗର କାଳିଆ ସାଆନ୍ତ

ଆଚାର୍ଯ୍ୟ ହିମାଂଶୁ ଶେଖର

ଭଞ୍ଜ ଭୂଇଁର ବେଲାମ୍ ନାମକ ଛୋଟ ଏକ ଗାଁରେ ଗରିବ ଲୋକଟିଏ ବାସ କରୁଥିଲା । ଗାଁ ନିକଟରେ କୁଳୁକୁଳୁ ବୁଢ଼ାବଳଙ୍ଗ ନଈ ବୋହି ଯାଉଥିଲା । ତାହାରି କୂଳରେ ଅଳ୍ପ କିଛି ଜମି ଚାଷ କରି ବହୁ କଷ୍ଟରେ ସେ ଗୁଜୁରାଣ ମେଣ୍ଟାଉଥିଲା । କଥାରେ ଅଛି– ମଣିଷ ଯେତେବେଳେ ଦୁଃଖ ପାଏ, ସେତେବେଳେ ସେ ଭଗବାନଙ୍କୁ ଆଖିରୁ ଲୁହଢ଼ାଳି ଡାକେ, ନିଜର ଦୁଃଖ ଜଣାଏ । ପୂର୍ବଜନ୍ମର କେଉଁ ପାପ ପାଇଁ କେଜାଣି ଭଗବାନ ତାକୁ ଚିର ଦୁଃଖି ଭାବେ ଜନ୍ମ ଦେଇଥିଲେ ।



ଗାଁର ବହୁଲୋକ ପ୍ରତିବର୍ଷ ତୀର୍ଥ କରିବାକୁ ଯାଆନ୍ତି । କିଏ ହରିଦ୍ୱାର ଯାଏ ତ କିଏ କଲିକତା ଯାଇ ଗଙ୍ଗା ସ୍ନାନ କରି କାଳି ମା'ଙ୍କୁ ଦର୍ଶନ କରେ । କେହି କେହି ପୁରୀ ଯାଆନ୍ତି ରଥ ଟାଣିବାକୁ । ତାର ମଧ ଭାରି ଇଚ୍ଛାହୁଏ– କିପରି ଥରେ ପୁରୀ ଯିବ । ଜଗନ୍ନାଥଙ୍କୁ ଦର୍ଶନ କରି ନିଜ ଦୁଃଖ ଜଣାଇବ । ବେଳାଭୂଇଁରେ ଯାଇ ସମୁଦ୍ରରେ ବୁଡ଼ ପକେଇବ । ଆନନ୍ଦରେ ବସି ଆନନ୍ଦ ବଜାରରେ ଅଭଡ଼ା ଖାଇବ । କିନ୍ତୁ କେମିତି ଯିବ । ହାତରେ କିଛି ପଇସା ହେଲେ ତ ସବୁକିଛି ସମ୍ଭବ ହେବ । ସମୟ ଦେଖି କିଛି କିଛି ସଂଚୟ କରେ– ଭାବେ ଆସନ୍ତା ବର୍ଷକୁ ସେ ସେଇ ଅର୍ଥ ନେଇ ନିଶ୍ଚୟ ପୁରୀ ଯିବ । ଜଗନ୍ନାଥଙ୍କୁ ଦର୍ଶନ କରିବ । ପ୍ରତିବର୍ଷ ଆଷାଢ଼ ଆଗରୁ ଚାଷ କାମ ଆରମ୍ଭ ହୋଇଯାଏ । ଘର ସଂସାର ଚଳାଇବା କଷ୍ଟ ହୋଇପଡ଼େ । ବାଧ ହୋଇ ସେହି ସଞ୍ଚିତ ଅର୍ଥରୁ କିଛି କିଛି କାଢ଼ି ସେ ବିଚରା ଖର୍ଚ୍ଚ କରିଦିଏ । ପୁରୀ ଯିବା ସ୍ୱପ୍ନ ତା'ର ସେଇ ସ୍ୱପ୍ନରେ ରହିଯାଏ । ଏମିତି କେତେବର୍ଷ ଯେ ବିତିଗଲା ତା'ର ସୀମା ନାହିଁ । ସେ ଯୁବକରୁ ବୃଦ୍ଧ ହୋଇଗଲାଣି ତଥାପି ଠାକୁରଙ୍କ ଦର୍ଶନ ହେଲା ନାହିଁ ।

ଦିନକର ଘଟଣା । ଦିନ ସାରାର କର୍ମକ୍ଳାନ୍ତ ଶରୀରକୁ ବିଶ୍ରାମ ଦେବା ପାଇଁ ବୃଦ୍ଧ ଜଣକ ନିଘୋଡ଼ ନିଦରେ ଶୋଇ ଯାଇଥାନ୍ତି । ଭାବଗ୍ରାହୀ ପ୍ରଭୁ ଜଗନ୍ନାଥ ବୃଦ୍ଧର ଦୁଃଖ ସହି ନପାରି ସେଦିନ ସେହି ଅନ୍ଧାର ରାତ୍ରିରେ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଲେ 'ଚକା ଚକା ଆଖି– କାଳିଆ ବଦନକୁ ନାଲି ହସହସ ଅଧର– ତାକୁ ଚାହିଁ କହୁଛନ୍ତି– 'ରେ ପାଗଳ । ମୁଁ କ'ଣ କେବଳ ସେଇ ପୁରୀରେ ଅଛି ? ମୁଁ ପରା ସବୁଠି ରହେ । କାଲି ସକାଳ ହେଲେ ତୁ ଯାଇ– ବାରିପଦାରେ ବଡ଼ ଜଗନ୍ନାଥ ମନ୍ଦିରରେ ମୋତେ ଦର୍ଶନ କରି ଆସିବୁ । ମୁଁ ସେଇଠି ତୋତେ ଦର୍ଶନ ଦେବି । ଏହା ବୁଢ଼ାବଳଙ୍ଗ ନଈ ତ ସେହି ମହୋଦଧିକୁ ପାଣି ଯୋଗାଉଛି । ତା' ପାଣି ମହୋଦଧି ପାଣିକୁ ଛୁଇଁଛି– ସେଇଠି ଗାଧୋଇ ମୋତେ ଦର୍ଶନ କରିବୁ– ହଁ ମୋର ପ୍ରସାଦ ବି ଥିବ । ପେଟେ ଖାଇ ଆସିବୁ । ମୁଁ ତୋର ଅନ୍ତରର କଥା ବୁଝିଛି– ଆଉ ଦୁଃଖ ନ କରି କାଲି ଚାଲି ଯା' । ବୃଦ୍ଧର ହଠାତ୍ ନିଦ ଭାଙ୍ଗିଗଲା । ସେତେବେଳକୁ ରାତି ୩ଟା ବାଜିଥାଏ । ଚାରିଆଡ଼େ ଅନ୍ଧାର ନିସ୍ତବ୍ଧ । ''ପ୍ରଭୁ ! ପ୍ରଭୁ ! କହି ବୃଦ୍ଧ ଜଣକ କାନ୍ଦି ପକାଇଲା । ଦୁଇହାତ ଯୋଡ଼ି ପ୍ରଭୁଙ୍କୁ ପ୍ରଣାମ ଜଣାଇଲା ।''

ଆଉ ନିଦ ହେଲା ନାହିଁ ବୃଦ୍ଧଙ୍କର । ଏମିତି ଚାହିଁ ଚାହିଁ ସ୍ୱପ୍ନ କଥା ଭାବି ଭାବି ରାତି ପାହିଗଲା । ପ୍ରଭୁ କହିଛନ୍ତି, ଆଜି

ସିଏ ମୋତେ ଦର୍ଶନ ଦେବେ । ତେଣୁ ତରବରରେ ସକାଳର ସବୁ କାମ ଶେଷ କରି ବାହାରି ପଡ଼ିଲା ବାରିପଦାକୁ । ବେଲାମ୍‌ରୁ ବାରିପଦା ଦଶ କିଲୋମିଟର ଦୂର ହେବ । ବାରିପଦାର ଅସ୍ଥିଆଠାରେ ବୁଢ଼ାବଳଙ୍ଗ ନଦୀରେ ସ୍ନାନ କରି ବୃଦ୍ଧ ଚାଲିଲେ ବଡ଼ ଜଗନ୍ନାଥ ମନ୍ଦିର । ମନରେ ଆନନ୍ଦର ସୀମା ନାହିଁ । ପ୍ରଭୁ କହିଛନ୍ତି, ଆଜି ସିଏ ନୀଳାଚଳ ପୁରୀରୁ ଆସି ନିଶ୍ଚୟ ଦେଖାଦେବେ । ମୁଁ ସିନା ହତଭାଗ୍ୟଟିଏ ତାଙ୍କ ପାଖକୁ ଯାଇ ପାରିଲି ନାହିଁ । କରୁଣା ସାଗର ପ୍ରଭୁ ଜଗନ୍ନାଥ ମୋ ନିକଟକୁ ଧାଇଁ ଆସିବେ ମୋ ଦୁଃଖ, ମୋ ମୁହଁରୁ ଶୁଣିବା ପାଇଁ । ଧନ୍ୟ ମହାପ୍ରଭୁ ! ଧନ୍ୟ ତୁମେ । ସେଦିନ ଥିଲା କାର୍ତ୍ତିକ ମାସର ଦ୍ୱାଦଶୀ ତିଥି । ଠାକୁରେ ସକାଳୁ ସୁନ୍ଦର ବେଶରେ ଭକ୍ତମାନଙ୍କୁ ଦର୍ଶନ ଦେଉଥାନ୍ତି । ବୃଦ୍ଧ ଜଣଙ୍କ ମନ୍ଦିରକୁ ଯାଇ ଚକାନୟନକୁ ମନଭରି ଦର୍ଶନ କଲେ । ମନର ଅକୁହା କଥା ଯାହାଥିଲା ସବୁ ପ୍ରଭୁଙ୍କୁ ଜଣାଇ ସାଷ୍ଟାଙ୍ଗ ପ୍ରଣାମ କଲେ । ଆଖିରୁ ବୋହି ଯାଉଥିଲା ଧାର ଧାର ଲୁହ । ଦର୍ଶନ ପରେ ମନ୍ଦିର ବେଢ଼ା ବୁଲିଲେ । ସିଂହଦ୍ୱାର ନିକଟରେ ଜଣେ ପୂଜକଙ୍କୁ ପଚାରିଲେ– ‘‘ବାବା ! ପ୍ରଭୁଙ୍କ ପ୍ରସାଦ କେଉଁଠି ମିଳିବ ?’’ ପୂଜକ ଜଣକ କହିଲେ ହଁ ମିଳିବ । ଦିନ ୧୨ଟା ବେଳକୁ ଆସ । ବୃଦ୍ଧ କହିଲେ, ‘‘ପ୍ରସାଦ ପାଇଁ କେତେ ଅର୍ଥ ଦେବାକୁ ହେବ ?’’ ପୂଜକ କହିଲେ ପଚିଶ ଟଙ୍କା । ବୃଦ୍ଧ ଜଣକ ଅଣ୍ଟାରୁ ଟଙ୍କା କାଢ଼ି ପୂଜକଙ୍କୁ ଦେଲେ । ପୂଜକ କହିଲେ, ଭୋଗ ହେବା ପରେ ମୋତେ ଦେଖା କରିବ । ମୁଁ ତୁମ ଅଭଡ଼ା ଦେଇଦେବି ।

ବୃଦ୍ଧ ଜଣକ ସିଂହଦ୍ୱାର ଦେଇ ବାହାରକୁ ଆସିଲେ । ଅରୁଣ ସ୍ତମ୍ଭ ନିକଟରେ ବସି ଶୀତଦିନର କଅଁଳିଆ ଖରା ଉପଭୋଗ କରୁଥିଲେ । ଗତ ରାତିରେ ଭଲ ନିଦ ହୋଇ ନଥିବାରୁ କେତେବେଳେ ସେଇଠି ଶୋଇ ପଡ଼ିଛନ୍ତି ଯେ ସେ ନିଜେ ମଧ୍ୟ ଜାଣନ୍ତି ନାହିଁ । ଶୋଇ ଶୋଇ ସ୍ୱପ୍ନ ଦେଖୁଛନ୍ତି । ସୁନ୍ଦର ସମୁଦ୍ରର ବେଳାଭୂଇଁ । ସେ ଆନନ୍ଦରେ ସମୁଦ୍ରର ଲହଡ଼ି ଭାଙ୍ଗୁଛନ୍ତି । ସେଠାରୁ ଆସି ଦେଖୁଛନ୍ତି କାଳିଆ ଠାକୁରଙ୍କୁ ଚକା ଚକା ଆଖି– ହସ ହସ ଓଠ । ଠିକ୍ ଗଲା ରାତିରେ ସେ ଯେମିତି ଦେଖିଥିଲେ । ଗହଳ ଲାଗିଛି ଆନନ୍ଦ ବଜାର । ମହାପ୍ରସାଦର ବଜାର । ନା ନା ବ୍ୟଞ୍ଜନ ଦେଖି ବୃଦ୍ଧ ଜଣକ ସ୍ୱପ୍ନରେ ଅଧୀର ହୋଇ ଉଠୁଥାନ୍ତି । ସେ ଅଭଡ଼ା କିଣି ଆନନ୍ଦ ବଜାରର ଗୋଟିଏ ଚଟାଣରେ ବସି ଖାଉଛନ୍ତି– ଦେଖୁ ଦେଖୁ ଜଣେ ନନା ଆସି ତାଙ୍କ ନିକଟରେ ବସିଗଲେ– କହିଲେ ଆମକୁ ବି ମିଶାଅ ସାଙ୍ଗ ହୋଇ ଅଭଡ଼ା ଖାଇବା । ‘‘ବୃଦ୍ଧ ଜଣକ ନନା ବୋଲି ମନା କରିବା ଆଗରୁ ସେ କହିଲେ ଏଠି ପରା ଜାତି ଅଜାତି କିଛି ନାହିଁ । ସେ ତାଙ୍କ ସହିତ ଖାଇବା ଆରମ୍ଭ କରିଦେଲେ ।’’

ଏଣେ ମନ୍ଦିରରେ ଘଣ୍ଟା ବାଜିଲା । ଠାକୁରଙ୍କ ଭୋଗ ଲାଗି ହୋଇଗଲା । ବ୍ରାହ୍ମଣ ଜଣଙ୍କ ବୃଦ୍ଧଙ୍କୁ ଅପେକ୍ଷା କଲେ, କିନ୍ତୁ ବୃଦ୍ଧ ଆସିଲେ ନାହିଁ । ବେଳ ଗଡ଼ିଗଲା । ସମସ୍ତେ ଅଭଡ଼ା ନେଇ ଗଲେଣି । ବ୍ରାହ୍ମଣ ସିଂହଦ୍ୱାର ବାହାରକୁ ଆସି ବୃଦ୍ଧଙ୍କୁ ଖୋଜୁ ଖୋଜୁ ଦେଖିଲେ– ସେ ବୃଦ୍ଧ ଜଣକ ଅରୁଣସ୍ତମ୍ଭ ନିକଟରେ ଶୋଇଯାଇଛି । ତାଙ୍କ ନିକଟରେ ଆଉ ୨/୩ ଜଣ ବସିଥାନ୍ତି । ବ୍ରାହ୍ମଣ ଆସି ବୃଦ୍ଧଙ୍କୁ ଡାକିଲେ । ସେ ଏତେ ଗଭୀର ନିଦ୍ରାରେ ଥିଲେ ଯେ କିଛି ଶୁଣି ପାରିଲେ ନାହିଁ । ପାଖରେ ବସିଥିବା ଜଣେ ବ୍ୟକ୍ତି ତାଙ୍କୁ ହଲାଇ ଡାକିଦେଲେ– ହଠାତ୍ ଚମକି ପଡ଼ି ବୃଦ୍ଧ ଜଣକ ଉଠି ବସିଲେ ଏବଂ କହିଲେ, ମୁଁ ପରା ଅଭଡ଼ା ଖାଉଥିଲି । ଏହା ଶୁଣି ସମସ୍ତେ ହସିଲେ କହିଲେ, ଆପଣ ଏମିତି ଶୋଇ ଯାଇଛନ୍ତି ଯେ, ଡାକିଲେ ଶୁଣିପାରୁ ନାହାନ୍ତି । କ’ଣ ସ୍ୱପ୍ନ ଦେଖୁଥିଲେ କି ? ବୃଦ୍ଧ ଜଣକ କହିଲେ, ନା ମୁଁ ତ ଆନନ୍ଦ ବଜାରରେ ଅଭଡ଼ା ଖାଉଥିଲି– ହେଇ ଦେଖୁନ ମୋ ହାତକୁ । ହାତ ଦେଖାଇଦେଲେ– କି ଆଶ୍ଚର୍ଯ୍ୟ ବୃଦ୍ଧଙ୍କ ହାତରେ ସତରେ ଅଭଡ଼ା ଲାଗିଥିଲା । ସମସ୍ତେ ଧନ୍ୟ ଧନ୍ୟ କଲେ ବୃଦ୍ଧଙ୍କୁ । ନନା ମନ୍ଦିରକୁ ଯାଇ ବୃଦ୍ଧଙ୍କ ଅଭଡ଼ା ଆଣି ସେଇଠି ଦେଇଦେଲେ । ବୃଦ୍ଧ ଜଣକ ଆନନ୍ଦରେ ଅଭଡ଼ା ନିଜ ଥଳିରେ ରଖି ପ୍ରଭୁଙ୍କୁ ଦଣ୍ଡବତ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଇଏ କାହାଣୀ ନୁହେଁ, ସତ୍ୟ ଘଟଣା । ଜଗନ୍ନାଥ ଯେତେବେଳେ କୃପା କରନ୍ତି, ସେତେବେଳେ ସବୁ ସମ୍ଭବ ହୋଇଯାଏ । ତେଣୁ ତ ସେ କୃପା ସାଗର । ସେଇ ଆମ କାଳିଆ ସାଆନ୍ତ ।

ତୁଳସୀ ପରିବାର, ବାରିପଦା



# ନୀଳଚକ୍ର

**ରବିନାରାୟଣ ପାଣି**

ନୀଳଚକ୍ର, ନୀଳଗିରି, ନୀଳଶୈଳ, ନୀଳସୁନ୍ଦର, ନୀଳକନ୍ଦର, ନୀଳସିନ୍ଧୁ ସବୁ ନୀଳ ସେହି ଜଗତ ଠାକୁର ଜଗନ୍ନାଥଙ୍କ ପ୍ରତୀକ । ଆକାଶ ଓ ସାଗର ନୀଳ । ନୀଳ ହେଉଛି ଅସୀମର ପ୍ରତିଶବ୍ଦ । ଶ୍ରୀକ୍ଷେତ୍ର ହେଉଛି ନୀଳକନ୍ଦର, ନୀଳାଚଳ । ଏଣୁ ଏଠାକାର ଚକ୍ର ହେଉଛି ନୀଳଚକ୍ର । ଅନ୍ୟ ପକ୍ଷରେ ନୀଳସାଗର ଓ ନୀଳ ନଭକୁ ସଂଯୋଗ କରୁଛି ଶ୍ରୀମନ୍ଦିର । ସାଗର ଓ ଆକାଶର ନୀଳକୁ ସଂଯୋଗ କରୁଥିବା ଚକ୍ର ହେଉଛି ନୀଳଚକ୍ର । ନୀଳଚକ୍ର ପ୍ରକାରାନ୍ତରେ ଦେବାୟୁଧ ସୁଦର୍ଶନ । ନୀଳଚକ୍ର ପତିତପାବନ ବାନାର ଧାରକ । ନୀଳଚକ୍ର ହେଉଛି– ଚକ୍ର ନାରାୟଣ ।

ସବୁ ମନ୍ଦିରରେ ଚକ୍ର ରହିଛି ମାତ୍ର ସବୁ ନୀଳଚକ୍ର ନୁହେଁ । ସବୁ ମନ୍ଦିରରେ ବାନା ଉଡୁଛି । ସବୁ ବାନା ପତିତପାବନ ବାନା ହୋଇ ନପାରେ । କେବଳ ଶ୍ରୀକ୍ଷେତ୍ର, ଶ୍ରୀମନ୍ଦିର ଚୂଡାରେ ରହିଛି ନୀଳଚକ୍ର ପତିତପାବନ ବାନା । ପୁରାଣକ୍ରମରେ ଭଗବାନ ବିଷ୍ଣୁ ଲୀଳା ଯୋଗେ କଳିଯୁଗରେ ହସ୍ତ ପାଦ ବିହୀନ ହୋଇ, ଶ୍ରୀକ୍ଷେତ୍ରରେ ଜଗନ୍ନାଥ ରୂପେ ପୂଜା ପାଇଲେ । ଶଙ୍ଖ, ଚକ୍ର ଆଦି ଆୟୁଧକୁ ପରିତ୍ୟାଗ କଲେ । ଏଭଳି ପରିସ୍ଥିତିରେ ଚକ୍ର ଦେବତା ସୁଦର୍ଶନଙ୍କର କ୍ରୋଧ ଜାତ ହେଲା । ସୁଦର୍ଶନଙ୍କ କ୍ରୋଧ ଜାଣିପାରି ଭଗବାନ ତାଙ୍କୁ ନୀଳଚକ୍ର ରୂପେ ମନ୍ଦିର ଚୂଡାରେ ସ୍ଥାନ ଦେଲେ ।

ଶ୍ରୀକ୍ଷେତ୍ର ପରମ୍ପରା ଅନନ୍ୟ ଓ ଭିନ୍ନ । ରତ୍ନ ସିଂହାସନରେ ଶ୍ରୀଠାକୁର ଦର୍ଶନ ପାଇ କିମ୍ବା ରଥାରୂଢ ବାମନରୂପୀ ବିଗ୍ରହକୁ ଦର୍ଶନ କରିବାରେ ସମାନ ପୁଣ୍ୟ ଲାଭ କରାଇଥାଏ । ନୀଳଚକ୍ରର ପତିତପାବନ ବାନାଙ୍କୁ ଚାହିଁ ଆର୍ତ୍ତଭକ୍ତ ବିପଦ ନାଶନ ପାଇଁ ପ୍ରାର୍ଥନା କରି ଆସିଛି– 'ପତିତପାବନ ବାନା ଆଉ କେତେ ବେଳକୁ' । ମନ୍ଦିର ନିର୍ମାଣ ବିଧି ପ୍ରକାରେ, ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହେଲା ପରେ, ନୀଳଚକ୍ର ସ୍ଥାପନ କରାଯାଏ । ମନ୍ଦିର ଉଚ୍ଚତା ଅନୁସାରେ ନୀଳଚକ୍ରର ଆକାର ନିର୍ଦ୍ଧାରଣ କରାଯାଏ । ବିଷ୍ଣୁ ମନ୍ଦିରମାନଙ୍କରେ ଚକ୍ର, ଶିବ ଓ ଶକ୍ତି ମନ୍ଦିରରେ ତ୍ରିଶୂଳ ଆୟୁଧ ରୂପେ ଖଞ୍ଜାଯାଏ । ମନ୍ଦିର ଚୂଡାରେ ଏହି ଆୟୁଧଗୁଡିକ ସାଧାରଣତଃ ଧାତୁ ବା ଅଷ୍ଟ ଧାତୁରେ ନିର୍ମିତ ।

ଶ୍ରୀମନ୍ଦିରର ନୀଳଚକ୍ର ସମ୍ପର୍କରେ ଆଲୋଚନା କ୍ରମରେ ପୁରାଣ ଯୁଗର ରାଜା ଇନ୍ଦ୍ରଦ୍ୟୁମ୍ନ ନୀଳକନ୍ଦରରେ ଦେଉଳ ନିର୍ମାଣ କରି ସାରିବା ପରେ ମନ୍ଦିର ପ୍ରତିଷ୍ଠା ପାଇଁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ପାଇଁ ବ୍ରହ୍ମଲୋକକୁ ଯାଇଥିଲେ । ବ୍ରହ୍ମଲୋକରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ସାକ୍ଷାତ ପାଇଁ ଅପେକ୍ଷା କରିବା ମଧ୍ୟରେ ମର୍ତ୍ତ୍ୟଲୋକରେ ୧୦୦ବର୍ଷ ବିତିଗଲା । ସମୟକ୍ରମେ ବାଲୁକା ଝଡରେ ଇନ୍ଦ୍ରଦ୍ୟୁମ୍ନ ନିର୍ମିତ ମନ୍ଦିର ପୋତିହୋଇ ପଡିଲା । ଇନ୍ଦ୍ରଦ୍ୟୁମ୍ନ ନଫେରିବା ଦେଖି, ତାଙ୍କ ପୁତ୍ର ସୁରଦେବ ଓ ତାଙ୍କ ଅନ୍ତେ ତାଙ୍କ ସାନନାତି ଗାଲମାଧବ ମୃଗୟା ପାଇଁ ବାହାରିଲେ । ଘୋଡାରେ ବସି ବାଲୁକା ପ୍ରାନ୍ତରରେ ଯାଉ ଯାଉ ଘୋଡା ଟାପୁରେ ନୀଳଚକ୍ର ବାଜି ଶବ୍ଦ ହେଲା । ରାଜା ଆଶ୍ଚର୍ଯ୍ୟ ହୋଇ ବାଲୁକା ଖୋଳାଇ ଦିବ୍ୟ ମନ୍ଦିରର ସନ୍ଧାନ ପାଇଲେ । ଇନ୍ଦ୍ରଦ୍ୟୁମ୍ନ ପୁରାଣ କିମ୍ବଦନ୍ତୀର ବୃତ୍ତାନ୍ତ । ବର୍ତ୍ତମାନର ମନ୍ଦିର, ଗଙ୍ଗରାଜା ଅନନ୍ତବର୍ମା ଚୋଡଗଙ୍ଗ ଦେବଙ୍କ ଦ୍ୱାରା କାର୍ଯ୍ୟ ଆରମ୍ଭ ହେଲା । ପରବର୍ତ୍ତୀ କାଳରେ ଅନଙ୍ଗ ଭୀମ ଦେବ ମନ୍ଦିର କାର୍ଯ୍ୟ ଶେଷ କରି ବିଗ୍ରହ ପ୍ରତିଷ୍ଠା କରିଥିଲେ । ସେତେବେଳର ନୀଳଚକ୍ରକୁ କଳାପାହାଡ ଆକ୍ରମଣ କରି କ୍ଷତବିକ୍ଷତ କରିଦେଲେ । ଶେଷରେ ଦିବ୍ୟସିଂହ ଦେବ ନୀଳଚକ୍ର ସ୍ଥାପନ କରିଥିଲେ–୧୭୧୫ରେ । ଅଷ୍ଟଧାତୁରେ ନିର୍ମିତ–ଅଧାଲୁହା, ପାଏତୁମ୍ବା ଏବଂ ସୁନା, ରୂପା, ଦସ୍ତା, ରଙ୍ଗ, ସୀସା, ପାରା ଆଦି ଧାତୁ ମିଶ୍ରିତ । ସମଗ୍ର ଚକ୍ରଟି ସୁଦର୍ଶନ ଚକ୍ର ସଦୃଶ । ନୀଳଚକ୍ରର ଧାର୍ମିକ ମହତ୍ତ୍ୱ ଭଳି ଏହାର ବୈଜ୍ଞାନିକ ମହତ୍ତ୍ୱ ଓ ଗୁରୁତ୍ୱ ରହିଛି ।

ଏହା ଚକ୍ର ବାରିଣୀ, ଆର୍ଥିଂ ସଦୃଶ କାର୍ଯ୍ୟ କରିବା ଯୋଗୁଁ ବଜ୍ରାଘାତରୁ ଶ୍ରୀମନ୍ଦିରକୁ ରକ୍ଷା କରିଥାଏ । ନୀଳଚକ୍ର ଉପରେ ଧ୍ୱଜା ବାନ୍ଧିବା, ବଡ ଏକାଦଶୀ ଦିନ ମହାଦ୍ୱୀପ ଲଗାଇବା, ମହାଡାକ ଦେବା ଇତ୍ୟାଦି ଇତ୍ୟାଦି କାର୍ଯ୍ୟ ନୀଳଚକ୍ରର ସେବା । ଚୂନରା ସେବକମାନେ ଏହି କାର୍ଯ୍ୟ କରିଥାନ୍ତି । ଏହା ସହିତ ସେମାନେ ଚୋଡକୁ ପୂଜା କରିଥାନ୍ତି । ପ୍ରତି ଏକାଦଶୀ ଦିନ ନିଶାର୍ଦ୍ଧରେ ଶ୍ରୀମନ୍ଦିର ଚୂଡାରେ ମହାଦ୍ୱୀପ ଲଗାଯାଏ । ଏହାକୁ ଚନ୍ଦ୍ରଉଦୟା ଦ୍ୱୀପ ବୋଲି କୁହାଯାଏ । ନୀଳଚକ୍ରକୁ ଚକ୍ର ନାରାୟଣ ରୂପେ ପୂଜା କରାଯାଏ । ରତ୍ନ ସିଂହାସନ ତଳେ ଭୋଗ ଅର୍ପଣ କରିବା ଯାହା ନୀଳଚକ୍ରକୁ ଚାହିଁ ଭୋଗ ଅର୍ପଣ କରିବା ସେଇଆ, ସମପୁଣ୍ୟ । ଏହି ବିଶ୍ୱାସ ଜଗନ୍ନାଥ ସଂସ୍କୃତିରେ ରହିଛି । ରଥଯାତ୍ରାର ପ୍ରବଳ ଗହଳି ବେଳେ ପୂଜକମାନେ ରତ୍ନସିଂହାସନ ପାଖକୁ ଯାଇନପାରି ନୀଳଚକ୍ରକୁ ଚାହିଁ ଭୋଗ ଅର୍ପଣ କରିଥାନ୍ତି । ଏ ପ୍ରକାର ନୈବେଦ୍ୟକୁ ଚକ୍ର ମଣୋହୀ କୁହାଯାଏ । ଏହା ଜଗନ୍ନାଥ ଦର୍ଶନର ତୃପ୍ତି ଦେଇଥାଏ । ପରମ୍ପରା ଅନୁସାରେ ନୀଳଚକ୍ରର ବାନା ନାଲି, ଧଳା, ହଳଦିଆ ରଙ୍ଗ ହୋଇଥାଏ । ପତାକା ମଝିରେ ଊର୍ଦ୍ଧ୍ୱମୁହାଁ ହୋଇ ଅର୍ଦ୍ଧଚନ୍ଦ୍ର ଓ ତହିଁ ମଧ୍ୟରେ ସୂର୍ଯ୍ୟଙ୍କର ଚିହ୍ନ ଥାଏ । ଏହି ଡୋରକୁ ଉହାଡ ଓ ରକ୍ଷା କବଚ କୁହାଯାଏ । ଏହା ଉତ୍କଳର ଗଣପ୍ରତୀକ । ପତିତପାବନ ବାନା ମହୋଦଧି ଆଡକୁ ଉଡିବାର ବିଧି ରହିଛି ।

ଏଚ୍.ଆଇ.ଜି–୨୬
କଳିଙ୍ଗ ବିହାର, ଭୁବନେଶ୍ୱର

# ପାରିବିକି ରଥ ଦଉଡି ଛୁଇଁ

**ରୀତା ଅପରାଜିତା ମହାନ୍ତି**

ଆଖିରେ ଖାଲି ତୁମ ଛବି ନାଚି ଯାଉଛି
ମନ ଖାଲି ସେ ଶରଧା ବାଲି ଗୁଣ ଗାଉଛି
ଏତେ ବଡ ଠାକୁର ତୁମେ
ତୁମେ ରଖ ତୁମ ବଡ ପଣ
ଦେଖାଅ ତୁମ ଦାତା ପଣ
ତୁମ ଦେହଛଡା ତୁଳସୀର ମାଳଟିଏ
ପାଇଲେ ମୋ ଜୀବନ ଧନ୍ୟ ହେଇଯିବ ।
ଯେଉଁଥିରେ ଖାଲି ତୁମ ଶ୍ରୀଅଙ୍ଗର ସୁବାସ ଥିବ,
ଆଜିର ଭିଡରେ
ଲୋକମାନଙ୍କ ଅରଣ୍ୟରେ ।
ଏ ଆଖି ପାଇବ କି ତୁମ ଦର୍ଶନ ।
ତିନି ପ୍ରଭୁ ରତ୍ନ ସିଂହାସନ ଛାଡି



ଆଜି ତିନୋଟି ରଥରେ ବିରାଜୁଛନ୍ତି ।
ଯେଉଁ ଦୃଶ୍ୟ ଥରେ ଦେଖିଦେଲେ
ଆଉ କିଛି ଦେଖିବାକୁ ମନ ଡାକେନା
ଭଗବାନଙ୍କ ରଥର ଦଉଡି
ଆଜି ଭକ୍ତର ହାତରେ ଅଛି ।
ସେ ଆଜି ତା' ପ୍ରଭୁଙ୍କୁ ଟାଣି ନେଉଛି
ପାରିବିକି ଛୁଇଁ ଥରେ
ତୁମର ସେ ରଥ ଦଉଡି ।

ପ୍ଲଟ ନଂ– ୮୩(ସି)
ଆମ୍ରପଲ୍ଲୀ (ଶୈଳଶ୍ରୀ ବିହାର)
ଭୁବନେଶ୍ୱର

# ଶଙ୍ଖକ୍ଷେତ୍ର ପୁରୀରେ ମଠ ସଂସ୍କୃତିର ମାହାତ୍ମ୍ୟ

ରାମଚନ୍ଦ୍ର ଦାଶ

ଶ୍ରୀକ୍ଷେତ୍ର ପୁରୀକୁ ହିନ୍ଦୁ ଧର୍ମଶାସ୍ତ୍ରରେ ଶଙ୍ଖକ୍ଷେତ୍ର ଭାବେ ନାମିତ କରାଯାଇଛି ଏବଂ ଏହି କ୍ଷେତ୍ରର ମାହାତ୍ମ୍ୟ ସମ୍ପର୍କରେ ବିଭିନ୍ନ ଶାସ୍ତ୍ରମାନଙ୍କରେ ନାନାବିଧ ବର୍ଣ୍ଣନା ରହିଅଛି । ଶ୍ରୀକ୍ଷେତ୍ର ପୁରୀର ମାହାତ୍ମ୍ୟ ସମ୍ପର୍କରେ ସବିଶେଷ ବର୍ଣ୍ଣନା ସ୍କନ୍ଦ ପୁରାଣରେ ରହିଅଛି । 'ସ୍କନ୍ଦ ପୁରାଣ' ମତରେ ଏହା ହେଉଛି ପବିତ୍ର ଶଙ୍ଖ କ୍ଷେତ୍ର । ଏ କ୍ଷେତ୍ରର ପୂର୍ବ ଆୟତନ ପଞ୍ଚକୋଶ ପରିମିତ ଭୂମି ମଧ୍ୟରୁ ଅର୍ଦ୍ଧେକ ସମୁଦ୍ର ଗର୍ଭରେ ନିମଗ୍ନ ଏବଂ ଅପରଭାଗ ଶଙ୍ଖାକୃତି ଧାରଣ କରିଅଛି । ଏହାର ମୂର୍ଦ୍ଧନୀରେ ବିଦ୍ୟମାନ ସ୍ୱୟଂ ନୀଳକଣ୍ଠ । ଏହାର ଉପରାଂଶ ଜଳମଗ୍ନ । ଏହାର ନାଭିପ୍ରଦେଶରେ ରୋହିଣୀ କୁଣ୍ଡ, ଅକ୍ଷୟ ବଟ ଏବଂ ପ୍ରଭୁଙ୍କର ନିତ୍ୟବେଦୀ ବିଦ୍ୟମାନ । ବ୍ରହ୍ମ ପୁରାଣ ମତରେ ଏଇ ପରମ ରମଣୀୟ କ୍ଷେତ୍ରଟି ଥିଲା ଚର୍ତୁବର୍ଣ୍ଣ ଓ ଚତୁରାଶ୍ରମମାନଙ୍କର ପ୍ରିୟତମ ବିଜୟ ଭୂମି । ଯେଉଁଠାରେ ଚଉବର୍ଗ ଫଳଦାତା ଚଉବାହା ବିରାଜିତ୍ ସେଠାରେ ଚତୁର୍ବର୍ଗ ଫଳପ୍ରାପ୍ତି କେତେ ମାତ୍ର? ଶ୍ରୀକ୍ଷେତ୍ର ସର୍ବଗୁଣ, ସର୍ବଧର୍ମ, ସର୍ବବିଦ୍ୟା ଚର୍ଚ୍ଚାର ପବିତ୍ର ଭୂମି ଖଣ୍ଡ । ଏଠାରେ ଗୃହସ୍ଥ, ବ୍ରହ୍ମଚାରୀ, ବାନପ୍ରସ୍ଥି–ସକଳ ମଣିଷଙ୍କର ସମାନ ଅଧିକାର । ଏ କ୍ଷେତ୍ରର ସଂସ୍କାର ବୋଧ ତେଣୁ ସମଗ୍ର ବିଶ୍ୱରେ ବିରଳ ।



ଶ୍ରୀକ୍ଷେତ୍ର–କ୍ଷେତ୍ରଶ୍ରେଷ୍ଠ, ଏହା ନୀଳାଦ୍ରିନାଥଙ୍କ ନିତ୍ୟନିବାସ ନୀଳକନ୍ଦର । ସ୍ୱୟଂ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ପରଠାରୁ ନୀଳକନ୍ଦରର ମାହାତ୍ମ୍ୟ ହେଲା ସର୍ବଜନବିଦିତ । ନୃସିଂହ କ୍ଷେତ୍ର ଗୁଣ୍ଡିଚା ବାଡିଠାରୁ ମହାବେଦୀ ପର୍ଯ୍ୟନ୍ତ ହେଲା ପରିଷ୍କୃତ । ଏଠାରେ ଅନୁଷ୍ଠିତ ହେଲା ସହସ୍ରାଶ୍ୱମେଧ ଯଜ୍ଞ । ପରେ ପରେ ନୀଳଗିରିରେ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନଙ୍କ ଚତୁର୍ଦ୍ଧାମୂର୍ତ୍ତି ହେଲେ ପୂଜିତ । ପ୍ରସିଦ୍ଧ ଦାରୁ ଦେବତାଙ୍କର ଆକର୍ଷଣରେ ଏଠାରେ ବହୁ ସାଧୁ–ସନ୍ଥ ବିଦ୍ୱାନ–ପଣ୍ଡିତଙ୍କର ସମାଗମ ଘଟିଲା । ପ୍ରଖ୍ୟାପିତ ହେଲା କ୍ଷେତ୍ର ମାହାତ୍ମ୍ୟ । ବୌଦ୍ଧ–ଜୈନ, ଶୈବ–ଶାକ୍ତ, ସୌର–ଗାଣପତ୍ୟ, ବୈଷ୍ଣବ ପ୍ରଭୃତି ସକଳ ସଂପ୍ରଦାୟର ସନ୍ଥ ମହାତ୍ମାମାନେ ଏ କ୍ଷେତ୍ର ଦର୍ଶନ କରି ଆପଣାକୁ କୃତାର୍ଥ ମନେ କଲେ, କେବେ ହେଲେ ବିମୁଗ୍ଧ ଏବଂ ବିହ୍ୱଳ । କେତେକ ବିଦ୍ୱାନ ଶାସ୍ତ୍ର ଚର୍ଚ୍ଚା ନିମିତ୍ତ ଆସିଲେ ଆଧ୍ୟାତ୍ମିକ ତୃଷ୍ଣା ନେଇ । ସକଳ ଘଟଣ–ଅଘଟଣର ଘଟଣାକାରୀ, ନିତ୍ୟ–ନୀଳାଚଳନାଥଙ୍କର ଅର୍ଦ୍ଧ ନିର୍ମିତ ଦାରୁ ରୂପ, ପ୍ରସାରିତ ବାହୁ, ଚକ୍ର ନେତ୍ର ଏବଂ ରଙ୍ଗ ଅଧରର କୁଟିଳ ହାସ ପ୍ରତ୍ୟେକଙ୍କୁ କଲା ସମ୍ମୋହିତ । ଅଧାଗଢା ଦିଅଁର ପୂର୍ଣ୍ଣତା କଳନା କରିବାରେ କେତେକ ଚକିତ ହେଲେ, କେତେକଙ୍କ ଚେତନାରେ ଚଉଦ୍ୱାର ଅବରୁଦ୍ଧ ହେଲା, ଚିର–ଚିନ୍ମୟ–ଚିଦାନନ୍ଦ–ଅଚିନ୍ତନୀୟ ବ୍ରହ୍ମଙ୍କୁ ଚିନ୍ତନରେ ଆଣିଲେ ଅନେକ । ଆସିଲେ ଶଙ୍କର, ଆସିଲେ ନିମ୍ବାର୍କ, ରାମାନୁଜ, ମାଧ୍ୱାଚାର୍ଯ୍ୟ ଆଉ ଚେତନ୍ୟ ପ୍ରମୁଖ କେତେଭକ୍ତ, କେତେ ସନ୍ଥ, କେତେ ବିଦ୍ୱାନ, ଦାର୍ଶନିକ, ପଣ୍ଡିତ, ତାନ୍ତ୍ରିକ, ନ୍ୟାୟିକ ଏବଂ ମୀମାଂସକ । ଲୀଳାମୟଙ୍କର ଅପାର ଲୀଳା ସେମାନଙ୍କୁ କଲା ବିସ୍ମୟାଭିଭୂତ । ଚୈତନ୍ୟଙ୍କ ଚେତନା ଟହଲିଗଲା,

ସ୍ୱୟଂ ନୀଳାଦ୍ରିନାଥ ଜଗତଗୁରୁଙ୍କର ଅଦ୍ୱୈତ ଦର୍ଶନ ଭିତରେ ଗୋଟାଏ ଅମୀମାଂସିତ ପ୍ରଶ୍ନବାଚୀ ପାଲଟି ଗଲେ। ଦର୍ଶନ ଶେଷହେଲା, ତର୍କଣା ସରିଲା ନାହିଁ। ନିତ୍ୟ ନୀଳାଚଳ ଧାମ ସେମାନଙ୍କ ନିକଟରେ ଅନନ୍ତ ରହସ୍ୟର ଗନ୍ତାଘର ପାଲଟି ଗଲା। ଅନେକ ସଂସ୍ଥା ଏଠାରେ ଅବସ୍ଥାନ କଲେ, ସେମାନଙ୍କ ଶିଷ୍ୟ ପ୍ରଶିଷ୍ୟମାନଙ୍କୁ ଧରି । ତେଣୁ ଶ୍ରୀକ୍ଷେତ୍ରରେ ଆରମ୍ଭ ହେଲା ମଠ ସଂସ୍ଥାପନ।

ଶ୍ରୀକ୍ଷେତ୍ରରେ ନିତ୍ୟ ଲୀଳା ଦର୍ଶନ ଓ ଅନୁଭବଜନିତ ଦିବ୍ୟ ଆନନ୍ଦ ଏବଂ ରହସ୍ୟାଚ୍ଛନ୍ନ ଦାରୁ ଦେବତାଙ୍କୁ ଅନୁଭବ କରିବାର ପ୍ରବଳ ଆଗ୍ରହ–ଆକାଂକ୍ଷା ଏବଂ ଉତ୍କଣ୍ଠା ନେଇ ସନ୍ଥମାନେ ମଠ ସ୍ଥାପନ କରି ଅବସ୍ଥାନ କଲେ । ବିଭିନ୍ନ ଧର୍ମ ଓ ସଂପ୍ରଦାୟର ଧାର୍ମିକ ଭକ୍ତମାନେ ସେମାନଙ୍କର ଧାର୍ମିକ ଆଦର୍ଶରେ ମଠ ସଂଚାଳନ କଲେ । ତଥାପି ପ୍ରଭୁଙ୍କର ଦୈନନ୍ଦିନ ନୀତି, ଯାନିଯାତ୍ରା ଏବଂ ପର୍ବପର୍ବାଣିଗୁଡିକ ସହିତ ଘନିଷ୍ଠଭାବରେ ଅନୁବନ୍ଧିତ ହେଲେ । ଶ୍ରୀକ୍ଷେତ୍ର ମଠ ସମ୍ପର୍କରେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବିଶିଷ୍ଟ ଐତିହାସିକ ତଥା ଗବେଷକ ଡକ୍ଟର ହରିଶ ଚନ୍ଦ୍ର ପୃଷ୍ଟିଙ୍କ ମତାନୁସାରେ ଓଡିଶାରେ 'ମଠ ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ଏକ ମାହାତ୍ମ୍ୟ ହେଉଛି ଅନନ୍ୟ। ବୈଦିକଯୁଗରୁ ଅଦ୍ୟାବଧି ନିରବଛିନ୍ନ ଭାବରେ କାଳର ବକ୍ଷରେ ତିଷ୍ଠି ରହି ଏହି ସଂସ୍କୃତି ବାସ୍ତବରେ ଜନଜୀବନକୁ ଋଦ୍ଧିମନ୍ତ କରୁଛି । ଓଡିଶାରେ ପ୍ରତି ଗଳିକନ୍ଦିମାନଙ୍କରେ ମଠମାନ ରହିଥିବା ବେଳେ ଆଉ କିଛି ମହାକାଳ ଗର୍ଭରେ ବିଲୀନ ହୋଇଗଲାଣି । ପ୍ରକାଶଯୋଗ୍ୟ ଯେ ଶଙ୍ଖକ୍ଷେତ୍ର ପୁରୀରେ ୭୫୨ ମଠ ରହିଥିଲା ବେଳେ ନାମ ଗଣତି ଭାବେ ଖାତା–ଖତିୟାନ–ଦସ୍ତାବିଜରେ ରହି ଆସିଛି ଅଳ୍ପ କେତୋଟି ମଠ । ଅଦ୍ୟାବଧି ତିଷ୍ଠି ରହି ସେହି ଗରିମାମୟ ଐତିହ୍ୟର ରୋମନ୍ଥନ କରୁଅଛି ।' ଶଙ୍ଖକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ର ଓ ପୁରୀର ମଠମାନଙ୍କ ମଧ୍ୟରୁ ଅନେକ ମଠ ଶ୍ରୀମନ୍ଦିର ଓ ଶ୍ରୀଜୀଉଙ୍କ ସହିତ ସଂପୃକ୍ତ । ସେଗୁଡିକ ହେଉଛି– (୧)ବେଡି ହନୁମାନ ମଠ, (୨) ଛାଉଣୀ ମଠ, (୩) ମଙ୍ଗୁ ମଠ, (୪) ରାଧାବଲ୍ଲଭ ମଠ, (୫) ଏମାର ମଠ, (୬) ଶ୍ୟାମକୁଞ୍ଜ ମଠ, (୭) ଉତ୍ତରପାର୍ଶ୍ୱ ମଠ, (୮) ରାଘବଦାସ ମଠ, (୯) ଶ୍ରୀରାମଦାସ ମଠ, (୧୦) ବାଲିସାଇ ଗୋବର୍ଦ୍ଧନ ମଠ, (୧୧) ଗଙ୍ଗାମାତା ମଠ, (୧୨) କୋଠଭୋଗ ମଠ, (୧୩) ରେବସା ମଠ, (୧୪) ଦକ୍ଷିଣ ପାର୍ଶ୍ୱ ମଠ, (୧୫) ସଂକ୍ରାନ୍ତି ମଠ, (୧୬) ତ୍ରିମାଳୀ ମଠ, (୧୭) ଶିବତୀର୍ଥ ମଠ, (୧୮) ଗୋପାଳ ତୀର୍ଥ ମଠ, (୧୯) ଶଙ୍କରାନନ୍ଦ ମଠ, (୨୦) ସୁନାର ଗୌରାଙ୍ଗ ମଠ, (୨୧) ନେଉଳଦାସ ମଠ, (୨୨) ବଡଓଡିଆ ମଠ, (୨୩) ସାନଓଡିଆ ମଠ, (୨୪) ଅଭଲା ମଠ, (୨୫) ଚିକିଟୀ ମଠ, (୨୬) କେନ୍ଦୁଝର ମଠ, (୨୭) ଜୟପୁର ମଠ, (୨୮) ଘୁମୁସର ମଠ, (୨୯) ଦର୍ପଣୀ ମଠ, (୩୦) ଲହୁଣିଆ ମଠ, (୩୧) ବଡଆଖଡା ମଠ, (୩୨) ପଥର ଆଖେଡା ମଠ, (୩୩) ବାଘ ଆଖେଡା ମଠ, (୩୪) ନିମିଆଖେଡା ମଠ, (୩୫) ଇନ୍ଦ୍ରସ୍ୱାମୀ ମଠ, (୩୬) ମରିଚିକୋଟ ମଠ, (୩୭) ବଳରାମକୋଟ ମଠ, (୩୮) ନରସିଂହକୋଟ ମଠ, (୩୯) ଭଗବତୀକୋଟ ମଠ, (୪୦) ବଡଛତା ମଠ, (୪୧) ସାନଛତା ମଠ, (୪୨) ବଡସନ୍ଥ ମଠ, (୪୩) ସାନସନ୍ଥ ମଠ, (୪୪) ରାମଜୀ ମଠ, (୪୫) ଚଉରା ମଠ, (୪୬) ଅର୍ଙ୍ଗିରା ମଠ, (୪୭) ପରାଶରାଶ୍ରମ ମଠ, (୪୮) ଭୃଗୁଆଶ୍ରମ ମଠ, (୪୯) ପଣ୍ଡୁଆଶ୍ରମ ମଠ, (୫୦) ଗିରିସ୍ୱାମୀ ମଠ, (୫୧) ଗୌରୀ ମଠ, (୫୨) ନାଗା ମଠ, (୫୩) ଖଡିଖିଆ ମଠ, (୫୪) ସୁନାମୁଣ୍ଡି ମଠ, (୫୫) ଉଗ୍ରସେନ ମୁଣ୍ଡି ମଠ, (୫୬) ଚାଉଣ୍ଡା ମୁଣ୍ଡି ମଠ, (୫୭) ଝାଂଜପିଟା ମଠ, (୫୮) ହରିଦାସ ମଠ, (୫୯) ଜଗନ୍ନାଥ ବଲ୍ଲଭ ମଠ ଇତ୍ୟାଦି ।

ପ୍ରଦତ୍ତ ମଠମାନଙ୍କର ବିବରଣୀରୁ ଜଣାଯାଏ ଯେ, କେତେକ ଧର୍ମ ସଂପ୍ରଦାୟଙ୍କ ସହିତକେତେକ ରାଜ୍ୟର ରାଜାମାନେ ମଧ୍ୟ ଶ୍ରୀକ୍ଷେତ୍ରରେ ଅବସ୍ଥାନ ନିମିତ୍ତ ମଠ ନିର୍ମାଣ କରିଥିଲେ। ରାଜା ଅନଙ୍ଗଭୀମ ଦେବଙ୍କ ସମୟରେ ଅନେକ ମଠ ନିର୍ମିତ ହୋଇଥିଲା । ଏଥିରୁ ସନ୍ୟାସୀ ମଠ ସଂଖ୍ୟା ଥିଲା–୫୨, ମଠମାନଙ୍କ ସର୍ବେକ୍ଷଣରୁ ଜଣାଯାଏ ଯେ, ଆନ୍ଧ୍ର ମଠ ସଂଖ୍ୟା ୧୨, ମହାରାଷ୍ଟ୍ର ମଠ ସଂଖ୍ୟା–୮, ଦ୍ରାବିଡ ମଠ ସଂଖ୍ୟା–୮, କନୌଜ ମଠ ସଂଖ୍ୟା–୫, ହେଙ୍ଗୁଳା ମଠ ସଂଖ୍ୟା–୩, ଓଡିଆ ମଠ ସଂଖ୍ୟା–୧୪, ଗୌଡୀୟ ମଠ ସଂଖ୍ୟା–୫, ଏକାଦଶୀ ମଠ ସଂଖ୍ୟା–୩, ମନୋଦଣ୍ଡୀ ମଠ ସଂଖ୍ୟା–୧୫ ଏବଂ ତ୍ରିଦଣ୍ଡି ମଠ–୭ ।

କର୍ଣ୍ଣାଟକ, ଆନ୍ଧ୍ର ଓ ଉତ୍ତର ଭାରତରୁ ବହୁ ସଂଖ୍ୟକ ରାମାନୁଜୀ ଆସି ଏଠାରେ ମଠ ନିର୍ମାଣ କଲେ । ସଦାବ୍ରତୀମାନେ ମଠ ନିର୍ମାଣ କରି ଏଠାରେ ଦରିଦ୍ର ନାରାୟଣ ସେବାରେ ମନୋନିବେଶ କଲେ । ମଠର ବ୍ୟୟଭାର ନିମିତ୍ତ ଅନେକ ବଦାନ୍ୟ ରାଜା ଅକୁଣ୍ଠ ଚିତ୍ତରେ ଭୂମି ଏବଂ ଅର୍ଥ ଦାନ କଲେ । ମଠଗୁଡିକ କ୍ରମଶଃ ଶିକ୍ଷା ପ୍ରସାରଣ କ୍ଷେତ୍ର, ସଂସ୍କୃତିର ସଂବାହନ ଭୂମି ଏବଂ ଧର୍ମ ଚର୍ଚ୍ଚାର ପ୍ରମୁଖ କେନ୍ଦ୍ର ପାଲଟି ଗଲା। ପ୍ରତ୍ୟେକ ମଠରେ

ସଂପୃକ୍ତ ସଂପ୍ରଦାୟର ଇଷ୍ଟଦେବ ଉପାସିତ ହେଲେ । ସେମାନଙ୍କ ପୂଜା-ଅର୍ଚ୍ଚନା, ସ୍ନାନ-ମାର୍ଜନ, ଭୋଗ-ଧୂପ, ଯାନିଯାତ୍ରାର ବ୍ୟୟଭାର ଭୂ-ସଂପତ୍ତିରୁ ଭରଣା କରାଗଲା ।

ମଠ ସଂସ୍କୃତି ଏକ ଭିନ୍ନ ସଂସ୍କୃତି । ମଠ ସଂସ୍ଥାପନ ଅନ୍ତରାଳରେ ଧାର୍ମିକ ଜିଜ୍ଞାସା ଏବଂ ଆଧ୍ୟାତ୍ମିକ ବିଚାରବୋଧ ବିଦ୍ୟମାନ । ସାଂସାରିକ ଲିପ୍ତତା ଭିତରୁ ବିମୁକ୍ତ ହୋଇ ଜୀବନକୁ ଏକ କଳୁଷମୁକ୍ତ ମାର୍ଗରେ ସଂଚାଳିତ କରିବା, ଶାସ୍ତ୍ରଜ୍ଞାନ ଏବଂ ଦିବ୍ୟ ଅନୁଭବ ମାଧ୍ୟମରେ ବିଭୁ କୃପା ଉପଲବ୍ଧି କରିବା, ଉଦ୍‌ଭ୍ରାନ୍ତ ସମାଜକୁ ଆଧ୍ୟାତ୍ମିକ ବିଚାର ଧାରାରେ ଶିକ୍ଷିତ ଓ ଦୀକ୍ଷିତ କରାଇବା ଏ ସଂସ୍କୃତିର ଗୁରୁ ଦାୟିତ୍ୱ । ଜ୍ଞାନୀ-ପଣ୍ଡିତ ଧୀମାନ ବର୍ଗ ଏଠାରେ ଜ୍ଞାନ ଓ ଧର୍ମ ଚର୍ଚ୍ଚାରେ ମଗ୍ନ ରହନ୍ତି ଏବଂ ପ୍ରମୁଖ ଶିଷ୍ୟମାନେ ସେମାନଙ୍କ ଉତ୍ତରଦାୟିତ୍ୱ ନେଇ ଗାଦି ମଣ୍ଡନ କରନ୍ତି । କଠୋର ନିୟମ ଶୃଙ୍ଖଳା ଓ ସଂଯମତା ଭିତରେ ବିତି ଯାଏ ମଠର ଦିନଚର୍ଯ୍ୟା ।

ପୁରୀର ମଠଗୁଡିକ ଆଦର୍ଶବୋଧ ଦୃଷ୍ଟିରୁ ପରସ୍ପରଠାରୁ ପୃଥକ ହେଲେ ମଧ୍ୟ ଶ୍ରୀମନ୍ଦିର ସହିତ ସଂପୃକ୍ତ । କେତେକ ମଠର ନିଜସ୍ୱ ଚଳଣି ସହିତ ମନ୍ଦିରର ଦିନଚର୍ଯ୍ୟା ସହିତ ସଂପର୍କ ରକ୍ଷା କରିଥାନ୍ତି । କେତେକ ମଠରୁ ପ୍ରତ୍ୟହ ସଂକୀର୍ତ୍ତନ ଦଳ ବାହାରି ଶ୍ରୀକ୍ଷେତ୍ର ପରିକ୍ରମା କରନ୍ତି । କେତେକ ମଠରୁ ସଞ୍ଜଧୂପ ମନ୍ଦିରକୁ ପ୍ରେରିତ ହୁଏ । ଜୀଉଙ୍କର ମେଲଣ ଝୁଲଣ ପ୍ରଭୃତି ଅନେକ ଯାନିଯାତ୍ରା ମଠମାନଙ୍କରେ ନିଷ୍ଠା ଓ ଶ୍ରଦ୍ଧାର ସହିତ ପାଳିତ ହୁଏ । ପୂଜା, ଉପାସନା, ଶାସ୍ତ୍ରଚର୍ଚ୍ଚା, ପୁରାଣପାଠ, ସଂକୀର୍ତ୍ତନ, ପ୍ରବଚନ ପ୍ରଭୃତିରେ ସଂପାଦିତ ହୁଏ ଏଠାକାର ଦିନଚର୍ଯ୍ୟା । ଏଠାରେ ଦରିଦ୍ର ଅସହାୟଙ୍କୁ ମିଳିଥାଏ ଦାନା କନା ଏବଂ ବିଭୁ ଚିନ୍ତନର ଉପଯୁକ୍ତ ସୁଯୋଗ ।

ଆଧ୍ୟାତ୍ମିକ ଅନୁଚିନ୍ତନରୁ ପୁରୀର ମଠ ସଂସ୍କୃତିର ଉଦ୍ଭବ, ସ୍ୱଚ୍ଛଜୀବନ ପ୍ରବାହ ନିମିତ୍ତ ଏଗୁଡିକର ଗତିଶୀଳତା ଏବଂ ପ୍ରାଚୀନ ଧର୍ମ ସଂସ୍କୃତିର ସୁରକ୍ଷାରେ ଏଗୁଡିକର ଆନ୍ତରିକତା ଅକ୍ଷୁଣ୍ଣ । ବିଭୁ ଚିନ୍ତନ ଏବଂ ଦାନ ଧ୍ୟାନ ଓ ବଦାନ୍ୟତାରେ ଏଗୁଡିକର ସଂପୃକ୍ତି ସେମିତି ସୁଦୀର୍ଘ । ବିଦ୍ୟା-ବିନୋଦ, ବିଦ୍ୟା ବିକାଶ, ଅସହାୟ ଓ ଅସହାୟାମାନଙ୍କୁ ଆଶା ଓ ଆଶ୍ରୟ ଦାନରେ ମଠ ସଂସ୍କୃତିର ଭୂମିକା ପ୍ରଶଂସନୀୟ । ପୁରୀର ଏମାର ମଠ ଓଡିଶାର ବୃହତ୍ତମ ମଠ । ଏହାର ସଂସ୍ଥାପକ ଦ୍ୱାଦଶ ଶତକର ଦାର୍ଶନିକ ରାମାନୁଜ । ଏଇ ମଠର ସଂପୃକ୍ତି ମନ୍ଦିର ସଂସ୍କୃତି ସହିତ ସମନ୍ୱିତ। ପ୍ରଭୁ ଜଗନ୍ନାଥଙ୍କ ବିଶ୍ୱ ପ୍ରସିଦ୍ଧ ଘୋଷଯାତ୍ରାରେ ସାମିଲ୍ ହୁଅନ୍ତି ଅନେକ ମଠ ଓ ମଠାଧୀଶ । ପ୍ରତିବର୍ଷ ରଥଯାତ୍ରା ପୂର୍ବରୁ ପ୍ରଭୁଙ୍କର ପହଣ୍ଡି କରାଯାଏ। ପହଣ୍ଡି କାଳରେ ରାଘବଦାସ ମଠ ପ୍ରଭୁଙ୍କ ନିମିତ୍ତ ସୁଦୃଶ୍ୟ ଟାହିଆ ପ୍ରେରଣ କରନ୍ତି । ଚୈତନ୍ୟ ମଠ ତରଫରୁ ଦିଅଁଙ୍କ ନିମିତ୍ତ ଖଜା ଓ ମଗଜ ଲଡୁ ପଠାଯାଏ । ଆଚାର୍ଯ୍ୟ ଶଙ୍କରଙ୍କ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠରୁ ତୁଳସୀ ମାଳ ପ୍ରେରିତ ହୁଏ । ପ୍ରତ୍ୟେକ ମଠ ପ୍ରଭୁଙ୍କ ନିମିତ୍ତ ଫୁଲ, ତୁଳସୀ, ଦୟଣା, ଟାହିଆ, ଚାନ୍ଦୁଆ, ପାଟବସ୍ତ୍ର, ଭୋଗ, ଧୂପ ପ୍ରଭୃତି ପ୍ରେରଣ କରି ସର୍ବଧର୍ମର ଆଧାର ପ୍ରଭୁ ଜଗନ୍ନାଥଙ୍କ ପ୍ରତି ସେମାନଙ୍କ ଆନୁଗତ୍ୟ ପ୍ରକାଶ କରନ୍ତି।

ପୁରୀର ମଠ ସଂସ୍କୃତି ଆଧ୍ୟାତ୍ମିକ ଜୀବନ ବୋଧ ଉପରେ ପ୍ରତିଷ୍ଠିତ । ଏହାରି ଭିତରେ ଉଜ୍ଜୀବିତ ହୋଇ ରହିଛି ପବିତ୍ର ଆର୍ଯ୍ୟବର୍ତ୍ତର ସଂସ୍କାରବୋଧ । ମଠଗୁଡିକର ଦିନଚର୍ଯ୍ୟାକୁ ପ୍ରତ୍ୟକ୍ଷ କଲେ ମନେହୁଏ ଯାବତୀୟ ଆଧୁନିକତାର ସଂକ୍ରମଣ ଓ ବିପୁଳ ଜନସମାଗମ ସତ୍ତ୍ୱେ ଏସବୁ ଚୁପ୍ ହୋଇନାହିଁ ବରଂ ସକଳ ଲିପ୍ତତା ଭିତରୁ ମୁକ୍ତ ହୋଇ ମଠାଧୀଶ ଓ ମଠଚାରୀମାନଙ୍କ ଭିତରେ ଭରି ରହିଛି ସେହି ପ୍ରଶାନ୍ତିରୂପି ଜନୋଚିତ ପବିତ୍ରତା । ସରଳ ଜୀବନଧାରା, ଆଧ୍ୟାତ୍ମିକ ଚିନ୍ତନ, ବିଭୁ ସନ୍ନିକଟ ହେବାର ପ୍ରୟାସ, ପାରମ୍ପରିକ ସଂସ୍କୃତିର ସୁରକ୍ଷା ଓ ପ୍ରୋତ୍ସାହନ ଦିଗରେ ମଠ ସଂସ୍କୃତି ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ବାଦନ କରିଚାଲିଛି ଆପଣାର ସାଂସ୍କୃତିକ ଜୟଘୋଷ ଏବଂ ମୁମୂର୍ଷୁ ମାନବ ସମାଜ ନିମିତ୍ତ ଶାନ୍ତିର ସନ୍ଧାନ ଦେବା ପୁରୀର ମଠ ସଂସ୍କୃତି ଦର୍ଶାଉଛି ଅନିର୍ବାଣ ଶାନ୍ତି ଶିଖା । ସେଇ ଶିଖା ଭିତରୁ ଶୁଣା ଯାଉଛି ସେଇ ପବିତ୍ର ପ୍ରଣବ।

ଜଗନ୍ନାଥ ସ୍ୱାମୀ
ନୟନ ପଥଗାମୀ
ଭବତୁ ମେ ।

ସାରସ୍ୱତ ଭବନ
ସା-ଅକରପଡା, ପୋ-ନଳୀପୁର
ଭାୟା-ବାଲିଚନ୍ଦ୍ରପୁର
ଜିଲ୍ଲା-କଟକ

# କଳା ସାଆନ୍ତେ ଅଛ କେମନ୍ତେ

**ଜୟନ୍ତ ପଟ୍ଟନାୟକ**

ଜଗନ୍ନାଥ ଜଗତର ନାଥ । ସାରାଜଗତର ସେ ନାଥ । ଏମିତି ଅନ୍ୟ କେଉଁ ଧର୍ମରେ ଅଛି, କୋଉ ସଂପ୍ରଦାୟରେ ଅଛି ! ଆମ ଠାକୁର ବଡ, ବଡ ଠାକୁର । ତାଙ୍କ ମନ୍ଦିର ବଡ, ବଡ ଦେଉଳ । ତାଙ୍କ ଆଖି ବଡ, ଚକା ଆଖି । ତାଙ୍କ ହାତ ବଡ ବଳିଆର ଭୁଜ । ତାଙ୍କ ଦାଣ୍ଡ ବଡ, ବଡ ଦାଣ୍ଡ । ତାଙ୍କ ପତାକା ବଡ ପତିତପାବନ । ତାଙ୍କ ପାହାଚ ବଡ, ବାଇଶି ପାହାଚ । ତାଙ୍କ ପ୍ରସାଦ ବଡ, ମହାପ୍ରସାଦ । ତାଙ୍କ ବଜାର ବଡ, ଆନନ୍ଦ ବଜାର । ତାଙ୍କ ଯାତ୍ରା ବଡ଼, ଘୋଷଯାତ୍ରା । ଏମିତି ଆଉ ଅନ୍ୟତ୍ର କୋଉଠି ନାହିଁ । ତାଙ୍କର ସବୁ ବଡ, ସେ ବଡ ଠାକୁର । ହେଲେ ଖାଲି ଏମିତି ତାଙ୍କୁ ବଡ ବଡ ବୋଲି କହୁଥିବା କଥାରେ ନା ତାଙ୍କ ବଡ ପଣିଆର ଟେକ ରଖିବା ପାଇଁ କିଛି କରିବା ?

ଆମେ ସମସ୍ତେ କୋଟି ଓଡିଆଙ୍କ ସମେତ ଅଣ ବାସୀନ୍ଦା ଭାରତୀୟ ଓଡ଼ିଆ ଓ ଅବଶିଷ୍ଟ ଭାରତୀୟ ସମସ୍ତେ ଜଗନ୍ନାଥ ପୁରୀର ଶ୍ରୀମନ୍ଦିର ବା ବଡଦେଉଳକୁ ନେଇ ଗର୍ବ କରୁ, କିନ୍ତୁ ଜଗତଠାକୁର କେମିତି ଅଛନ୍ତି, କେମିତି ଚଳୁଛନ୍ତି, ଭଲରେ ଅଛନ୍ତି କି ମନ୍ଦରେ ଅଛନ୍ତି, ସେ କଥା ପ୍ରାୟ କେହି ଚିନ୍ତା କରନ୍ତି ନାହିଁ । ବାୟାର କି ଯାଏ ନା ବା' କଲେ ବସା ଦୋହଲୁ ଥାଏ ।

ବଡ ଦେଉଳର ବଡଠାକୁର ଶ୍ରୀଜଗନ୍ନାଥ ମଝିରେ ମଝିରେ ଉପାସ ରହିବା, ନୀତି ପାଳନ ନ ହେବା ବିଷୟ ଆପଣମାନେ ପଢିଥିବେ । ଏକଦା ନୂଆ ବର୍ଷରେ ଜଣେ ଭକ୍ତ ଲେଖିଥିଲେ, ନୂଆ ବରଷ ଜଗନ୍ନାଥଙ୍କର ନାହିଁ ହରଷ । ଶ୍ରୀଜଗନ୍ନାଥଙ୍କ ଲାଗି ଶ୍ରୀମନ୍ଦିର ପାଇଁ କିଛି କରିବା ସମଗ୍ର ଓଡ଼ିଆ ଜାତିର ଜାତୀୟ କର୍ତ୍ତବ୍ୟ । ସମସ୍ତେ ଏ ବିଷୟ ଚିନ୍ତା କରିବାର ଅବସର ଆସିଛି ।

ବଡବୋଲି ଖାଲି କହିଲେ ହେବନି
ବଡ (ପଣ) ରଖିବାକୁ ମନଟି ଲୋଡା, ।
ଠାକୁରେ ରହିଲେ ଏ ଜାତି ରହିବ
ଦୁନିଆ କହିବ ସତେ ଏ ଜାତିଟା ବଡା ।।

ପ୍ରଥମେ ଶ୍ରୀମନ୍ଦିରର ପରିମଳ ବ୍ୟବସ୍ଥା । ବର୍ତ୍ତମାନର ଶ୍ରୀମନ୍ଦିରର ପ୍ରଶାସକଙ୍କ ସମୟରେ ଅବଶ୍ୟ ବହୁତ କିଛି ଉନ୍ନତି ହୋଇଛି । ଅନେକ ସ୍ଥାନରେ ଲେଖାଯାଇଛି– ମନ୍ଦିର ପରିସର ପରିଷ୍କାର ରଖନ୍ତୁ, ଅଳିଆ ଆବର୍ଜ୍ଜନା ଛେପ ଖଙ୍କାର ପକାନ୍ତୁ ନାହିଁ, ପକାଇଲେ ଜୋରିମାନା । କିନ୍ତୁ ପ୍ରକୃତରେ ହେଉଛି କ'ଣ ? ମନ୍ଦିରର ସ୍ଥାନେ ସ୍ଥାନେ ଏତେ ଛେପ ଖଙ୍କାର ପଡିଛି ଯେ ସେ ସ୍ଥାନରେ ପ୍ରକୃତରେ କ'ଣ ଥିଲା ଜଣା ପଡୁନି । ତାର ରଂଗ, ଗଢଣ ସବୁ ବଦଳି ଯାଇଛି । ଅନେକ ସ୍ଥାନରେ ଅଳିଆ ଆବର୍ଜନା ଏତେ ପରିମାଣରେ ଏମିତି ଅବସ୍ଥାରେ ପଡିଛି ଯେ ଦେଖିଲେ କଷ୍ଟ ଲାଗୁଛି, ଦୁଃଖ ଲାଗୁଛି । ବାହାରର ଯାତ୍ରୀ ଆଉ ଥରେ ଆସିବାକୁ ଇଚ୍ଛା କରିବେ ତ ? ଏଥିପାଇଁ ବେଶୀ କିଛି ଖର୍ଚ୍ଚ ହେବନି ପରିଶ୍ରମ ମଧ ହେବନି, ଅଳ୍ପ କିଛି ପରିଶ୍ରମ/ ଖର୍ଚ୍ଚରେ ଏ କାର୍ଯ୍ୟ ହୋଇପାରିବ । ଅସଲ କଥା ଇଚ୍ଛାଶକ୍ତି/ ଆନ୍ତରିକତାର ଅଭାବ । ସବୁଖାଲି ଶ୍ରୀମନ୍ଦିର ପ୍ରଶାସନ ଉପରେ ଛାଡି ଦେଲେ ହେବ ନାହିଁ ।

ପ୍ରଶସ୍ତ ଆନନ୍ଦ ବଜାର ପଡିଛି ପ୍ରସାଦ ସେବନ ପାଇଁ । ମାତ୍ର ଦେଖା ଯାଉଛି ମନ୍ଦିର ଭିତର ବେଢାରେ ବହୁତ ସ୍ଥାନରେ ଯାତ୍ରୀମାନେ ପ୍ରସାଦ ସେବନ କରୁଛନ୍ତି । ଅଇଁଠାପତ୍ର, କୁଡୁଆ ସବୁ ସେଠାରେ ସେମିତି ପକାଇ ଚାଲି ଯାଉଛନ୍ତି । ଯଦିଓ ଭିତର ବେଢାରେ ସବୁଆଡେ ଲେଖା ହୋଇଛି, ଏଠାରେ ପ୍ରସାଦ ସେବନ ନିଷେଧ । କିନ୍ତୁ ଶୁଣୁଛି କିଏ ? ସେଠାରେ ସିନା ସୁଆର/ ସେବକ ମାନେ ଅଭଡା ବିକୁଛନ୍ତି ବୋଲି ଲୋକ ଖାଉଛନ୍ତି । ସେଠାରେ ବିକ୍ରି ସଂପୂର୍ଣ୍ଣ ନିଷେଧ ହୋଇଗଲେ ତ ଏ ସମସ୍ୟା ରହନ୍ତା ନାହିଁ ।

କିନ୍ତୁ ଏ କଥା କରିବ କିଏ, ଶୁଣିବ କିଏ ? ଠାକୁର ରହିଲେ ସିନା ତୁମେ ରହିବ !

ହାତଧୂଆ ସ୍ଥାନ ସନ୍ନିକଟ ମେଘନାଦ ପ୍ରାଚୀର କଡର ଅବସ୍ଥା ଅନିର୍ବଚନୀୟ । ଓଳି, ଭଂଗାହାଣ୍ଡି, କୁଡୁଆ, ଅଇଁଠାପତ୍ର, ବଳିଥିବା ଅଭଡା ଇତ୍ୟାଦିର ସିଏ ଏକ ମେଳା । ଏଠାରେ କେତେକ ଯାତ୍ରୀ ଖଣ୍ଡିଆ ଖାବରା ହେବାର ମଧ୍ୟ ନଜିର ଅଛି । ବିଶ୍ୱ ପ୍ରସିଦ୍ଧ ମନ୍ଦିର ବୋଲି କହୁଛେ, ସେଇ ଭିତରେ ଅପରିଷ୍କାର କରୁଛେ, ଏ କଥା ଭାବିଲେ ମଥା ଘୂରି ଯାଉଛି । ସେଠାରେ ଯଦି ଅତ୍ୟାଧୁନିକ ପରିସ୍ରାଗାର ନିର୍ମାଣ କରାଯାଇ ଉପଯୁକ୍ତ ରକ୍ଷଣାବେକ୍ଷଣ କରାଯାଆନ୍ତା, ତା' ହେଲେ ଏକ ବିସ୍ତୀର୍ଣ୍ଣ ଅଂଚଳ ନଷ୍ଟ ହେବାରୁ ଏବଂ ଦୁର୍ଗନ୍ଧରୁ ରକ୍ଷା ପାଇଯାଆନ୍ତା ।

ସିଂହଦ୍ୱାର ପୂର୍ବରୁ ଗୋଡଧୁଆ (ପାଦପ୍ରକ୍ଷାଳନ) ସ୍ଥାନରେ ସମୟେ ସମୟେ ଜଳର ଘୋର ଅଭାବ । ମୁହଁ ଧୋଇବା ଓ ଗୋଡ଼ଧୁଆ ସ୍ଥାନରେ ଜଳ ଯୋଗାଣ ଅତ୍ୟାବଶ୍ୟକ । ଅବଶ୍ୟ ଏ ସମସ୍ୟା ସାମୟିକ, ଚଳନୀୟ । ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା କରାଯାଇ ପାରିଲେ କେତେ ସୁନ୍ଦର ଦେଖାଯାଆନ୍ତା । ଆଉ ଗୋଟେ କଥା । ସେ ଭିତରେ ଏତେ ଯାତ୍ରୀ ହୁଅନ୍ତି ଯେ ସମୟେ ସମୟେ ଠିଆ ହେବାକୁ ଜାଗା ନ ଥାଏ । ସେ ଭିତରେ ପବନ ଚଳାଚଳର ସେମିତି ସୁବିଧା ନାହିଁ । ସମୟେ ସମୟେ ପ୍ରବଳ ଗରମ । ଏ.ସି.ର ବ୍ୟବସ୍ଥା ନ ହେଲେ ମଧ୍ୟ ବଡ ବଡ ବିଦ୍ୟୁତ ପଙ୍ଖାର ବ୍ୟବସ୍ଥା କରାଯାଇପାରିବ । ଠାକୁରଙ୍କ ପାଖରେ ଯାତ୍ରୀମାନେ ଅନ୍ତତଃ ଆନନ୍ଦ ଅନୁଭବ କରି ପାରନ୍ତେ ।

ଓଡିଆଙ୍କର ସର୍ବପ୍ରଥମ ଓ ସର୍ବୋଚ୍ଚ ଅନୁଷ୍ଠାନ ଶ୍ରୀମନ୍ଦିରର ନିରାପତ୍ତା କଥା ବିଚାର କରାଯାଉ । ସର୍ବତ୍ର ନିରାପତ୍ତା ନିମନ୍ତେ କଡାକଡି ବ୍ୟବସ୍ଥା କରାଯାଉଛି । ଆମ ଦେଶ ତଥା ରାଜ୍ୟରେ ସବୁଆଡେ ନିରାପତ୍ତା ନିମନ୍ତେ ଧ୍ୟାନ ଦିଆଯାଉଛି । ଶ୍ରୀମନ୍ଦିରର ସିଂହଦ୍ୱାର ଅନ୍ୟ ତିନି ଦ୍ୱାର (ବ୍ୟାଘ୍ର ଦ୍ୱାର, ହାତୀ ଦ୍ୱାର ଓ ଘୋଡା ଦ୍ୱାର) ଓ ମନ୍ଦିର ଭିତରେ ଶ୍ରୀମନ୍ଦିର ପୋଲିସ ଏବଂ ଓଡିଶା ପୋଲିସ୍ (ସଶସ୍ତ୍ର ବାହିନୀ ସହିତ) ସୁରକ୍ଷା ଦାୟିତ୍ୱରେ ଅଛନ୍ତି । ସୁରକ୍ଷା କଥା ଆସିଲେ ପରସ୍ପରର ଦୋଷ ନ ଦେଇ ଆନ୍ତରିକତାର ସହ ଠାକୁରଙ୍କୁ ଜଗିବା ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।

ଏବେ ଠାକୁରଙ୍କ ରାଜସ୍ୱ । କୁହାଯାଏ ଜଗନ୍ନାଥଙ୍କର ଅଚଳାଚଳ ଭୂ–ସମ୍ପତ୍ତି ଓଡିଶାରେ । ରାଜ୍ୟ ବାହାରେ ବିଦେଶରେ ମଧ୍ୟ । ଓଡିଶାରେ ଯେତିକି ଭୂସମ୍ପତ୍ତି ଅଛି, ସେଥିରୁ ବହୁଭାଗ ଜବରଦଖଲରେ, ଅନ୍ୟ କଥା ପଚାରେ କିଏ ? ଅବଶ୍ୟ କିଛି କିଛି ଜମି ଜବରଦଖଲରୁ ଠାକୁରଙ୍କ ନିକଟକୁ ଫେରିବା ଅତି ଖୁସିର କଥା । ଠାକୁରଙ୍କର ଦୈନନ୍ଦିନ ଆୟ (ହୁଣ୍ଡିରୁ) ମଧ୍ୟ ଧୀରେ ଧୀରେ ବଢୁଥିବା ଏକ ଶୁଭ ଲକ୍ଷଣ । ଆପଣମାନେ ସବୁଦିନ ସମ୍ବାଦପତ୍ରରେ ଦେଖୁଥିବେ ପ୍ରତ୍ୟହ ଆୟ ହୁଣ୍ଡିରୁ । ଏହାବାଦ ପ୍ରତିଦିନ ଭକ୍ତମାନେ ଠାକୁରଙ୍କ ନିକଟରେ ଅନେକ ଟଙ୍କା ପଇସା ଗହଣା ଗାଣ୍ଡି ଏବଂ ଅନ୍ୟାନ୍ୟ ଜିନିଷ ଦାନ କରୁଛନ୍ତି । କିନ୍ତୁ ମନେ ରଖିବାକୁ ହେବ ଠାକୁର ରହିଲେ ଠାକୁରେ ବଂଚିଲେ ଏ ଜାତି ବଂଚିବ, ଏ ଜାତି ରହିବ, ଆମେ ବଂଚିବା ଆମେ ରହିବା ।

ଏବେ ସମୟ ଆସିଛି । ଓଡିଶାର ଘରେ ଘରେ ଜଗନ୍ନାଥ ହୁଣ୍ଡି ପ୍ରତିଷ୍ଠା କରାଯାଉ । ଏହା କେହି କାହାକୁ କହିବାକୁ ପ୍ରବର୍ତ୍ତାଇବାକୁ ପଡିବ ନାହିଁ । ପ୍ରତି ପରିବାର ଦୈନିକ ଏକଟଙ୍କା (ବେଶୀ ନୁହଁ) ଜଗନ୍ନାଥଙ୍କ ପାଇଁ ରଖିବେ, ସେଇ ପଇସା ନିୟମିତ ବ୍ୟବଧାନରେ ଠାକୁରଙ୍କ ନିକଟକୁ ପଠାଯିବାର ବନ୍ଦୋବସ୍ତ କରାଯିବ । ଚାଷୀ ମୂଲିଆ, ଗରିବ, ଖଟିଖିଆ ଛାତ୍ର ଶିକ୍ଷକ, ଚାକିରିଆ, ମଜୁରିଆ ଏପରିକି ଭିକାରି ବି ଦେବେ ଦୈନିକ ଏକଟଙ୍କା ଜଗନ୍ନାଥ ସ୍ୱାମୀଙ୍କୁ ଦେବାକୁ କିଏ ବା କାହିଁକି ନ ଚାହିଁବ ? ଏ ପବିତ୍ର କର୍ତ୍ତବ୍ୟ ସମସ୍ତେ ଅତି ଆଗ୍ରହ ଉତ୍ସାହ ଉଦ୍ଦୀପନାର ସହିତ କରିବାକୁ ଆଗେଇ ଆସିବେ । ଏମିତି ହେଲେ ଆମ ଠାକୁର କେବେ ବି ଉପାସରେ ରହିବେ ନାହିଁ । ତାଙ୍କ ନୀତି କେବେ ବନ୍ଦ ହେବ ନାହିଁ, ଆମ ଠାକୁର କେବେ ଗରିବ ରହିବେ ନାହିଁ । ବଡଠାକୁରଙ୍କର ଉନ୍ନତି ହେଲେ ଏ ଜାତିର ଉନ୍ନତି, ଆମ ସମସ୍ତଙ୍କର ଉନ୍ନତି ହେବ ।

ଆମର ଏହି ମହାନ ଜଗନ୍ନାଥ ସଂସ୍କୃତିକୁ ବଂଚାଇବା ନିମନ୍ତେ ସମ୍ମିଳିତ ଉଦ୍ୟମ ଲୋଡା । ଏଇ ଜଗନ୍ନାଥ ଭାବନା, ଜଗନ୍ନାଥ ଚେତନାକୁ ପ୍ରଚାରିତ, ପ୍ରସାରିତ ପରିବ୍ୟାପ୍ତ କରିବାକୁ ହେବ ଦେଶ ବିଦେଶରେ, ଆନ୍ତର୍ଜାତିକ ସ୍ତରରେ । ଆମ ଏ ଠାକୁର ସିନା ଆମର ଅତି ନିଜର ଜଗାକାଳିଆ । ମାତ୍ର ଏ ଠାକୁର ଅସାଧାରଣ । ଏପରି ଠାକୁର ଆଉ କୋଉଠି ବି ଦେଖା ନାହାଁନ୍ତି । ଆମର ଠାକୁର ଛେଚା କଚାଖାଇ, ଗାଳିମନ୍ଦ, ଶୋଧା ବକା ସବୁ ଶୁଣି ସେମିତି ବଧୁଲି ଅଧରରେ ହସୁ ଥାଆନ୍ତି । ଚକା ଚକା ଆଖିରେ କଣେଇ କଣେଇ ଅନାଉଥାଆନ୍ତି । ଏମିତି କୋଉଠି ଠାକୁର ଅଛନ୍ତି ? ମଣିଷ ଭଳି ପାଣିରେ ଭିଜି ରୋଗରେ ପଡନ୍ତି । କତରାଲାଗି ହୁଅନ୍ତି ଔଷଧ ଖାଆନ୍ତି, ପାଚନ ପାଣି ପିଅନ୍ତି । ପନ୍ଦର ଦିନ ଜ୍ୱର ଭୋଗି ଆରୋଗ୍ୟ ହୁଅନ୍ତି । ସୁସ୍ଥ ହୋଇ ନୂଆ ବେଶରେ ଭକ୍ତ ଗଣଙ୍କୁ ଦର୍ଶନ ଦିଅନ୍ତି । ସାଧାରଣ ଯୋଦ୍ଧା ବେଶରେ କଳାଧଳା ଘୋଡା ଚଢି ଗଜପତିଙ୍କ ସପକ୍ଷରେ ଯୁଦ୍ଧ

କରି ଏ ଜାତିର ଟେକ ରଖନ୍ତି । ସାଧାରଣ ଭକ୍ତଙ୍କୁ ଦେଖା ଦେବା ଲାଗି, ତାର ଆଦର ଅଭ୍ୟର୍ଥନା ପାଇବା ଲାଗି ଶ୍ରୀମନ୍ଦିରରୁ, ରତ୍ନ ବେଦୀରୁ ଓହ୍ଲାଇ ଆସନ୍ତି ବଡଦାଣ୍ଡକୁ ଭକ୍ତ ମେଳକୁ । ଏଭଳି ଜୀଅନ୍ତା ଠାକୁର ଆଉ କୋଉଠି ଅଛନ୍ତି ଭଲା ।

ସମସ୍ତେ ଏ ପୀଠର, ଏହି ଠାକୁରଙ୍କର, ଏଇ ସନାତନ ଧର୍ମର ଜୟଗାନ କରିଛନ୍ତି । ଠାକୁର ଯଦି ସମସ୍ତଙ୍କୁ ଦେଖା ଦେବାକୁ ଚାହାଁନ୍ତି, ଆମେ କାହିଁକି ସେଥିରେ ବାଧକ ହେବା । ମହାନ୍ ଭାରତୀୟ ସଂସ୍କୃତିରେ କିପରି ଭାଇ ଭଉଣୀ ସମସ୍ତେ ଏକାଠି ବସି ପୂଜା ପାଆନ୍ତି ବଳିଆରଭୁଜଙ୍କୁ ଦେଖି ସମସ୍ତେ ସେ ଭାବନାର ଅନୁଭବ କରିପାରିବେ । ପୃଥିବୀ ସାରା ଜଗନ୍ନାଥ ସଂସ୍କୃତିର ବାସ ଚହଟିଯିବ । ଏଇ ସୁଯୋଗରେ ଓଡିଆ ଜାତିଟା, ଓଡିଶା ମାଟି ଧନ୍ୟ ହୋଇଯିବ । ସେଇ ସଂସ୍କୃତିର ଅଂଶ ସ୍ୱରୂପ ଆମେ ଧନ୍ୟ ହୋଇଯିବା । ସେଇ ହେବ ଜଗନ୍ନାଥ ଭାବନାର, ଜଗନ୍ନାଥ ସଂସ୍କୃତିର ଦୁନିଆକୁ ମହତ ଦାନ, ମହାନ୍ ଅବଦାନ ।

ଭୋଇ ନଗର
ଭୁବନେଶ୍ୱର

# ବଡ଼ଦାଣ୍ଡ

**ଗୀତାଞ୍ଜଳି ପଣ୍ଡା**



ତୋ' ପାଦ ଶରଣ ପାଇଛି ବୋଲିତ
ବଡଦାଣ୍ଡ ନାଆଁ ମୋର
ସେଥିପାଇଁ ମଥା ଢାଳି ଦେଇଛି ମୁଁ
ବାଇଶି ପାହାଚେ ତୋର
କେଡେ ଭାଗ୍ୟବନ୍ତ ହୋଇଥିବ ସେଇ
ଅଯୋଧ୍ୟାର ଦାଣ୍ଡ ଧୂଳି
କେମିତି ସୁନ୍ଦର ଦିଶୁଥିବ ତହିଁ
ଚାଲିଥିବୁ ଢଳିଢଳି
ତୋ' ପାଦରୁ ଝରି ସେ ପବିତ୍ର ଧୂଳି
ଭରିଯାଇଛି ମୋ ଶିର ବଡଦାଣ୍ଡ ନାଆଁ ମୋର ।

ପାଦରେ ନୂପୁର ରୁଣୁଝୁଣୁ ଶୁଭେ
ଚାଲିଥିବୁ ଗୋପଦାଣ୍ଡେ
ସେ ମାଧୁରୀ ରସ ଝରି ପଡୁଥିବ
ଗୋପୀ ଗୋପାଳଙ୍କ ତୁଣ୍ଡେ,
ଶରଧା ବାଲିରେ ଢାଳିଦେଇଛୁ ତୁ
ସେ ପାଦେ ଅମୃତ ଧାର,
ବଡଦାଣ୍ଡ ନାଆଁ ମୋର ।

ଯେଉଁଠି ଚରଣ ପରଶ ଦେଇଛୁ
ଛାଡି ପଳାଇଛୁ ତାକୁ
ମିନତି କରୁଛି ଛାଡିବୁନି କେବେ
ମୋଦେହ ଶ୍ରୀକ୍ଷେତ୍ର ବୁକୁ
ବରଷକେ ଥରେ ହେଉପଛେ ଦେବୁ
ଚରଣ ପରଶ ତୋର
ବଡଦାଣ୍ଡ ନାଆଁ ମୋର ।

ଦୋଳମଣ୍ଡପ ସାହି
ପୁରୀ–୧

# ରସ ଓ ରହସ୍ୟର ସ୍ନିଗ୍ଧ ସ୍ୱରୂପଃ ଶ୍ରୀଜଗନ୍ନାଥ

ସନ୍ତୋଷ କୁମାର ନାୟକ

ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରର ଦେବତା ନୁହେଁ, ସେ ସମଗ୍ର ବିଶ୍ୱର ଦେବତା ବଡ଼ଠାକୁର । ଶ୍ରୀଜଗନ୍ନାଥ ନାମ ବା ଶବ୍ଦଟି ଏକ ଅସୀମ ଅର୍ଥବାହୀ ତତ୍ତ୍ୱ ସ୍ୱରୂପ । ଧର୍ମ–ଦର୍ଶନ–ତତ୍ତ୍ୱ –ଶାସ୍ତ୍ର ତଥା ସାହିତ୍ୟ ଦୃଷ୍ଟିରୁ ଶ୍ରୀଜଗନ୍ନାଥ ଶବ୍ଦଟି ଅତୀବ ଗୁରୁତ୍ୱପୂର୍ଣ୍ଣ । ଶ୍ରୀଜଗନ୍ନାଥ ନାମରେ ପବିତ୍ରତା ରହିଛି । ଶ୍ରୀଜଗନ୍ନାଥ ଶବ୍ଦରେ ସେ ଜଗତର ନାଥ ବା ସ୍ୱୟଂ ସେ ଜଗତ ବୋଲି କୁହାଯାଇଛି। ଜୈନମାନେ ନିଜର ପ୍ରତିପତ୍ତି ତଥା ଆଧିପତ୍ୟ ବିସ୍ତାର ନିମନ୍ତେ 'ଜଗନ୍ତ' ଶବ୍ଦରେ 'ନାଥ' ଯୋଡ଼ି 'ଜଗନ୍ତନାଥ' ବା ଜଗନ୍ନାଥ ଶବ୍ଦ ଗଢିବା କଥାକୁ ଡକ୍ଟର ବେଣୀମାଧବ ପାଢୀ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଦାରୁଦେବତା'ରେ ଆଲୋଚନାଭୁକ୍ତ କରିଛନ୍ତି। ପୁଣି ଜଗନ୍ନାଥଙ୍କର ଅନନ୍ୟ ବିଶେଷତ୍ୱ ହେଉଛି ସେ ସର୍ବଧର୍ମର ସମନ୍ୱୟ କେନ୍ଦ୍ର ବା ଅନ୍ୱିତି ପିଣ୍ଡ । ବୌଦ୍ଧ, ଜୈନ, ଶାବର, ବ୍ରାହ୍ମଣ୍ୟ, ହିନ୍ଦୁ ପ୍ରଭୃତି ଧର୍ମ–ଗୋଷ୍ଠୀ, ଜାତି ବା ସଂସ୍କୃତି ଶ୍ରୀଜଗନ୍ନାଥ ସଂସ୍କୃତିକୁ ଆପଣାର ବୋଲି ଦାବି କରନ୍ତି । ସେହିପରି 'ଜଗନ୍ତ' ଶବ୍ଦଟିର ଗୁରୁତ୍ୱ ଖୁବ୍ ଅଧିକ ଥିଲା ପରି ମନେହୁଏ । ବିଶେଷଜ୍ଞମାନଙ୍କ ମତରେ ଏହା ଏକ ଶାବର ଶବ୍ଦ । ଶବର ଜାତି ଓ ତଦୀୟ ସଂସ୍କୃତିର ପ୍ରାଚୀନତା ଓ ଏ ମାଟି ସହ ସଂପର୍କକୁ ଲକ୍ଷ୍ୟ କରି ଜଗନ୍ତ (ଶବର) ଜଗନ୍ନାଥ (ସଂସ୍କୃତ) ହେଲାପରି ମନେହୁଏ । ଜଗନ୍ତ ଶବ୍ଦର ଆକ୍ଷରିକ ଅର୍ଥ ଦେବତା ବା ଉପାସ୍ୟ ଈଶ୍ୱର ବା ଠାକୁର । ଜଗନ୍ତ ହେଉଛନ୍ତି ଶବରମାନଙ୍କର ମାନସ ଦେବତା ବା ପ୍ରତ୍ୟକ୍ଷ ଦେବତା । କିନ୍ତୁ ଈଶ୍ୱର, ଦେବତା ବା ଠାକୁର ପର୍ଯ୍ୟବାଚୀ ସୌରା (ସଉରା) ଶବ୍ଦଟି ହେଉଛି 'କିତୁଙ୍ଗ'। ଏଠାରେ 'କିତୁଙ୍ଗ' କଥା ଉଠିବାର ଯଥେଷ୍ଟ ପ୍ରାସଂଗିକତା ରହିଛି । ଏହାର ପ୍ରାସଂଗକିତା ଏହିକି ଯେ, ଏତଦ୍ୱାରା 'ଜଗନ୍ନାଥ' ଶବ୍ଦ ବା ନାମର ଯଥାର୍ଥ ସ୍ଥାନ ବା ସ୍ୱରୂପ ଏଠାରେ ତୁଳନାତ୍ମକ ଅଧ୍ୟୟନକ୍ରମେ ଆମ୍ଭେ ପାଇପାରିବା। ଶବର ବିଶ୍ୱାସାନୁସାରେ 'କିତୁଙ୍ଗ' ଏକ ସାଧାରଣ ଅର୍ଥବାଚୀ ଶବ୍ଦ ବା ନାମ । କିତୁଙ୍ଗଙ୍କ ଦଶଗୋଟି ଅଂଶ ବା ସ୍ୱରୂପ ରହିଥିବା କଥା ମଧ୍ୟ ଏଠାରେ ଜଣାଯାଏ। ସେହି ରୂପଗୁଡ଼ିକ ହେଉଛନ୍ତି– ୧. ଜଗନ୍ତ, ୨. ତୋଡ଼, ୩. ତୁମନ, ୪. ଭୀମ୍, ୫. ରଂରଂ, ୬. ଗର୍ସିଦ୍, ୭. ରାମନ୍, ୮. ଯୋଜେପଲ, ୯. ମଉ ଓ ୧୦. ତିତି । ଏମାନେ ଦଶଜଣ ପରସ୍ପର ଭାଇ ଭାଇ। ଏହିଠାରେ ଡକ୍ଟର ପାଢୀଙ୍କ ପରି ଅନେକ ବିଦ୍ୱାନ୍ ଜଗନ୍ନାଥଙ୍କର ଦଶାବତାର କଥାକୁ ଗ୍ରହଣ କରି ତୁଳନାତ୍ମକ ଭାବେ ଏହି ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଯେ ଶ୍ରୀଜଗନ୍ନାଥଙ୍କ ଦଶାବତାର ପଛରେ କିତୁଙ୍ଗଙ୍କର ବିବିଧ ଦଶରୂପ ରହିଛି। ଏହାର କାରଣ ଅନେକ ଗ୍ରନ୍ଥରେ ତଥା ଅନେକ ସାଂସ୍କୃତିକ ଦଲିଲ୍‌ରୁ ଆମ୍ଭେ ଜଗନ୍ନାଥଙ୍କୁ ଶବର ଦେବତା ରୂପେ ଅଭିହିତ କରିବାକୁ ଉଚିତ୍ ମନେକରୁ ।

ପୁରୀର ଜଗନ୍ନାଥଙ୍କ ରଥଯାତ୍ରାକୁ କେହି କେହି ଦକ୍ଷିଣ ଭାରତର ବିଷ୍ଣୁ ମନ୍ଦିରର କଲ୍ୟାଣ ଉତ୍ସବ ଅନୁକରଣରେ କିମ୍ବା ବୌଦ୍ଧ ରଥଯାତ୍ରାର ଅନୁକରଣରେ ହୋଇଛି ବୋଲି କହନ୍ତି। ଜଗନ୍ନାଥ ଓଡ଼ିଆଙ୍କ ବିଶ୍ୱାସର ବା ପ୍ରତ୍ୟୟର ପ୍ରାଣକେନ୍ଦ୍ର । କେତେକ ଗବେଷକ ଜଗନ୍ନାଥଙ୍କ ଶ୍ରୀ, ସୌନ୍ଦର୍ଯ୍ୟ ଓ ବିଶେଷକରି ବୈଚିତ୍ର୍ୟକୁ ଲକ୍ଷ୍ୟକରି ତାଙ୍କୁ ଶାବର ସଂସ୍କୃତିର ପ୍ରାଣପିଣ୍ଡ ଶବର ଦେବତା, ବୌଦ୍ଧଙ୍କ ତ୍ରିତତ୍ତ୍ୱ, ଜୈନଙ୍କ ତ୍ରିରତ୍ନ, ତାନ୍ତ୍ରିକମାନଙ୍କ ଦକ୍ଷିଣକାଳୀ, ଗାଣପତ୍ୟଙ୍କ ଗଣପତି, ବୈଷ୍ଣବଙ୍କ ଶ୍ରୀକୃଷ୍ଣ, ଶୈବଙ୍କ ଭୈରବ ବୋଲି କହି ତତ୍‌ସହ ସମନ୍ୱିତ କରିଥାନ୍ତି। ବୁଦ୍ଧ, ଧର୍ମ ଓ ସଂଘ ସହ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଦି ତ୍ରିମୂର୍ତ୍ତିଙ୍କର ସାମଞ୍ଜସ୍ୟକୁ ନେଇ ଅନେକ ଆଲୋଚନା ମଧ୍ୟ କରାଯାଇଅଛି । ତେବେ ସର୍ବୋପରି ଶ୍ରୀଜଗନ୍ନାଥ କ୍ଷେତ୍ର, ଶ୍ରୀକ୍ଷେତ୍ର । ପୁଣି ଏହା ଯେ ସର୍ବଧର୍ମର ସମନ୍ୱୟ କ୍ଷେତ୍ର– ଏଥିରେ ଦ୍ୱିରୁକ୍ତି ମାତ୍ର ନାହିଁ ।

ଶ୍ରୀଜଗନ୍ନାଥ ଯେ କେବଳ ରହସ୍ୟବାଦୀ ଚେତନାଧର୍ମୀ ତାହା ନୁହେଁ, ସେ ମଧ୍ୟ ସ୍ନିଗ୍ଧ, ଶାନ୍ତ, କ୍ଳାନ୍ତ–କମନୀୟ, ଚିରନ୍ତନ

ରୂପର ଅଧିକାରୀ । ତ୍ରିଭୁବନରେ ସେ ସବୁଠାରୁ ଅଧିକ ସୁନ୍ଦର । ସେ ଖାଲି ମର୍ଯ୍ୟାଦା ପୁରୁଷୋତ୍ତମ ନୁହଁନ୍ତି । ସେ ମଧ ସୌନ୍ଦର୍ଯ୍ୟର ସୌଦାଗର ବା ସୌନ୍ଦର୍ଯ୍ୟସିନ୍ଧୁ । ଏଣୁ ଅନେକ କବି ବା ଭକ୍ତମାନେ ନିଜ ନିଜ ସାହିତ୍ୟ କିଆରିରେ ଶ୍ରୀଜଗନ୍ନାଥଙ୍କ ଶ୍ରୀକୃପା ବୋଳିତ ଶସ୍ୟ ବିପନ କରି ନିଜର ଓ ଭାଷା–ସାହିତ୍ୟର ଆକାଶ ଓ ଜଗତକୁ ପୁଷ୍କଳ କରିଯାଇ ଅଛନ୍ତି ମାତ୍ର । ଏଠାରେ ବକ୍ତବ୍ୟ ଯେ, କେବଳ ଓଡ଼ିଆ କାହିଁକି ଅନ୍ୟାନ୍ୟ ଭାଷା ସାହିତ୍ୟରେ ମଧ ଶ୍ରୀଜଗନ୍ନାଥଙ୍କୁ ଏପରି ରୂପ ବୈଚିତ୍ର୍ୟ, ସୌନ୍ଦର୍ଯ୍ୟ ପ୍ରଭୃତିର ସୌଦାଗର ରୂପେ ଦେଖିବାକୁ ପାଇଥାଉ । ଆଦିଯୁଗରୁ ସାହିତ୍ୟ ବା ସମାଜରେ ଶ୍ରୀଜଗନ୍ନାଥଙ୍କୁ ବିବିଧ ରୂପ ଓ ରହସ୍ୟ ସହ ଆମ୍ଭେ ବିଭିନ୍ନ ସ୍ଥାନରେ ପ୍ରତ୍ୟକ୍ଷ କରିଥାଉ– ଏଥିରେ ସଂନ୍ଦେହ ନାହିଁ । ପରିଶେଷରେ, ନୀତି ଓ ଭିତ୍ତି ଦୃଷ୍ଟିରୁ ରହସ୍ୟମୟ ତନ୍ତ୍ର ସଂସ୍କୃତିର ଶ୍ରୀମୟ ଶ୍ରୀଜଗନ୍ନାଥ ସଂସ୍କୃତି ସହ ଯେ ସମନ୍ୱିତି ରହିଛି ଏକଥାକୁ ନିଦ୍ୱନ୍ଦ୍ୱରେ ସ୍ୱୀକାର କରାଯାଇପାରେ ।

ଶ୍ରୀଜଗନ୍ନାଥ ତତ୍ତ୍ୱ ଅତୀବ ବିସ୍ମୟକର ଏବଂ ପ୍ରତିପାରସ୍ପରିକ । ଜ୍ଞାନମିଶ୍ରା ଭକ୍ତି ଓ ଯୋଗ ସାଙ୍ଗକୁ ଜଗନ୍ନାଥ ତତ୍ତ୍ୱ ହେଉଛି ପଞ୍ଚସଖା ଧର୍ମର ତ୍ରିବେଣୀ ତତ୍ତ୍ୱ । ଜଗନ୍ନାଥଙ୍କ ବ୍ରହ୍ମତ୍ତ୍ୱ ସଂପର୍କରେ ପଞ୍ଚସଖା ସାହିତ୍ୟରେ ରୀତିମତ ଆଲୋଚନା ହୋଇଥିବାର ଦେଖାଯାଏ । ଜଗନ୍ନାଥ ସାକାର ଓ ନିରାକାର ସେ ସଗୁଣ ଓ ନିର୍ଗୁଣ, ସେ ସନାତନ । ସର୍ବାନ୍ତକରଣରେ ସେ ସବିଶେଷ ଓ ନିର୍ବିଶେଷ । ଏହିଠାରେ ବୌଦ୍ଧ–ଶୂନ୍ୟବାଦର କଥା ମନେ ପଡ଼ିଯାଏ, କାରଣ ଏଥିରେ ରହିଛି ଉଭୟ ବାଦ ମଧ୍ୟସ୍ଥ ପ୍ରଭୂତ ସାମ୍ୟ । ଖାଲି ଏତିକି ନୁହେଁ, ଏଠାରେ ବୈଦିକ ଧର୍ମର ପ୍ରଭାବ ମଧ ସ୍ପଷ୍ଟ ପ୍ରାଞ୍ଜଳ । ସକ୍ରିୟ ବ୍ରହ୍ମତତ୍ତ୍ୱ କୁ ନେଇ ପଞ୍ଚସଖାର ଶ୍ରୀଜଗନ୍ନାଥ ଚେତନା ପରିପୁଷ୍ଟ । ଜଗନ୍ନାଥଙ୍କୁ କବି ସ୍ୱୟଂ ଏକାକ୍ଷର, ଓଁକାର ସହ ତୁଳନା ବା ଅଭେଦ କଳ୍ପନା କରିଅଛନ୍ତି । ସେ ଏକାକ୍ଷର ବ୍ରହ୍ମ ଓ ଦାରୁବ୍ରହ୍ମ । ସର୍ବବେଦାନ୍ତରେ ସେ ସାରତତ୍ତ୍ୱ । ସେ ଅବର୍ଣ୍ଣନୀୟ ବା ବର୍ଣ୍ଣନାତୀତ ପରଂବ୍ରହ୍ମ ।

ରସ ଶାସ୍ତ୍ରାନୁସାରେ ଯେଉଁ ଦଶ ରସର ଅଭିବ୍ୟକ୍ତି ରହିଛି, ସେସବୁର ଅଧିପତି ହେଉଛନ୍ତି ଶ୍ରୀଜଗନ୍ନାଥ ମହାପ୍ରଭୁ । ଆଦିରସ ବା ରସରାଜ ଶୃଙ୍ଗାରର ଅଧିପତି ହେଉଛନ୍ତି ଶ୍ରୀବିଷ୍ଣୁ ବା ଶ୍ରୀଜଗନ୍ନାଥ । ପୁଣି ଜଗନ୍ନାଥଙ୍କ ପ୍ରସଂଗରେ ସର୍ବଦେବାଦେବୀଙ୍କ ଅଭେଦତ୍ୱ ତାଙ୍କଠାରେ ବିଲୀନ ହେଲାବେଳେ ସେ ହୁଅନ୍ତି ସର୍ବରସର ଅଧିପତି । ସମଗ୍ର ଓଡ଼ିଶା ଓ ଉଡ଼ଡୀୟାନ୍ ପୀଠର ଆରାଧ ଶ୍ରୀଜଗନ୍ନାଥ ରସମାନଙ୍କର ଅଧିପତି । ବିଭିନ୍ନ ସମୟରେ ବିଭିନ୍ନ ଅବତାର ଗ୍ରହଣ କରି ସେ ବିଭିନ୍ନ ରସାବତାରଣା କରିଛନ୍ତି । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟ (ଲୋକ ସାହିତ୍ୟ ଓ ବିଦଗ୍ଧ ସାହିତ୍ୟ) ଧାରାରେ ରସମାନଙ୍କ ଧାରା ନିରବଧି ପ୍ରବାହିତା ଲୋକ ସାହିତ୍ୟଠାରୁ ଆରମ୍ଭ କରି ଶିଳାଲେଖ ବା ଅଭିଲେଖ ସାହିତ୍ୟ, ଚର୍ଯ୍ୟାପଦ ବା ବୌଦ୍ଧଗାନ ଦୋହା ସାହିତ୍ୟ, ସାରଳା ସାହିତ୍ୟ, ପଞ୍ଚସଖା ସାହିତ୍ୟ, ରୀତି ସାହିତ୍ୟ ଏବଂ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ସବୁଠାରେ ଶ୍ରୀଜଗନ୍ନାଥ ବିଦ୍ୟମାନ । କେଉଁଠି ସେ ରହସ୍ୟମୟ ଚେତନାର ପୁଞ୍ଜି ତ ଅନ୍ୟ କେଉଁଠି ରସବାରିଧିର ପ୍ରମୁଖାଧିପତି । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟରେ ପ୍ରାୟ ସମସ୍ତ ବିଭାଗ ଓ ବିଭାବରେ ଊଣାଧିକେ ରଚନା ରହିଛି । ବିଶେଷକରି ପ୍ରାଚୀନ ସାହିତ୍ୟରେ ଶ୍ରୀଜଗନ୍ନାଥ ରସ ଉଦ୍‌ଗାରୀ ଦେବତା ରୂପେ ଦେଖାଯାନ୍ତି । ଅର୍ଥାତ୍ ପ୍ରାୟ ସମସ୍ତ ବିଭାଗରେ (ଯଥା କାବ୍ୟ, କବିତା, ଭଜନ, ଜଣାଣ, ଓଗାଳ, ପଟଳ, ପୋଇ, ଚଉପଦୀ, ଚଂପୂ, ଚଉତିଶା, ଷୋଡଶା, କୋଇଲି, ସ୍ତୁତି, ଚିଟାଉ, ବୋଲି, କାନ୍ଦଣା, ଢଗଢମାଳି, ରୁଢି, ପ୍ରବାଦ, ପ୍ରବଚନ ପ୍ରଭୃତିରେ) ଶ୍ରୀଜଗନ୍ନାଥଙ୍କ ସ୍ଥାନ ଅକ୍ଷତ ଓ ସ୍ୱତନ୍ତ୍ରାତୀବ ମନେହୁଏ ।

ସାରଳାଙ୍କ ବିଭିନ୍ନ କାବ୍ୟରେ ଶ୍ରୀଜଗନ୍ନାଥ ଚେତନାକୁ ଲକ୍ଷ୍ୟ କରାଯାଉ ନଥିଲେ ହେଁ 'ମହାଭାରତ'ରେ ଶ୍ରୀଜଗନ୍ନାଥଙ୍କୁ ବେଶ୍ ଦେଖାଯାଏ । ସେହିପରି ପଞ୍ଚସଖା ସାହିତ୍ୟରେ ଶତାଧିକ ପଦ ମିଳିବ, ଯେଉଁଥିରେ ରସର ପ୍ରାଚୁର୍ଯ୍ୟମୟ ପରିଲକ୍ଷିତ ହୋଇଥାଏ । ଜଗନ୍ନାଥଙ୍କ 'ଭାଗବତ', ଅଚ୍ୟୁତାଙ୍କ 'ଶୂନ୍ୟ ସଂହିତା', ଚଣ୍ଡୀ ଦାସଙ୍କ 'ଦେଖିବ କଳାଧବଳ ରୂପ', ରଘୁ ଅରକ୍ଷିତଙ୍କ 'ଜୟ ଜୟ ଜଗନ୍ନାଥ ଜୟ ନାରାୟଣ', ସାଲବେଗଙ୍କ 'ଆହେ ନୀଳ ଶଇଳ', ଚକ୍ରଧର ହରିଚନ୍ଦନଙ୍କ 'ଦେଖିଲେ ଆନନ୍ଦ ହୋଇବ ମନ' ଦ୍ୱିଜ ସୁଦର୍ଶନ, ହାଡ଼ିଦାସ, ବିପ୍ର ଗଂଗାଧର, ଶ୍ୟାମ ଭଞ୍ଜ, ବିଷ୍ଣୁ ଦାସ, ଚାନ୍ଦ ଦାସ, ପ୍ରତାପ ରାୟ (ଶଶିସେଣା), ବଳରାମ ଦାସ, ଭ୍ରମରବର ଦେବ, ମୁକୁନ୍ଦ ଦେବ, ରାମଚନ୍ଦ୍ର ଦେବ, ଉପେନ୍ଦ୍ର ଭଞ୍ଜ, ଆରତ ଦାସ, ଯଶୋବନ୍ତ ଦାସ, ରସାନନ୍ଦ ନବଘନ ଚାନ୍ଦ, ପର୍ଶୁରାମ ବିହାରୀ, ଧରମୁ ଦାସ, ହୃଦାନନ୍ଦ ଦାସ, ହାଡ଼ି ଦାସ, ଶିଶୁ ଅନନ୍ତ ଦାସ, ଦିବାକର ଦାସ (ଶ୍ରୀଜଗନ୍ନାଥ ଚରିତାମୃତ), ଦୀନକୃଷ୍ଣ ଦାସଙ୍କ ଅନେକ ଭଜନ, ଜଣାଣ ଓ ରସକଲ୍ଲୋଳ ପରି କାବ୍ୟ, ମୁରାରି ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, ବୀର କେଶରୀ ଦେବ, ବନମାଳୀ ଦାସ, ଗୋପାଳକୃଷ୍ଣ ପଟ୍ଟନାୟକ, ସଦାନନ୍ଦ ବ୍ରହ୍ମା, ବନମାଳୀ ମଂଗରାଜ, ହୃଦାନନ୍ଦ ଦାଶ, ଦୀନ ପଟ୍ଟନାୟକ, ଘନ ଭଞ୍ଜ, ଆରତ ଦାସ, ପୁରୁଷୋତ୍ତମ ଦାସ, ଲୋକନାଥ ବିଦ୍ୟାଧର, ମଦନ ମୋହନ ରାଜସିଂ ଓ ବଲ୍ଲଭ ଦାସ ପ୍ରମୁଖଙ୍କ ବିଭିନ୍ନ ଭଜନ ଓ କବିତାରେ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ରସ ଅବତାରଣା କରିବାର

ଲକ୍ଷ୍ୟ କରିଥାଉ । ସେହିପରି ଆଧୁନିକ ସାହିତ୍ୟର ଅୟମାରମ୍ଭ କାଳରୁ ଅଦ୍ୟାବିଧି ବିଭିନ୍ନ ବିଭାବ ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ଆମ୍ଭେ ଭେଟୁ । ରାମଶଙ୍କରଙ୍କଠାରୁ ଆରମ୍ଭ କରି ଗଂଗାଧର, ଫକୀର ମୋହନ, ଗୋପବନ୍ଧୁ, ଗୋଦାବରୀଶ ମିଶ୍ର, ସୁରେନ୍ଦ୍ର ମହାନ୍ତି, ଫୁତୁରାନନ୍ଦ, ମହାପାତ୍ର ନୀଳମଣି ସାହୁ, ବିଚିତ୍ରାନନ୍ଦ କର, ଲୋକରନ୍ କୁଞ୍ଜବିହାରୀ ଦାଶ, ଗୁରୁକୃଷ୍ଣ ଗୋସ୍ୱାମୀଙ୍କ ସୃଷ୍ଟିମାନସରେ ଶ୍ରୀଜଗନ୍ନାଥ ବିଦ୍ୟମାନ । ଶ୍ରୀଜଗନ୍ନାଥଙ୍କୁ ନେଇ ବା ଶ୍ରୀଜଗନ୍ନାଥ ଚେତନା ଓ ସଂସ୍କୃତିକୁ ନେଇ ଆର୍ତ୍ତବଲ୍ଲଭଙ୍କଠାରୁ ବେଣୀମାଧବ ପାଢୀ, କାହ୍ନୁଚରଣ ମିଶ୍ର, ପଠାଣି ପଟ୍ଟନାୟକ, ଡକ୍ଟର ବାସୁଦେବ ସାହୁ, ଜାନକୀ ବଲ୍ଲଭ ମହାନ୍ତି, ଡକ୍ଟର ହରିଶ୍ଚନ୍ଦ୍ର ବେହେରା, ଡକ୍ଟର ହରିହର କାନୁନ୍‌ଗୋ, ଦେବୀପ୍ରସନ୍ନ ପଟ୍ଟନାୟକ, କେଦାରନାଥ ମହାପାତ୍ର, ସୁରେନ୍ଦ୍ର କୁମାର ମହାରଣା, ବଂଶୀଧର ମହାନ୍ତି, ପ୍ରଫେସର ଜଗନ୍ନାଥ ମହାନ୍ତି, ରବୀନ୍ଦ୍ର ମୋହନ ସେନାପତି ପ୍ରମୁଖ ବିବିଧ ଗବେଷଣାତ୍ମକ ପ୍ରବନ୍ଧ ରଚନା କରିଯାଇଥିବାର ଲକ୍ଷ୍ୟ ମଧ୍ୟ କରି ହେବ । ସାହିତ୍ୟ, ସଂସ୍କୃତି, ବିଶ୍ୱାସ, ସମାଜ, ଲୋକାଚାର ଆଦିରେ ଶ୍ରୀଜଗନ୍ନାଥ ସଂପୂର୍ଣ୍ଣ ରୂପେ ଅଧିଷ୍ଠିତ, ଏଥିରେ ଦ୍ୱିରୁକ୍ତି ନାହିଁ ।

ସର୍ବାନ୍ତକରଣରେ ଶ୍ରୀଜଗନ୍ନାଥ ବିଶ୍ୱମୁକ୍ତିର ପ୍ରତୀକ । ସେ ଅସରନ୍ତି ରହସ୍ୟ ଓ ଅସୀମ ରସସାଗରର ଅଧିକାରୀ । ଆଜିଯାଏ ତାଙ୍କର ମହିମା ସମୁଦ୍ରରୁ ଶଙ୍ଖେ ମଧ୍ୟ ବୁଝିପାରିନାହୁଁ । ସର୍ବୋପରି ଶ୍ରୀଜଗନ୍ନାଥ ମହାପ୍ରଭୁ ଭବିଷ୍ୟତରେ ମଧ୍ୟ ରହସ୍ୟ ଓ ରସର ଅଧିକାରୀ ହୋଇ ରହିବେ ଏଥିରେ ସନ୍ଦେହ ମାତ୍ର ନାହିଁ– ଏହା କେବଳ ଲେଖକୀୟ ପ୍ରତ୍ୟୟାନ୍ତର୍ଗତ ନୁହେଁ ବରଂ ବିଶ୍ୱ–ବିଶ୍ୱାସର ଅନ୍ତର୍ଧ୍ୱନି ଓ ଅନ୍ତର୍ବକ୍ତବ୍ୟ ମଧ୍ୟ ।

ବିଧୁଭୂଷଣ ମାର୍ଗ,
ବିକାଶ ନଗର, ଅଙ୍ଗାରଗଡ଼ିଆ
ବାଲେଶ୍ୱର– ୭୫୬୦୦୧

# ମନ ହଜିଯାଏ

**ଗଙ୍ଗାଧର ମହାନ୍ତି**

ମନ ହଜିଯାଏ ଛୁଇଁଦେଲେ ଟିକେ
ତୋ ବଡଦାଣ୍ଡର ଧୂଳି
ଦୁଃଖ ତାପ ଯେତେ ଅପସରି ଯାଏ
ସେ ଧୂଳି ମୁଣ୍ଡରେ ବୋଳି ।
ଭୁଲି ହୋଇଯାଏ ସଂସାରର ମାୟା
ପରଶି ଶ୍ରୀକ୍ଷେତ୍ର ଧାମ
ସାଧୁସନ୍ଥଙ୍କର ପଦରେଣୁ ପୂତ
ମହିମା ଯାର ଅସୀମ ।
ମନହଜିଯାଏ ଚାହିଁଦେଲେ ଥରେ
ତୋ ବଡ ଦେଉଳେ ନେତ
ଲାଖିରହେ ଆଖି ଦରଶନ କରି
କମନୀୟ କଳାମୁଖ ।
ପୂରିଉଠେ ପ୍ରାଣ ବୁଲିଗଲେ ଥରେ
ଶିରୀ ମନ୍ଦିରର ବେଢା





ତୃପ୍ତହୁଏ ଆତ୍ମା ଆନନ୍ଦ ବଜାରେ
ଆନନ୍ଦେ ଭୁଞ୍ଜି ଅବଢା ।
ତୋର ମାୟା ତୋତେ ଜଣା ସିନା ପ୍ରଭୁ
କଳନା ତୁଳନା କାହିଁ
ମନ ହଜିଯାଏ ଭାବି ତୋ ମହିମା
ଥଳକୂଳ ମିଳେ ନାହିଁ ।
ଏତିକି ଜଣାଣ କାଳିଆ ସାଆନ୍ତ
ପତିତ ଜନ ମୁଁ ଜଣେ
ବୁଡାଇ ରଖିଥା ତୋ ଭାବରେ ସଦା
ଚିତ୍ତ ଥାଉ ଶ୍ରୀଚରଣେ ।

ଅସଲପୁର, ପୋ–ଅମଠପୁର
ଯାଜପୁର

# ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା

**ରମେଶ ପ୍ରସାଦ ସିଂହ**

ନୀଳକନ୍ଦର ବା ନୀଳାଚଳ କ୍ଷେତ୍ର ସନାତନ ଧର୍ମ ସଂସ୍କୃତିର ଏକ ପୁରାତନ ପୀଠ । କାହିଁ କେତେକାଳରୁ ପରମବ୍ରହ୍ମ ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଏହି ପରମ ପବିତ୍ର ପୀଠର ମହାବେଦୀରେ ପୂଜା ପାଇ ଆସୁଛନ୍ତି ଏବଂ ଓଡ଼ିଶାର ମାଟି ଶ୍ରୀଜଗନ୍ନାଥ ସଂସ୍କୃତିରେ ସେହି ଅନାଦି କାଳରୁ ଋଦ୍ଧିମନ୍ତ ହୋଇ ଉଠିଛି । ସେବିଷୟରେ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରିବା ଅତ୍ୟନ୍ତ କଠିନ କାର୍ଯ୍ୟ । ଶ୍ରୀଜଗନ୍ନାଥ ଧର୍ମ, ସଂସ୍କୃତି ଓ ପରମ୍ପରା ବିଷୟରେ ଯେତେ ଗବେଷଣା କଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ପ୍ରାମାଣିକ ତଥ୍ୟ ଦେବା କେବେହେଲେ ସମ୍ଭବ ହୋଇନାହିଁ । ଗବେଷକ ଓ ଐତିହାସିକମାନେ କିମ୍ବଦନ୍ତୀ, ଲୋକ କଥା, ପୁରାଣ, ପରମ୍ପରା ଓ ଐତିହାସିକ ତଥ୍ୟ ତଥା ଶିଳାଲେଖକୁ ତର୍ଜମା କରି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ଆଧାତ୍ମିକ ଭାବର ଗଭୀର ସାଗର ମଧ୍ୟରେ ନିଜର ସତ୍ତା ହରାଇ ବସନ୍ତି ।

ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଶ୍ରେଷ୍ଠଯାତ୍ରାଭାଣ୍ଡରେ ଶ୍ରୀଗୁଣ୍ଡିଚା ଯାତ୍ରା ପୃଥିବୀ ପ୍ରସିଦ୍ଧ । ଶ୍ରୀମନ୍ଦିରଠାରୁ ଶ୍ରୀଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ମହାପ୍ରଭୁଙ୍କର ଏହି ନବଦିନ ଯାତ୍ରା ପଛରେ ଅନେକ କିମ୍ବଦନ୍ତୀ, ଅନେକ ଲୋକକଥା ଏବଂ ଦୀର୍ଘ ଇତିହାସ ରହିଛି ।

ମହାପ୍ରଭୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନରେ ମର୍ମାହତ ମହାରାଜ ତଥା ଯଜ୍ଞାନଳରୁ ଦୃଶ୍ୟମାନ ତେଜୋଦୀପ୍ତ ଯଜ୍ଞ ନୃସିଂହଙ୍କର ଦର୍ଶନରେ ଭୟଭୀତ ହୋଇ ପଡ଼ିଥିବା ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନ, ବ୍ରହ୍ମାଦି ଦେବଗଣ ତଥା ଦେବର୍ଷି ନାରଦାଦି ଋଷିଗଣଙ୍କ ବିନୀତ ଜଣାଣ ଯୋଗୁଁ ଯଜ୍ଞ ପୁରୁଷ ବା ଯଜ୍ଞ ନାରାୟଣଙ୍କ ଅପରୂପ କାନ୍ତି ଦର୍ଶନ କରି ବିମୋହିତ ହୋଇ ପଡ଼ିଲେ । ମାଳବର ବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଭକ୍ତି, ଶ୍ରଦ୍ଧା ତଥା ସାଧୁ ଉଦ୍ୟମରେ ପ୍ରସନ୍ନ ହୋଇ ଯଜ୍ଞାନଳରୁ ଆବିର୍ଭୂତ ଯଜ୍ଞନାରାୟଣ ମହାବିଷ୍ଣୁ, ଶଙ୍ଖକ୍ଷେତ୍ରର ଶ୍ରୀକନ୍ଦର (ନୀଳକନ୍ଦର, ନୀଳାଚଳ)ରେ ଶ୍ରୀମନ୍ଦିର ନିର୍ମାଣ କରି ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିବା ପାଇଁ ଆଦେଶ କଲେ । ସେଦିନ ଥିଲା ବୈଶାଖ ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଶନିବାର ସ୍ୱାତୀ ନକ୍ଷତ୍ର ଯୁକ୍ତ ପରମ ପବିତ୍ର ଦିବସ, ଯାହା ନୃସିଂହ ଜନ୍ମର ସଂଯୋଗ ଦିବସ ତଥା ତିଥି । ବିଷ୍ଣୁଙ୍କ ପରମଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେଲା, ମହାପ୍ରଭୁ ଶ୍ରୀକ୍ଷେତ୍ରରେ ଶ୍ରୀବତ୍ସ ଖଣ୍ଡଶାଳ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା ସୁଭଦ୍ରା ଏବଂ ଶ୍ରୀସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତି ରୂପେ ପୂଜା ପାଇବେ ଏବଂ ଏହି କାର୍ଯ୍ୟ ସମ୍ପୂର୍ଣ୍ଣ ହେବ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ହାତରେ । ମହାବିଷ୍ଣୁ ମହାଯଜ୍ଞର ସମାପ୍ତି ପରେ ପରେ ଶ୍ରୀକ୍ଷେତ୍ର ସନ୍ନିକଟ ମହୋଦଧିରେ ତେଜୋମୟ ଦାରୁ ଭାସି ଭାସି ଆସି କୂଳରେ ଲାଗିବାର ସନ୍ଧାନ ରାଜାଙ୍କୁ ମିଳିଲା । ଦେବର୍ଷି ନାରଦ ତତ୍‌କ୍ଷଣାତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ଆବିର୍ଭୂତ ହୋଇ ସମୁଦ୍ରରେ ଭାସି ଆସିଥିବା ତେଜୋଦୀପ୍ତ ଦାରୁ ମହାବିଷ୍ଣୁଙ୍କ ଅଂଶ ଏବଂ ଶ୍ରୀକ୍ଷେତ୍ରରେ ପୂଜିତ ହେବାକୁ ଥିବା ଚତୁର୍ଦ୍ଧାମୂର୍ତ୍ତି ନିର୍ମାଣ ନିମନ୍ତେ ଉଦ୍ଦିଷ୍ଟ ବୋଲି ସୂଚନା ଦେଇ ପ୍ରଭୁଙ୍କ ନିର୍ମାଣ ନିମନ୍ତେ ମହାବିଷ୍ଣୁ ଯଜ୍ଞ ମଣ୍ଡପ ଓ ସ୍ଥାନ ଉପଯୁକ୍ତ ବୋଲି ଉପଦେଶ ଦେଲେ । ଲୋହିତ ବର୍ଣ୍ଣର ସେହି ପବିତ୍ର ଦାରୁଙ୍କର ଦେହରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ହଳମୂଷଳର ଚିହ୍ନ ଥିଲା । ମହାରାଜା, ଶବର ରାଜା ବିଶ୍ୱାବସୁଙ୍କ ସହାୟତାରେ ପ୍ରଭୁଙ୍କ ପବିତ୍ର ଦାରୁକୁ ଯଜ୍ଞ ମଣ୍ଡପ ସନ୍ନିକଟ ମହାବେଦୀ ବା ଗୁଣ୍ଡିଚା ବେଦୀ ବା ଆଡ଼ପ ମଣ୍ଡପରେ ମୂର୍ତ୍ତି ନିର୍ମାଣ ହେତୁ ଅବସ୍ଥାନ କରାଇଲେ । କିନ୍ତୁ ଶତଚେଷ୍ଟା ସତ୍ତ୍ୱେ ମୂର୍ତ୍ତି ନିର୍ମାଣ ସମ୍ଭବ ହେଲା ନାହିଁ । ପ୍ରଭୁ ନିଜେ ନିଜକୁ ନିର୍ମାଣ କରିବେ ବୋଲି ରାଜାଙ୍କୁ ସ୍ୱପ୍ନାଦେଶ ହେଲା । ହେଲେ ତଥାପି ମଣିଷ ମନ, ରାଜାରାଣୀ ବୃଦ୍ଧ କାରିଗର ରୂପରେ ଆସିଥିବା ପ୍ରଭୁଙ୍କୁ ଚିହ୍ନିବାରେ ଭୁଲ କରିଦେଲେ । ବୃଦ୍ଧ ମୂର୍ତ୍ତି କାରିଗରଙ୍କର ଜିଦ୍ ଅନୁସାରେ ଗୁଣ୍ଡିଚା ମନ୍ଦିରର ଗର୍ଭଗୃହରେ ରୁଦ୍ଧଦ୍ୱାର ମଧ୍ୟରେ ଆରମ୍ଭ ହେଲା ଚତୁର୍ଦ୍ଧାମୂର୍ତ୍ତିଙ୍କର ନିର୍ମାଣ । କଥା ହୋଇଥିଲା ୨୧ ଦିନ ପର୍ଯ୍ୟନ୍ତ କେହି ସେହି ରୁଦ୍ଧ ଦ୍ୱାରକୁ ଖୋଲିବେ

ନାହିଁ । ରାଜାଙ୍କ ବାରଣ ସତ୍ତ୍ୱେ ମନ୍ଦିର ଭିତରୁ କୌଣସି ଶବ୍ଦ ନଶୁଣିପାରି, ବିଷର୍ଣ୍ଣ 'ରାଣୀ ଗୁଣ୍ଡିଚା' ମନ୍ଦିରର ଦୁଆରକୁ ଆଶଂକାରେ ଖୋଲିଦେଲେ । ଦ୍ୱାର ଖୋଲି ଆଡ଼ପ ମଣ୍ଡପରେ ଦେଖିଲେ ଅର୍ଦ୍ଧ ନିର୍ମିତ ଚତୁର୍ଦ୍ଧାମୂର୍ତ୍ତି । ସେତେବେଳକୁ କାରିଗର ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଆଡ଼ପ ମଣ୍ଡପର ମହାବେଦୀରେ ଆବିର୍ଭୂତ ହୋଇଥିଲେ ଅଧାଗଢା ସ୍ୱୟଂ ସଂପୂର୍ଣ୍ଣ ଶ୍ରୀଜଗନ୍ନାଥ, ବଳଭଦ୍ର, ମା ସୁଭଦ୍ରା ଓ ଶ୍ରୀ ସୁଦର୍ଶନଙ୍କ ଚତୁର୍ଦ୍ଧାମୂର୍ତ୍ତି ।

ସେହି ମହାବେଦୀ ବା ଆଡ଼ପ ମଣ୍ଡପକୁ ନେଇ ଗଢ଼ି ଉଠିଥିବା ମନ୍ଦିର ଶ୍ରୀଗୁଣ୍ଡିଚା ମନ୍ଦିର ନାମରେ ପ୍ରସିଦ୍ଧ । ଶ୍ରୀଗୁଣ୍ଡିଚା ମନ୍ଦିର ଶ୍ରୀକ୍ଷେତ୍ର ପୁରୀ ଧାମର ଅନ୍ୟତମ ପ୍ରସିଦ୍ଧ ସ୍ଥାନ । ରାଜାଧିରାଜ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅବସରରେ ବିନୋଦନ ସ୍ଥାନ ବା 'ରାଜଭବନ ମନ୍ଦିର', ଶ୍ରୀଗୁଣ୍ଡିଚା ମନ୍ଦିର, ଅନ୍ୟ ଭାବରେ କହିଲେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଜନ୍ମସ୍ଥାନ । ଏହି ଚାଳି ମନ୍ଦିର ଯଦିଓ ଶ୍ରୀଜଗନ୍ନାଥ ମନ୍ଦିରର ଏକ ଅଂଶ ବିଶେଷ, ତଥାପି ଲୋକ କଥାରେ ଏହି ପୁରାତନ ମନ୍ଦିର ଗୁଣ୍ଡିଚା ଘର ଭାବରେ ନାମିତ, ଏହା ଦେଉଳି ମନ୍ଦିର ନୁହେଁ । ଏହା ଏକ 'ଚାଳି ମନ୍ଦିର', ମୁଖ୍ୟ ମନ୍ଦିରର ଉଚ୍ଚତା ପ୍ରାୟ ୭୫ ଫୁଟ । ଏହି ମୁଖ୍ୟ ମନ୍ଦିର ସହିତ ଜଗମୋହନ, ନାଟ ମନ୍ଦିର ଓ ଭୋଗମଣ୍ଡପ ଗୋଟିଏ ପରେ ଗୋଟିଏ ସମ୍ପୂର୍ଣ୍ଣ ଲାଗି ଲାଗି ନିର୍ମାଣ କରାଯାଇଛି । କିନ୍ତୁ ମୁଖ୍ୟ ମନ୍ଦିର ନିର୍ମାଣ ହେବାପରେ କାଳକ୍ରମେ ସେସବୁକୁ ସଂଯୁକ୍ତ କରାଯାଇଛି । ମୁଖ୍ୟମନ୍ଦିରର ଗୋଟିଏ ଦ୍ୱାର ଜଗମୋହନ ଓ ନାଟ ମନ୍ଦିରକୁ ଥିବାବେଳେ ଅନ୍ୟ ଦ୍ୱାରଟି କୂର୍ମ ବେଢ଼ାକୁ ଖୋଲା ଅଛି । ନାଟ ମନ୍ଦିରରେ ୨ ଗୋଟି ଦ୍ୱାର ବାହାରକୁ ଏବଂ ଗୋଟିଏ ଦ୍ୱାର ଭୋଗ ମଣ୍ଡପକୁ ରହିଛି । ଭୋଗ ମଣ୍ଡପର ଦ୍ୱାର ରୋଷଘର ସହ ସଂଯୁକ୍ତ ରହିଅଛି ।

ମନ୍ଦିରକୁ ଘେରି ୨ଗୋଟି ପ୍ରାଚୀର ରହିଛି। ଗୋଟିଏ ସୁଉଚ୍ଚ ବାହାର ପ୍ରାଚୀର ବା ଗୁଣ୍ଡିଚାଘର ପ୍ରାଚୀର । ଦ୍ୱିତୀୟଟି ଭିତର ପ୍ରାଚୀର ବା କୂର୍ମ ବେଢ଼ା ପ୍ରାଚୀର । କୂର୍ମ ବେଢ଼ାର ୨ଗୋଟି ବଡ଼ ଦ୍ୱାର ମନ୍ଦିରର ବାହାର ବେଢ଼ାକୁ ଖୋଲି ଅଛି, ଗୋଟିଏ ସିଂହଦ୍ୱାର ଆଡ଼କୁ ଏବଂ ଅନ୍ୟଟି ନାକଚଣା ବା ପ୍ରସ୍ଥାନ ଦ୍ୱାର ଆଡ଼କୁ । ବାହାର ବେଢାର ପ୍ରାଚୀର ବା ଗୁଣ୍ଡିଚା ମନ୍ଦିର ପ୍ରାଚୀରରେ ୨ଗୋଟି ବଡ଼ଦ୍ୱାର ଅଛି । ଗୋଟିଏ ସିଂହଦ୍ୱାର ନାମରେ ନାମିତ । ଯେଉଁ ବାଟଦେଇ ପ୍ରଭୁ ଜଗନ୍ନାଥ ରଥରୁ ଶ୍ରୀଗୁଣ୍ଡିଚା ମନ୍ଦିର ମଧ୍ୟରେ ପ୍ରବେଶ ବା ପହଣ୍ଡି ବିଜେ କରନ୍ତି । ଦ୍ୱିତୀୟଟି ନାକଚଣା ଦ୍ୱାର, ଯେଉଁଦ୍ୱାର ଦେଇ ପ୍ରଭୁ ଶ୍ରୀଜଗନ୍ନାଥ ମନ୍ଦିର ମଧ୍ୟରୁ ରଥକୁ ବାହୁଡ଼ା ବିଜେ କରନ୍ତି । ଦକ୍ଷିଣପୂର୍ବ ପଟେ ଦୁଇ ପ୍ରାଚେରୀ ମଧ୍ୟରେ ରୋଷଘର ଓ ଆନନ୍ଦ ବଜାର ଅବସ୍ଥିତ ଏବଂ କୂର୍ମ ବେଢ଼ାର ପୂର୍ବପଟେ ଅସ୍ଥାୟୀ ବ୍ରହ୍ମମଣ୍ଡପ ବା ମୁଖ୍ୟ ମଣ୍ଡପ ଅବସ୍ଥିତ । ଏହାଛଡ଼ା ବାହାର ପ୍ରାଚୀରର ଉତ୍ତର ପଶ୍ଚିମ ପଟେ ଯଜ୍ଞ ନୃସିଂହ ମନ୍ଦିର ସନ୍ନିକଟରେ ଏକ ଛୋଟ ସଂଯୋଗ ଦ୍ୱାର ରହିଛି ।

ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କର ପାଟରାଣୀ ଗଣ୍ଡିଚା ଦେବୀଙ୍କର ନାମରେ ମହାବେଦୀ 'ଶ୍ରୀଗୁଣ୍ଡିଚା ମଣ୍ଡପ' ଓ ଚାଳିମନ୍ଦିର 'ଶ୍ରୀଗୁଣ୍ଡିଚା ମନ୍ଦିର' ନାମିତ ହୋଇଛି । ପ୍ରଥମେ ଏହି ମନ୍ଦିରକୁ ଗୋଟିଏ ଦ୍ୱାର 'ସିଂହଦ୍ୱାର' ଥିଲା । ପରେ ରାଣୀଙ୍କର ଆଗ୍ରହରେ ତାଙ୍କ ନାକଚଣା ଗହଣାର ଲବ୍ଧଧନରେ 'ନାକଚଣା ଦ୍ୱାର' ନିର୍ମିତ ହୋଇଥିଲା ଏବଂ ଏହା ସମ୍ଭବତଃ ୧୩୮୨ ଖ୍ରୀ.ଅ.ରେ ନିର୍ମିତ ହୋଇଥିବାର ଇତିହାସରୁ ଜଣାପଡ଼େ । ୧୭୨୮ ମସିହାରେ ଶ୍ରୀଗୁଣ୍ଡିଚା ମନ୍ଦିରସ୍ଥ ଜଗମୋହନ ନିର୍ମାଣ କରାଯାଇଥିଲା ବୋଲି ଇତିହାସରୁ ଜଣାପଡ଼େ । ଏହାମଧ୍ୟ ସତ୍ୟ ଯେ ଶ୍ରୀମନ୍ଦିରଠାରୁ ଏହି ମନ୍ଦିର ପୁରାତନ ଅଟେ ଏବଂ ୧୮୪୦ ମସିହାରେ ବାଲେଶ୍ୱରର ଜଣେ ଜମିଦାର ଗୋପନୀୟଭାବେ ଏହି ଜରାଜୀର୍ଣ୍ଣ ମନ୍ଦିରର ଜୀର୍ଣ୍ଣୋଦ୍ଧାର କରିଥିଲେ । ମହାବିଷ୍ଣୁ ମହାଯଜ୍ଞ ଅନୁଷ୍ଠିତ ହେବା ଓ ଶ୍ରୀଜଗନ୍ନାଥଙ୍କର ପୂଜା ଆରମ୍ଭ ହେବା ଦିନଠାରୁ ଶ୍ରୀମନ୍ଦିର ନିର୍ମାଣ ହୋଇ ପ୍ରଭୁ ଶ୍ରୀଜଗନ୍ନାଥ ସେଠାରେ ପୂଜା ପାଇବା ପର୍ଯ୍ୟନ୍ତ ଅନେକ ବର୍ଷ ମହାପ୍ରଭୁ ଏହି ଜନ୍ମସ୍ଥାନରେ ପୂଜା ପାଇଥିଲେ । ପ୍ରଭୁଙ୍କ ନିର୍ଦ୍ଦେଶରେ ନୀଳକନ୍ଦରର ମହାବେଦୀ, ଯେଉଁଠାରେ ନୀଳମାଧବ ପୂଜାପାଇ ଅନ୍ତର୍ଦ୍ଧାନ ହୋଇଯାଇଥିଲେ, ସେଠାରେ ଏକ ଭବ୍ୟ ଶ୍ରୀବତ୍ସ ଖଣ୍ଡଶାଳ ମନ୍ଦିର ନିର୍ମିତ ହୋଇ ପ୍ରତିଷ୍ଠା ହେଲାପରେ ଆଷାଢ଼ ମାସ କୃଷ୍ଣ ନବମୀ ତିଥିରେ ପ୍ରଭୁ ଆଡ଼ପ ମଣ୍ଡପରେ ଶେଷ ସନ୍ଧ୍ୟା ଦର୍ଶନ ଦେଇ ତା'ପରଦିନ ଦଶମୀ ଦିନ ନୀଳାଚଳ ଅଭିମୁଖେ ରଥାରୂଢ଼ ହୋଇ ଯାତ୍ରା ଆରମ୍ଭ କରିଥିଲେ ଏବଂ ଶ୍ରୀଗୁଣ୍ଡିଚା ମନ୍ଦିର ଓ ଯଜ୍ଞବେଦୀ ପରିତ୍ୟକ୍ତ ହୋଇ ପଡ଼ି ରହିଲା, ତାକୁ ଜଗି ରହିଲା ମହାପ୍ରଭୁଙ୍କ ପ୍ରହରି, ଯାହା ଆଜିର ଲୋକକଥାର ବାବନାଭୂତ, ଯାହାକୁ ପ୍ରତି ରଥଯାତ୍ରା ପୂର୍ବଦିନ ସେଠାରୁ ବାହାର କରିବାକୁ ବୈଷ୍ଣବମାନଙ୍କ ପଟୁଆର ଶ୍ରୀଗୁଣ୍ଡିଚା ମନ୍ଦିର ଯାଏ । ହେଲେ ପ୍ରଭୁ ଶ୍ରୀଜଗନ୍ନାଥ ଛାଡ଼ି ପାରିଲେନି । ନିଜର ଅତି ପ୍ରିୟ ଜନ୍ମସ୍ଥଳୀର ମୋହ । ପ୍ରଭୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ବର୍ଷକୁ ଥରେ ଶ୍ରୀଗୁଣ୍ଡିଚା ଯାତ୍ରା ନବ ଦିନ ଯାତ୍ରାରେ ନିଜର ପ୍ରିୟ ଜନ୍ମସ୍ଥାନ ଶ୍ରୀଗୁଣ୍ଡିଚା ମନ୍ଦିରର ମହାବେଦୀ ବା ଆଡ଼ପ ମଣ୍ଡପ ଯିବାକୁ ସ୍ୱପ୍ନାଦେଶ କଲେ ଏଥିରେ ଯେପରି ବ୍ୟତିକ୍ରମ ନହୁଏ । ସେଥିପାଇଁ ତାଗିଦ୍ ମଧ୍ୟ କଲେ । ପ୍ରଭୁଙ୍କର ଇଚ୍ଛାନୁଯାୟୀ ନବ ଦିନ ଯାତ୍ରା ବା ଶ୍ରୀଗୁଣ୍ଡିଚା ରଥଯାତ୍ରା ଆରମ୍ଭ ହେଲା ସେହି ଯୁଗରୁ, ଯାହା ଆଜିର ପୃଥିବୀ ପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରା ଭାବରେ ଆମ୍ଭମାନଙ୍କର ଅତି ପ୍ରିୟ ।

ଦାଣ୍ଡିମାଳ ସାହି, ପୁରୀ

# ଅଭିନବ ଶ୍ରୀକ୍ଷେତ୍ରଃ ମୁରସିଂହ

**ବିଜୟ କୁମାର ମହାନ୍ତି**

ଲୀଳାମୟ ଜଗନ୍ନାଥ । ପତିତପାବନ ପାଇଁ ଯାର ନେତ ନୀଳଚକ୍ରରେ ସଦା ଚଳଚଞ୍ଚଳ । ଲୀଳା ପାଇଁ ସେ ଯେପରି ଇଚ୍ଛା କରନ୍ତି ଆଉ ଏକ ଶ୍ରୀକ୍ଷେତ୍ର, ଯାହାହେବ ସର୍ବଧର୍ମ ସମନ୍ୱୟର ପୀଠ ।

ଅପରୂପ ପ୍ରାକୃତିକ ଶୋଭାଭରା ମୁରସିଂହ ଗ୍ରାମ । ଯାହା ବଲାଙ୍ଗୀର ଜିଲ୍ଲା ଅନ୍ତର୍ଗତ ମହାପ୍ରଭୁ ଯେପରି ଆନନ୍ଦରେ ଏହି ଗ୍ରାମକୁ ଆଦରି ନିଅନ୍ତି । ଆଜି ଏହି ଭୂମି ସାମ୍ୟ ମୈତ୍ରୀର ପରମ ପୀଠ ରୂପେ ପରିଣତ ହୋଇଅଛି ।

ଇଚ୍ଛାମୟଙ୍କର ଇଚ୍ଛା । ଏହି କ୍ଷେତ୍ରରେ ଶ୍ରୀପୁରୁଷୋତ୍ତମଙ୍କ ସେବାରେ ମନ ଦେଇଥିବା ଶ୍ରୀଜୀଉଙ୍କର ସେବକ ଇଚ୍ଛା କରନ୍ତି ଶ୍ରୀପୁରୁଷୋତ୍ତମଙ୍କର ଏକ ସୁନ୍ଦର ମନ୍ଦିର । ମହାପ୍ରଭୁ ତହିଁରେ ବିରାଜିତ ହେବେ । ସମସ୍ତେ ତାଙ୍କ ଦର୍ଶନ କରି ଧନ୍ୟ ହେବେ । ଆଉ ପ୍ରଭୁଙ୍କ ପରଶରେ ଏ ଭୂମି ହେବ ଅମୃତମୟ । ଦିନେ ସ୍ୱପ୍ନରେ ଦୃଶ୍ୟ ହୁଏ ଅପୂର୍ବ ବନରାଜି ମଧ୍ୟରେ ଏକ ସୁନ୍ଦର ମନ୍ଦିର ।

ଲୀଳାମୟଙ୍କର ବିଚାର । ଏହି କ୍ଷେତ୍ରରେ ଶାନ୍ତ ସୁନ୍ଦର ପଲ୍ଲୀ 'ଆମ୍ରପଲ୍ଲୀ'ଠାରେ ଆରମ୍ଭ ହୁଏ ଶ୍ରୀରାଧାକୃଷ୍ଣଙ୍କର ମିଳନ ତଥା ରାସୋତ୍ସବ । ଏହା ସହିତ ବିଶାଳ ଯଜ୍ଞ ଅନୁଷ୍ଠିତ ହୋଇ ମହାପ୍ରଭୁ ଶ୍ରୀଜଗନ୍ନାଥ ତହିଁରେ ବିରାଜିତ ହୁଅନ୍ତି । ସମସ୍ତେ ଚତୁର୍ଦ୍ଧା ବିଗ୍ରହଙ୍କର ଦର୍ଶନ କରି ଧନ୍ୟ ହୁଅନ୍ତି । ଏପରି ଏକ ଭାବମୟ ପରିବେଶରେ ସମସ୍ତେ ସ୍ୱପ୍ନ କଥା ଶୁଣି ଆନନ୍ଦିତ ହୁଅନ୍ତି ଓ ପ୍ରଭୁଙ୍କର ପ୍ରିୟ ସ୍ଥଳରେ ମନ୍ଦିର ନିର୍ମାଣ ପୂର୍ବକ ଉକ୍ତ ସ୍ଥାନରୁ ଏହି ସ୍ଥାନକୁ ପ୍ରତିବର୍ଷ ରଥଯାତ୍ରା ଅବସରରେ ମହାପ୍ରଭୁଙ୍କ ଆଗମନ କାମନା କରନ୍ତି । ଏହାପରେ ଆରମ୍ଭ ହୁଏ ଶ୍ରୀଜୀଉଙ୍କର ଅନ୍ତର୍ବେଦୀ ନିର୍ଣ୍ଣୟ ପାଇଁ ଯାତ୍ରା । ଯଜ୍ଞର ପୁରୋଧା ଶ୍ରୀ ରାମଚନ୍ଦ୍ର ନାୟକ ଏହାର ନେତୃତ୍ୱ ନିଅନ୍ତି ଓ ଏକ ମଙ୍ଗଳମୟ ମୁହୂର୍ତ୍ତରେ ସମସ୍ତେ ଯାତ୍ରା ଆରମ୍ଭ କରନ୍ତି ।

ଅପରୂପ ବନରାଜି ଘେରା 'ମୁରସିଂହ'ଗ୍ରାମ । ତାର ଅପରୂପ ସୌନ୍ଦର୍ଯ୍ୟ ଯେପରି ସମସ୍ତଙ୍କୁ ବିମୋହିତ କରୁଛି । ଗ୍ରାମର ମଧ୍ୟ ଭାଗରେ ଇଷ୍ଟଦେବୀ 'ଧରିତ୍ରୀ ଦେବୀ'ଙ୍କର ମନ୍ଦିର । ଦେବୀଙ୍କ ଧ୍ୟାନ ପୂର୍ବକ ସେଠାରୁ ସମସ୍ତେ ଯାତ୍ରାପଥରେ ଅଗ୍ରସର ହୁଅନ୍ତି ଓ ଏହି ଯାତ୍ରାରେ ଅନ୍ୟତମ ଭକ୍ତି ପରାୟଣ 'ନେପାଳ ଭୋଇ' ସହଯୋଗୀ ହୁଅନ୍ତି ।

ଆଗରେ ଗ୍ରାମର ଇଷ୍ଟଦେବ 'ଶ୍ରୀ ରାଧାକୃଷ୍ଣ'ଙ୍କର ମନ୍ଦିର । ସେଠାରେ ଶ୍ରୀଜୀଉଙ୍କର ପରମ ସେବକ ଶ୍ରୀ ବିରଞ୍ଚି ପ୍ରଧାନ ସମସ୍ତଙ୍କୁ ସ୍ୱାଗତ କରି ଏହି ଯାତ୍ରା ବିଷୟରେ ପୂର୍ବରୁ ସ୍ୱପ୍ନରୁ ଅବଗତ ହୋଇଥିବା କଥା ପ୍ରକାଶ କରନ୍ତି ଓ ମହାପ୍ରଭୁଙ୍କ ବିଜୟ ପାଇଁ ଆନନ୍ଦିତ ହୁଅନ୍ତି ।

ଶ୍ରୀ ଶ୍ରୀ ରାଧାକୃଷ୍ଣ ଦେବଙ୍କ ମନ୍ଦିରର କୀୟତ୍ ଦୂର ଦକ୍ଷିଣକୁ ଶବର ପଲ୍ଲୀ ରେଙ୍ଗାଲପଡ଼ା । ଏହାର ପାଦଦେଶରୁ ଆରମ୍ଭ ହୋଇଛି ସୁଦୀର୍ଘ ବନାନୀ । ତରଙ୍ଗାୟିତ ପର୍ବତମାଳା ଯେପରି ଏଠାରେ ଦିଗଚକ୍ର ସହ ମିଶି ଏକାକାର ହୋଇ ଯାଇଛି ।

ଏହି ପଲ୍ଲୀରେ ଶ୍ରୀ ସମାରୁ ଭୋଇ ନିଭୃତରେ ଶ୍ରୀମାଧବଙ୍କର ପୂଜା କରୁଥିଲେ । ସେ ମହାପ୍ରଭୁଙ୍କର ଏହି ଯାତ୍ରାରେ ମହାନନ୍ଦରେ ସମ୍ମିଳିତ ହୁଅନ୍ତି ଓ ସମସ୍ତେ ବନପଥରେ ଅଗ୍ରସର ହୁଅନ୍ତି । ଆଗରେ ବୃକ୍ଷଲତା ଘେରା ସୁବିସ୍ତୃତ ମନୋହର ସ୍ଥଳୀ । ସତେ ଅବା ମହାପ୍ରଭୁଙ୍କ ବିଜୟ ପାଇଁ ଏହି ଭୂମି ଆନନ୍ଦରେ ଅଧିର । ବନଫୁଲର ମହକ ପକ୍ଷୀମାନଙ୍କର ମଧୁର କାକଳି, ଅପୂର୍ବ ମାଦକତା ସୃଷ୍ଟି କରୁଅଛି । ସର୍ବଲକ୍ଷଣ ସମ୍ପନ୍ନ ଏହି ସ୍ଥଳ

(ପ୍ରଧାନୀ ଭୂମି) ମହାପ୍ରଭୁଙ୍କ ବିଜୟ ଭୂମି ରୂପେ ଚିହ୍ନିତ ହୁଏ । ସମସ୍ତେ ଆନନ୍ଦରେ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କରନ୍ତି । ଜୟ ଜଗନ୍ନାଥ ଧ୍ୱନିରେ ବନସ୍ଥଳୀ ଉଚ୍ଛୁଳି ପଡ଼େ ।

ପ୍ରଭୁଙ୍କର ଏହି ବିଜୟ ସମ୍ବାଦରେ ଚାରିଆଡ଼େ ଆନନ୍ଦର ଲହରୀ ଖେଳିଯାଏ, ସର୍ବତ୍ର ଆନନ୍ଦର ବାତାବରଣ । ମହାପ୍ରଭୁଙ୍କ କାର୍ଯ୍ୟରେ ସମସ୍ତେ ମନପ୍ରାଣ ଢ଼ାଳି ଦିଅନ୍ତି । ଗ୍ରାମର ମୁଖ୍ୟ ଶ୍ରୀ କିଶୋର ଭୋଇ ତଥା ଶ୍ରୀ ନେପାଳ ଭୋଇଙ୍କ ନେତୃତ୍ୱରେ ମନ୍ଦିର କାର୍ଯ୍ୟ ଆଗେଇ ଚାଲିବା ସହିତ ପବିତ୍ର ବୈଶାଖ ଶୁକ୍ଳ ତୃତୀୟା ଦିନ ଗ୍ରାମର ବିଶିଷ୍ଟ କାରିଗର ଶ୍ରୀ ଶବର ଦଳପତ୍‌ଙ୍କ ନେତୃତ୍ୱରେ ରଥ ନିର୍ମାଣର ଶୁଭାରମ୍ଭ ହୁଏ ।

୧୯୯୮ ମସିହା ପବିତ୍ର ବୈଶାଖ ଶୁକ୍ଳ ଏକାଦଶୀ । ଶ୍ରୀଜୀଉଙ୍କର ମନ୍ଦିର ପ୍ରତିଷ୍ଠା ତଥା ଗମ୍ଭୀରା ବିଜେ ଉତ୍ସବ । ମହାପ୍ରଭୁ ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ସହିତ ପୂଜିତ ପୁଣ୍ୟସ୍ଥଳୀ 'କୁତୁର୍ଲା'ରୁ ଆସି ନୂତନ ମନ୍ଦିରରେ ବିଜେ କରନ୍ତି । 'ଜୟ ଜଗନ୍ନାଥ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇଉଠେ । ମହାପ୍ରଭୁଙ୍କର ଏହି ମହାବିଜୟ ଯାତ୍ରାରେ ଅଗଣିତ ଭକ୍ତଙ୍କର ସମାବେଶ । ହରିବୋଲ, ହୁଳହୁଳି ତଥା ସଂକୀର୍ତ୍ତନ ନାଦରେ ବିଜୟ ପଥ ଉଚ୍ଛୁଳି ଉଠେ । ଧ୍ୱଜା ଚିରାଳରେ ଯାତ୍ରାପଥ ଯେପରି ବଡ଼ଦାଣ୍ଡର ଶୋଭା ଧାରଣ କରେ । ଭକ୍ତମାନଙ୍କ ସହ ଲୀଳା ରଚନା କରି ମହାପ୍ରଭୁ ମହାନନ୍ଦରେ ରତ୍ନ ସିଂହାସନରେ ବିଜେ କରନ୍ତି ।

ମଙ୍ଗଳମୟଙ୍କର ଏହି ମହାବିଜୟ ସହିତ ଏହି ଭୂମି ଉତ୍ସବ ମୁଖରିତ ହୋଇଉଠେ । ଏହା ସହିତ କୋଟି ବ୍ରହ୍ମାଣ୍ଡନାଥଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ସ୍ନାନ ଯାତ୍ରା ସହିତ ଅଣସର ନୀତି ଯଥାରୀତି ସମ୍ପନ୍ନ ହୋଇ ଠାକୁରମାନେ ଗୁଣ୍ଡିଚା ବିଜେ ପାଇଁ ପ୍ରସ୍ତୁତ ହୁଅନ୍ତି । ପବିତ୍ର ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଯଥା ସମୟରେ ପହଣ୍ଡିବିଜେ ସମ୍ପନ୍ନ ହୋଇ ଠାକୁରମାନେ ରଥାରୂଢ଼ ହୁଅନ୍ତି । ଏହି ଉତ୍ସବରେ ଯୋଗଦେଇ ଜିଲ୍ଲାପାଳ ଶ୍ରୀ ରବୀନ୍ଦ୍ରନାଥ ଦାଶ ଶ୍ରୀଜୀଉଙ୍କ ରଥରେ ଛେରାପହଁରା କାର୍ଯ୍ୟ ସମ୍ପାଦନ କରନ୍ତି ଓ ମହାପ୍ରଭୁ ଆନନ୍ଦ ଉଲ୍ଲାସର ସହିତ ଆଡ଼ପ ମଣ୍ଡପରେ ବିଜେ ପୂର୍ବକ ନବଦିନ ଯାତ୍ରା ସମ୍ପନ୍ନ କରି ଆମ୍ରପାଲିସ୍ଥ ଆଡ଼ପ ମଣ୍ଡପରୁ ସ୍ୱମନ୍ଦିର ଅଭିମୁଖେ ବାହୁଡ଼ା ଯାତ୍ରା କରନ୍ତି ।

ଶ୍ରୀଜୀଉଙ୍କର ବାହୁଡ଼ା ବିଜେ ପରବର୍ତ୍ତୀ ଦ୍ୱାଦଶୀ ଦିନ ଶ୍ରୀଜୀଉଙ୍କର ଗମ୍ଭୀରାବିଜେ ସମୟରେ ବଳଭଦ୍ର ରଥରୁ ଓହ୍ଲାଇବାବେଳେ ଅପୂର୍ବ ଦୃଶ୍ୟ ଦେଖାଯାଏ । ମନ୍ଦିର ବେଢ଼ାସ୍ଥ ନିମ୍ବଗଛ ମୂଳରେ ନାଗ ସାପର ଆବିର୍ଭାବ । ସତେ ଅବା ଅନନ୍ତ ଶ୍ରୀ ବଳଭଦ୍ରଙ୍କର ପ୍ରତୀକ ବିରାଜିତ । ସମସ୍ତେ ହରିବୋଲ ହୁଳହୁଳି ଦେଇ ତାଙ୍କର ପୂଜାର୍ଚ୍ଚନା କରିବା ସହିତ ଶ୍ରୀବଳଦେବଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରନ୍ତି । ଏତତ୍ ସହ ଶ୍ରୀଜୀଉଙ୍କର ଗମ୍ଭୀରାବିଜେ ସହିତ ସମସ୍ତ ଯାତ୍ରା ବିଧି ଅନୁଷ୍ଠିତ ହୁଏ ।

ପ୍ରଭୁଙ୍କର ଇଚ୍ଛା, ସେ ଯେପରି ଚାହାନ୍ତି ତାଙ୍କର ଅନ୍ୟତମ ମଧୁର ଲୀଳା । ଏଥିପାଇଁ ଏହି କ୍ଷେତ୍ର ନିବାସୀ ବୟୋବୃଦ୍ଧ ଶ୍ରୀଇନ୍ଦ୍ରମଣି ପ୍ରଧାନଙ୍କୁ ମହାପ୍ରଭୁଙ୍କର ସ୍ୱପ୍ନାଦେଶ ହୁଏ । ମହାପ୍ରଭୁ ନୂତନ ଭାବରେ ବିରାଜିତ ହେବେ । ତାଙ୍କର ନବକଳେବର ହେବ । ଏଥିପାଇଁ ଲକ୍ଷ୍ମୀସାଗର (ଗୁର୍ଜି ମୁଣ୍ଡା)ସ୍ଥ ଝରଣା କୂଳରେ ଶ୍ରୀ ପ୍ରଧାନଙ୍କ କ୍ଷେତ ଉପରେ ଥିବା ନିମ୍ବଗଛ ହିଁ ଦୃଶ୍ୟ ହୁଏ । ଶ୍ରୀ ପ୍ରଧାନ ଏହି ସ୍ୱପ୍ନବୃତ୍ତାନ୍ତ ଶ୍ରୀଜୀଉଙ୍କର ସେବକଙ୍କୁ ଶୁଣାନ୍ତି । ଏହା ସାଙ୍ଗକୁ ବିଗ୍ରହମାନଙ୍କର ପାତାଳି ପାଇଁ ମଧ୍ୟ ମହାପ୍ରଭୁଙ୍କ ଆଦେଶ ହୁଏ ।

ଏହି ସମସ୍ତ ବିଷୟ ଗଜପତି ସାନନ୍ଦ ଅବଗତ ହୋଇ ରାଜଗୁରୁଙ୍କ ସହ ଯୋଗାଯୋଗ ପାଇଁ ପରାମର୍ଶ ଦିଅନ୍ତି ଓ ବନଯୋଗର ଆୟୋଜନ ହୁଏ । ଏହି ଯଜ୍ଞ ପାଇଁ ଶ୍ରୀ ରମେଶଚନ୍ଦ୍ର ରାଜଗୁରୁଙ୍କ ପୌରହିତ୍ୟରେ ଆଚାର୍ଯ୍ୟମଣ୍ଡଳୀ ତଥା ବିଶ୍ୱକର୍ମା ଶ୍ରୀକ୍ଷେତ୍ରରୁ ଆସି ଏହି ଧାମରେ ପହଞ୍ଚନ୍ତି । ମନ୍ଦିର ତରଫରୁ ସମସ୍ତଙ୍କୁ ସ୍ୱାଗତ କରାଯାଏ । ଏହାପରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରୁ ଆସିଥିବା ମାଳ ଓ ପ୍ରସାଦ ଇଷ୍ଟଦେବୀ 'ଧରିତ୍ରୀ ଠାକୁରାଣୀ'ଙ୍କୁ ଲାଗି କରାଯାଏ ଓ ଯଥାବିଧି ପୂଜାର୍ଚ୍ଚନା ପୂର୍ବକ ଚଣ୍ଡୀପାଠ କରାଯାଏ । ଏହା ସହିତ ବନଯୋଗ ଦଳର ବିଦ୍ୟାପତି, ବିଶ୍ୱାବସୁ ତଥା ଦଇତାପତି ସେବକମାନଙ୍କୁ ଶାଢ଼ୀ ପ୍ରଦାନ କରାଯାଏ । ସମସ୍ତେ ଠାକୁରାଣୀଙ୍କୁ ଧ୍ୟାନ କରି ତାଙ୍କର ଆଜ୍ଞାପ୍ରାପ୍ତ ହୁଅନ୍ତି ଓ ମହାସମାରୋହରେ ଦାରୁଙ୍କ ନିକଟକୁ ଯାତ୍ରା କରନ୍ତି ।

ଅପୂର୍ବ ଲକ୍ଷଣଯୁକ୍ତ ଦାରୁ । ନିକଟରେ ଝରଣା, ସାହାଡ଼ା ବୃକ୍ଷ ତଥା ଉଇହୁଙ୍କା ଆଦି ବିରାଜିତ । ଶଙ୍ଖ, ଚକ୍ର, ଗଦା ପଦ୍ମ ଚିହ୍ନ ସୁଶୋଭିତ ଦାରୁଙ୍କୁ ଦେଖି ସମସ୍ତେ ଆନନ୍ଦିତ ହୁଅନ୍ତି ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରୁ ଆସିଥିବା ମାଳ, ପ୍ରସାଦ ଦାରୁଙ୍କୁ ଲାଗି କରାଯାଏ । ଏହା ସହିତ ଦାରୁଙ୍କ ନିକଟରେ ଯଜ୍ଞ ଆରମ୍ଭ ହୋଇ ଦାରୁ ସ୍ନାନାଦି ଅନୁଷ୍ଠିତ ହୁଏ । ବିଦ୍ୟାପତି, ବିଶ୍ୱାବସୁ ତଥା ଦଇତାପତିଙ୍କ ସମେତ ବିଶ୍ୱାକର୍ମାଦି ଦାରୁ ସ୍ନାନ କରାନ୍ତି । ଏହି ଦୁର୍ଲ୍ଲଭ ଲୀଳା ଦେଖିବା ପାଇଁ ଲୋକମାନଙ୍କର ଅପୂର୍ବ ସମାବେଶ

ହୁଏ । ହରିବୋଲ, ହୁଳହୁଳି ତଥା ଜୟ ଜଗନ୍ନାଥ ଧ୍ୱନିରେ ଗଗନ ପବନ ମୁଖରିତ ହୋଇଉଠେ । ଦାରୁଙ୍କ ଯଥାବିଧି ପୂଜାର୍ଚ୍ଚନା ପରେ ଆରମ୍ଭ ହୁଏ ଦାରୁକଟା ପର୍ବ । ନିଷ୍ଠାର ସହିତ ଉପବାସ ରହିଥିବା ଦାରୁ କଟାଳିମାନେ ଦାରୁଙ୍କୁ ପ୍ରଣାମ କରି ଦାରୁକଟା ଆରମ୍ଭ କରନ୍ତି । ପ୍ରଥମେ ସୁନା ପରେ ରୂପା ତଥା ଲୁହା କୁରାଢ଼ିରେ ଏହି କାର୍ଯ୍ୟ ଆରମ୍ଭ କରାଯାଏ । ଖୋଳ କରତାଳ ତଥା ଶଙ୍ଖ ନାଦରେ ବନସ୍ଥଳୀ ଉଚ୍ଛୁଳି ପଡ଼େ । ଅପୂର୍ବ ଅଲୌକିକ ସେ ଦୃଶ୍ୟ । ସତେ ଅବା ଏହା ଭକ୍ତ ଭଗବାନଙ୍କର ନୀବିଡତାର ପର୍ବ । ଏକାକାର ହେବାର ଲୀଳା । ଭଜନ କୀର୍ତ୍ତନ ତଥା ମହାପ୍ରଭୁଙ୍କ ଲୀଳାଗାନ ସହିତ ଦାରୁକଟା ରାତ୍ରର ମଧ୍ୟ ଭାଗରେ ଶେଷ ହୁଏ । ଦାରୁ ପଡ଼ିବା ସମୟରେ ଅପୂର୍ବ ନିସ୍ତବ୍ଧତା । ସତେ ଯେପରି ମହାପ୍ରଭୁ ଆପେ ଆପେ ଧରା ଦିଅନ୍ତି । ସମସ୍ତେ ଦାରୁଙ୍କୁ ଆନନ୍ଦରେ ପ୍ରଣିପାତ ହୁଅନ୍ତି ଓ ପ୍ରଭୁଙ୍କ ବନଭୋଜିରେ ସମ୍ମିଳିତ ହୁଅନ୍ତି । ପରିଦିନ ଦାରୁ ଚତୁର୍ଦ୍ଧା ବିଭକ୍ତ ହୋଇ ସ୍ୱ ସ୍ୱ ବସ୍ତ୍ର, ରକ୍ତ, ପୀତ, ନୀଳ ଓ କୃଷ୍ଣ ବସ୍ତ୍ରରେ ଆବୃତ ହୋଇ ନୂଆ ଶଗଡ଼ିରେ ବିଜେ ହୋଇ ମନ୍ଦିର ଅଭିମୁଖେ ଯାତ୍ରା କରନ୍ତି । ଘଣ୍ଟ, ଘଣ୍ଟା, ହରିବୋଲ, ହୁଳହୁଳି ତଥା ଶଙ୍ଖଧ୍ୱନିରେ ପ୍ରଭୁଙ୍କର ଯାତ୍ରା ଆରମ୍ଭ ହୁଏ । ଧ୍ୱଜା, ଛତ୍ର, କାହାଳୀ ସହିତ ପ୍ରଥମେ ସୁଦର୍ଶନ ପରେ ବଳଭଦ୍ର, ଦେବୀ ସୁଭଦ୍ରା ଓ ପଛରେ ଜଗନ୍ନାଥଙ୍କ ଦାରୁ ମନ୍ଦିରସ୍ଥ ଦାରୁଶାଳାରେ ବିଜେ କରନ୍ତି । ପ୍ରଭୁଙ୍କ ଆଗମନ ପଥରେ ସୁଶୋଭିତ ତୋରଣ । ପ୍ରଭୁଙ୍କୁ ଏହି ସମୟରେ ପନ୍ତିଭୋଗ ତଥା ପଣା ପ୍ରଦାନ କରାଯାଏ ।

ମହାପ୍ରଭୁଙ୍କ ଦାରୁ, ଦାରୁଶାଳାରେ ପ୍ରବେଶ କରିବା ପରେ ବିଗ୍ରହମାନଙ୍କର ଯଥାବିଧି ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ମହାପ୍ରଭୁଙ୍କ ନିର୍ଦ୍ଦେଶରେ ବିଶ୍ୱକର୍ମା ଶ୍ରୀ ଦଇତାରି ମହାପାତ୍ର ଓ ଶ୍ରୀ ପ୍ରସନ୍ନ ମହାପାତ୍ର ଏହି ଦାୟିତ୍ୱ ବହନ କରନ୍ତି । ସର୍ବ ଲକ୍ଷଣ ଯୁକ୍ତ ଦାରୁଙ୍କୁ ଦେଖି ସମସ୍ତେ ଆନନ୍ଦିତ ହୁଅନ୍ତି ଓ ଯଥାବିଧି ପୂଜାର୍ଚ୍ଚନା ପରେ ବିଗ୍ରହ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ଶ୍ରୀଜୀଉଙ୍କର ଏହି କାର୍ଯ୍ୟରେ ଦଇତାପତିମାନେ ବିଶ୍ୱକର୍ମାମାନଙ୍କୁ ଆବଶ୍ୟକୀୟ ସହଯୋଗ କରନ୍ତି । ଏହି ସମୟରେ ମହାପ୍ରଭୁଙ୍କ ନିର୍ମାଣ କାର୍ଯ୍ୟ ଚାଲିଥିବା ବେଳେ ଅଲୌକିକ ଘଟଣାମାନ ଦେଖାଯାଏ । ଏହି ନିର୍ମାଣ କାର୍ଯ୍ୟ ସନ୍ଧ୍ୟା ପୂର୍ବରୁ ବନ୍ଦ ରହୁଥିଲେ ହେଁ, ରାତିରେ ମନ୍ଦିରରୁ ଘଣ୍ଟ ଘଣ୍ଟା ଓ ଦାରୁଶାଳାରୁ ବିଗ୍ରହ ନିର୍ମାଣର ଠକ୍ ଠକ୍ ଶବ୍ଦ ଶୁଣାଯାଏ । ସତେ ଯେପରି ମହାପ୍ରଭୁଙ୍କର ନିର୍ମାଣ କାର୍ଯ୍ୟ ସେ ନିଜେ ହିଁ କରୁଛନ୍ତି । ଯଥାବିଧି ମହାପ୍ରଭୁ ସପ୍ତାବରଣ ଯୁକ୍ତ ହୋଇ ବିରାଜିତ ହୁଅନ୍ତି ଓ ପ୍ରଭୁଙ୍କ ପ୍ରତିଷ୍ଠା ପର୍ବ ଆରମ୍ଭ ହୁଏ ।

ଏହି ପ୍ରତିଷ୍ଠା କାର୍ଯ୍ୟ ପାଇଁ ଶ୍ରୀକ୍ଷେତ୍ରରୁ ରାଜଗୁରୁଙ୍କ ସହିତ ଆଚାର୍ଯ୍ୟଗଣ ଆସି ପହଞ୍ଚନ୍ତି । ପ୍ରଭୁଙ୍କର ଯଜ୍ଞ ମହାସମାରୋହରେ ଅନୁଷ୍ଠିତ ହୁଏ । ମହାପ୍ରଭୁ ମହାବିଧିରେ ରତ୍ନ ସିଂହାସନା ରୂଢ଼ ହୁଅନ୍ତି । ଶ୍ରୀଜୀଉଙ୍କର ନବଯୌବନ ଦର୍ଶନ କରି ସମସ୍ତେ ଧନ୍ୟ ହୁଅନ୍ତି ।

ଆଜି ମହାପ୍ରଭୁଙ୍କ ବିଜୟ ଲାଗି ଏ ଭୂମି ଧନ୍ୟ ହୋଇଛି ତଥା ଏ କ୍ଷେତ୍ର ମହାନ୍ ସଂସ୍କୃତିର ପୀଠ ରୂପେ ପରିଚିତ ହୋଇଛି । ପତିତପାବନ ପାଇଁ ତାର ନେତ ଆଜି ସାମ୍ୟ ମୈତ୍ରୀର ବାର୍ତ୍ତା ପ୍ରଚାର କରୁଛି । ଏତତ୍ ସହ ଶ୍ରୀଜୀଉଙ୍କର ଘୋଷଯାତ୍ରା ମହାନ୍ ସଦ୍‌ଭାବର ସ୍ୱାକ୍ଷର ବହନ କରୁଛି । ଆଜି ମହାପ୍ରଭୁଙ୍କ ନିକଟରେ ଛୋଟ ବଡ଼ ଭାବନା ନାହିଁ । ବିଶ୍ୱକୁ ଆଲିଙ୍ଗନ କରିବା ପାଇଁ ମହାପ୍ରଭୁ ବିପୁଳ ଭୁଜ ବିସ୍ତାର କରି ବସିଛନ୍ତି । ପ୍ରଭୁଙ୍କର ଆନନ୍ଦ ବଜାରରେ ଆଜି ସମସ୍ତେ ମହାଆନନ୍ଦରେ କରୁଣା ପ୍ରସାଦ ଗ୍ରହଣ କରୁଛନ୍ତି । ମହାପ୍ରଭୁ ମହାନନ୍ଦରେ ସମସ୍ତଙ୍କ ଗୁହାରୀ ଶୁଣି ସମସ୍ତଙ୍କ ଅଭିଳାଷ ପୂରଣ କରୁଛନ୍ତି । ସବୁ ତାଙ୍କରି ଇଚ୍ଛା । ସେଇ ମହାପ୍ରଭୁଙ୍କର ଜୟ ହେଉ । ଜୟ ଜଗନ୍ନାଥ ।

ଅଭିନବ ଶ୍ରୀକ୍ଷେତ୍ର
ସ୍ୱର୍ଣ୍ଣଗଡ଼, ମୁରସିଂହ, ବଲାଙ୍ଗିର

# ଶ୍ରୀଜଗନ୍ନାଥ ପାଞ୍ଚରାତ୍ର

ସୁନୀଲ ରଥ

ଗତ ଫେବୃଆରୀ ମାସରେ ପ୍ରଥମ କରି ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ମହାସମ୍ମିଳନୀ ଅନୁଷ୍ଠିତ ହୋଇଯାଇଛି । ସର୍ବଭାରତୀୟ ସ୍ତରରେ ଅନୁଷ୍ଠିତ ଏହି ସମ୍ମିଳନୀରେ ଭାରତ ବାହାରର ଶ୍ରୀଜଗନ୍ନାଥ ମନ୍ଦିରମାନଙ୍କର କିଛି ପ୍ରତିନିଧି ମଧ୍ୟ ଯୋଗ ଦେଇଥିଲେ । ସମ୍ମିଳନୀର ଉଦ୍ଦେଶ୍ୟ ଥିଲା ଶ୍ରୀଜଗନ୍ନାଥ ଚେତନାର ପ୍ରଚାର ପ୍ରସାର ତଥା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର କ୍ଷେତ୍ର ମାହାତ୍ମ୍ୟ ଓ ଲୀଳା ମାହାତ୍ମ୍ୟର ବର୍ଣ୍ଣନା ।

ପାଞ୍ଚରାତ୍ର କ'ଣ ?

ଏହି ପରିପ୍ରେକ୍ଷୀରେ ସ୍ୱତଃ ମନରେ ପ୍ରଶ୍ନବାଚୀ ଉଠିବ ଏହି ପାଞ୍ଚରାତ୍ର କ'ଣ ତଥା ପାଞ୍ଚରାତ୍ର ସହିତ ଶ୍ରୀଜଗନ୍ନାଥ କିପରି ଭାବରେ ସଂପର୍କିତ ? ତେଣୁ ଆମକୁ ପ୍ରଥମେ ପାଞ୍ଚରାତ୍ର ବିଷୟରେ ପ୍ରାଥମିକ ଅବବୋଧ ଆଣିବାକୁ ହେବ ।

ପାଞ୍ଚରାତ୍ର ଏକ ଆଗମିକ ଶବ୍ଦ । ରାତ୍ର ଶବ୍ଦ ଅର୍ଥ ହେଉଛି ଜ୍ଞାନ । ପାଞ୍ଚରାତ୍ର କହିଲେ ପାଞ୍ଚଗୋଟି ଜ୍ଞାନକୁ ହିଁ ବୁଝାଇଥାଏ । ବିଶେଷତଃ ଏହି ରାତ୍ର ଶବ୍ଦର ପ୍ରୟୋଗ ଜ୍ଞାନ ଅର୍ଥରେ ତନ୍ତ୍ର ଗ୍ରନ୍ଥମାନଙ୍କରେ କରାଯାଇଥାଏ । ବିଭିନ୍ନ ସଂହିତା ଗ୍ରନ୍ଥମାନଙ୍କରେ ପାଞ୍ଚରାତ୍ରର ବହୁ ଭିନ୍ନଭିନ୍ନ ସଂଜ୍ଞାମାନ ନିରୂପଣ କରାଯାଇଛି । ତେବେ ମୋଟା ମୋଟି ଭାବରେ ଯେଉଁ ପାଞ୍ଚଗୋଟି ଜ୍ଞାନ କଥା ମୁଖ୍ୟତଃ ସମସ୍ତ ଗ୍ରନ୍ଥ କହିଥାନ୍ତି ତାହାହେଲା– ପରମତତ୍ତ୍ୱ, ମୁକ୍ତି, ଭୁକ୍ତି, ଯୋଗ ଏବଂ ବିଷୟ ବା ସଂସାର ଜ୍ଞାନ । ତେବେ ପରମ ସଂହିତା ଅନୁସାରେ ପାଞ୍ଚରାତ୍ର କହିଲେ– ଯେଉଁ ଜ୍ଞାନ ସମ୍ମୁଖରେ ପଞ୍ଚମହାଭୂତ, ପାଞ୍ଚତନ୍ମାତ୍ର, ଅହଙ୍କାର, ବୁଦ୍ଧି ଓ ପ୍ରକୃତି । ଏହି ପାଞ୍ଚଗୋଟି ଅଜ୍ଞାନ ଭାବନାରେ ବିନାଶ ଘଟିଥାଏ । ତାହାହିଁ ପାଞ୍ଚରାତ୍ର ।

ମହାଭାରତରେ ଅବଶ୍ୟ ପାଞ୍ଚରାତ୍ରକୁ ସାମାନ୍ୟ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇଛି । ଏହା ଅନୁସାରେ ସାମଗ୍ରିକ ଜ୍ଞାନ ପାଇଁ ଚାରିବେଦ ଓ ସାଂଖ୍ୟଯୋଗ ଏହି ପାଞ୍ଚଜ୍ଞାନର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ ।

ଶତପଥ ବ୍ରାହ୍ମଣ ଅନୁସାରେ ପାଞ୍ଚରାତ୍ର କହିଲେ ପରଂବ୍ରହ୍ମଙ୍କ ପାଞ୍ଚଗୋଟି ରୂପର ବ୍ୟବସ୍ଥା ବିଷୟକ ଜ୍ଞାନ । ତାହା ହେଲା– ପର, ବ୍ୟୂହ, ବିଭବ, ଅର୍ଚ୍ଚା ଓ ଅନ୍ତର୍ଯ୍ୟାମୀ । ବିଶ୍ୱର ସର୍ଜନ ଓ ପାଳନ ପାଇଁ ଏହି ପାଞ୍ଚ ଅବସ୍ଥାର ପ୍ରୟୋଜନୀୟତା ଏକାନ୍ତ ଅପରିହାର୍ଯ୍ୟ ।

ଶ୍ରୀଜଗନ୍ନାଥ ପାଞ୍ଚରାତ୍ର– ଉପର ବର୍ଣ୍ଣିତ ପାଞ୍ଚରାତ୍ର ବା ପାଞ୍ଚଜ୍ଞାନ ପ୍ରଦାନରେ ସହାୟକ ହେଉଥିବା ଶାସ୍ତ୍ର ହିଁ ପାଞ୍ଚରାତ୍ର ଅଟେ । ଏ ସମସ୍ତ ପାଞ୍ଚରାତ୍ରର ସଂଜ୍ଞାକୁ ନେଇ ଶ୍ରୀଜଗନ୍ନାଥ ଚେତନାର ବିଶ୍ଳେଷଣ କଲେ ଆମେ ଲକ୍ଷ୍ୟ କରିବା ଯେ, ଉପରୋକ୍ତ ସମସ୍ତ ବିଷୟ ମହାପ୍ରଭୁଙ୍କଠାରେ ଏକୀଭୂତ ହୋଇଯାଇଛି । ଉପରୋକ୍ତ ସଜ୍ଞାମାନଙ୍କୁ ଆଧାର କରି ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ବ୍ୟବସ୍ଥାର ଯେଉଁ ଅୟମାରମ୍ଭ ଘଟିଛି ତାହା ହେଲା– ମହାପ୍ରଭୁଙ୍କ ସ୍ୱରୂପଜ୍ଞାନ, ମହିମାଜ୍ଞାନ, ଲୀଳାଜ୍ଞାନ, ରୂପଜ୍ଞାନ ଏବଂ ଧାମଜ୍ଞାନ । ବୈଷ୍ଣବୀୟ ପରମ୍ପରାରେ ଏହି ପାଞ୍ଚଜ୍ଞାନସହ ଆଉ ପାଞ୍ଚଟି ଜ୍ଞାନ ଯୋଡ଼ି ହୋଇ ଯାଇଛି । ତାହାହେଲା ଶ୍ରୀଜଗନ୍ନାଥଙ୍କ ଅର୍ଚ୍ଚନା, ଆହୂତି (ରୋଷହୋମ, ସୂର୍ଯ୍ୟପୂଜା), ସ୍ୱାଧ୍ୟାୟ (କ୍ଷେତ୍ରମାହାତ୍ମ୍ୟ ପାରାୟଣ), ପ୍ରବଚନ ଓ ନାମସଂକୀର୍ତ୍ତନ ।

ପାଞ୍ଚରାତ୍ରରେ ଶରଣାଗତ:– କେବଳ ପାଞ୍ଚରାତ୍ରର ଜ୍ଞାନ ଗମ୍ୟ ହେବା ଯଥେଷ୍ଟ ନୁହେଁ । ଏହା ସହିତ ଭକ୍ତର ଶରଣାଗତି ଏକାନ୍ତ ଆବଶ୍ୟକ । ଶରଣାଗତି ଛ'ଗୋଟି ପର୍ଯ୍ୟାୟରେ ଗତିଶୀଳ । (୧) ଆନୁକୂଲ୍ୟରେ ସଂକଳ୍ପ (୨) ପ୍ରାତିକୂଲ୍ୟରେ ବର୍ଜନ (୩) ଭଗବାନ ସଦା ବିପଦ ଆପଦରେ ରକ୍ଷା କରିବେ ବୋଲି ବିଶ୍ୱାସ (୪) ଭଗବାନଙ୍କୁ ରକ୍ଷକ ଭାବେ ବରଣ

(୫) ଆତ୍ମସମର୍ପଣ (୬) ଭଗବାନଙ୍କ କୃପାପାତ୍ର (କାର୍ପଣ୍ୟ) ହୋଇ ରହିବା ହିଁ ଶରଣାଗତି ଅଟେ ।

ପାଞ୍ଚରାତ୍ରର ପାଞ୍ଚଟି ପୂଜାପାଇଁ ବ୍ୟବସ୍ଥା– ଶ୍ରୀଜଗନ୍ନାଥ ପାଞ୍ଚରାତ୍ରରେ ମହାପ୍ରଭୁଙ୍କ ପୂଜା ପାଇଁ ପାଞ୍ଚଗୋଟି ଭାକ୍ତିଂକ ବ୍ୟବସ୍ଥାର ଆବଶ୍ୟକତା ମଧ୍ୟ ରହିଛି । ସେଗୁଡ଼ିକ ହେଲା– ଅଭିଗମନ, ଉପାଦାନ, ଯୋଗ, ସ୍ୱାଧ୍ୟାୟ ଏବଂ ଇଜ୍ୟା ।

ଅଭିଗମନ କହିଲେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ବେଢ଼ା ମାର୍ଜନ, ଉପଲେପନ, ନିର୍ମାଲ୍ୟ ଦୂରୀକରଣ । 'ଉପାଦାନ' କହିଲେ ମହାପ୍ରଭୁଙ୍କ ପାଇଁ ସୌରଭଯୁକ୍ତ ପୁଷ୍ପ ଇତ୍ୟାଦି ସଂଗ୍ରହ କରିବାର ଅନ୍ୟନାମ । ଯୋଗରେ ନିଜର ଶରୀର ହିଁ ମହାପ୍ରଭୁଙ୍କ ଆବାସସ୍ଥଳ ଏହି ଭାବନା । ସ୍ୱାଧ୍ୟାୟ କହିଲେ ପାରାୟଣ ଓ ମନ୍ତ୍ରର ଅର୍ଥ ଖୋଜି ବାହାର କରିବା, ସ୍ତୋତ୍ର ପାଠ ଏବଂ ନାମ ସଂକୀର୍ତ୍ତନ ଓ ତତ୍ତ୍ୱଚର୍ଚ୍ଚା । ଇଜ୍ୟା କହିଲେ ସ୍ନାନ, ବସ୍ତ୍ର ଶୋଧନ, ଆଚମନ, ତିଳକଧାରଣ, ଗୁରୁପୂଜା ଅଙ୍ଗପ୍ରତ୍ୟଙ୍ଗ ଶୋଧନ ଆଦି ବ୍ୟବସ୍ଥା ।

ଶ୍ରୀଜଗନ୍ନାଥ ପାଞ୍ଚରାତ୍ରରେ ପାଞ୍ଚ ରୂପ ଭାବନା– ଶ୍ରୀଜଗନ୍ନାଥ ସହିତ ପାଞ୍ଚରୂପ ଭାବନା ମଧ୍ୟ ଜଡ଼ିତ । ତାହା ହେଲା– ପର, ବ୍ୟୁହ, ବିଭବ, ଅନ୍ତର୍ଯ୍ୟାମୀ ଏବଂ ଅର୍ଚ୍ଚା । ଏହାହିଁ ପ୍ରଭୁଙ୍କ ଉପାସନା ଧାରାର ଅନ୍ୟତମ ମୁଖ୍ୟ ଘଟଣା ।

ଶ୍ରୀଜଗନ୍ନାଥ 'ପର' ସ୍ୱରୂପରେ ଜ୍ଞାନ, ଶକ୍ତି, ବଳ ଐଶ୍ୱର୍ଯ୍ୟ, ବୀର୍ଯ୍ୟ ଓ ତେଜଯୁକ୍ତ ଶାନ୍ତ ସ୍ୱରୂପ । ପର ରୂପରେ ସେ ସାତଭାଗରେ ବିଭକ୍ତ । ତାହାହେଲା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ । ଜ୍ଞାନ ରୂପରେ ସ୍ୱୟଂ ଜଗନ୍ନାଥ, ଶକ୍ତି ସ୍ୱରୂପା ଦେବୀ ସୁଭଦ୍ରା, ବଳ ସ୍ୱରୂପ–ଶ୍ରୀ ବଳଭଦ୍ର, ଐଶ୍ୱର୍ଯ୍ୟ ସ୍ୱରୂପା ଶ୍ରୀଦେବୀ, ବୀର୍ଯ୍ୟ ସ୍ୱରୂପା ଭୂଦେବୀ ଏବଂ ତେଜ ସ୍ୱରୂପ ଶ୍ରୀସୁଦର୍ଶନ ।

'ବ୍ୟୁହରୂପରେ' ସୃଷ୍ଟି କାର୍ଯ୍ୟ ପାଇଁ ବାସୁଦେବ ଚାରିପ୍ରକାର ରୂପରେ ଅବତାର ଗ୍ରହଣ କରନ୍ତି । ତାହା ବ୍ୟୁହାବତାର । ପାଞ୍ଚରାତ୍ର ଅନୁସାରେ ଏମାନେ ହେଲେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ।

ବାସୁଦେବଙ୍କ ଠାରୁ ସୃଷ୍ଟ ବ୍ୟୁହ ବାସୁଦେବଙ୍କ ଠାରେ ବାସୁଦେବଙ୍କ ଛ'ଟି ଶାନ୍ତ ଅବସ୍ଥା ଜାଗ୍ରତ ଭାବରେ ଥାଏ । ତେଣୁ ତାଙ୍କୁ ଈଶ୍ୱର କୁହାଯାଏ ତଥା ଧ୍ୟାନ ଯୋଗ୍ୟ ସେ ହିଁ ଜଗନ୍ନାଥ । ସଙ୍କର୍ଷଣ ଜୀବ ରୂପରେ ରହି ବଳପ୍ରଦାନ କରନ୍ତି, ପ୍ରଦ୍ୟୁମ୍ନ ବୁଦ୍ଧି ବା ତେଜ ରୂପରେ ସୃଷ୍ଟି ପାଳନରେ ସହାୟକ ହୁଅନ୍ତି ସେ ସୁଦର୍ଶନ ସ୍ୱରୂପ । ଅନିରୁଦ୍ଧ ଅହଙ୍କାରର ପ୍ରତୀକ ଓ ସୁଭଦ୍ରା ସ୍ୱରୂପା । ବିଭବ ରୂପରେ ଶ୍ରୀଜଗନ୍ନାଥ ନିଜଠାରୁ ଅନ୍ୟ ଜୀବଙ୍କୁ ଆବିର୍ଭାବ କରନ୍ତି । ଅର୍ଚ୍ଚା ଭାବରେ ଜଗତର ମଙ୍ଗଳ ପାଇଁ ପୂଜନଯୋଗ୍ୟ ରୂପ ପରିଗ୍ରହଣ କରନ୍ତି ଓ ଅନ୍ତର୍ଯ୍ୟାମୀ ଭାବରେ ସମସ୍ତ ପ୍ରାଣୀଙ୍କ ଅନ୍ତରରେ ରହି ଜୀବକୁ ନିୟନ୍ତ୍ରିତ କରିଥାନ୍ତି ।

ସାମଗ୍ରୀକ ଭାବରେ ଉପରୋକ୍ତ ଶାସ୍ତ୍ରୀୟ ବ୍ୟବସ୍ଥାକୁ ନେଇ ଶ୍ରୀଜଗନ୍ନାଥ ଚେତନାକୁ ଆଲୋଚନା କଲେ ଆମେ ଲକ୍ଷ୍ୟ କରିବା ଯେ, ପାଞ୍ଚରାତ୍ରକୁ ନେଇ ରହିଥିବା ଭିନ୍ନ ଭିନ୍ନ ସଂଜ୍ଞା ଓ ତତ୍ ସଂପର୍କୀୟ ବର୍ଣ୍ଣନା ସଂପୂର୍ଣ୍ଣଭାବେ ଶ୍ରୀଜଗନ୍ନାଥଙ୍କଠାରେ ସମାହିତ ହୋଇଥାଏ ।

ଶ୍ରୀଜଗନ୍ନାଥ ହିଁ ପାଞ୍ଚରାତ୍ରର ପର ବାସୁଦେବ ଯିଏ ଶାନ୍ତ ଅବସ୍ଥାରେ ରହନ୍ତି ପୁନଶ୍ଚ ସିଏ ହିଁ ବ୍ୟୁହ ବାସୁଦେବ ଭାବରେ ଜାଗ୍ରତ ଅବସ୍ଥାରେ ସୃଷ୍ଟି ପାଳନ କରନ୍ତି । ତାଙ୍କ ସହିତ ଜୀବ ଭାବରେ ଶ୍ରୀବଳଭଦ୍ର, ମନ ଭାବରେ ଦେବୀ ସୁଭଦ୍ରା ଏବଂ ଅହଙ୍କାର ଭାବରେ ସୁଦର୍ଶନ ରହନ୍ତି । ଯାହାଙ୍କୁ ଯଥାକ୍ରମେ ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଭାବରେ ଆମେ ଗ୍ରହଣ କରିଥାଉ ।

ପାଞ୍ଚରାତ୍ର ଓ ସ୍କନ୍ଦ ପୁରାଣ– ଉପରୋକ୍ତ ପାଞ୍ଚରାତ୍ର ଧାରାକୁ ଆଧାର କରି ସ୍କନ୍ଦ ପୁରାଣର ବିଷ୍ଣୁ ଖଣ୍ଡରେ ଶ୍ରୀଜଗନ୍ନାଥ ଚେତନାର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଯେଉଁ କାରଣରୁ କି ଶ୍ରୀମନ୍ଦିର ପ୍ରଶାସନ, ପୁରୀ ଆନୁକୂଲ୍ୟରେ 'ଶ୍ରୀଜଗନ୍ନାଥ ପାଞ୍ଚରାତ୍ର' କାର୍ଯ୍ୟକ୍ରମର ଶୁଭାରମ୍ଭ ପୁରୀ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟସ୍ଥ ପବିତ୍ର ଶରଧାବାଲିଠାରେ ଫାଲଗୁନ କୃଷ୍ଣପକ୍ଷ ତୃତୀୟା ଇଂରାଜୀ ତା ୧୦.୦୨.୧୨ ରିଖ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚଦିନ ବ୍ୟାପୀ ଶ୍ରୀଜଗନ୍ନାଥ ପାଞ୍ଚରାତ୍ର ମହାଯଜ୍ଞ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା ।

ଉପରୋକ୍ତ କାର୍ଯ୍ୟକ୍ରମକୁ ସାଫଲ୍ୟ ମଣ୍ଡିତ କରିବା ପାଇଁ ଓଡ଼ିଶାର ସାତଶହରୁ ଊର୍ଦ୍ଧ୍ୱ ଶ୍ରୀଜଗନ୍ନାଥ ମନ୍ଦିରର ପ୍ରତିନିଧି ତଥା ଓଡ଼ିଶା ବାହାରୁ ଏବଂ ଭାରତ ବାହାରୁ, ଆମେରିକା, ନେପାଳ, ଇଣ୍ଡୋନେସିଆ ଆଦି ଅଞ୍ଚଳର ପ୍ରତିନିଧିମାନଙ୍କ ବ୍ୟତୀତ ଅସଂଖ୍ୟ ସାଧୁ ସନ୍ଥ ଓ ଭକ୍ତଙ୍କର ମହାମିଳନ ଘଟିଥିଲା ।

ଏହି ମହାସମ୍ମିଳନୀ ତଥା ପାଞ୍ଚରାତ୍ର ମହାଯଜ୍ଞର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରୀଜଗନ୍ନାଥ ଚେତନାର ବିଶ୍ୱବ୍ୟାପୀ ପ୍ରଚାର ଯାହା ପ୍ରାରମ୍ଭରୁ ସୂଚିତ ହୋଇଛି । ତା ସହିତ ପ୍ରତ୍ୟେକ ଜଗନ୍ନାଥ ମନ୍ଦିରରେ ବର୍ଷକୁ ଅନ୍ତତଃପକ୍ଷେ ଥରଟିଏ ପାଞ୍ଚରାତ୍ର ଯଜ୍ଞ, ପାରାୟଣ ଓ ପ୍ରବଚନ

କାର୍ଯ୍ୟକ୍ରମ ଦ୍ୱାରା ଶ୍ରୀଜଗନ୍ନାଥ ଚେତନା ଓ ଭାବନାକୁ ଭକ୍ତଙ୍କ ହୃଦୟରେ ଅଧିକରୁ ଅଧିକ ଜାଗ୍ରତ କରିବା ।

ମହାସମ୍ମିଳନୀର ଉପରୋକ୍ତ ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ପ୍ରତ୍ୟହ ହଜାର ହଜାର ଭକ୍ତ ଓ ଶ୍ରଦ୍ଧାଳୁଙ୍କ ସମ୍ମୁଖରେ ପାରାୟଣ, ପ୍ରବଚନ, କାର୍ଯ୍ୟକ୍ରମ ଏବଂ ଆଲୋଚନା ଓ ପ୍ରଶ୍ନୋତ୍ତର ଦ୍ୱାରା ଶଙ୍କାର ସମାଧାନ ଅତି ସଫଳତାର ସହିତ ପାଳିତ ହୋଇଥିଲା । ଏଥିପାଇଁ ପ୍ରତ୍ୟହ ପୂର୍ବାହ୍ଣ ୮ଟାରୁ ଅପରାହ୍ଣ ୫ଟା ପର୍ଯ୍ୟନ୍ତ ଯଜ୍ଞ କର୍ମ ଅନୁଷ୍ଠିତ ହେବା, ପୂର୍ବାହ୍ଣ ୧୦ଟାରୁ ଅପରାହ୍ଣ ୫ଟା ଯାଏଁ ସ୍କନ୍ଦ ପୁରାଣ ବିଷ୍ଣୁଖଣ୍ଡର ପାରାୟଣ, ପାଞ୍ଚଟାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ନାମ ସଂକୀର୍ତ୍ତନ ସନ୍ଧ୍ୟା ୬ଟାରୁ ୭ଟା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ଭଜନ, ସନ୍ଧ୍ୟା ୭ଟାରୁ ରାତ୍ରି ୯ଟା ପର୍ଯ୍ୟନ୍ତ ପାଞ୍ଚରାତ୍ର ଆଧାରିତ ପ୍ରବଚନ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥିଲା ।

ପାଞ୍ଚରାତ୍ର ବିଧିରେ ରହିଥିବା ଶ୍ରୀଜଗନ୍ନାଥ ସ୍ୱରୂପଜ୍ଞାନ, ମହିମାଜ୍ଞାନ, ଲୀଳାଜ୍ଞାନ, ରୂପଜ୍ଞାନ ଓ ଧାମଜ୍ଞାନ ଆଦି ପାଞ୍ଚଜ୍ଞାନ, ସ୍କନ୍ଦପୁରାଣର ବର୍ଣ୍ଣନା ଆଧାରରେ ପାଞ୍ଚ ଭାଗରେ ବିଭକ୍ତ କରି ପ୍ରଥମ ଦିନ ଶ୍ରୀକ୍ଷେତ୍ର ମାହାତ୍ମ୍ୟ ଓ ବିଦ୍ୟାପତିଙ୍କ ପ୍ରତ୍ୟାବର୍ତ୍ତନ ବିଷୟରେ ପ୍ରବଚନ ପ୍ରଦାନ କରାଯାଇଥିଲା ।

ଦ୍ୱିତୀୟ ଦିବସରେ ଇନ୍ଦ୍ରଦ୍ୟୁମ୍ନଙ୍କ ଉତ୍କଳ ଯାତ୍ରା ଓ ସହସ୍ର ଅଶ୍ୱମେଧାଯୋଗ ବିଷୟ ପାରାୟଣ ହେବା ସହିତ, ପୁରୁଷୋତ୍ତମ କ୍ଷେତ୍ର ବିବରଣ–ଯଜ୍ଞ ନୃସିଂହ ପ୍ରତିଷ୍ଠା ବିଷୟକ ପ୍ରବଚନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ତୃତୀୟ ଦିବସରେ ଦାରୁବ୍ରହ୍ମଙ୍କ ଆବିର୍ଭାବ ଓ ବ୍ରହ୍ମାଙ୍କ ନୀଳାଚଳ ଆଗମନ ପ୍ରସଙ୍ଗରେ ପାରାୟଣ ଓ ପ୍ରବଚନ ହୋଇଥିଲା । ଚତୁର୍ଥ ଦିବସରେ ନୀଳାଦ୍ରି ମହୋଦୟ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ବରଲାଭ ତଥା ଅନ୍ତିମ ଦିବସରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ଯାତ୍ରା ବିଧାନ ଓ ଗ୍ରନ୍ଥ ମାହାତ୍ମ୍ୟକୁ ପ୍ରବଚନ ଓ ପାରାୟଣ ହୋଇଥିଲା ।

ଉପରୋକ୍ତ କ୍ରମରେ ପ୍ରତ୍ୟେକ ଜଗନ୍ନାଥ ମନ୍ଦିରରେ ପାରାୟଣ ଓ ପ୍ରବଚନ ପାଞ୍ଚରାତ୍ର ପାଇଁ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ସ୍କନ୍ଦପୁରାଣର ପ୍ରକାଶନ ମଧ୍ୟ ଉନ୍ମୋଚିତ ହୋଇଥିଲା । ପାଞ୍ଚଦିନ ବ୍ୟାପୀ ଅନୁଷ୍ଠିତ ଏହି କାର୍ଯ୍ୟକ୍ରମକୁ ଫାଲଗୁନ କୃଷ୍ଣ ଦ୍ୱିତୀୟା ଗୁରୁବାର ତା ୦୯.୦୨.୧୨ ରିଖ ଦିନ ପୂଜ୍ୟ ଗୁରୁଜୀ ଗୋବର୍ଦ୍ଧନ ପୀଠାଧିଶ ଶ୍ରୀମଦ୍ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ ମହାରାଜଙ୍କ ଦ୍ୱାରା ଉଦ୍‌ଘାଟନ କରାଯାଇଥିଲା । ଏହି ଉତ୍ସବର ମଞ୍ଚାସୀନ ପୁରୋଧାଗଣ ଥିଲେ ଗଜପତି ମହାରାଜା ଶ୍ରୀଶ୍ରୀ ଦିବ୍ୟସିଂହ ଦେବ, ପୂଜ୍ୟସ୍ୱାମୀ ନିର୍ଲିପ୍ତାନନ୍ଦ ସରସ୍ୱତୀ ଉପସଭାପତି ଅନ୍ତରାଷ୍ଟ୍ରୀୟ ଦିବ୍ୟଜୀବନ ସଂଘ ଋଷିକେଶ, ପୂଜ୍ୟବାବା ଚୈତନ୍ୟ ଚରଣ ଦାସ, ପୂଜ୍ୟବାବା ସଚିଦାନନ୍ଦ ଦାସ ମହାରାଜ, ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ ଶ୍ରୀପ୍ରଦୀପ୍ତ କୁମାର ମହାପାତ୍ର ଆଇ.ଏ.ଏସ୍, ପ୍ରଫେସର ଅଲେଖ ଚନ୍ଦ୍ର ଷଡ଼ଙ୍ଗୀ, ସଭାପତି, ମୁକ୍ତି ମଣ୍ଡପ ପଣ୍ଡିତ ସଭା ତଥା ଅନ୍ୟାନ୍ୟ ବହୁ ବିଶିଷ୍ଟ ବ୍ୟକ୍ତି ଓ ଭାରତର ବିଭିନ୍ନ ଅଞ୍ଚଳରୁ ଆସିଥିବା ସାଧୁ ସନ୍ଥ ଗଣ ।

ପାଞ୍ଚରାତ୍ର କାର୍ଯ୍ୟକ୍ରମର ବିଭିନ୍ନ ଦିଗ ସଂପର୍କରେ ଲୋକମାନଙ୍କୁ ଜାଗ୍ରତ କରିବା ପାଇଁ ଏହି ଅବସରରେ ଏକ ଦ୍ୱିଦିବସୀୟ କର୍ମଶାଳା ଅନୁଷ୍ଠିତ ହୋଇଯାଇଥିଲା । କର୍ମଶାଳାରେ ଶ୍ରୀମନ୍ଦିରର ଦୈନନ୍ଦିନ ସେବା ପୂଜା ସଂପର୍କରେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଖୁଣ୍ଟିଆ, ଦୈନନ୍ଦିନ ପୂଜାବିଧି ସଂପର୍କରେ ଶ୍ରୀ କୃଷ୍ଣଚନ୍ଦ୍ର ପୂଜାପଣ୍ଡା ସାମନ୍ତ, ଦୈନନ୍ଦିନ ବେଶ ଇତ୍ୟାଦି ସେବା ସଂପର୍କରେ ବଳଦେବ ସିଂହାରୀ, ଦୈନନ୍ଦିନ ଭୋଗ ବିଷୟରେ ଶ୍ରୀଜଗନ୍ନାଥ ସାମନ୍ତରା, ବାର୍ଷିକ ଯାନିଯାତ୍ରା ଓ ପର୍ବପର୍ବାଣି ବିଷୟରେ ଶ୍ରୀ ରବୀନ୍ଦ୍ରନାଥ ପ୍ରତିହାରୀ, ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ବାସ୍ତୁ ଓ ଶିଳ୍ପ ବିଷୟରେ ଶିଳ୍ପୀଗୁରୁ ପଦ୍ମଶ୍ରୀ ରଘୁନାଥ ମହାପାତ୍ର, ମନ୍ଦିର ଓ ବିଗ୍ରହ ପ୍ରତିଷ୍ଠା ବିଷୟରେ ପଣ୍ଡିତ ବିଶ୍ୱମ୍ଭର ଦାଶ ଏବଂ ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ଓ ପରିଚାଳନା ବ୍ୟବସ୍ଥା ସଂପର୍କରେ ଗଜପତି ଶ୍ରୀ ଶ୍ରୀଦିବ୍ୟସିଂହଦେବ ଆଲୋଚନା କରିଥିଲେ ।

ଉପରୋକ୍ତ ପାଞ୍ଚରାତ୍ର ତଥା ଉଦ୍‌ଘାଟନ ଦିବସର କାର୍ଯ୍ୟକ୍ରମର ସାମଗ୍ରିକ ପରିଚାଳନା କରିଥିଲେ ପ୍ରାଧ୍ୟାପକ ସୁନୀଲ ରଥ ଏବଂ ଲକ୍ଷ୍ମୀଧର ପୂଜାପଣ୍ଡା ମହୋଦୟ ।

ଶ୍ରୀଜଗନ୍ନାଥ ପାଞ୍ଚରାତ୍ର କାର୍ଯ୍ୟକ୍ରମର ସୁଦୂର ପ୍ରସାରୀ ସମ୍ଭାବନା ମଧ୍ୟ ଏହିଠାରେ ଅନୁଭୂତ ହୋଇଥିଲା । ଏହି କାର୍ଯ୍ୟକ୍ରମକୁ ନିଜ ନିଜ ଅଞ୍ଚଳରେ ପାଳନ କରିବା ପାଇଁ ଭକ୍ତ ଓ ପ୍ରତିନିଧିମାନଙ୍କ ଭିତରେ ପ୍ରବଳ ଉତ୍ସାହ ପରିଲକ୍ଷିତ ହୋଇଥିଲା । ଯାହାର ଫଳଶ୍ରୁତି ନିକଟ ଭବିଷ୍ୟତରେ ମିଳିବାର ସମ୍ଭାବନା ମଧ୍ୟ ରଖାଯାଇପାରେ ।

ଉପରନୂଆସାହି, ପୁରୀ–୧

# ବାଥୁଡି ଆଦିବାସୀ ସଂସ୍କୃତିରେ ବଡ ଠାକୁର ବଳରାମ

ସବ୍ୟସାଚି ଦାସ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକରେ ଆର୍ଯ୍ୟମାନେ ଓଡିଶାକୁ ଅସିବା ପୂର୍ବରୁ ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ବଡାମ କ୍ଷେତ୍ର ଭାବେ ପ୍ରସିଦ୍ଧି ଲାଭ କରିଥିଲା । ବଡାମ ଠାକୁର ହେଉଛନ୍ତି ବାଥୁଡି ଜାତି ଆଦିବାସୀମାନଙ୍କ ଆରାଧ୍ୟ ଦେବତା । ସେମାନଙ୍କ ମତରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବଡଭାଇ ବଳରାମ ହେଉଛନ୍ତି ବଡାମ । ବଳରାମ ନାମଟି କାଳକ୍ରମେ ଅପଭ୍ରଂଶ ହୋଇ ବଡାମ ହୋଇଥିବାର ଅନୁମାନ କରାଯାଏ । ବହୁ ପ୍ରାଚୀନ ଯୁଗରେ ଯେତେବେଳେ ଆର୍ଯ୍ୟମାନେ ଓଡିଶାରେ ପ୍ରବେଶ କରି ନଥିଲେ, ସେତେବେଳେ ଉତ୍ତର ଓଡିଶାରେ କେବଳ ପ୍ରାଚୀନ ଆଦିବାସୀ ଭୂୟାଁ, ବାଥୁଡି, ଶବର ଓ ଖଡିଆ ସମ୍ପ୍ରଦାୟ ଲୋକମାନେ ହିଁ ବସବାସ କରୁଥିଲେ । ସେତେବେଳେ ବାଥୁଡି ସମ୍ପ୍ରଦାୟର ମହାପାତ୍ର ପଦବୀଧାରୀମାନେ ଏହି ଅଞ୍ଚଳକୁ ଶାସନ କରୁଥିବାର ଜଣାଯାଏ । ଏବେ ମଧ୍ୟ ବଡାମ ଠାକୁରଙ୍କୁ ପୂଜା କରୁଥିବା ସେବକଙ୍କୁ ବାଥୁଡିମାନେ ରାଜା ବୋଲି ସମ୍ବୋଧନ କରିଥାନ୍ତି । ସେଇ ସମୟରୁ ସେମାନଙ୍କ ନାମ ପ୍ରାରମ୍ଭରେ ବଡାମଙ୍କ ନାମ ଉଲ୍ଲେଖ କରୁଥିଲେ, ଏହାକୁ ବିରୁଦ କୁହାଯାଏ, ଯାହାକି ବହୁ ପ୍ରାଚୀନ କାଳରୁ ଗଡିଆସି ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ରାଜତନ୍ତ୍ର ଶାସନର ଶେଷ ରାଜାଙ୍କଠାରେ ମଧ୍ୟ ଦେଖିବାକୁ ମିଳୁଥିଲା ।

ମୟୂରଭଞ୍ଜ ମହାରାଜାଙ୍କର ବିରୁଦ ଥିଲା ସ୍ୱସ୍ତି ସମସ୍ତ ପ୍ରସସ୍ତି ସ-ହିତେଷ୍ଠୁ, ଶ୍ରୀ ବଡାମ ଦେବଗଣ, ଶ୍ରୀ ଅଯୋନି ସମ୍ଭୂତ, ଶ୍ରୀ ମୟୂର ଡିମ୍ବରୁ ଜାତ,ଶ୍ରୀ ବଶିଷ୍ଠ ମହର୍ଷି ପ୍ରତିପାଳିତ, ଶ୍ରୀରାମଚନ୍ଦ୍ର ଟୀକାସାରଣ, ଶ୍ରୀ ଖିଚିଙ୍ଗେଶ୍ୱରୀ ଚାରଣେ ଶରଣ, ଶ୍ରୀ ବ୍ରାହ୍ମଣଘାଟୀ ଶୁଭସ୍ଥାଧୀପତି ଶ୍ରୀମତ ଶ୍ରୀ ଶ୍ରୀ (ମୟୂରଭଞ୍ଜ ମହାରାଜାଙ୍କ ନାମ) ।

ସେହିପରି କେନ୍ଦୁଝର ମହାରାଜାଙ୍କର ବିରୁଦ ଥିଲା । ସ୍ୱସ୍ତି ସମସ୍ତ ପ୍ରସସ୍ତି ସ-ହିତେଷ୍ଠୁ, ଶ୍ରୀ ବଡାମ ଦେବଗଣ, ଶ୍ରୀ ଅଯୋନି ସମ୍ଭୂତ, ଶ୍ରୀ ମୟୂର ଡିମ୍ବରୁ ଜାତ,ଶ୍ରୀ ବଶିଷ୍ଠ ମହର୍ଷି ପ୍ରତିପାଳିତ, ଶ୍ରୀ ରାମଚନ୍ଦ୍ର ଟୀକାସାରଣ, ଶ୍ରୀ ଖିଚିଙ୍ଗେଶ୍ୱରୀ ଚରଣେ ଶରଣ, ଶ୍ରୀତାରିଣୀ ଦେବୀ ଚରଣେ ଆରାଧକ ଶ୍ରୀକେନ୍ଦୁଝରୀ ଶୁଭସ୍ଥାଧୀପତି ଶ୍ରୀମତ ଶ୍ରୀ ଶ୍ରୀ ମହାରାଜା (କେନ୍ଦୁଝର ମହାରାଜାଙ୍କ ନାମ)

ଉକ୍ତ ବିରୁଦରୁ ଜଣାପଡେ ଦୁଇଟିଯାକ ବିରୁଦ ବଡାମଙ୍କ ନାମରେ ଆରମ୍ଭ ହୋଇ ଖିଚିଙ୍ଗେଶ୍ୱରୀଙ୍କ ନାମ ପର୍ଯ୍ୟନ୍ତ ସମାନ । କେବଳ କେନ୍ଦୁଝର ମହାରାଜାଙ୍କର ତାରିଣୀ ଦେବୀଙ୍କର ନାମ ରହିଛି । ଏଥିରୁ ପ୍ରମାଣିତ ହୁଏ ଅତୀତରେ ମୟୂରଭଞ୍ଜ ଓ କେନ୍ଦୁଝର ଗୋଟିଏ ରାଜ୍ୟ ଥିଲା ଏବଂ ବଡାମଦେବ ବାଥୁଡି ରାଜାଙ୍କର ଇଷ୍ଟ ଦେବତା ଥିଲେ । ସେମାନେ ମୟୂରଭଞ୍ଜର ଶିମିଳିପାଳ ପାହାଡରେ ଦେବସ୍ଥଳୀ ନିକଟସ୍ଥ ବାଛୁରୀଚରା ଓ ବାରାହା କାମୁଡା ନିକଟରେ ପର୍ଶ୍ଚିମ ଦେଓ ନଦୀ କୂଳସ୍ଥ ବାଥୁଡିବସାଠାରେ ବସତି ସ୍ଥାପନ କରି ବହୁକାଳ ପର୍ଯ୍ୟନ୍ତ ରହିଥିଲେ । କାଳକ୍ରମେ ସେମାନଙ୍କର ବଂଶବୃଦ୍ଧି ଓ ହିଂସ୍ରଜନ୍ତୁମାନଙ୍କର ଉତ୍ପାତ ହେତୁ ଶିମିଳିପାଳ ତ୍ୟାଗ କରି ସେମାନେ ସମତଳ ଅଞ୍ଚଳକୁ ଚାଲି ଆସିଲେ ।

ବାଥୁଡି ସମ୍ପ୍ରଦାୟର ଲୋକେ କୌଣସି ଶୁଭ କାର୍ଯ୍ୟରେ ବାହାରକୁ ଗଲେ ବଡାମଙ୍କୁ ମୁଣ୍ଡିଆ ମାରି ଆଗକୁ ପାଦ ବଢାଇ ଥାଆନ୍ତି । ଝିଅ ବିବାହ ପରେ ଶାଶୂ ଘରକୁ ଯିବା ସମୟରେ ବଡାମ ଠାକୁରଙ୍କୁ ମୁଣ୍ଡିଆ ମାରି ବିଦାୟ ନେଇଥାଏ ।

ମୟୂରଭଞ୍ଜର ଶିମିଳିପାଳ ନିଘଞ୍ଚ ଜଙ୍ଗଲର ମଧ୍ୟସ୍ଥଳରେ ରହିଛି  ବାଥୁଡି ଜାତିର ଆରାଧ୍ୟ ଦେବତା ବଡାମ ଦେବଙ୍କ ଅଠର ଦେଉଳ ମନ୍ଦିର । ଉକ୍ତ ମନ୍ଦିରଟି ବହୁ ପ୍ରାଚୀନ କାଳରେ ମାଙ୍କଡା ପଥରରେ ନିର୍ମିତ ହୋଇଥିବାର ଜଣାଯାଏ ।

ଶିମିଳିପାଳ ଅଭୟାରଣ୍ୟର ବିଭିନ୍ନ ସ୍ଥାନରେ ବାଥୁଡି ଜାତିର ଲୋକମାନେ ପୂଜା କରୁଥିବା ୧୮ ଗୋଟି ଦେଉଳ ହେଲା–

୧– ବଡାମ ଦେଉଳ, ମାନବ ଦେଉଳ (ଲେମ୍ବୁଗୋଡା)
୨– ଈଶ୍ୱର ଦେଉଳ, ବଡାମଶ୍ୱର (ମାନବ ଦେଉଳର ଉତ୍ତର ଦିଗରେ ଥିବା ପାହାଡ)
୩– ଲକ୍ଷ୍ମୀ ଦେଉଳ, ଲକ୍ଷ୍ମୀ ଭଣ୍ଡାର(ମାନବ ଦେଉଳର ପଶ୍ଚିମ ଦିଗରେ ଥିବା ପାହାଡ)
୪– ଗଡଚଣ୍ଡୀ (ଗଡ ଶିମିଳିପାଳ)
୫– ବାରଭାଇ ସନ୍ଧାର (ବରେହିପାଣି ଜଳପ୍ରପାତ)
୬– ନୀଳ ମାଧବ (ଯୋରନ୍ଦା ଜଳପ୍ରପାତ)
୭– ଗଣେଶ, ଗଣେଶ୍ୱର(ଧୁଡୁରୁ ଚମ୍ପା ପାହାଡ)
୮– ହନୁମାନ (ସୀତାକୁଣ୍ଡ ଜଳପ୍ରପାତ)
୯– ଦ୍ୱାରଶୁଣି (ବଣିଆବସାର ରାଣୀଭୋଳ, ବାଙ୍ଗିରିପୋଷି ଘାଟି, ଟାଙ୍ଗୀବେଣଟ ଘାଟୀ, ଖଡକେଇ ଘାଟୀ, ଚମ୍ପାଘାଟି କାଳିକା ପ୍ରସାଦ)
୧୦–ବିଷ୍ଣୁମନ୍ଦିର (ଯମୁନା, ବାରଦଣ୍ଡା)
୧୧–ବାସୁକୀ, ବସୁମାତା (ଗୁରାଣ୍ଡିଆ ପାହାଡ)
୧୨–ମେଘେଇଶୁଣୀ, ଇନ୍ଦ୍ରଦେବ (ମେଘାସନ ପର୍ବତ)
୧୩–ରାମଚନ୍ଦ୍ର, ରାମରାଜା (ଓଲକୁଦର ଜଳପ୍ରପାତ, କାଳିଆଣି)
୧୪–ବିରାଟପାଟ (ଦେବୀଗଡ ଜଳପ୍ରପାତ, ଚକ୍ରଧରପୁର)
୧୫–ଅମ୍ବିକା (ଦେବକୁଣ୍ଡ ଜଳପ୍ରପାତ)
୧୬–ସାହାଡା ସୁନ୍ଦରୀ (ଶାଅଣ ଦେଇ ଜଙ୍ଗଲ, ବିଶପୁର କେନ୍ଦୁମୁଣ୍ଡି)
୧୭–ବାଉଳି (ଯଜଗୋଡା ପାହାଡ)
୧୮–ଛତ୍ରି ମହାବୀର (ମହାବୀର ଦଣ୍ଡା ପାହାଡ)

ମନ୍ଦିରରେ ମାଙ୍କଡା ପଥରକୁ ଯୋଡିବା ପାଇଁ କୌଣସି ସିମେଣ୍ଟ କିମ୍ବା ଚୂନ ବ୍ୟବହାର କରାଯାଇ ନାହିଁ । ଖ୍ରୀଷ୍ଟପୂର୍ବ ୪୫୪ରେ ମହାରାଜା ବେଣୁଧର ମହାପାତ୍ର ମନ୍ଦିର ତୋଳାଇ ଥିଲେ ବୋଲି ବାଥୁଡି ସମ୍ପ୍ରଦାୟର ଲୋକମାନେ ଦାବି କରନ୍ତି । ଏହା ଓଡିଶାର ସବୁଠାରୁ ପ୍ରାଚୀନ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରି ନାହିଁ । ଗାଧୋଇବା ପାଇଁ ମନ୍ଦିର ନିକଟରେ ଏକ ପ୍ରାଚୀନ ପୋଖରୀ ଅଛି । ଏହା ମେଘନାଦ ପୋଖରୀ ନାମରେ ନାମିତ। କିନ୍ତୁ ତାହା ପଙ୍କ ଓ ଦଳ ଦ୍ୱାରା ପୋତି ହୋଇଯାଇଛି।

ଶିମିଳିପାଳର ନିଘଞ୍ଚ ଜଙ୍ଗଲ ମଧ୍ୟରେ ଅବସ୍ଥିତ ଏହି ମନ୍ଦିରରେ ବାଥୁଡି ସମ୍ପ୍ରଦାୟର ଆଦିବାସୀମାନେ ବଡାମ ଠାକୁରଙ୍କୁ ଅତି ପୁରାତନ କାଳରୁ ଅତି ନିଷ୍ଠାର ସହିତ ପୂଜା କରି ଆସୁଛନ୍ତି । ପ୍ରତ୍ୟେକ ବର୍ଷ ଚୈତ୍ର ମାସର ପ୍ରଥମ ଦିନରୁ ଗଣେଶ ଦେଉଳରୁ ପୂଜା ଆରମ୍ଭ ହୋଇ ପ୍ରତ୍ୟେକ ଦିନ ଚାଲିଚାଲି ଶିମିଳି ପାହାଡରେ ଥିବା ପ୍ରାକୃତିକ ଗୁମ୍ଫାମାନଙ୍କରେ ଥିବା ଦେବାଦେବୀମାନଙ୍କୁ ୧୮ ଦିନରେ ଅସ୍ଥାୟୀ ଶିବିର କରି ରହି୧୮ଟି ଦେଉଳରେ ପୂଜା ଅର୍ଚ୍ଚନା କରାଯାଏ। ଏହା ଏପ୍ରିଲ ମାସରେ ପଡୁଥିଲେ ମଧ୍ୟ ଶିମିଳିପାଳ ମଧ୍ୟରେ ଅତ୍ୟଧିକ ଥଣ୍ଡା ପାଇଁ ରାତ୍ରିରେ ନିଆଁ ଜାଳି ଭଜନ ସହିତ ଚାଙ୍ଗୁନାଚ ଅତି ଆକର୍ଷଣ ହୁଏ । ସ୍ତ୍ରୀଲୋକମାନେ ଚାଙ୍ଗୁବାଦ୍ୟର ତାଳେ ତାଳେ ହାତ ଧରାଧରି ହୋଇ ନଇଁ ନଇଁ ନୃତ୍ୟ କରିଥାନ୍ତି । ଶ୍ରୀ ଶ୍ରୀ ବୃନ୍ଦାବନ ମହାପାତ୍ର ହେଉଛନ୍ତି ବର୍ତ୍ତମାନ ଅଠର ଦେଉଳର ସେବକ ତଥା ପୂଜକ । ତାଙ୍କର ପୂର୍ବପୁରୁଷମାନେ ବଂଶାନୁକ୍ରମେ ଶିମିଳିପାଳର ଅଠର ଦେଉଳର ସେବା କରି ଆସୁଛନ୍ତି। ଶିମିଳିପାଳର ପ୍ରାକୃତିକ ପରିବେଶରେ ବିଭିନ୍ନ ସ୍ଥାନରେ ରହିଛି ୧୮ଟି ଦେଉଳ । ଯେଉଁଗୁଡିକ କି ପ୍ରାକୃତିକ ପଥରଗୁମ୍ଫା ମଧରେ ଅବସ୍ଥିତ । କେବଳ ବଡାମଙ୍କ ମନ୍ଦିରଟି ମଣିଷ ଦ୍ୱାରା ନିର୍ମିତ ହୋଇଥିବାରୁ ଏହାକୁ ମାନବ ଦେଉଳ ମଧ୍ୟ କୁହାଯାଏ। ଶେଷ ଦିନରେ ଅର୍ଥାତ୍ ଚୈତ୍ର ୧୮ଦିନରେ ମାନବ ଦେଉଳରେ ବଡାମ ଠାକୁରଙ୍କୁ ପୂଜା କରାଯାଏ।

ବଡାମଦେବଙ୍କ ପୂଜାର୍ଚ୍ଚନାରେ କେତେକ ନିୟମ ବିଧି ରହିଛି ଯାହାକୁ ବାଥୁଡିମାନେ ପରମ୍ପରା ଅନୁଯାୟୀ ପ୍ରାଚୀନ କାଳରୁ ମାନି ଆସୁଛନ୍ତି । ଭକ୍ତମାନଙ୍କୁ ସୁଟ୍‌ସାଟ୍ ବା ଜୋତା ପିନ୍ଧି ସମାବେଶରେ ଯୋଗଦେବା ପାଇଁ ଅନୁମତି ଦିଆଯାଏ ନାହିଁ । ପୁରୁଷମାନେ ଧଳା ଧୋତି ଓ ଧଳା ଗଞ୍ଜି ଏବଂ ମହିଳାମାନେ ଧଳା ଶାଢୀରେ ନାଲି ଧଡି ପିନ୍ଧି ମନ୍ଦିର ପରିସରକୁ ଯାଇଥାନ୍ତି । ମହିଳାମାନେ କାଚଚୂଡି, ନାଲି କିମ୍ବା କଳା ରଙ୍ଗର ଶାଢୀ ପିନ୍ଧି ଅଥବା ମୁଣ୍ଡରେ ଫିତା ବାନ୍ଧି ମନ୍ଦିର ପରିସରକୁ ଯିବା ବାରଣ ଅଛି । ମନ୍ଦିରରେ ଭୋଗ ନୈବେଦ୍ୟ ଅର୍ପଣରେ ପଲିଥିନ ମୁଣା ନିଷିଦ୍ଧ ଥିବାରୁ ଶାଳପତ୍ରର ଠୋଲା ବ୍ୟବହାର କରାଯାଇଥାଏ । ଭୋଗ ନୈବେଦ୍ୟ ଅର୍ପଣରେ ଧୂପକାଠି, ଚିନି କିମ୍ବା ଚିନିରେ ପ୍ରସ୍ତୁତ ଲଡୁ କୋରା ଆଦି ଭୋଗ ନିଷିଦ୍ଧ ଅଛି । କେବଳ ଫଳମୂଳ, ଗୁଡ, ଗଞ୍ଜେଇ, ଝୁଣା, କର୍ପୂର, ମହୁ, ଗାଈ ଘିଅ ଓ କ୍ଷୀର ଭୋଗ ଦିଆଯାଏ ।

କିମ୍ବଦନ୍ତୀ କହେ ତ୍ରେତୟା ଯୁଗରେ ଭଗବାନ ବିଷ୍ଣୁ ବଡଭାଇ ରାମଚନ୍ଦ୍ର ରୂପରେ ଜନ୍ମ ହୋଇଥିବା ବେଳେ ବଡାମ ସାନଭାଇ ଲକ୍ଷ୍ମଣ ରୂପରେ ଜନ୍ମ ନେଇଥିଲେ। ସେହିପରି ଦ୍ୱାପର ଯୁଗରେ

ଭଗବାନ ବିଷ୍ଣୁ ସାନଭାଇ ଶ୍ରୀକୃଷ୍ଣ ରୂପରେ ଜନ୍ମ ନେଇଥିବା ବେଳେ ବଡାମ ହଳଧର ବା ବଳରାମ ରୂପରେ ଜନ୍ମ ନେଇଥିଲେ । ବାଲ୍ୟ ଅବସ୍ଥାରେ ଏଇ ଦୁଇ ଭାଇ ଅତ୍ୟନ୍ତ ଦୁଷ୍ଟ ଥିଲେ । ଏମାନେ ଗୋପପୁରରେ ଗୋପୀମାନଙ୍କ ଘରେ ପଶି କ୍ଷୀର, ଲହୁଣୀ ଓ ଘିଅ ଚୋରି କରି ଖାଉଥିଲେ ଓ ଗୋପୀମାନଙ୍କୁ ବହୁତ ହଇରାଣ ହରକତ କରୁଥିଲେ । ଫଳରେ ଗୋପୀମାନେ ବିରକ୍ତ ହୋଇ ଅଭିଶାପ ଦେଇଥିଲେ, ତୁମେ ଦୁହେଁ କଳିଯୁଗରେ ପାଷାଣ ବା ପଥର ହୋଇ ଜଙ୍ଗଲରେ ରହି ଜଙ୍ଗଲର ଫଳମୂଳ ଖାଇ ଜୀବନ ଧାରଣ କରିବ ।

ଏଣୁ ବଳରାମଙ୍କୁ ଶିମିଳିପାଳ ଜଙ୍ଗଲରେ ଶିଳା ରୂପରେ ବଡାମ ଭାବେ ବାଥୁଡିମାନେ ପୂଜା କରୁଥିବାବେଳେ ଶ୍ରୀକୃଷ୍ଣଙ୍କୁ ନୀଳକନ୍ଦର ଜଙ୍ଗଲରେ ଶିଳା ରୂପରେ ନୀଳମାଧବ ଭାବେ ଶବର ଜାତିର ଆଦିବାସୀମାନେ ପୂଜା କରୁଥିଲେ । ବଡାମ ପୁରାତନ କାଳରେ ସର୍ବପ୍ରଥମେ ବାଥୁଡିମାନଙ୍କୁ ହଳଲଙ୍ଗଳ ପ୍ରଦାନ କରି ଏହାକୁ କୃଷି କାର୍ଯ୍ୟରେ ଲଗାଇବା ପାଇଁ ପରାମର୍ଶ ଦେଇଥିଲେ ବୋଲି ଚାଙ୍ଗୁଗୀତ ମାଧ୍ୟମରେ ପରିପ୍ରକାଶ କରିଥାନ୍ତି । ସେମାନେ ହଳଲଙ୍ଗଳକୁ ବଡାମପୀଠ ବା ସେମାନଙ୍କ ଭାଷାରେ ବଡାମଶାଳରେ ରଖି ପୂଜା କରିଥାନ୍ତି । ଏଣୁ ଚାଙ୍ଗୁଗୀତରେ ସେମାନେ ଗାନ କରିଥାନ୍ତି–

ଦ୍ୱାପରରେ ବଳରାମ ଲଙ୍ଗଳ ଯେ କାନ୍ଧେ ବୋହି ଥିଲେ
କଳିରେ ବଡାମ ମତେ ଅବତୀର୍ଣ୍ଣ ହେଲେ ।

ଦେଉଳସାହି
ବାରିପଦା–୭୫୭୦୦୧
ମୟୂରଭଞ୍ଜ

# ରଥଯାତ୍ରା

**ଶକୁନ୍ତଳା ଆଚାର୍ଯ୍ୟ**

ସୂର୍ଯ୍ୟ କହେ, ଦକ୍ଷିଣ ନୟନୁ ମୁଁ ଯେ
ଆଲୋକ ବିତରେ,
ଚନ୍ଦ୍ର କହେ ଶୀତଳତା
ଦେଉଛି ବାମରେ,
ସମୁଦ୍ର ଗର୍ଜନେ କହେ
ଅନ୍ତରୁ ଝରୁଛି,
ପଦ୍ମ କହେ ପଦ୍ମପାଦୁ
ବାସ ବିତରୁଛି ।
ପାରିଜାତ କହେ ସ୍ୱର୍ଗୁ
ଆସେ ଲୁଚି ଛପି,
ଜନ ନୟନୁ ଅଦୃଶ୍ୟ
ହୁଅଇ ଯଦ୍ୟପି ।
ପ୍ରୀତି ଭାବେ ଜଗନ୍ନାଥ
ଦେଉଥାନ୍ତି ହସି,
ଧୀରେ ଧୀରେ ଚାଲି ଯାଏ
ପୟର ପରଶି



ଯାହା ଇଙ୍ଗିତେ ଅନନ୍ତୁ
ଧାଇଁ ଆସେ ବାରି
ଜନ ଜୀବନ ଚାତକ
ତୃଷ୍ଣା ହିତକାରି ।
ତୁଳସୀ ଗଳାରେ ଶୋଭା
ପାଏ କାଳେ କାଳେ
ଧନ୍ୟ ସେ ଜନମ ବିଧି
ଲେଖିଥିଲେ ଭାଲେ
ବିଷରୁ ଅମୃତ ପୂର୍ଣ୍ଣ
କଲ ଜଗତକୁ
ସର୍ବ ଦରଶନେ ଆଜି
ବିଜୟ ରଥକୁ ।

ମାର୍ଫତ୍– ବ୍ରଜବନ୍ଧୁ ଆଚାର୍ଯ୍ୟ
ଖାକିମଠ ସାହି, ପୁରୀ–୨

# ପ୍ରାଚୀନ ଓଡ଼ିଆ କାବ୍ୟ କବିତା ଓ ଶ୍ରୀଜଗନ୍ନାଥ

**ଡକ୍ଟର ବିରଞ୍ଚି ସାହୁ**

ଓଡ଼ିଶା–ଉତ୍କଳ–କଳିଙ୍ଗ–ଉଡ୍ରଦେଶର ଆରାଧ୍ୟ, ଶ୍ରୀଜଗନ୍ନାଥଙ୍କୁ ଛାଡ଼ି କେବେ ପରିକଳ୍ପନା କରାଯାଇ ପାରେନା । ପ୍ରାଚୀନ ଉଡ୍ରଦେଶରୁ ଆଧୁନିକ ଓଡ଼ିଶା ହେବା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ହିଁ ସର୍ବକାଳୀଃ ହୋଇ ରହିଛନ୍ତି । ଅପୌରୁଷେୟ ଦାରୁ ଦେବତା ଭାବେ ଯୁଗଯୁଗ ଧରି ପୂଜିତ ଶ୍ରୀଜଗନ୍ନାଥ ନୀଳାଚଳରେ ପୂଜା ପାଇ ଆସୁଛନ୍ତି । ତେଣୁ ପ୍ରତ୍ୟେକଟି ଓଡ଼ିଆର ହୃଦୟ ତନ୍ତ୍ରୀରେ ବୀଣାର ଝଙ୍କାର ତୋଳିଥିବା ଏହି ଦେବତା ସତରେ କେତେ ବିସ୍ମୟ । ସଚରାଚର ପୃଥିବୀରେ ତାଙ୍କର ଯେଉଁ 'ମାହାତ୍ମ୍ୟ ଉପଲବ୍ଧ' ତାହାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଓଡ଼ିଆଟିଏ ଯେଉଁଠି ଥାଉନା କାହିଁକି, ତା'ର ଆରାଧ୍ୟ ଶ୍ରୀଜଗନ୍ନାଥଙ୍କୁ ଛାଡ଼ି ପାରି ନାହିଁ । ସାହିତ୍ୟ, ସଂସ୍କୃତି, ପରମ୍ପରା, ଐତିହ୍ୟ, କୃଷି, ଶିଳ୍ପ, ବାଣିଜ୍ୟ, ବିଜ୍ଞାନ, ନୌବାଣିଜ୍ୟ, ଭାସ୍କର୍ଯ୍ୟ, ସ୍ଥାପତ୍ୟ ଆଦି ସବୁ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଉପଲବ୍ଧ ଏବଂ ଏସବୁ କ୍ଷେତ୍ରରେ ପ୍ରଥମେ ହିଁ ଶ୍ରୀଜଗନ୍ନାଥ ଶୋଭା ପଡ଼ି ଥାନ୍ତି । ଓଡ଼ିଶାର ଆରାଧ୍ୟ ଶ୍ରୀଜଗନ୍ନାଥଙ୍କୁ ନେଇ ଆମ ସାହିତ୍ୟ ସର୍ବଜନାଦୃତ ହେବାର ଗୌରବ କମ୍ ନୁହେଁ । ପ୍ରାଚୀନ ସାହିତ୍ୟରୁ ଆରମ୍ଭ କରି ଉତ୍ତର ଆଧୁନିକ ବାସୀ ପ୍ରତ୍ୟେକ ସମୟର ସାହିତ୍ୟ ଏକ ଗୌରବାବହ ସ୍ଥାନ ଅଧିକାର କରିଛି । ଓଡ଼ିଆ ସାହିତ୍ୟର ଏମିତି କୌଣସି ବିଭାଗ ନାହିଁ, ଯେଉଁଠି କି ଶ୍ରୀଜଗନ୍ନାଥ ତାଙ୍କର ଅସପତ୍ନ ଅଧିକାର ସାବ୍ୟସ୍ତ କରି ନାହାନ୍ତି । ବରଂ କବିଟିଏ ବା ଲେଖକଟିଏ ଶ୍ରୀଜଗନ୍ନାଙ୍କୁ ନେଇ ତାଙ୍କ ସାହିତ୍ୟର କଳେବର ବୃଦ୍ଧି କରିବା ସହିତ ତାଙ୍କୁ ଆଲୋଚନା କରିବା ବା ତାଙ୍କୁ ଲେଖାରେ ସ୍ଥାନ ଦେବାକୁ ନିଜର ସୌଭାଗ୍ୟ ବୋଲି ମନେ କରିଛି । ଯେକୌଣସି ଦିଗରୁ ଯଦି ଓଡ଼ିଶାକୁ ବିଚାର କରଯାଏ ଓଡ଼ିଶାର ସ୍ଥାନ ସବୁଠି ଉର୍ଦ୍ଧ୍ୱରେ ।

ନୀଳାଚଳ ନାଥ ଶ୍ରୀଜଗନ୍ନାଥ ଯେହେତୁ ଏହି ଉତ୍କଳ ଖଣ୍ଡରେ ବା ଓଡ଼ିଶାର ଆରାଧ୍ୟ ଭାବେ ପୂଜିତ, ସେଥିପାଇଁ ମଧ୍ୟ ଓଡ଼ିଶା ସମଗ୍ର ଭାରତବର୍ଷରେ ଅନ୍ୟ ରାଜ୍ୟ ତୁଳନାରେ ନିଜର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଛି ।

ତେଣୁ ଆଲୋଚ୍ୟ ପ୍ରବଂଧରେ ପ୍ରାଚୀନ ଓଡ଼ିଆ କାବ୍ୟ–କବିତାମାନଙ୍କର କବିମାନେ କିପରି ଭାବେ ଶ୍ରୀଜଗନ୍ନାଥଙ୍କ କଥାକୁ ବର୍ଣ୍ଣନା କରିଛନ୍ତି, ତାହା ଆଲୋଚନା କରାଯାଇଛି । ଓଡ଼ିଆ ସାହିତ୍ୟରେ ପ୍ରାଚୀନ ଯୁଗ ଅର୍ଥାତ୍ ରୀତି ଯୁଗର ଶେଷ ସମୟ ପର୍ଯ୍ୟନ୍ତ କେବଳ କାବ୍ୟ–କବିତାରେ ପରିପୂର୍ଣ୍ଣ ଥିଲା । ଏହା ମଧ୍ୟ ବିବିଧତାରେ ପୂର୍ଣ୍ଣ ଥିଲା । ଯେମିତିକି ଭଜନ, ଜଣାଣ, ମାଳିକା, ଚଉତିଶା, ଚଉପଦୀ, ଚଂପୁ, ଷୋଡ଼ଶା, ପୋଇ, ପଦିଆ, କୋଇଲି ଇତ୍ୟାଦି ଏଗୁଡ଼ିକ ପ୍ରାଚୀନ କାବ୍ୟ କବିତାର ଗୋଟିଏ ଗୋଟିଏ ଅଂଶ । ମହାଭାରତ, ରାମାୟଣ, ହରିବଂଶ, ଭାଗବତ ଆଦି ବିଶାଳ ରଚନା ସେସମୟରେ ଲେଖା ହୋଇଥିବାବେଳେ ଛୋଟଛୋଟ ଗୀତି କବିତା ମଧ୍ୟ ଚରନା କରାଯାଇଛି ।

ଓଡ଼ିଆ ସାହିତ୍ୟର ଆରମ୍ଭ ପର୍ବରେ ମାଟିର ମହାକବି ସାରଳା ଦାସ ତାଙ୍କ ବିରାଟ ଗ୍ରନ୍ଥ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ ସ୍ଥାନ ଦେଇଛନ୍ତି । ସାରଳା ହିଁ ପ୍ରଥମ କବି ଯେ କି ତାଙ୍କ ସୃଷ୍ଟି ମଧ୍ୟରେ ଜଗନ୍ନାଥ ସଂସ୍କୃତିକୁ ରୂପ ଦେବାକୁ ବହୁ ଭାବେ ଚେଷ୍ଟା କରିଛନ୍ତି । ତାଙ୍କ ସୃଷ୍ଟି ମହାଭାରତର ମୂଷଳୀ ପର୍ବଟି ସଂପୂର୍ଣ୍ଣ ଭାବେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ, ଗାଣପତ୍ୟ, ଶୈବ ଆଦି ଭାବେ ବର୍ଣ୍ଣନା କରିବାର ଆସ୍ପର୍ଦ୍ଧା ରଖିଛନ୍ତି । ସାରଳା ଦାସ ହିଁ ପ୍ରଥମ ବ୍ୟକ୍ତି ଯେ କି ଓଡ଼ିଶାର ମାଟି, ପାଣି, ପବନ, ସଂସ୍କୃତିର କଥା ଅତି ତୀକ୍ଷ୍ଣ ଭାବେ ତାଙ୍କ ସମଗ୍ର ସୃଷ୍ଟିରେ ସ୍ଥାନିତ କରିଛନ୍ତି । ଓଡ଼ିଶାର ଆରାଧ୍ୟ ଶ୍ରୀଜଗନ୍ନାଥଙ୍କୁ ସର୍ବ ପ୍ରଥମେ ସେ ତାଙ୍କ ମୌଳିକ

ଲେଖାରେ ସ୍ଥାନ ଦେଇଛନ୍ତି । ଓଡ଼ିଆ ସଂସ୍କୃତିର ପ୍ରତୀକ, ସଂହତିର ଜ୍ୟୋତିକ, ଜାତୀୟତାର ସୂଚକ ଶ୍ରୀଜଗନ୍ନାଥ ମଧ୍ୟ ତାଙ୍କ କାବ୍ୟରେ ବହୁ ରୂପରେ ବର୍ଣ୍ଣିତ । ସାରଳାଙ୍କ ମତରେ ଏକା ପୁରୁଷୋତ୍ତମ କ୍ଷେତ୍ର କୋଟିଏ ତୀର୍ଥ ସହିତ ସମାନ । ଏହିପରି କୋଟିଏ ତୀର୍ଥମୟ ସ୍ଥାନରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବିରାଜମାନ । ନାନା ତୀର୍ଥ ଭ୍ରମଣ କରିବାର ଆବଶ୍ୟକତା ନାହିଁ, କେବଳ ତାଙ୍କ ନାମ ଜପ କଲେ ମଣିଷ ସକଳ ପାପରୁ ମୁକ୍ତି ପାଇପାରିବ । ସେ ନାମ ସ୍ମରଣ କଲେ ରୋଗ, ବ୍ୟାଧି, ସର୍ପାଘାତରୁ ମୁକ୍ତହୁଏ । ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ହୋଇ ଥିବାରୁ ତାଙ୍କୁ ପୁରୁଷୋତ୍ତମ କୁହାଯାଏ ।

ସାରଳା ଦାସ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ସହିତ ଏକ ଓ ଅଭିନ୍ନ କରି ନାହାନ୍ତି ବରଂ ସେ ତାଙ୍କୁ ବୁଦ୍ଧଙ୍କ ସହିତ ମଧ୍ୟ ସମାନ କରିଛନ୍ତି । ମହାଭାରତର ଅଧିକାଂଶ ପର୍ବରେ ସେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ବୋଲି ପରିଚୟ ଦେଇଛନ୍ତି । ସାରଳା ଦାସ ତାଙ୍କ ମହାଭାରତର ଅନେକ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଆଲୋଚନା କରିଛନ୍ତି । ଏପରିକି ସାରଳା, ଉତ୍କଳର ଜାତୀୟତା, ସଂହତି, ସାହିତ୍ୟ ଓ ସଂସ୍କୃତିର ପ୍ରତୀକ ଶ୍ରୀଜଗନ୍ନାଥ ଓ ତାଙ୍କର କ୍ଷେତ୍ର ମାହାତ୍ମ୍ୟ ପ୍ରତିପାଦନ କରି ଉତ୍କଳର ମର୍ଯ୍ୟାଦାକୁ ଗରୀୟାନ କରିଛନ୍ତି ।

ଭାରତୀୟ ଧର୍ମ ଇତିହାସରେ ସର୍ବଧର୍ମ ସମନ୍ୱୟର ପ୍ରତୀକ ଜଗନ୍ନାଥ ଧର୍ମର ଅଭିନବତ୍ୱ ସ୍ୱୀକୃତି ଲାଭ କରିଛି ଓ ଏହା ଯୁଗେ ଯୁଗେ ଧର୍ମ ପିପାସୁ, ସନ୍ଥ ଓ ଭକ୍ତମାନଙ୍କୁ ଆକୃଷ୍ଟ ତଥା ପ୍ରଭାବିତ କରି ଆସୁଛି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତଥା ଓଡ଼ିଶାର ଜାତୀୟ ଜୀବନରେ ଜଗନ୍ନାଥ ଉପାସନାର ପ୍ରଭାବ ଅପ୍ରମେୟ । ଉଦାରତା, ମୈତ୍ରୀ, ବିଶ୍ୱଭ୍ରାତୃତ୍ୱ, ସର୍ବଧର୍ମ ସମନ୍ୱୟ ଏହି ଉପାସନାର ମୂଳଲକ୍ଷ୍ୟ । ବହୁ ଦେବାଦେବୀଙ୍କ ଉପାସନା ଓଡ଼ିଶାରେ ପ୍ରଚଳିତ ଥିଲେ ହେଁ ଜଗନ୍ନାଥ ଏ ଦେଶର ପରମ ଦେବତା ଭାବେ ଗୃହୀତ ହୋଇଅଛି । ସମ୍ଭବତଃ ସେଥିପାଇଁ ଓଡ଼ିଆ ସାହିତ୍ୟରେ ଅନ୍ୟାନ୍ୟ ଦେବାଦେବୀଙ୍କ ଅପେକ୍ଷା ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହିଁ ସର୍ବାଧିକ ଭକ୍ତି ଗୀତିକା ରଚିତ ହୋଇଥିବା ଦେଖିବାକୁ ମିଳେ ।

ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ, ଅନନ୍ତ ଆଦିଙ୍କ ଶହ ଶହ ରଚନାବଳୀରେ ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇଛି । 'ଶ୍ରୀଜଗନ୍ନାଥ ସଂସ୍କୃତିର ସୁପ୍ରାଚୀନ ସୁଦୃଢ଼ ଭିତ୍ତିଭୂମି ଉପରେ ଓଡ଼ିଶାର ବୈଷ୍ଣବ ଧର୍ମ ପ୍ରତିଷ୍ଠା ଲାଭ କରିଛି । ଓଡ଼ିଶାର ବୈଷ୍ଣବ ଧର୍ମହିଁ ଜଗନ୍ନାଥ ଧର୍ମ । ପ୍ରାଚୀନ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ଛତ୍ରରେ ଏହି ଧ୍ୱନି ଉଦ୍‌ଘୋଷିତ ହୋଇଛି । ଆମର ଆଦ୍ୟ ସାହିତ୍ୟ ସାରଳା ସାହିତ୍ୟରୁ ଆରମ୍ଭ କରି ପଞ୍ଚସଖା ସାହିତ୍ୟ ଓ ତତ୍ ପରବର୍ତ୍ତୀ ଯୁଗରେ ଅନ୍ୟାନ୍ୟ କବିମାନଙ୍କର ଲେଖନୀ ଓଡ଼ିଆ ଜାତିର ଏହି ଦେବତାଙ୍କର ମହିମା ଗାନରେ ହୋଇ ଉଠିଛି ମୁଖର । କେବଳ ଏତିକି ନୁହେଁ, ଆମ ସାଂସ୍କୃତିକ ବିଭାଗର ସ୍ତରେ ସ୍ତରେ 'ଜଗନ୍ନାଥ' ଯେପରି ସ୍ୱତଃ ମୂର୍ତ୍ତିମନ୍ତ ହୋଇ ଉଠିଛନ୍ତି । ବହୁ ଆଦିମ ଯୁଗରୁ ଜଗନ୍ନାଥ ଧାମ ସର୍ବଭାରତୀୟ ତୀର୍ଥ ରୂପେ ଖ୍ୟାତିଲାଭ କରିଅଛି । ଆଦିବାସୀ ଦେବତା ଜଗନ୍ନାଥ, ବୌଦ୍ଧ ଓ ଜୈନ ଦେବତା ଜଗନ୍ନାଥ ଓ ପରିଶେଷରେ ଏହି ଜଗନ୍ନାଥ ହେଲେ ବ୍ରାହ୍ମଣ ଧର୍ମର ସର୍ବଶ୍ରେଷ୍ଠ ଦେବତା ଭଗବାନ ବିଷ୍ଣୁ । ବିଭିନ୍ନ ଧର୍ମର ପ୍ରବାହରେ ଜଗନ୍ନାଥ ଧାରଣ କରିଛନ୍ତି ସେହି ସେହି ରୂପ । ତେଣୁ ଜଗନ୍ନାଥ ଧର୍ମର ସାଂସ୍କୃତିକ ଇତିହାସରେ ସେହିସେହି ସାଂସ୍କୃତିକ ସ୍ତର ସୃଷ୍ଟିଭାବରେ ଲକ୍ଷ୍ୟ କରାଯାଇଥାଏ । ଏ ସଂପର୍କରେ ଆଲୋଚକ ଡକ୍ଟର ବଂଶୀଧର ମହାନ୍ତି ଲେଖିଛନ୍ତି 'ମନେହୁଏ ଭାରତର ବିଶାଳ ପୀଠରେ ଜଗନ୍ନାଥ ହେଉଛନ୍ତି ଏକ ମାତ୍ର ଦେବତା, ଯାହାଙ୍କଠାରେ ପ୍ରତ୍ୟେକ ଧର୍ମର ସତ୍ତା ବିରାଜିତ । ତେଣୁ ଜଗନ୍ନାଥ ଓଡ଼ିଶାର ନୁହନ୍ତି, ସମଗ୍ର ଭାରତର ସାର୍ବଜନୀନ ଦେବତା । ଜଗନ୍ନାଥ ଧର୍ମ ପରି ଅତି ଉଦାର ଧର୍ମ ସମଗ୍ର ଭାରତରେ ବିରଳ । ଭାରତରେ ବହୁ ଧର୍ମାଚାର୍ଯ୍ୟ, ଭକ୍ତ, ସାଧକ, ଜଗନ୍ନାଥ ମହିମାରେ ଅଭିଭୂତ ହୋଇ ପଡ଼ିଛନ୍ତି । ବଡ଼ଦାଣ୍ଡ ଓ ବାଇଶ ପାହାଚର ପବିତ୍ର ରେଣୁରେ ସେମାନଙ୍କ ମରଶରୀର ହୋଇଛି ପବିତ୍ର ।' ତେଣୁ ପଞ୍ଚସଖା ସାଧକମାନେ ସେମାନଙ୍କ କୃତିରାଜିରେ ଜଗନ୍ନାଥଙ୍କୁ ବର୍ଣ୍ଣନା କରିଛନ୍ତି ବିଭିନ୍ନ ଭାବେ । ସେମାନେ ସମସ୍ତେ ଥିଲେ ସିଦ୍ଧ ସାଧକ ଓ ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ । ପଞ୍ଚସଖା ଶ୍ରୀବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ, ଶିଶୁଅନନ୍ତ ଦାସଙ୍କ କାବ୍ୟ କବିତା, ମାଳିକା, ଭଜନ, ଜଣାଣ, ରାମ ସଂହିତା ଆଦିରେ ଶ୍ରୀଜଗନ୍ନାଥ ଚେତନା ସ୍ଥାନିତ । ବଳରାମ ପୁରୀ ଶ୍ରୀମନ୍ଦିରର ଜଗମୋହନରେ ବସି ଦାଣ୍ଡୀବୃତ୍ତରେ ଲେଖିଥିବା ରାମାୟଣ 'ଜଗମୋହନ ରାମାୟଣ' । ଏହାର ଅନ୍ୟନାମ ଦାଣ୍ଡୀ ରାମାୟଣ । କବି ଏଥିରେ ତ୍ରିମୂର୍ତ୍ତିର ପରିକଳ୍ପନା ଅତି ସୁନ୍ଦର ଭାବେ କରିଛନ୍ତି ।

ଶ୍ରୀଜଗନ୍ନାଥଙ୍କ ଆଜ୍ଞାରେ ସେ ଗ୍ରନ୍ଥ ପ୍ରଣୟନ କରିଛନ୍ତି ବୋଲି କହିବା ସହିତ ପ୍ରାୟ ପ୍ରତ୍ୟେକ କାଣ୍ଡର ଶେଷରେ ବା ଆଦ୍ୟରେ ସେ ନୀଳଗିରୀ ନାଥ ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରିଛନ୍ତି ।

ଲଙ୍କାକାଣ୍ଡର ଶେଷରେ ଓ ଉତ୍ତରା କାଣ୍ଡର ପ୍ରଥମରେ ସେ ଦୀର୍ଘ ଜଗନ୍ନାଥଙ୍କ ବନ୍ଦନା ଗାନକରି ଜଗନ୍ନାଥ ପ୍ରାଣତାର ଅଶେଷ ପରିଚୟ ପ୍ରଦାନ କରିଛନ୍ତି । ଜଗନ୍ନାଥ ତାଙ୍କର ସଖା, ସୋଦର, ପିତା, ମାତା । ଜଗନ୍ନାଥ ଭାବରେ ବନ୍ଧା ସେ । ସେ ଯୁଆଡ଼େ ଚାହାନ୍ତି ସବୁ ଆଡ଼େ ହିଁ ଜଗନ୍ନାଥ ।

ପଞ୍ଚସାଖାର ଅନ୍ୟତମ ଶ୍ରେଷ୍ଠ ସାଧକ ଜଗନ୍ନାଥ ଦାସ ପୂଜ୍ୟ, ନମସ୍ୟ ସମଗ୍ର ଓଡ଼ିଆଙ୍କ ପାଖରେ । ପ୍ରାତଃ ସ୍ମରଣୀୟ ଏହି ଅନନ୍ୟ ସାଧକ ଜଗନ୍ନାଥଙ୍କ ପରମ ଭକ୍ତ ଭାବେ ସମଗ୍ର ଉତ୍କଳରେ ପୂଜିତ । ତାଙ୍କ ଦ୍ୱାରା ପ୍ରଣୀତ ଶ୍ରୀ ଭାଗବତ ଗ୍ରନ୍ଥରେ ଜଗନ୍ନାଥଙ୍କୁ ସେ ସମସ୍ତ କ୍ଷେତ୍ରରେ ଅଗ୍ରାଧିକାର ଦେଇଛନ୍ତି । ଶ୍ରୀକୃଷ୍ଣଙ୍କ ନାମ ପରିବର୍ତ୍ତେ ସେ ଜଗନ୍ନାଥଙ୍କ ନାମକୁ ହିଁ ଅଧିକାଂଶ ସ୍ଥଳରେ ପ୍ରୟୋଗ କରିଛନ୍ତି । ସାରଳା ମହାଭାରତକାରଙ୍କ ଏହି ରୀତିକୁ ହିଁ ସେ ସଂପୂର୍ଣ୍ଣ ଗ୍ରହଣ କରିଛନ୍ତି ।

ଏହିପରି ଶହ ଶହ ସ୍ଥାନରେ ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ତ୍ୱ କବି ପ୍ରତିପାଦନ କରିଅଛନ୍ତି । କବି ବହୁ ସ୍ଥାନରେ ଗୋପୀନାଥ ଶବ୍ଦ ମଧ୍ୟ ବ୍ୟବହାର କରିଛନ୍ତି । କବିଙ୍କର ଶୈବାଗମ ଭାଗବତ, ଶ୍ରୀଗୁଣ୍ଡିଚା ବିଜେ, ଷୋଳ ଚଉପଦୀ, ପରିଚୟ ବୋଧିନୀ ଆଦି ସୃଷ୍ଟିରେ ସେ ଜଗନ୍ନାଥଙ୍କୁ ବିଭିନ୍ନ ଭାବରେ ଆଲୋଚନା କରିଛନ୍ତି । ଷୋଳଚଉପଦୀ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ରୂପରେ ବର୍ଣ୍ଣନା କରି ନିତ୍ୟ ଗୋଲକ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । 'ତୁଳାଭିଣା' ଗ୍ରନ୍ଥରୁ ଜଗନ୍ନାଥଙ୍କ ବ୍ରହ୍ମଜ୍ଞାନର ପରିଚୟ ମିଳେ ।

ପଞ୍ଚସଖା ଯୁଗର ସାଧକମାନେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବିବିଧ ଜଣାଣ, ଭଜନ, ଆଦି ରଚନା କରି ଓଡ଼ିଆ ଭକ୍ତି କବିତା କ୍ଷେତ୍ରରେ ନୂତନ ପରମ୍ପରାଟିଏ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପଞ୍ଚଦଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସଂଖ୍ୟାଧିକ କବିଗଣ ଅଜସ୍ର ରଚନା ଛାଡ଼ି ଯାଇଛନ୍ତି । ପଞ୍ଚସଖା ଯୁଗ ପରେ ରୀତି ଯୁଗ ଓ ସେହି ସମସାମୟିକ ଅନେକ କବି ସୃଷ୍ଟି ରାଜିରେ ଶ୍ରୀଜଗନ୍ନାଥଙ୍କୁ ହିଁ ସ୍ଥାନ ଦେଇଛନ୍ତି ।

ଜଗନ୍ନାଥଙ୍କ ବିବିଧ ପୂଜା, ପାର୍ବଣ, ଯାତ୍ରା ଉତ୍ସବକୁ ଭିତ୍ତିକରି ମଧ୍ୟ ବହୁ କବି କେତେକ କବିତା ପ୍ରଣୟନ କରିଛନ୍ତି । କିଏ ଜଗନ୍ନାଥଙ୍କୁ ଆପଣାର ପରମ ଆଶ୍ରୟ, ଦୀନ ବାନ୍ଧବ, ଶରଣ ରକ୍ଷକ, ଦୂରିତ ନିବାରଣ, ପତିତପାବନ, ରକ୍ଷକ ଭାବେ କଳ୍ପନା କରିଛନ୍ତି । ଶ୍ରୀଜଗନ୍ନାଥଙ୍କୁ ଦୀନବନ୍ଧୁ–ଜଗନ୍ନାଥ ଭାବେ ଅଭିହିତ କରିବା ସହିତ କୃଷ୍ଣ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଛନ୍ତି । ଓଡ଼ିଶାର ସ୍ୱାଧୀନତା ଲୋପ ତଥା ରାଜ ଶକ୍ତି ଖର୍ବ ହେଲାପରେ ଭକ୍ତକବିଗଣ ଶ୍ରୀଜଗନ୍ନାଥଙ୍କୁ ରାଜାର ଆସନରେ ଆସୀନ କରାଇଥିଲେ । ଶ୍ରୀଜଗନ୍ନାଥ ହୋଇଥିଲେ ଏ ଜାତିର ମଣିମା ।

ଜଗନ୍ନାଥଙ୍କ ଜଣେ ଏକ ନିଷ୍ଠ ଭକ୍ତ ଭାବେ ସାଲବେଗ ଆମ ଦୃଷ୍ଟି ପଥକୁ ଆସନ୍ତି । ଜାତିରେ ଯବନ ହେଲେ ମଧ୍ୟ ଓଡ଼ିଆ ଭକ୍ତି ରସାତ୍ମକ କବିତା ରଚନା କରି ସାଲବେଗ ନିଜର ଭକ୍ତି ମତ୍ତାର ପରିଚୟ ଦେଇଛନ୍ତି ।

ସୁତରାଂ ଶ୍ରୀଜଗନ୍ନାଥଙ୍କ କଥା ଆମ ସାହିତ୍ୟରେ ପ୍ରକାଶ ପାଇ ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ଦିଗରେ ସହାୟକ ହୋଇ ପାରୁଛି । ପ୍ରାଚୀନ ଓଡ଼ିଆ କାବ୍ୟ କବିତା କେବଳ ନୁହେଁ ଆଧୁନିକ ସାହିତ୍ୟର ସମସ୍ତ ବିଭାଗରେ ଶ୍ରୀଜଗନ୍ନାଥଙ୍କ ପ୍ରସଙ୍ଗ ବେଶ୍ ଅନୁରଣିତ । କେବଳ ସାହିତ୍ୟ ନୁହେଁ, ଆମର ସଂସ୍କୃତି ହିଁ ଜଗନ୍ନାଥଙ୍କୁ ସମର୍ପିତ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳଭାରତୀ ବିଜ୍ଞାନ ମହାବିଦ୍ୟାଳୟ
ପଳାଶୁଣୀ, ଭୁବନେଶ୍ୱର–୨୫

# ଦାରୁବ୍ରହ୍ମ ଶ୍ରୀପୁରୁଷୋତ୍ତମ

କ୍ଷୀରୋଦ ଚନ୍ଦ୍ର ନାୟକ



ଓଡ଼ିଶାର ଧର୍ମ ଓ ସଂସ୍କୃତିର କ୍ରମବିକାଶରେ ଶ୍ରୀଜଗନ୍ନାଥଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କାଳକ୍ରମେ ଏହା ଏକ ସ୍ୱତନ୍ତ୍ର ଧାରା ଭାବେ ପରିଣତ ଓ ସ୍ୱୀକୃତି ଲାଭ କରିଛି, ଯାହାକୁ ହିଁ ଆମେ କହୁ ଆମ ଜଗନ୍ନାଥ ସଂସ୍କୃତି । ଶ୍ରୀଜଗନ୍ନାଥ ସ୍ଥାନ ବିଶେଷର ବା ବ୍ୟକ୍ତିବିଶେଷର ଦେବତା ନୁହନ୍ତି, ସେ ସାରା ବିଶ୍ୱର ଦେବତା । ସେ ଗଣ ଦେବତା, ସେ ଗୋଷ୍ଠୀ ଦେବତା । ସବୁ ଧର୍ମର ସମନ୍ୱୟରେ ସବୁ ମତବାଦର ଊର୍ଦ୍ଧ୍ୱରେ ଏ ଜଗନ୍ନାଥ ଧର୍ମ ଯେପରି ମହାନ୍, ସେହିପରି ଉଦାର ମଧ୍ୟ । ସମୁଦ୍ରରୁ ନଦୀ ସ୍ୱୀୟସତ୍ତା ଖୋଜିବା ଯେପରି ସୁଦୂରପରାହତ, ସେହିପରି ଜଗନ୍ନାଥ ଚେତନାରୁ ଯେକୌଣସି ଧର୍ମ ସମ୍ପ୍ରଦାୟର ସ୍ୱାତନ୍ତ୍ର୍ୟ ଖୋଜିବସିବା କଷ୍ଟସାଧ୍ୟ ମଧ୍ୟ । ଏଥିରେ ସମସ୍ତ ଧର୍ମ ବିଲୀନ, ସମସ୍ତ ଜାତି ତଲ୍ଲୀନ । ଏଣୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଜଗନ୍ନାଥ ଚେତନା ଗ୍ରହଣୀୟ, ବନ୍ଦନୀୟ ଓ ସ୍ମରଣୀୟ । ସାମ୍ୟ, ମୈତ୍ରୀ ଓ ପ୍ରୀତିର ପ୍ଲାବନରେ ଏ ଚେତନା ପୂତ, ପବିତ୍ର ଓ ସୁମହତ । ଶ୍ରୀଜଗନ୍ନାଥଙ୍କୁ ସକଳ ଧର୍ମାବଲମ୍ବୀ ସ୍ୱସ୍ୱ ଇଷ୍ଟଦେବ ରୂପେ ଗ୍ରହଣ କରିଥିବାରୁ କୁହାଯାଇଛି ।

ଅର୍ଥାତ୍ ହେ ଦାରୁବ୍ରହ୍ମ ସ୍ୱରୂପ, ଓଁ କାର ଶରୀରଧାରୀ, ସର୍ବ ବେଦାନ୍ତ ସାରସ୍ୱରୂପ, ଭକ୍ତମାନଙ୍କର କଳ୍ପବୃକ୍ଷତୁଲ୍ୟ, ଭବସାଗରର ନୌକାସଦୃଶ, ସମସ୍ତ ତତ୍ତ୍ୱର ତତ୍ତ୍ୱସ୍ୱରୂପ, ଯୋଗୀମାନଙ୍କର ପ୍ରାଣତତ୍ତ୍ୱରୂପୀ ହରିହର ନାମରେ ନାମିତ । ବୈଷ୍ଣବମାନଙ୍କର ରାଧାପତି, ଶୈବ ଓ ଭୈରବମାନେ ଯେ ଯାହାଙ୍କୁ ପଶୁପତି ଓ ଶାକ୍ତମାନେ ଯାହାଙ୍କୁ ଶକ୍ତିତତ୍ତ୍ୱ ଭାବରେ ଗ୍ରହଣ କରନ୍ତି । ବୌଦ୍ଧମାନଙ୍କର ଯେ ବୁଦ୍ଧ ଭାବରେ ପରିଚିତ, ଜୈନ ସିଦ୍ଧାନ୍ତରେ ଯାହାଙ୍କୁ ଯତିଶ୍ରେଷ୍ଠ ଋଷଭ ଭାବରେ ସ୍ୱୀକୃତ, ସେହି କଳିଯୁଗର ପାପହରଣକାରୀ ନୀଳଶୈଳାଧିନାଥ (ଜଗନ୍ନାଥ) ଦେବ ସଦାସର୍ବଦା ଆମକୁ ପବିତ୍ରିତ କରନ୍ତୁ ।

ଶ୍ରୀଜଗନ୍ନାଥ ହେଉଛନ୍ତି ଜ୍ୟୋତିଃ ରୂପ ପରଂବ୍ରହ୍ମ । ସେ ରୂପହୀନ ବର୍ଣ୍ଣନାତୀତ ଓ ଆକାରଶୂନ୍ୟ ହୋଇଥିବାରୁ କେବଳ ଜ୍ଞାନୀମାନଙ୍କର ବୋଧଗମ୍ୟ ହୋଇଥାନ୍ତି । କିନ୍ତୁ ଜଗତର ଅଗଣିତ ଜନସମୁଦାୟଙ୍କର ଗୋଚର ନିମନ୍ତେ ଦେବଶିଳ୍ପ ତାଙ୍କୁ ପିଣ୍ଡ ସ୍ୱରୂପ ସ୍ଥାପନ କରିଗଲେ । ତେଣୁ ଏହି ବ୍ରହ୍ମପିଣ୍ଡ ହେଲେ ନିରାକାର ସାକାରର ଏକ ମଧ୍ୟବର୍ତ୍ତୀରୂପ । ଦାରୁରେ ନିର୍ମିତ ହୋଇଥିବାରୁ ଏହି ପିଣ୍ଡବ୍ରହ୍ମ ମଧ୍ୟ ଦାରୁବ୍ରହ୍ମ ନାମରେ ଅଭିହିତ ହେଲେ । ଏହି ପିଣ୍ଡବ୍ରହ୍ମଙ୍କୁ ସେ ଏପରି ଭାବରେ ନିର୍ମାଣ କରିଦେଇଗଲେ ଯେ ବିଶ୍ୱର ପ୍ରତ୍ୟେକ ଧାର୍ମିକ ସମ୍ପ୍ରଦାୟ ତାଙ୍କ ମଧ୍ୟରେ ନିଜ ନିଜର ଆରାଧ୍ୟ ଦେବତାଙ୍କୁ ଦେଖିବାକୁ ପାଇଲେ । ବୈଷ୍ଣବମାନେ ତାଙ୍କ ମଧ୍ୟରେ ଦେଖିଲେ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କୁ, ଶୈବମାନେ ଶିବଙ୍କୁ, ଶାକ୍ତ ଶକ୍ତିଙ୍କୁ, ସୌର ସୂର୍ଯ୍ୟଙ୍କୁ, ଗାଣପତ୍ୟ ଗଣପତିଙ୍କୁ । ତାନ୍ତ୍ରିକ ତ୍ରିକୋଣ ମଧ୍ୟସ୍ଥ ଯନ୍ତ୍ରଙ୍କୁ, ବ୍ରାହ୍ମଣ ବ୍ରହ୍ମଙ୍କୁ, ବୌଦ୍ଧ ବୁଦ୍ଧଙ୍କୁ ଏବଂ ଜୈନ ଜୀନ୍‌ଙ୍କୁ । ଫଳରେ ଧର୍ମ କ୍ଷେତ୍ରରୁ ଗୋଷ୍ଠୀବିବାଦ ଓ ସାମ୍ପ୍ରଦାୟିକତାର ବିଲୋପ ଘଟିଲା । ସମସ୍ତେ ନିଜ ନିଜ ମଧ୍ୟରେ ବହୁକାଳରୁ ପ୍ରତିଷ୍ଠିତ ଭେଦଭାବକୁ ଭୁଲି ଏକ ପରଂବ୍ରହ୍ମଙ୍କର ଉପାସନା କରିବାକୁ ଲାଗିଲେ ।

ଅପୌରୁଷେୟ ଭଗବାନ ଅପ୍ରାକୃତ, ଦିବ୍ୟ ଦାରୁବିଗ୍ରହ ଧରି ମର୍ତ୍ତ୍ୟରେ ବୈକୁଣ୍ଠ ଚୈତନ୍ୟ ପ୍ରଦାନ କରୁଅଛନ୍ତି । ଏହି ରହସ୍ୟକୁ 'ସ୍କନ୍ଦପୁରାଣ'ରେ ବର୍ଣ୍ଣନା କରାଯାଇଛି ।

ଦାରୁଦେହଧାରଣ କରି ସୁଦ୍ଧା, ପୁରୁଷୋତ୍ତମ ଅତି ନିର୍ମଳ ନୀଳମେଘ ସଦୃଶ ତେଜ ପ୍ରକାଶ କରି ସର୍ବ ସନ୍ତାପ ନାଶନ କରୁଅଛନ୍ତି ।

ଅପରିମିତ ମହିମା ମଣ୍ଡିତ ଦାରୁବ୍ରହ୍ମଙ୍କ ଦର୍ଶନଙ୍କୁ ପ୍ରାଚୀନ କାଳରୁ ଜୈମିନୀ, ଗୌତମ ପ୍ରଭୃତି ମୁନିଋଷିଙ୍କ ସହିତ ପରବର୍ତ୍ତୀ ସମୟରେ ଆଚାର୍ଯ୍ୟ ଶଙ୍କର ରାମାନୁଜ, ବଲ୍ଲଭ, ଶ୍ରୀଚୈତନ୍ୟ, ଜଗନ୍ନାଥ ଦାସ ଆଦି ପଞ୍ଚସଖାଙ୍କ ପରି ଅନେକ ସିଦ୍ଧ ସନ୍ଥ ଉପଲବ୍ଧି କରି ପୁରୁଷୋତ୍ତମଙ୍କୁ ଅନ୍ତରର ଗଭୀର ଭକ୍ତିର ସହିତ ଉପାସନା କରିଯାଇଛନ୍ତି ।

ସ୍ୱୟଂ ନାରାୟଣ-ନୀଳାଚଳ ନିବାସୀ ଦାରୁବ୍ରହ୍ମ ରୂପେ ସାର୍ବଭୌମ ଐଶ୍ୱରିକ ସ୍ୱରୂପ ଗ୍ରହଣ କରି ସଂପୂର୍ଣ୍ଣ ଭଗବତ୍ ଚେତନାକୁ ମର୍ତ୍ତ୍ୟରେ ପ୍ରକଟ କରିଅଛନ୍ତି । ଶ୍ରଦ୍ଧା ବିଶ୍ୱାସର ସହିତ ଶ୍ରୀ ପୁରୁଷୋତ୍ତମଦେବଙ୍କ ସହିତ ଯୁକ୍ତ ହେବା ଦ୍ୱାରା ସେହି ଅବ୍ୟକ୍ତ ସନାତନ ପୁରାଣ ପୁରୁଷଙ୍କୁ ସହଜରେ ଉପଲବ୍ଧି କରାଯାଏ । ଊର୍ଦ୍ଧ୍ୱଲୋକର ପରମଧାମସ୍ଥ ନିତ୍ୟ ପୁରୁଷୋତ୍ତମ ହିଁ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ । ଏହି ଏକ ପୁରୁଷୋତ୍ତମ ହିଁ ସମଗ୍ର ସ୍ୱରୂପ, ସର୍ବମଙ୍ଗଳ, ଭୂତ ଭାବନ, ସର୍ବଲୋକ ମହେଶ୍ୱର । ସମସ୍ତ ଧର୍ମ ଶାସ୍ତ୍ର ଓ ଚରମ ବ୍ରହ୍ମ ଜ୍ଞାନର ଦର୍ଶନରେ ଏହି ସତ୍ୟ ଚିରକାଳ ରହସ୍ୟମୟ ଭାଷାରେ ଉଦ୍‌ଘୋଷିତ ହୋଇଛି । ଏହି ଅଶ୍ୱତ୍ଥ ଜଗତର ଅବ୍ୟୟ ସତ୍ତା ହିଁ ପୁରୁଷୋତ୍ତମ । ଯେଉଁ ଯୋଗୀ ଭକ୍ତ ଏହି ପରମ ପ୍ରଭୁଙ୍କୁ ଜାଣିପାରେ, ସେ ସର୍ବତଃ ବର୍ତ୍ତମାନେପି, ସଂଯୋଗୀମୟୀ ବର୍ତ୍ତତେ ଚେତନା ଲାଭ କରିଥାଏ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ମତରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ବିପରିତ ପଦରେ ବ୍ରହ୍ମଦାରୁ (କଳ୍ପତରୁ) ଅଟନ୍ତି । ଏଠାରେ ପ୍ରଭୁଙ୍କ ଭୂତ ଶାଖା ରୂପେ ବିରାଜିତ । ଅଧର ନୂତନ ପତ୍ର ରୂପେ, ଭକ୍ତି ଓ ମୁକ୍ତି ଦୁଇଫଳ ରୂପେ ଅଛି । ମାତ୍ର ଏ ଫଳ ଦୁଇଟିକୁ କେହି ଦେଖିପାରି ନାହିଁ । ଯେପରି କଳ୍ପତରୁ ଫଳ ଦେଖାଯାଏ ନାହିଁ ।

ଯେପରି କଳ୍ପବୃକ୍ଷ ସୁରଭି (କାମଧେନୁ) ମାନଙ୍କର ଆଶ୍ରୟ ସ୍ଥାନ, ବଳ୍କଳୀକୃତ ଏବଂ ତାର ପାଦଦେଶରେ ସ୍ୱର୍ଗଙ୍ଗା ସର୍ବଦା ପ୍ରବାହିତା, ସେହି ପ୍ରଭୁ ମଧ୍ୟ ସୁରଭି (ସୁଗନ୍ଧ)ର ଆଶ୍ରୟ ସ୍ଥଳ, ସେନାପଟା (କାମ ବିଶେଷ) ଦ୍ୱାରା ଆବୃତ ଏବଂ ଏହାଙ୍କର ନଖ କୋଣରେ ଗଙ୍ଗା ରହି ସବୁବେଳେ ଢ଼ଳ ଢ଼ଳ ହେଉଅଛି । ଅତଏବ ଶ୍ରୀଜଗନ୍ନାଥ ସ୍ୱୟଂ କଳ୍ପତରୁ ।

ଦାରୁଦେବତାଙ୍କ ତତ୍ତ୍ୱ ଉପରେ ଡକ୍ଟର ବେଣୀମାଧବ ପାଢ଼ୀ ବହୁ ଗବେଷଣା ପରେ ଶେଷରେ ଏହି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, କ୍ଷରପୂର୍ଣ୍ଣ ଅକ୍ଷରପୂର୍ଣ୍ଣ ଓ ଅକ୍ଷରରୁ ଅତୀତ ଜଗନ୍ନାଥ ମଧ୍ୟ ପୂର୍ଣ୍ଣ । ସମସ୍ତ ଜଗତ ମଧ୍ୟରେ ପରିବ୍ୟାପ୍ତ ସେଇ ବିରାଟ ପୁରୁଷ କୌଣସି ଏକ ଦେଶୀୟ ବା ବ୍ୟକ୍ତିକୈନ୍ଦ୍ରିକ ନୁହଁନ୍ତି, ସେ ସର୍ବବ୍ୟାପକ ସାର୍ବଜନୀନ ଶକ୍ତି, ସେ ସର୍ବବ୍ୟାପକ ଚିନ୍ମୟ ପୁରୁଷଙ୍କର ସାରତତ୍ତ୍ୱ ହେଲା 'ଜଗନ୍ନାଥ ହେଉଛନ୍ତି ଜଗତ ଓ ଜଗତ ହେଉଛି ଜଗନ୍ନାଥ ।'

ସରକାରୀ ବିଜ୍ଞାନ ମହାବିଦ୍ୟାଳୟ
ମାଲକାନଗିରି–୭୬୪୦୪୫

# ଶ୍ରୀକ୍ଷେତ୍ରରେ ମୃତ୍ୟୁ କାମନାର ଦାର୍ଶନିକ ତତ୍ତ୍ୱ

ଅଧ୍ୟାପକ ଚିତ୍ତରଞ୍ଜନ ମିଶ୍ର

'ଜୀବନ ମୋ ଯାଉ ଚାଲି
ଛୁଇଁ ତୋ ଶରଧା ବାଲି
ଘୋଷ ଯାତରାରେ ଯେବେ ଥିବୁରେ ତୁହି ।
ରଥ ତୋର ଗଡୁଥିବ
ଶବ ମୋର ଉଠୁଥିବ
ଶେଷ ଇଛା ଏତିକି ମୋ ଭୁଲିବୁ ନାହିଁ ।
('ଶେଷ ଇଚ୍ଛା'– ଗୀତି କବିତା)

ଶ୍ରୀକ୍ଷେତ୍ରରେ ମୃତ୍ୟୁ କାମନା କରି ଏମିତି ଅନେକ ଭଜନ, ଜଣାଣ, ଗୀତ ଏବଂ କବିତା ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ବହୁ କବି, ଏବଂ ଗୀତିକାରଙ୍କ ଦ୍ୱାରା ଲେଖାଯାଇଛି । ଉକ୍ତ କାମନା ପଛରେ କି ରହସ୍ୟ ଏବଂ ବିଶ୍ୱାସ ରହିଛି, ତାକୁ ଉନ୍ମୋଚନ କରିବା ଏହି ପ୍ରବନ୍ଧର ମୂଳ ଉଦ୍ଦେଶ୍ୟ ।

ଭଗବାନ ବୁଦ୍ଧ ନିଜର ପ୍ରଥମ ଆର୍ଯ୍ୟ ସତ୍ୟରେ ପ୍ରଚାର କରିଯାଇଛନ୍ତି ଯେ 'ସଂସାର ଦୁଃଖମୟ' । ହିନ୍ଦୁ ପୁରାଣ ଶାସ୍ତ୍ରରେ ମଧ୍ୟ ବର୍ଣ୍ଣିତ ହୋଇଛି–

'ସଂସାର ବୃକ୍ଷ ମାରୁଢ଼ା ।
ପତନ୍ତି ନରକାର୍ଣ୍ଣବେ ।'

ସଂସାରରେ ବାରମ୍ବାର ଜନ୍ମ ଗ୍ରହଣ କରି ସାଂସାରିକ ଜଞ୍ଜାଳରେ ନିମଗ୍ନ ରହିବା ହେତୁ ମଣିଷ ଇଛା ଏବଂ ଅନିଛା ସତ୍ତ୍ୱେ ଅନେକ ପାପାଚାରଣ କରିଥାଏ । ଏହି ପାପ କର୍ମର ପ୍ରଭାବରୁ ତାକୁ ବାରମ୍ବାର ଜନ୍ମ ନେଇ ସଂସାର ଜଞ୍ଜାଳରେ ଆବଦ୍ଧ ହେବାକୁ ପଡ଼ିଥାଏ । ସେଥିପାଇଁ କୁହାଯାଇଛି:

'ପୁନରପି ଜନମଂ ପୁନରପି ମରଣଂ
ପୁନରପି ଜନନୀ ଜଠରେ ଶୟନଂ ।'

ଏହି ଜନ୍ମମୃତ୍ୟୁ ଚକ୍ରରୁ ମୁକ୍ତି ପାଇବାକୁ ନିର୍ବାଣ, ମୋକ୍ଷ ବା ସ୍ୱର୍ଗପ୍ରାପ୍ତି କୁହାଯାଏ । ମନୁଷ୍ୟ ଜନ୍ମ ହିଁ ଏହି ଚକ୍ରରୁ ମୁକ୍ତି ପାଇବାକୁ ଯଥେଷ୍ଟ ସୁଯୋଗ ଦେଇଥାଏ । କାରଣ ମନୁଷ୍ୟ ବିବେକ ସତ୍ତାର ଅଧିକାରୀ ଏବଂ ଭୁଲ ଠିକ୍ ବିଚାର କରିବାର କ୍ଷମତା ତା ନିକଟରେ ରହିଛି । ଭାଗବତ ମହାପୁରାଣରେ ବର୍ଣ୍ଣିତ ହୋଇଛି ଯେ, ଚଉରାଶି ଲକ୍ଷ ଯୋନି ଅତିକ୍ରମ କରିବା ପରେ ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ମିଳିଥାଏ । ଯଥା:

'ନଅ ଲକ୍ଷ ପ୍ରକାର ଜଳଜୀବ,
କୋଡିଏ ଲକ୍ଷ ପ୍ରକାର ବୃକ୍ଷ,
ଏଗାର ଲକ୍ଷ ପ୍ରକାର କୃମି କୀଟ,
ଦଶ ଲକ୍ଷ ପ୍ରକାର ପକ୍ଷୀ,
ତିରିଶ ଲକ୍ଷ ପ୍ରକାର ପଶୁ,
ଚାରି ଲକ୍ଷ ପ୍ରକାର ମନୁଷ୍ୟ ଯୋନି ।'

ଲୋକବିଶ୍ୱାସ ରହିଛି ଏହି ଦୀର୍ଘ ଯାତ୍ରା ପରେ ମନୁଷ୍ୟ ଶରୀର ମିଳିଥାଏ । ତେଣୁ 'ଭାଗବତ ମହାପୁରାଣ'ରେ ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସ ବାରମ୍ବାର ମନୁଷ୍ୟ ଜନ୍ମକୁ ପ୍ରଶଂସା କରିଅଛନ୍ତି । ଯଥା:

'ଅନେକ ଜନ୍ମ ତପ ଫଳେ
ମନୁଷ୍ୟ ଜନ୍ମ ମହୀ ତଳେ ।
X X X
ଦୁର୍ଲ୍ଲଭ ମନୁଷ୍ୟ ଜନମ
ପାଇ କିମ୍ପାଇ ହେଉ ଭ୍ରମ ।
X X X
ସର୍ବ ଶରୀର ମଧ୍ୟେ ସାର
ଦୁର୍ଲ୍ଲଭ ନର କଳେବର ।

x x x

ଦୁର୍ଲ୍ଲଭ ମନୁଷ୍ୟ ଶରୀର
ନରକ ନିସ୍ତାରଣ ଦ୍ୱାର ।'

ସନ୍ଥ ତୁଳସୀ ଦାସ ମଧ୍ୟ 'ଶ୍ରୀରାମ ଚରିତ ମାନସ' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି–

'ବଡ଼ ଭାଗା ମାନୁଷ ତନୁ ପାଓ୍ୱା
ସୁର ଦୁର୍ଲଭ ସଦ୍‌ଗ୍ରନ୍ଥ ହିଁ ଗାଓ୍ୱା ।'

ତେଣୁ ଏହି ସୁଯୋଗକୁ ମନୁଷ୍ୟ ହାତଛଡ଼ା କରିବାକୁ ଚାହେଁନି । ବିଶ୍ୱାସ ରହିଛି ଯେ ତୀର୍ଥ କ୍ଷେତ୍ରରେ ମରଣ ହେଲେ ମୋକ୍ଷ ପ୍ରାପ୍ତି ହୋଇଥାଏ ଏବଂ ତୀର୍ଥ କ୍ଷେତ୍ର ମଧ୍ୟରୁ ଶ୍ରୀକ୍ଷେତ୍ର ହେଉଛି ଶ୍ରେଷ୍ଠ ତୀର୍ଥ କ୍ଷେତ୍ର । 'କ୍ଷେତ୍ର ମାହାତ୍ମ୍ୟ'ରେ ବର୍ଣ୍ଣନା ହୋଇଛି:

'ସର୍ବେଷାଂ ଚୈବ କ୍ଷେତ୍ରାଣାଂ
ରାଜାଶ୍ରୀ ପୁରୁଷୋତ୍ତମଃ ।'

ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ ବା ଶ୍ରୀକ୍ଷେତ୍ରକୁ ମର୍ତ୍ତ୍ୟ ବୈକୁଣ୍ଠ ଭାବେ ମଧ୍ୟ ବର୍ଣ୍ଣନା କରାଯାଇଛି । ବ୍ରହ୍ମ ପୁରାଣ କହେ:

'ଦଶ ଯୋଜନ ବିସ୍ତୀର୍ଣ୍ଣଂ
ପଞ୍ଚ ଯୋଜନ ଆୟତଂ ।'
ନାନାଶ୍ଚର୍ଯ୍ୟ ସମାୟୁକ୍ତଂ କ୍ଷେତ୍ରଂ ପରମ ଦୁର୍ଲ୍ଲଭଂ ।

ଏହି ପରମ ଦୁର୍ଲ୍ଲଭ କ୍ଷେତ୍ରରେ ପ୍ରାଣ ତ୍ୟାଗ କଲେ ନିଶ୍ଚିତ ମୁକ୍ତି ପ୍ରାପ୍ତିର ସୂଚନା 'କ୍ଷେତ୍ର ମାହାତ୍ମ୍ୟ'ରେ ବର୍ଣ୍ଣିତ ହୋଇଛି । ଯଥା:

ଜଳେ ସ୍ଥଳେ ଚାନ୍ତରିକ୍ଷେ
ମୁକ୍ତି ଶ୍ରୀପୁରୁଷୋତ୍ତମେ ।

ପୁରୁଷୋତ୍ତମ କ୍ଷେତ୍ରର ବିସ୍ତୀର୍ଣ୍ଣତା ଦଶଯୋଜନ ଏବଂ ଆୟତନ ପାଞ୍ଚକୋଶ । ଏହାର ପୂର୍ବ ଏବଂ ଦକ୍ଷିଣ ଦିଗକୁ ମହୋଦଧି (ବଙ୍ଗୋପସାଗର) ଘେରି ରହିଛି । ପଶ୍ଚିମ ଦିଗରେ ମଙ୍ଗଳା ନଦୀ ଏବଂ ଉତ୍ତରରେ ମିଚିଆଣି ନଦୀ । ଏହି ମଧ୍ୟସ୍ଥ ଅଞ୍ଚଳକୁ ଶ୍ରୀକ୍ଷେତ୍ର କୁହାଯାଏ । ଏହି କ୍ଷେତ୍ରସ୍ଥ ଜଳ/ସ୍ଥଳ/ ଅନ୍ତରୀକ୍ଷରେ ବାସ କରୁଥିବା ସମସ୍ତ ପ୍ରାଣୀ ମୃତ୍ୟୁ ପରେ ମୁକ୍ତି ପାଇ ବୈକୁଣ୍ଠରେ ବାସ କରନ୍ତି । ଯଥା:

'ସିନ୍ଧୁ ରାଜସ୍ୟ ସଲ୍ଲିଳାଦ୍
ଯାବନ୍ତୁଂ ବଟସ୍ୟବୈ
କୀଟ, ପକ୍ଷୀ, ମନୁଷ୍ୟାଣାଂ
ମରଣନ୍ମୁକ୍ତି ଦୋମତଃ ।'
(କ୍ଷେତ୍ର ମାହାତ୍ମ୍ୟ)

ଏତଦ୍‌ବ୍ୟତୀତ ବିଶ୍ୱାସ ରହିଛି–

'ରଥେତୁ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନଲଭ୍ୟତେ ।'

ରଥ ଉପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୋଇନଥାଏ । ରଥଯାତ୍ରାର ନବଦିନ ପର୍ବ ଭିତରେ ଯଦି ମୃତ୍ୟୁ ହୁଏ, ତେବେ ମଧ୍ୟ ସ୍ୱର୍ଗପ୍ରାପ୍ତି ହେବାର ବିଶ୍ୱାସ ରହିଛି ।

ଶ୍ରୁତି ସ୍ମୃତ୍ୟାଦି ନିର୍ଦ୍ଦିଷ୍ଟ ଉପାୟ ବିନା ପାପୀ ଏବଂ ଦୂରାତ୍ମାମାନେ ନିରନ୍ତର ଗମନ କରି ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ଏବଂ ଆବ୍ରହ୍ମଚଣ୍ଡାଳ ଯେକୌଣସି ଲୋକ ଯେକୌଣସି ସ୍ଥାନରେ ଠିଆ ହୋଇ ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ମୁକ୍ତି ପ୍ରାପ୍ତି ହୋଇଥାନ୍ତି ।

ଦାରୁମୟବ୍ରହ୍ମଙ୍କୁ ଦର୍ଶନ କଲାମାତ୍ରେ ମୁକ୍ତି ମିଳିଥାଏ । ଏ ସମସ୍ତ ବିଶ୍ୱାସକୁ ପୁଞ୍ଜି କରି ଅନେକ ଭଜନ ଏବଂ ଜଣାଣ ଲେଖା ସରିଛି ।

ଶ୍ରୀକ୍ଷେତ୍ରରେ ନିଦ୍ରାଗଲେ ମଧ୍ୟ ଦଣ୍ଡ ପ୍ରମାଣର ଫଳ ମିଳିଥାଏ ଏବଂ ନିଜ ବଂଶର ସମସ୍ତ ବଂଶଧର ଜନ୍ମ ମୃତ୍ୟୁ ଚକ୍ରରୁ ମୁକ୍ତି ପାଇଥାନ୍ତି । ସେଥିପାଇଁ କବି ଦୀନକୃଷ୍ଣ ଦାସ ପୁରୀଧାମରେ ବାସ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଇଚ୍ଛା ପୂରଣ ହୋଇ ନ ପାରିବାରୁ ଅତ୍ୟନ୍ତ ଦୁଃଖର ସହିତ ବର୍ଣ୍ଣନା କରିଛନ୍ତି:

'କରିଥିଲା ଆଶ ଶ୍ରୀକ୍ଷେତ୍ରେ ନିବାସ
କରିବାକୁ ଦୀନକୃଷ୍ଣ
କି ଅଭାଗ୍ୟ ତହିଁ ନ ପାରିଲା ରହି
ପ୍ରଭୁ ନୋହିଲେ ସତୃଷ୍ଣ ।' (ରସକଲ୍ଲୋଳ)

'କବିତା' ଅନ୍ତରର ଭାବ ପ୍ରକାଶର ଏକ ପ୍ରକୃଷ୍ଟ ମାଧ୍ୟମ ହୋଇଥିବାରୁ କବିର ଅନ୍ତର କଥା କବିତାରେ ପରିପ୍ରକାଶ ହୋଇଥାଏ । ପଣ୍ଡିତ ଗୋପବନ୍ଧୁ ମଧ୍ୟ ଏହି ଆଶା ପୋଷଣ କରିଥିବା ଦେଖାଯାଏ:

'ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟ ରାସ ।
ବୋଲି ହରି ହରି ସେ ପ୍ରେମ ଭିକାରୀ
ପରାଣ ପୁଲକେ ତେଜିବ ନିଃଶ୍ୱାସ ।'

ଶ୍ରୀକ୍ଷେତ୍ରରେ ଯମର ଭୟ ଦୂର ହେଇଥାଏ । ଅର୍ଥାତ୍ ମୋକ୍ଷ ପ୍ରାପ୍ତି ହୋଇଥାଏ । ପୁରୀଧାମର ଶ୍ମଶାନକୁ ସ୍ୱର୍ଗଦ୍ୱାର କୁହାଯାଏ । ବିଶ୍ୱାସ ରହିଛି ଯେ ସ୍ୱର୍ଗଦ୍ୱାରରେ ଦାହ ହେଲେ, ପ୍ରାଣୀ ମୁକ୍ତି ପାଇଥାଏ । ପୁରାଣ ଏବଂ କିମ୍ବଦନ୍ତୀ କହେ– ଇନ୍ଦ୍ରଦ୍ୟୁମ୍ନଙ୍କ ଅନୁରୋଧ ରକ୍ଷା କରି ପରମପିତା ବ୍ରହ୍ମା, ଶ୍ରୀମନ୍ଦିର ପ୍ରତିଷ୍ଠା କର୍ମ ସମ୍ପାଦନ କରିବା ପାଇଁ ପୁରୀଧାମର ମହୋଦଧି ତଟସ୍ଥ ଏକ ସ୍ଥାନରେ ଧରାବତରଣ କରିଥିଲେ । ସେହି ସ୍ଥାନ ହିଁ ସ୍ୱର୍ଗଦ୍ୱାର ନାମରେ ପ୍ରସିଦ୍ଧ ଅଟେ । ଦାହ ସମୟରେ ସେହି ବାଟ ଦେଇ ପ୍ରାଣୀର ଆତ୍ମା ସ୍ୱର୍ଗପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି।

ଏହିପରି ଅନେକ ପୌରାଣିକ ବର୍ଣ୍ଣନା, ଲୋକକଥା, କିମ୍ବଦନ୍ତୀ ଏବଂ ଧର୍ମ ବିଶ୍ୱାସ ଶ୍ରୀକ୍ଷେତ୍ରରେ ମୃତ୍ୟୁ କାମନାକୁ ମଣିଷ ମନ ଭିତରେ ଉଜ୍ଜୀବିତ କରି ରଖିଛି ।

ଆକସ୍ମିକ ହେଉ, ବା ସ୍ୱାଭାବିକ ହେଉ ବା ଦୁର୍ଘଟଣା ବଶତଃ ହେଉ, କେବଳ ଶ୍ରୀକ୍ଷେତ୍ରରେ ହିଁ ମୃତ୍ୟୁ ହେଉ । ଏହା ହିଁ କାମନା ।

ପଞ୍ଚାୟତ ମହାବିଦ୍ୟାଳୟ,
ଫିରିଙ୍ଗିଆ, କନ୍ଧମାଳ–୭୬୨୦୧୧

# ଏବେ ବାହୁଡିବ ନାଇଁ

ମିନତୀ ମିଶ୍ର

କାଳିଆ ମୁହଁର ନାଳିଆ ହସ
ଡାକୁଛି ଯେମିତି ଭକତ ଆସ
ଦେଉଳୁ ବାହାରେ ମୁହିଁ
ନଅଦିନ ଯାଏଁ ବାହାରେ ରହିବି
ଏବେ ବାହୁଡିବି ନାଇଁ ।

ଟାଣି ଓଟାରି ତୁ ପାରିବୁ ଯେତେ
ନାଇଁ ପଦେ କହିବି ନାହିଁ ତୋତେ
ଛେଚି କଚି ନେବୁ ବଡଦାଣ୍ଡରେ
ଝୁଲି ଝୁଲାଇବୁ ଭାବ ପ୍ରେମରେ
ମନା ମୁଁ କରିବି ନାଇଁ
ନଅଦିନ ଯାଏଁ ବାହାରେ ରହିବି
ଏବେ ବାହୁଡିବି ନାଇଁ ।

ଖରା ଛାଇ ଲୁଚକାଳିର ଖେଳ
ମେଳେ ହେବ ପ୍ରଭୁ ଭକତ ମେଳ
ଜୀବ ପରମର ମହାମିଳନ



ଆଖି ଲୁହ ହେବ ଭାବଚନ୍ଦନ
ମନା ମୁଁ କରିବି ନାଇଁ
ନଅ ଦିନ ଯାଏଁ ବାହାରେ ରହିବି
ଏବେ ବାହୁଡିବି ନାଇଁ ।

ଶରଧାରେ ଗଢା ଶରଧାବାଲି
ରଥନେବୁ ଆଗେ ଦଉଡି ଠେଲି
ପ୍ରଭୁ ବୋଲି କେତେ ଡକା ପାରିବୁ
ଅନ୍ତର ଭିତରୁ 'ଓଁ' ଶୁଣିବୁ
ଆ ଆରେ ପାଖକୁ ଧାଇଁ
ନିଅଦିନ ଯାଏଁ ବାହାରେ ରହିବି
ଏବେ ବାହୁଡିବି ନାଇଁ ।

ଭାରତୀୟ ଷ୍ଟେଟ୍ ବ୍ୟାଙ୍କ୍,
ମୁଖ୍ୟ ଶାଖା
ଭୁବନେଶ୍ୱର

# ଶ୍ରୀଜଗନ୍ନାଥଙ୍କ ଅଲୌକିକତା ଓ ଗବେଷଣା

ବନମାଳୀ ସୁଆର

ବିଶ୍ୱ ବିଖ୍ୟାତ ଶ୍ରୀଜଗନ୍ନାଥ ମନ୍ଦିରର ମୁଖ୍ୟ ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥ । ପ୍ରଭୁଙ୍କର ସ୍ୱରୂପ ହେଉ ବା ମାହାତ୍ମ୍ୟ ହେଉ ଅଲୌକିକତାରେ ପରିପୂର୍ଣ୍ଣ । ନିରାକାର ପରଂବ୍ରହ୍ମ ଅଥବା ପରମାତ୍ମା ଯାହା ହେଲେ ହେଁ ଅସୀମ । ମାନବ ପକ୍ଷରେ ଅସୀମର କଳ୍ପନା ଅସମ୍ଭବ । ତେଣୁ ସେ ଯୋଗୀମାନଙ୍କର ମଧ୍ୟ ଧ୍ୟାନାତୀତ ଓ ଅଗମ୍ୟ । ଏହା ଉପରେ ଗବେଷଣା ନିରର୍ଥକ । ଶ୍ରୁତି ଶାସ୍ତ୍ରରେ ନିର୍ଦ୍ଦେଶିତ ଯେ ତର୍କ ଦ୍ୱାରା ପ୍ରକୃତ ସତ୍ୟ ଓ ଜ୍ଞାନ ଲାଭ କରାଯାଇପାରେ ନାହିଁ । ପୁନଶ୍ଚ ଶାସ୍ତ୍ରରେ ଅଛି ଅଚିନ୍ତ୍ୟ ଚରମ ତତ୍ତ୍ୱକୁ ତର୍କରେ ଉପଲବ୍ଧି କରିହୁଏ ନାହିଁ ଓ ସତ୍ୟ ମିଳେନି, ସତ୍ୟ ନିର୍ଣ୍ଣୟ ପାଇଁ ଆପ୍ତବାକ୍ୟର ଆବଶ୍ୟକତା ଅଛି । ଋଷିଙ୍କ ମାର୍ଗ ଦର୍ଶନ ଓ ବାକ୍ୟ ହିଁ ଆପ୍ତବାକ୍ୟ ।

ମୋହଶୂନ୍ୟ ହୋଇ ଯେଉଁ ଭକ୍ତ ଏହି ଭାବରେ ପୁରୁଷୋତ୍ତମଙ୍କୁ ଜାଣିବାର ପ୍ରୟାସ କରନ୍ତି ସେ ହିଁ ପ୍ରକୃତ ଉପାସକ ଓ ସର୍ବଜ୍ଞ ହୁଅନ୍ତି । ପୁରୁଷୋତ୍ତମଙ୍କର ବିଭୂତି ଅକଳନୀୟ । ଅପରା ଓ ପରା ପ୍ରକୃତି । ଈଶ୍ୱରଙ୍କଠାରୁ ଜାତ ଓ ଈଶ୍ୱର ହିଁ ପରମାର୍ଥ ତତ୍ତ୍ୱ । ଜ୍ଞାନ ଓ ବିଜ୍ଞାନର ଚରମ ସତ୍ୟ ହିଁ ଈଶ୍ୱର । ସେ ମଧ୍ୟ ସୃଷ୍ଟି ସ୍ଥିତି ଓ ବିଲୟର କର୍ତ୍ତା । (୭ମ ଅଧ୍ୟାୟ ଗୀତା) ପ୍ରଭୁଙ୍କ ବିଭୂତିର ଅନ୍ତ ନାହିଁ । ତାଙ୍କ ଉପରେ ଅନେକ ଆଧୁନିକ ଗବେଷକ ଗବେଷଣା କରିବାରେ ଲାଗିଛନ୍ତି । ଆଖି ନଥାଇ ସର୍ବ ଦ୍ରଷ୍ଟା, କାନ ନଥାଇ ସର୍ବଶ୍ରୋତା, ହାତ ନଥାଇ ସକଳ କର୍ମ ସମ୍ପାଦନ ଓ ପାଦ ନଥାଇ ସର୍ବତ୍ର ଗମନଶୀଳ ଓ ସର୍ବତ୍ର ବିଦ୍ୟମାନ । ଏଥିରେ କି ପ୍ରକାର ଗବେଷଣା ? ଶ୍ରୀଜଗନ୍ନାଥ ଉଭୟେ ନାରୀ ଓ ପୁରୁଷ । ବିଷ୍ଣୁ ସହସ୍ର ନାମରେ ସେ ଆତ୍ମଯୋନୀ ଓ ବିଶ୍ୱଯୋନୀ ରୂପେ ବର୍ଣ୍ଣିତ । ଗୀତାରେ ସେ ନିଜେ ପୁରୁଷ ଓ ପ୍ରକୃତି ମାତା । ଚଣ୍ଡୀରେ ସେ ଜଗନ୍ମୟୀ ନାରସିଂହୀ, ବାରାହି ରୂପେ ନିଜେ ବର୍ଣ୍ଣିତା ।

ଲେଖକ ନିମ୍ନରେ କେତେକ ଅଲୌକିକ ସତ୍ୟ ଘଟଣା ଉଲ୍ଲେଖ କରୁଅଛନ୍ତି । ଲେଖକ ଶ୍ରୀଜୀଉମାନଙ୍କର ଅଙ୍ଗଲାଗି ସେବକ, ଅଣସର ସମୟରେ ଗୁପ୍ତ ସେବା ସମ୍ପାଦନ କରିଥାଆନ୍ତି । ୧୯୮୫ ମସିହା ଅଣସର ସମୟ ଦ୍ୱାଦଶୀ ରାତ୍ରିରେ ତା ୧୫.୬.୮୫ ରିଖ ଶ୍ରୀଜୀଉମାନଙ୍କର ନିଶାର୍ଦ୍ଧ ରାତିରେ କୋଇଲି ବୈକୁଣ୍ଠ କୂପ ମଧ୍ୟରେ ବିରୂପ ବିସର୍ଜନ କାର୍ଯ୍ୟ କରିବାକୁ ପଡ଼ିଲା । ସବୁ ବିରୂପକୁ ଏକତ୍ରକରି ବାନ୍ଧି କୂପ ମଧ୍ୟକୁ ନିକ୍ଷେପ କରାଗଲା । ବଡ଼ ବାମ୍ପି ମଧ୍ୟରେ ପ୍ରାୟ ୨୫ଫୁଟ ତଳେ ମଧ୍ୟଭାଗରେ ଛୋଟ କୂପ । ନିକ୍ଷେପ ସମୟରେ କୂପ ମଧ୍ୟରୁ ଛୁଟି ଆସିଲା ଭୟଙ୍କର ଉତ୍ତାଳ ତରଙ୍ଗ ଢ଼େଉର ଗର୍ଜନ । ସତେ ଯେପରି ଦୁଇଗୋଟି ଡ଼ିଜେଲ ଚାଳିତ ରେଳ ଇଞ୍ଜିନର ଦ୍ରୁତ ଗତିର ଶବ୍ଦ । ଥରି ଉଠିଲା ଛାତି । ପ୍ରଭୁ ହିଁ ଥିଲେ ସେତେବେଳର ବଳ ଓ ସାହସ । ଏହା ଏକ ଜୀବନ୍ତ ଅନୁଭୂତି । ତା ୧୧.୧୧.୮୮ରିଖର ଘଟଣା । ବାଲେଶ୍ୱର ଜିଲ୍ଲା ସୋରର ସ୍ୱର୍ଗତ ବାଞ୍ଛାନିଧି ବେହେରା ଓ ତାଙ୍କର ଧର୍ମପତ୍ନୀ ସ୍ୱର୍ଗତ ସତ୍ୟଭାମା ସେତେବେଳେ ଜୀବିତ ଥିଲେ । ସେମାନେ ଓ ତାଙ୍କର ପରିବାର ଶ୍ରୀଜଗନ୍ନାଥଙ୍କ ଭକ୍ତ । ଯେତେବେଳେ ମନରେ କୌଣସି କାରଣରୁ ଦୁଃଖ ଓ ମାନସିକ ଦୁଃଶ୍ଚିନ୍ତା ଆସେ ପୁରୀକୁ ଚାଲି ଆସନ୍ତି ପ୍ରଭୁଙ୍କୁ କହିବା ପାଇଁ । ଶ୍ରୀଜୀଉମାନଙ୍କର ଅବକାଶ ପୂଜା (ଦାନ୍ତଘସା, ଗାଧୁଆ ଆଦି) ଦର୍ଶନ କରିବାର ଇଛା ଥିଲା । ସେ ଦୁଇ ଜଣ ଓ ଲେଖକ ଦୁଇଦିନ ଚେଷ୍ଟା କରି ପୂଜା ଦର୍ଶନରୁ ବଞ୍ଚିତ ହୋଇଥିଲୁ । ସେମାନେ ସିଦ୍ଧାନ୍ତ କରିଥିଲେ ଯଦି ତୃତୀୟ ଥର ପାଇଁ ପ୍ରଭୁଙ୍କ ଅବକାଶ ଦର୍ଶନ ନହୋଇ ପାରିବ, ଅନ୍ୟ ଜଣଙ୍କ ଘରେ ଗ୍ରହ ପୂଜା କରି ଫେରି ଯିବେ । ସ୍ତ୍ରୀଙ୍କ ମତ ଜଗନ୍ନାଥ ସବୁ । ଆଉ ଗ୍ରହ ପୂଜାର ଆବଶ୍ୟକ ନାହିଁ । ସ୍ୱାମୀଙ୍କ ଇଛା ଗ୍ରହ ପୂଜା କରିନେବା । ସମାଧାନ ପ୍ରଭୁ କରି ଦେଲେ । ସେହି ଦିନ ଅବକାଶ ପୂଜା ଦର୍ଶନ କଲେ ଓ କୋଠ

ଭୋଗ ନାଡ଼ି ଦଶ ଗୋଟି ଦଶ ଟଙ୍କାର ଦେଇ ଗୋଟିଏ ଖଲିପତ୍ରରେ ବାନ୍ଧି ଆଣିଲେ । କୋଠ ଭୋଗ ନାଡ଼ି ମହାପ୍ରସସାଦ ଖାଇବାକୁ ପତର ଖୋଲି ଦେଖିଲେ ଖଲିପତର ତାଳପତ୍ର ଭୋଗେଇ (ପେଡ଼ି)ରେ ପରିଣତ ହୋଇଯାଇଛି ଓ ନାଡ଼ି ବଦଳରେ ବଡ଼ ଲୁଣ୍ଡୁ ଖୁରୁମା ଭୋଗେଇରେ ପୂର୍ଣ୍ଣ ମାତ୍ରାରେ ଅଛି । ଦାସିଆ ବାଉରୀର ନଡ଼ିଆକୁ ପ୍ରଭୁ ନେବା ମଧ୍ୟ ସତ୍ୟ । ଏହା ମୋର ପ୍ରତ୍ୟକ୍ଷ ଅନୁଭୂତି, ସେମାନେ ଆଉ ଗ୍ରହ ପୂଜା କଲେ ନାହିଁ । ପ୍ରଭୁଙ୍କର ଏହି ଅଲୌକିକ ଅନୁଭୂତି ସେମାନଙ୍କୁ ସ୍ତମ୍ଭିଭୂତ କରିଦେଇ ଥିଲା । ଏଥିରେ ଗବେଷଣା କ'ଣ କରାଯାଇ ପାରିବ । ୧୯୮୯ ମସିହା ଜୁଲାଇ ମାସ । ଶ୍ରୀ ରଙ୍ଗାଧର ସାହୁ ଓ ସ୍ତ୍ରୀ ସ୍ମୃତିରେଖା ସାହୁ (ବାପଘରକୁ ଆସିଲେ ହରିପୁର ଗ୍ରାମ) ଅରୁଣାଚଳ ପ୍ରଦେଶକୁ ଚାକିରି ସ୍ଥାନକୁ ବସରେ ଯାଉଥିଲେ, ପାହାଡ଼ ଉପରେ ବସ୍ ଦୁର୍ଘଟଣା ହେଲା । ଅନେକ କ୍ଷତ ବିକ୍ଷତ ହେଲେ । ବସଟି ଗଡ଼ି ଗଡ଼ି ନଈ ପାଣିରେ ସମ୍ମୁଖ ଭାଗ କିଛି ଅଂଶ ବୁଡ଼ିଗଲା । ଜଗନ୍ନାଥଙ୍କୁ ଦର୍ଶନ ସାରି ସେମାନେ ଫେରୁଥିଲେ । ପାଖରେ ଥିଲା ଶ୍ରୀଅଙ୍ଗ ତୁଳସୀ । ସେମାନଙ୍କ ହାତରୁ ଶିଶୁଟି ଖସି ପଡ଼ିଲା । ଚାରି ମାସର ଛୁଆଟିଏ । ବସ୍ ଚାଳକର ପାଦ ପାଖରେ ଛୁଆଟି । ବହୁ ଖୋଜା ଖୋଜି ପରେ ମିଳିଲା । କିନ୍ତୁ ପାଣି ଟୋପେ ମଧ୍ୟ ପିଇ ନାହିଁ । ବାହାର ପବନ ସଂସ୍ପର୍ଶରେ ଆସି ପାଞ୍ଚ ମିନିଟ୍ ପରେ ଛୁଆ ଯୋରରେ କାନ୍ଦିଲା । କଥାରେ ଅଛି, ରଖେ ହରି ମାରେ କିଏ ? ମାରେ ହରି ରଖେ କିଏ ?

୧୯୮୫ ମସିହା ଅଣସର ସମୟରେ ନିଶାର୍ଦ୍ଧ ରାତ୍ରର ଘଟଣା । ଲେଖକ ପଣା ଭୋଗ ପୂଜା ଠା' ସାରି ପଣା ଭୋଗ ପରେ ପଣା ତାଡ଼ଟିକୁ ନେଇ ଆସୁଥିଲେ । ଭିତର ବେଢ଼ା ଅତିକ୍ରମ କରି ପୂର୍ବ ପଟ ଗୁମୁଟ ମଧ୍ୟକୁ ଆସିଗଲା ପରେ କାନ୍ଥରୁ ଜଣେ ବୃଦ୍ଧା ବାହାରି ପଡ଼ିଲେ । ପଥ ଓଗାଳି ଅମୃତ ଟୋପାଏ ମାଗିଲେ । କିନ୍ତୁ ଅସୁବିଧାରେ ଥିବାରୁ ନ ଦେଇ ଏକ ହାତ ଆଗକୁ ଆସିଲା ପରେ ମନୋଭାବ ବଦଳି ଗଲା । ବୁଲିପଡ଼ି ଦେଖେ ତ କେହି ନାହାଁନ୍ତି ଓ ଡ଼ାକ ମାରିଲେ ବି କେହି ଶୁଣିଲେ ନାହିଁ ।

ସମଗ୍ର ଜଗତକୁ ନିଜ ଭିତରେ ନିଜେ ଧାରଣ କରିଛନ୍ତି । ସେ ଅତି କୋମଳ ଓ ଅତି ନିଷ୍ଠୁର । ସେ ନିରାକାର ହେଲେ ହେଁ ସାକାର ତତ୍ତ୍ୱ । ସେ ଜଗତ ମଧରେ ରଥାରୂଢ଼ ହୋଇ ଜନତା ମଧରେ ମାନବୀୟ ଲୀଳା କରନ୍ତି । ବିବାହ ବନ୍ଧନ ଛିନ୍ନ କରି ପ୍ରଭୁ ଶ୍ରୀମନ୍ଦିର ବାହାରକୁ ଆସନ୍ତି ଗଣ ରାଜ୍ୟକୁ । ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ବ୍ରାହ୍ମଣ୍ୟ ଓ ସୌର ସମ୍ପ୍ରଦାୟ ମଧ୍ୟରେ ଥିବା ବିଭେଦର ପ୍ରାଚୀରକୁ ଭାଙ୍ଗି ସମସ୍ତଙ୍କୁ ସାମ୍ୟ, ମୈତ୍ରୀ, କରୁଣା ଓ ପ୍ରେମ ମନ୍ତ୍ରରେ ବାନ୍ଧି ଆକର୍ଷଣ କରନ୍ତି ନିଜ ଆଡ଼କୁ । ଭିନ୍ନ ଭିନ୍ନ ମତବାଦର କର୍ତ୍ତବ୍ୟର ଦାସତ୍ୱ ଛିନ୍ନକରି ଏକମାତ୍ର ପ୍ରଭୁଙ୍କ ଶୋକ କର ନାହିଁ । ରଥାରୂଢ଼ ପ୍ରଭୁଙ୍କୁ ଦର୍ଶନ କଲେ ଭକ୍ତ ମନରେ ଏହି ଭାବନା ଉଦ୍ରେକ ହୁଏ । ଏହି ଭାବନା ଓ ଏକନିଷ୍ଠ ଭକ୍ତି ଭକ୍ତ ହୃଦୟରେ ପବିତ୍ର ଘୋଷ ଯାତ୍ରାରେ ଅଙ୍କୁରିତ ହେଉ । ଧନ୍ୟ ପ୍ରଭୁ ତୁମ ଲୀଳା ଓ ଅଲୌକିକତା ।

ବରିଷ୍ଠ ସେବାୟତ, ଶ୍ରୀମନ୍ଦିର
ଦୋଳମଣ୍ଡପ ସାହି, ପୁରୀ

# ଓଡ଼ିଶା ଓ ଓଡ଼ିଶା ବାହାରେ ଶ୍ରୀଜଗନ୍ନାଥ

ପଞ୍ଚାନନ ଅଗ୍ରୱାଲ

ଶ୍ରୀଜଗନ୍ନାଥ ହେଉଛନ୍ତି ସମଗ୍ର ବିଶ୍ୱମାନବର ଏକ ବିସ୍ମୟ ଦେବତା । ତାଙ୍କ ଦାରୁପିଣ୍ଡ ମଧ୍ୟରେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ପରିକଳ୍ପନା । ସେ ଅନନ୍ତ ଓ ଅସୀମ । ପୁଣି ସମଗ୍ର ମାନବ ଜାତିର ମୁକ୍ତିଦାତା, ତାଙ୍କ ଲୀଳାର ଅନ୍ତ ନାହିଁ । ଶ୍ରୀଜଗନ୍ନାଥ ହେଉଛନ୍ତି ପତିତପାବନ, ସେ ହେଉଛନ୍ତି ସର୍ବଧର୍ମ ସମନ୍ୱୟର ପ୍ରତୀକ । ପୃଥିବୀର ସବୁ ଧର୍ମ, ପ୍ରତ୍ୟେକ ବର୍ଣ୍ଣ ଓ ବିଭିନ୍ନ ଆଦର୍ଶ ତଥା ବହୁ ଦର୍ଶନ ଶ୍ରୀଜଗନ୍ନାଥଙ୍କଠାରେ ଏକୀଭୂତ ।

କୁଶାଣ ଯୁଗର (ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ) ଏକ ପ୍ରସ୍ତର ଫଳକରେ ବଳରାମ, ସୁଭଦ୍ରା, (ଏକବଂଶା) ଓ ଶ୍ରୀକୃଷ୍ଣ ବିଗ୍ରହ ପୂଜିତ ହେବାର ଦେଖାଯାଏ । ଦ୍ୱିହସ୍ତ ବଳରାମଙ୍କର ଦକ୍ଷିଣ ହସ୍ତରେ ହଳ ଓ ଦ୍ୱିହସ୍ତ ଏକବଂଶା ବା ସୁଭଦ୍ରାଙ୍କ ଦକ୍ଷିଣ ହସ୍ତରେ ବରଦାମୁଦ୍ରା ଓ ବାମ ହସ୍ତରେ ଗଦା, ଉର୍ଦ୍ଧ୍ୱ ବା ବାମ ହସ୍ତରେ କଟି ଉପରେ ନ୍ୟସ୍ତ । ଚତୁର୍ଭୁଜ କୃଷ୍ଣଙ୍କର ଉର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ଗଦା, ଉର୍ଦ୍ଧ୍ୱ ବା ବାମ ହସ୍ତରେ ଚକ୍ର, ଅଧୋ ବାମ ହସ୍ତରେ ପଦ୍ମ ଓ ନିମ୍ନ ଦକ୍ଷିଣ ହସ୍ତରେ ଅଭୟ ମୁଦ୍ରା ବିଦ୍ୟମାନ । ଦୁଃଖର ବିଷୟ ଏହି ପ୍ରାଚୀନତମ ପ୍ରସ୍ତର ଫଳକଟି ବର୍ତ୍ତମାନ କରାଚି ସଂଗ୍ରହାଳୟରେ ସଂରକ୍ଷିତ ।

ଭଗବାନ ଶ୍ରୀଶଙ୍କରାଚାର୍ଯ୍ୟ (୭୮୮-୮୨୦ଖ୍ରୀ) ବିରଚିତ । ବିଷ୍ଣୁ ସହସ୍ର ନାମ ଭାଷ୍ୟମରେ ବିଷ୍ଣୁଙ୍କୁ ଜଗନ୍ନାଥ ନାମରେ ବିଶେଷ ପ୍ରାଧାନ୍ୟ ଦିଆଯାଇଥିବା ଜଣାଯାଏ– ଯଥା– ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ, ବିଷ୍ଣୋନାମ ସହସ୍ରଂମେ ଶୃଣୁ ପାପ ଭୟ ପହମ (ଦ୍ୱାଦଶ ଶ୍ଳୋକ) । ମଧ୍ୟପ୍ରଦେଶର ସାରଙ୍ଗ ରାୟଗଡ଼ (୧୬୯୨) ରାଜନନ୍ଦ ଗାଁରେ ପ୍ରାଚୀନ ଜଗନ୍ନାଥ ମନ୍ଦିର ଥିଲା ।

ମେଦିନୀପୁର ସହରରେ କଂସାବତୀ ନଦୀ କୂଳରେ ଗଙ୍ଗା ବା ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ଏକ ଜଗନ୍ନାଥ ମନ୍ଦିର ନିର୍ମାଣ ହୋଇଥିଲା, କିନ୍ତୁ କାଳକ୍ରମେ ଏହା ନଦୀ ସ୍ରୋତରେ ବିଧ୍ୱସ୍ତ ହେଲା । ହିଜିଲ୍ଲୀର ମନ୍ଦିରରେ ଥିବା ଏକ ଶିଳାଲେଖରୁ ଜଣାଯାଏ ଯେ ଶକାବ୍ଦେ ରସ ଶୂନ୍ୟ ବାଣ ଧରଣୀ ମାନେ' ଅର୍ଥାତ ରସ (୬) ଶୂନ୍ୟ (୦), ବାଣ (୫), ଧରଣୀ (୧) ବା ୧୫୦୬ ଶକାବ୍ଦ ବା ୧୮୮୪ ଖ୍ରୀ. ଉକ୍ତ ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ସମାପ୍ତ ହୋଇଥିଲା । ବାଙ୍କୁଡ଼ାର ଜଗନ୍ନାଥ ମନ୍ଦିର ୧୨୮୦ ଶକାବ୍ଦ ବା ୧୩୫୮ ଖ୍ରୀଷ୍ଟାବ୍ଦର କୀର୍ତ୍ତି । ବିଷ୍ଣୁପୁର ରାଜା ପତିତ ମଲ୍ଲ ୧୪୫୦ଖ୍ରୀ ବିଷ୍ଣୁପୁରରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଏହା ବଙ୍ଗଳାର ପ୍ରାଚୀନ ଜଗନ୍ନାଥ ମନ୍ଦିର । ଢ଼ାକାରେ ଥିବା ଜଗନ୍ନାଥ ମନ୍ଦିରକୁ ଯଶପାଳ ନାମକ ଜଣେ ପାଳ ବଂଶୀୟ ରାଜା ଦ୍ୱାଦଶ ଶତାବ୍ଦୀରେ ନିର୍ମାଣ କରିଥିଲେ । ତାଙ୍କ ସମୟରେ ନିର୍ମିତ ହେଉଥିବା ରଥର ଉଚ୍ଚତା ୫୦ଫୁଟ ଥିଲା । ମଣିପୁରର ରାଜଧାନୀ ଇମ୍ଫାଲରେ ପରମ ବୈଷ୍ଣବ ଭାଗ୍ୟଚନ୍ଦ୍ର (୧୭୬୪-୯୮) ଜଗନ୍ନାଥଙ୍କ ରଥଯାତ୍ରାରେ 'ଗୀତଗୋବିନ୍ଦ' ଗାନ ପ୍ରଚଳନ ସହିତ ସେଥିରେ ଦଶାବତାର ସ୍ତୁତିର ପ୍ରଚଳନ କରିଥିଲେ । ବର୍ତ୍ତମାନ ସେହି ରଥଯାତ୍ରା ଜୟଦେବ ରଥଯାତ୍ରା ନାମରେ ପରିଚିତ ।

ଛୋଟନାଗପୁର ରାଜବଂଶୀ ରାଜାମାନେ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ସେମାନଙ୍କ ରାଜଧାନୀ ଦୋଁଏସାଗଡ଼ସ୍ଥ ପ୍ରାଚୀନ ଜଗନ୍ନାଥ ମନ୍ଦିର ଭାଙ୍ଗି ଯିବାରୁ ସେଠାରେ ନୂତନ ଜଗନ୍ନାଥ ମନ୍ଦିର ୧୭୩୯ ବିକ୍ରମ ସମ୍ୱତ ବା ୧୬୮୩ ଖ୍ରୀରେ ନିର୍ମିତ ହୋଇଥିଲା ।

ଆନ୍ଧ୍ରପ୍ରଦେଶର ସୋମପେଣ୍ଟ ଠାରୁ ୧୨ମାଇଲ୍ ଦୂରବର୍ତ୍ତୀ 'ସାବକୋଟା' ନାମକ ସ୍ଥାନରେ ଥିବା ଜଗନ୍ନାଥ ମନ୍ଦିର ପ୍ରାୟ

ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇଥିବା ଐତିହାସିକ ରୋବର୍ଟ ସ୍ୱେଲ୍ ମତ ପ୍ରକାଶ କରିଛନ୍ତି । ଏହି ମନ୍ଦିର ପାଇଁ ପାରଳାଖେମୁଣ୍ଡିର ଗଜପତି ରାଜା, ଶ୍ରୀକାକାଳର ନବାବ ମାଫୁସ୍ ଖାଁ, କର୍ମଚାରୀ ବାବୁଲା ଖାଁ, ଦିଲ୍ଲୀର ମୋଗଲ ସରକାର ୧୭୨୮ ରୁ ୧୭୫୭ ମଧ୍ୟରେ ଭୂସମ୍ପତ୍ତି ଦାନ କରିଥିଲେ ।

୧୫୭୦ଖ୍ରୀ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠିତ ହେବାପରେ ଉତ୍କଳର ବିଭିନ୍ନ ସ୍ଥାନରେ ଜଗନ୍ନାଥ ମନ୍ଦିରମାନ ପ୍ରତିଷ୍ଠିତ ହୋଇଥିବାର ପ୍ରମାଣ ମିଳେ । ଖଣ୍ଡପଡ଼ା (୧୭୫୦), ନୟାଗଡ଼ (୧୭୭୮), ନୀଳାଦ୍ରି ପ୍ରସାଦ, ବାଣପୁର (୧୬୯୨), ବଡ଼ମୂଳ ଘାଟୀରେ ଅବସ୍ଥିତ ବେଲପଡ଼ା (ଦଧିବାମନ ମନ୍ଦିର) ପ୍ରାଚୀ କୂଳବର୍ତ୍ତୀ ଅନ୍ତର୍ବେଦୀ, କାକଟପୁର, ମହାବିନାୟକ, ବାଳୀ ଆଠଗଡ଼ (୧୬ଶ ଶତାବ୍ଦୀ) ବଡ଼ମ୍ବାଗଡ଼, ନରସିଂହପୁର (ଅଷ୍ଟାଦଶ ଶତାବ୍ଦୀ) ବାଲିକୁଦା ଜଗତସିଂହପୁର ଯଶୋବନ୍ତ ଦାସଙ୍କ ଗାଦି ନିକଟ ଅଡଙ୍ଗଗଡ଼ (ଷୋଡ଼ଶ ଶତାବ୍ଦୀ), ଅଗରପଡ଼ା (୧୭୮୦) ନିର୍ମଳଝର (୧୭୦୦), ଖଲ୍ଲିକୋଟ (୧୮୦୦), କୋଦଳା ଆଠଗଡ଼ (୧୭୨୮), ମେରଦା (୧୭୩୩), ବାଲିଛେଳି, ଆଠଗଡ଼ (୧୬୮୦), ବଡ଼ଖେମୁଣ୍ଡି ରାଜଧାନୀ, ବିଜୟନଗର (୧୭୦୦), ଦିଗପହଣ୍ଡି (୧୭୯୦), ପାରଳାଖେମୁଣ୍ଡି (୧୭୦୦), କୁଲାଡ଼ (୧୭୫୦), ହୁମାଗଡ଼ (୧୭୮୨), ବୁଗୁଡ଼ା (୧୮୦୦), ଜଗନ୍ନାଥ ପ୍ରସାଦ-ଦଧିବାମନ ମନ୍ଦିର (୧୬୮୦) ନନ୍ଦପୁର-କୋରାପୁଟ (୧୫୮୦), ନାରାୟଣ ପାଟଣା (୧୫୭୦), ରାୟଗଡ଼ା (୧୭୦୦), ପାଇକପଡ଼ା କୋରାପୁଟ (୧୭୫୦) ଜୟପୁର- (୧୭୬୦), ଡେରାପେଣ୍ଟ-ଗୁଣ୍ଡୁପୁର (୧୭୮୧), ବାରିପଦା (୧୫୭୫), ପ୍ରତାପପୁର-(୧୫୭୫), ହରିପୁର (୧୬୩୦), ରତନପୁର କେନ୍ଦୁଝରଗଡ଼ ବଳଦେବ ମନ୍ଦିର (୧୬୦୦) କେନ୍ଦୁଝରଗଡ଼ (୧୭୯୦), ଢ଼େଙ୍କାନାଳ ବଳଭଦ୍ର ମନ୍ଦିର (୧୭୯୦), ଦେବଗ୍ରାମ କପିଳାସ ଓ ଅନୁଗୁଳର ପୁରୁଣାଗଡ଼ (୧୭୫୦) ବଜ୍ରକୋଟ-ତାଳଚେର (୧୫୮୦), ଚକାପାଦମାଳ-ବଉଦ (୧୭୨୦), ଭଟଲି ସମ୍ବଲପୁର (୧୬୦୦), ବରହମପୁର (୧୫୬୭-୧୫୯୧) ଗୋପାଳଜୀଉ ମଠ-ସମ୍ବଲପୁର (୧୫୯୧) ହୋତାପଡ଼ା- (୧୬୫୭), ମୁଦିପଡ଼ା (୧୭୦୦), ବରପାଲି (୧୫୮୪-୧୬୦୨), ଦେବଗଡ଼ ୧୭୭୮- ୧୮୮୨), ବାଲେଶ୍ୱର ଜିଲ୍ଲା ନୀଳଗିରି (୧୫୦୦), ତାଳଚେର (୧୫୧୩), ବଉଦ ଜଗନ୍ନାଥ ମନ୍ଦିର (ପଞ୍ଚଦଶ ଶତାବ୍ଦୀ), କୋରାପୁଟ ଜିଲ୍ଲା ଭୈରବସିଂହ ପୁର (ପଞ୍ଚଦଶ ଶତାବ୍ଦୀ),ବଲାଙ୍ଗୀର ପାଟଣାଗଡ଼ (୧୩୫୦), ହରିଶଙ୍କର ଜଗନ୍ନାଥ ମନ୍ଦିର (୧୪୧୩), ବିନିକା (୧୨୩୦), ଜୁନାଗଡ (୧୫୫୦) ଆନ୍ଧ୍ରପ୍ରଦେଶର ବିଜୟନଗର ଜଗନ୍ନାଥ ମନ୍ଦିର (୧୭୧୧) ବିଶାଖାପାଟଣା ଜଗନ୍ନାଥ ମନ୍ଦିର ୧୫୫୫ ମସିହାରେ ନିର୍ମାଣ ହୋଇଥିଲା । ବିହାରର ମୁଙ୍ଗେର ଜିଲ୍ଲାରେ 'ଉରେନ୍' ନାମକ ପାହାଡ଼ ଅଛି । ସେଠାରେ ବହୁ ଭଙ୍ଗା ମନ୍ଦିର ଓ ଭଙ୍ଗା ବୁଦ୍ଧମୂର୍ତ୍ତି ରହିଛି । ସେଠାରେ ଲୋକମାନେ ସେସ୍ଥାନକୁ କହନ୍ତି ଇନ୍ଦ୍ରଦ୍ୟୁମ୍ନ କା' ଗଡ଼ । ଅନେକ ମନେ କରନ୍ତି ଯେ ସେ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ନାମରେ ଜଣେ ବୌଦ୍ଧ ରାଜା ରାଜତ୍ୱ କରୁଥିଲେ । ନିକଟବର୍ତ୍ତୀ କୋଚ ଓ ହାଦୋ ଅଞ୍ଚଳରେ ଏହି ମୂର୍ତ୍ତିଗୁଡ଼ିକୁ ଲୋକେ 'ମାଧବ' ରୂପେ ପୂଜା କରୁଛନ୍ତି । କଥା ଅଛି ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କ ଆଦେଶରେ ପୁରୀରୁ ଆସି ସେଠାରେ ଏକ ମନ୍ଦିର ତୋଳିବା ପାଇଁ ମନସ୍ଥ କରିଥିଲେ । ସେ ବିହାରର ଜୟନଗର ସ୍ଥାନରେ ଏହି କୀର୍ତ୍ତି ସ୍ଥାପନ କଲେ । ପୁରୀର ଅଠରନଳା ପରି ସେ ସ୍ଥାନରେ' ଅଠର ଖଣ୍ଡ ପୋଖରୀ ଖୋଳାଇଲେ । ସେସମୟରେ ମୁସଲମାନମାନଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନ ଯୁଦ୍ଧକରି ପରାସ୍ତ ହେବାପରେ ସେ ତାଙ୍କର ପରିବାର ବର୍ଗଙ୍କ ସହିତ ଶ୍ରୀଜଗନ୍ନାଥ ଧାମକୁ ଚାଲି ଆସିଲେ । ଏହି ଘଟଣା ଘଟିଥିଲା ୧୧୯୨ ସାଲରେ । ଶ୍ରୀଜଗନ୍ନାଥ ଉପାସନା ଓଡ଼ିଶା ବାହାରେ ମଧ୍ୟ ଲୋକପ୍ରିୟତା ଅର୍ଜନ କରିଥିବାରୁ ଏହି ଘଟଣା ପ୍ରମାଣିତ କରୁଅଛି ।

ସହାୟତା।

ଶ୍ରୀଜଗନ୍ନାଥ ସଂସ୍କୃତି, କେଦାରନାଥ ମହାପାତ୍ର

ଶ୍ରୀଜଗନ୍ନାଥ-ଡକ୍ଟର ବଂଶୀଧର ମହାନ୍ତି

ଏମ.ବି-୭୭, ବଡ଼ଗଡ଼ ବ୍ରିଟ୍ କଲୋନୀ,
ଭୁବନେଶ୍ୱର-୧୮

# ଶ୍ରୀମନ୍ଦିର ଶବ୍ଦାବଳୀ– ଏକ ଅଧ୍ୟୟନ

ସହଦେବ ସାହୁ

'ନାହିଁ ଆଦି ଅନ୍ତ ଯା'ର ଏ ସାରା ବିଶ୍ୱରେ
କି କହି ପାରିବ ସୀମା ଏ ମନୁଷ୍ୟ କେଉଁଠାରେ'

ବିନ୍ଦୁରୁ ସିନ୍ଧୁର ପରିକଳ୍ପନା ପରି ଓଁ ଅର୍ଥାତ (ଅ-ଉ-ମ) ଶବ୍ଦ ବ୍ରହ୍ମକୁ ଧାରଣ କରି ବାକ୍‌ଶକ୍ତିର ଅଧିକାରୀ ସେହି ପରମବ୍ରହ୍ମ, ତାଙ୍କଠାରେ ହିଁ ବ୍ରହ୍ମତ୍ୱ ଆରୋପିତ ହୋଇଛି । ସର୍ବଭାଷାର ପ୍ରାଣକେନ୍ଦ୍ର ଭାବରେ ସେ ସମସ୍ତ ଶବ୍ଦକୁ ନିଜ ପାଖରୁ ପଠାଉ ଅଛନ୍ତି ଧ୍ୱନି, ବର୍ଣ୍ଣ, ଲିପି ତାଙ୍କଠାରେ ନ୍ୟସ୍ତ ହୋଇରହିଛି । ଶବ୍ଦ ଚିତ୍ର ସେ ହିଁ ନିର୍ମାଣ କରନ୍ତି ।

ଶବ୍ଦ ହିଁ ଶକ୍ତି, ଶବ୍ଦ ହିଁ ଜ୍ଞାନ, ସମସ୍ତ ଶବ୍ଦର ଭଣ୍ଡାର ପରମବ୍ରହ୍ମଙ୍କ ପାଖରେ ପରିବ୍ୟାପ୍ତ । ସେ ଅମାପ, ଅସୀମ, ଅବ୍ୟକ୍ତ, ବିନ୍ଦୁରୁ-ରଶ୍ମି-ବୃତ୍ତ ଅଙ୍କନ କରି ମହାଶକ୍ତିର ଉତ୍ସ ଭାବରେ ବିରାଜମାନ ଶ୍ରୀମନ୍ଦିର ଏକ ଉପଯୁକ୍ତ ବିଜ୍ଞାନାଗାର କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରକୃତିରୁ ସୃଷ୍ଟି ଏହି ବ୍ରହ୍ମ ସ୍ୱୟଂ ଗତିଶୀଳ । ଅନାଦି ଅନନ୍ତ ସ୍ୱରୂପର ନିଦର୍ଶନ ଭାଷାର ରାଜକୀୟତା ଯାହାଙ୍କର ବିଦ୍ୟମାନ ରାଜାଧିରାଜ, ପରମାରାଧ୍ୟ ଯିଏ ଶବ୍ଦ ଧ୍ୱନି ସୃଷ୍ଟି କରନ୍ତି, ନାଦବ୍ରହ୍ମରୁ ଜନ୍ମଦାତା ଶବ୍ଦ ବାଣୀ କଣ୍ଠରେ ବ୍ୟକ୍ତ କରନ୍ତି । ନିନାଦିତ ହୁଏ 'ଓଁ' ଶବ୍ଦ, ସୃଷ୍ଟି ହୁଏ ଶବ୍ଦ ସମ୍ଭାର, ପରିପୂର୍ଣ୍ଣ ହୁଏ ଭାଷା ଭଣ୍ଡାର । କୁସୁମିତ ହୋଇଉଠେ ଭାଷା କାନନ ।

ଶ୍ରୀମନ୍ଦିରରେ ବ୍ୟବହୃତ ଭାଷା ରାଜକୀୟ ଭାଷା ଅନନ୍ତ ପୁରୁଷଙ୍କଠାରୁ ସୃଷ୍ଟି ଶବ୍ଦ ସମୂହ ତତ୍ତ୍ୱ ରେ ପରିପୂର୍ଣ୍ଣ । ଶବ୍ଦାୟିତ ଛନ୍ଦରେ ସୃଷ୍ଟି ଶବ୍ଦ ତତ୍ତ୍ୱ ପୃଥିବୀର ପ୍ରତ୍ୟେକ ସ୍ଥାନକୁ ଆଲୋକିତ କରୁଅଛି । ଭୂମାଠାରୁ ଭୂମିର ପରିସୀମା ଯାହାଙ୍କ ପାଖରେ ପରିବ୍ୟାପ୍ତ । ତେଣୁ କୁହାଯାଏ-

ତତ୍ତ୍ୱ ଜାଣିଲେ ତୁଟେ ଭ୍ରାନ୍ତି
ମାୟା ସାଗରୁ ତରିଯାନ୍ତି ।
( ଭାଗବତ )

ଶବ୍ଦ ହିଁ ଭାଷାର ମେରୁଦଣ୍ଡ । ଶ୍ରୀମନ୍ଦିର ଶବ୍ଦକୋଷ ହେଉଛି ଓଡିଶାର ସର୍ବପୁରାତନ ଆଦର୍ଶ ଦେଉଳିଆ ଭାଷାକୋଷ । ଶ୍ରୀମନ୍ଦିର ଶବ୍ଦାବଳୀର ନିଜର ଏକ ସ୍ୱାତନ୍ତ୍ର୍ୟ ରହିଛି । ଶ୍ରୀଜଗନ୍ନାଥ ସଂସ୍କୃତିର ବିକାଶ ଓ ଶ୍ରୀଜୀଉଙ୍କ ଦୈନନ୍ଦିନ ପୂଜାନୀତି, ପର୍ବପର୍ବାଣି, ଯାନିଯାତ୍ରା, ବେଶଭୂଷା,



ଭୋଗପ୍ରସାଦ ଓ ସେବା ତଥା ସେବାୟତ ଗୋଷ୍ଠୀକୁ ନେଇ ପ୍ରଚଳିତ ଶବ୍ଦରାଜୀ ଦ୍ୱାରା ଶ୍ରୀମନ୍ଦିର ଭାଷା ଓ ସାହିତ୍ୟ ସମୃଦ୍ଧ (ଶ୍ରୀମନ୍ଦିର ଶବ୍ଦାବଳୀ ମୁଖବନ୍ଧ–ପୃ–୧୩)

ଶ୍ରୀମନ୍ଦିରରେ ପ୍ରଚଳିତ ସ୍ୱତନ୍ତ୍ର ଶବ୍ଦ ସମ୍ଭାର ମୁସଲମାନ, ମରହଟ୍ଟା ଓ ବ୍ରିଟିଶ୍ ରାଜତ୍ୱ ସମୟରୁ ଚଳି ଆସୁଅଛି । ମାଦଳାପାଞ୍ଜି ମଧ୍ୟ ଏହି ସମୟରୁ ପ୍ରଚଳିତ । ଅର୍ଥଯୁକ୍ତ ଏକ ବା ଏକାଧିକ ଅକ୍ଷରକୁ ଶବ୍ଦ କୁହାଯାଏ । ଯାହାକୁ ପାଥେୟ କରି ଭାଷା ସୃଷ୍ଟି ହୁଏ । ଶ୍ରୀମନ୍ଦିର ଶବ୍ଦାବଳୀ ହିଁ ଶ୍ରୀମନ୍ଦିରରେ ପ୍ରଚଳିତ । ଶ୍ରୀମନ୍ଦିରର କେତେକ ଶବ୍ଦାବଳୀର ଅର୍ଥ ଶ୍ରୀମନ୍ଦିରରେ ସମ୍ପୂର୍ଣ୍ଣ ଭିନ୍ନ ବାହାରେ ମଧ୍ୟ ଏହାର ରୂପ ଭିନ୍ନ । ତେଣୁ ଅଭିଧାନରେ ଏହି ଶବ୍ଦର ବେଳେ ବେଳେ ପାରିଭାଷିକ ଅର୍ଥ ମିଳୁ ନ ଥିବାରୁ ଏହା ସବୁଦିନ ପାଇଁ ପାଠକମାନଙ୍କ ନିମନ୍ତେ ଦୁର୍ବୋଧ୍ୟ ହୋଇ ରହିଯାଏ । (ଶ୍ରୀମନ୍ଦିର ଶବ୍ଦାବଳୀ 'ଅଭିମତ'ପୃ–୪) ନିମ୍ନରେ ଶ୍ରୀମନ୍ଦିରରେ ବ୍ୟବହୃତ ଶବ୍ଦାବଳୀର କେତେକ ଅଂଶ ପ୍ରଦତ୍ତ ।

ଅବଢ଼ା: ବି ଅଭଡ଼ା(ଦେଶଜ)– ବଢ଼ା ହୋଇ ନ ଥିବା ଖାଦ୍ୟ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦକୁ ନ ବାଢ଼ି ଭୋଗ କରାଯାଉଥିବା ବିଧି ଯୋଗୁଁ ଏହା ଅବଢ଼ା ବା ଅଭଡ଼ା ନାମରେ ନାମିତ । ( ଓଡିଆ ସାଂସ୍କୃତିକ ଶବ୍ଦାବଳୀ )

ଅବଢ଼ା ଶବ୍ଦଟି ଏ ଜାତିର ସମ୍ପୂର୍ଣ୍ଣ ନିଜସ୍ୱ ଅଟେ । ଅବଢ଼ା ଶବ୍ଦ ଅପଭ୍ରଂଶ ହୋଇ ଅଭଡ଼ା ହୋଇଛି । 'ବ' ଧ୍ୱନିର 'ଭ' ଧ୍ୱନି ସହିତ ଧ୍ୱନିଗତ ସାନ୍ନିଧ୍ୟ ଥିବାରୁ 'ବ' ଧ୍ୱନି କାଳକ୍ରମେ 'ଭ' ଧ୍ୱନିରେ ଏବଂ 'ଢ଼'ଧ୍ୱନି 'ଡ' ଧ୍ୱନି ସହିତ ସାନ୍ନିଧ୍ୟ ଥିବାରୁ 'ଢ଼', 'ଡ'କୁ ରୂପାନ୍ତରିତ ହୋଇଛି । ଏଣୁ ଅବଢ଼ା ଶବ୍ଦ ଅଭଡ଼ା ଶବ୍ଦକୁ ଅପଭ୍ରଂଶ ହୋଇଛି ।

'ଅବଢ଼ା' ଶବ୍ଦର ଅର୍ଥ ହେଲା ନ ବଢ଼ା ଅବଢ଼ା ଯାହାକୁ କି ବଢ଼ା ଯାଏ ନାହିଁ । କାହା ପାଇଁ କେହି ଦେବା ଦରକାର ପଡେ ନାହିଁ । ଯେ ଯାହାର ଆବଶ୍ୟକତା ଅନୁସାରେ ମୂଳପାତ୍ରରୁ ସ୍ୱହସ୍ତରେ ନେଇ ଭୋଜନ କରିପାରନ୍ତି । ପାଶ୍ଚାତ୍ୟ ବଫେଠାରୁ 'ଅଭଡ଼ା' ସହସ୍ର ଗୁଣରେ ଉନ୍ନତତର । ପାଶ୍ଚାତ୍ୟ ବଫେରେ କେବଳ ମନୁଷ୍ୟମାନେ ହିଁ ଭାଗୀଦାର କିନ୍ତୁ ଆମର 'ଅଭଡ଼ା' ସଂସ୍କୃତିର ଯଦି ସେହି ପାତ୍ରରୁ ମନୁଷ୍ୟେତର ପ୍ରାଣୀ (କାକ, କୁକୁର, ବିରାଡି, ଶୃଗାଳ) ଆଦି ମଧ୍ୟ ଭକ୍ଷଣ କରନ୍ତି, ତା' ହେଲେ ବି ମନୁଷ୍ୟ ବିନା ଦ୍ୱିଧାରେ ସେହି ପାତ୍ରରୁ ମହାପ୍ରସାଦ ପରମାନନ୍ଦର ସହିତ ଗ୍ରହଣ କରେ । ପାଶ୍ଚାତ୍ୟ ବଫେରେ ମନୁଷ୍ୟ ତା' ଉଦର ପୂର୍ତ୍ତି ନିମିତ୍ତ ଭକ୍ଷଣ କରେ କିନ୍ତୁ 'ଅଭଡ଼ା' ସେବନ କରିବାରେ ମନୁଷ୍ୟ ତା'ର ଉଦର ପୂର୍ତ୍ତି କରିବା ସଙ୍ଗେ ସଙ୍ଗେ ଆତ୍ମାପୂର୍ତ୍ତି ଲାଭ କରି ମୋକ୍ଷପ୍ରାପ୍ତ ହୁଏ । ମହାପ୍ରଭୁ ଶବର ଦ୍ୱାରା ପୂଜିତ ଥିବାରୁ କିଛି ଆଦିବାସୀ ବା ଅଷ୍ଟ୍ରିକ୍ ଶବ୍ଦର ପ୍ରଭାବ ଶ୍ରୀମନ୍ଦିର ଶବ୍ଦାବଳୀରେ ଲକ୍ଷ୍ୟ କରାଯାଏ । ସଉରା ଶବ୍ଦ ଆବ୍ –ଆଡା(ଅର୍ଥ ପାଣିରେ ସିଝାଇବା)ରୁ 'ଅଭଡ଼ା' ଶବ୍ଦ ସୃଷ୍ଟି ହୋଇଥାଇପାରେ । ଆଚାଣ୍ଡାଳ ବ୍ରାହ୍ମଣ ନ ବାଢ଼ି କୁଡୁଆ ଭିତରେ ହାତ ପୂରାଇ ଖାଉଥିବାରୁ ତାର ନାମ 'ଅବଢ଼ା' । ଧ୍ୱନିଗତ ସାମଞ୍ଜସ୍ୟ ଦୃଷ୍ଟିରୁ 'ଅବଢ଼ା'ର ଅଳ୍ପ ପ୍ରାଣଧ୍ୱନି 'ବ''ଢ଼' ଧ୍ୱନି ସଂସ୍ପର୍ଶରେ ଆସି ମହାପ୍ରସାଦ ପ୍ରାପ୍ତ ହୋଇ ସଷୀଭବନ 'ଭ'ରେ ପରିଣତ ହେଲା ଏବଂ 'ଡା' 'ନା' ଅଘୋଷୀଭବନ ଅଳ୍ପପ୍ରାଣ ତାଡିତ ବ୍ୟଞ୍ଜନରେ ରୂପାନ୍ତରିତ ହୋଇ 'ଅଭଡ଼ା' ଶବ୍ଦ ସୃଷ୍ଟି ହେଲା ।

ଅଣସର: ସଂସ୍କୃତ 'ଅନବସର'(ନ ଝ ଅବସର) ଅର୍ଥ ଅନୁଯାୟୀ ଦଇତାପତିମାନଙ୍କ ଗୁପ୍ତପୂଜା ବା ସେବାପୂଜା ଓ ଚିକିତ୍ସାରେ ଆପ୍ୟାୟିତ ପ୍ରଭୁ ଶ୍ରୀଜଗନ୍ନାଥ ଯାତ୍ରୀମାନଙ୍କୁ ଦର୍ଶନ ଦେବା ପାଇଁ ଅବସର ନ ଥାଏ । ସ୍ନାନ ଓ ଗୁଣ୍ଡିଚାରେ ବା ରଥଯାତ୍ରା ମଧ୍ୟବର୍ତ୍ତୀ କାଳୀନ ଏକ ବିଧିବିଧାନ ହେଉଛି ଅଣସର ।

ଦେବସ୍ନାନ ପୂର୍ଣ୍ଣିମା ଅର୍ଥାତ୍ ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନଠାରୁ ନେତ୍ରୋତ୍ସବ ପର୍ଯ୍ୟନ୍ତ ବା ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ୧୫ ଦିନକାଳ ଠାକୁରମାନେ ଅଣସର ପିଣ୍ଡିରେ ବିଜେ କରିଥାନ୍ତି । ଅଣସର ବା ଅନବସରର ୩ ଗୋଟି ମୌଳିକ ତାତ୍ପର୍ଯ୍ୟ ରହିଛି । ତାହା ହେଲା–

୧. ପୌରାଣିକ ମତାନୁସାରେ– ଭକ୍ତ ଶବର ବିଶ୍ୱାବସୁର ସ୍ତୁତିଚାରଣ ଓ ତା' ବଂଶଧର ଦଇତାପତିମାନଙ୍କୁ ଅଣସର ପୂଜା ପଦ୍ଧତିରେ ଅଖଣ୍ଡ ଅଧିକାର ପ୍ରଦାନ ।

୨. ଠାକୁରଙ୍କ ରଙ୍ଗ ବୋଳା ପାଇଁ ସମୟ ଓ ସୁଯୋଗ ସୃଷ୍ଟି କରିବା । ନୀଳାଦ୍ରି ମହୋଦୟ ଅନୁଯାୟୀ ଅଣନ୍ ଝ ସର ଝ ଅଣସର ହେଉଛି ବିଦ୍ୟାପତି ବଂଶଧର ଶୁଦ୍ଧ ସୁଆରମାନେ ରୋଷଘରେ ମୁଗ ରଗଡି ଅଟକାଳି କରି ତାହାକୁ ଠାକୁରଙ୍କ ଶ୍ରୀଅଙ୍ଗରେ ପ୍ରତିଦିନ ଲେପନ କରନ୍ତି । ଏହି ମୁଗ ବାଟଣା ବା ଲେପ ଘଷିବା ଦ୍ୱାରା ଠାକୁରମାନଙ୍କର ଶ୍ରୀଅଙ୍ଗରେ ଏକ ବୋଳ ବସିଯାଏ । ଫଳରେ ପୂର୍ଣ୍ଣାଙ୍ଗ ରଙ୍ଗ କାମ କରିବା ପାଇଁ ସୁବିଧା ହୋଇଯାଏ । ଏହି କାରଣଟି ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

୩. ଗ୍ରୀଷ୍ମ ତାପରୁ ରକ୍ଷା ପାଇବା ଲାଗି ଠାକୁରମାନଙ୍କର ଅଜସ୍ର ସ୍ନାନ ଫଳରେ ଜଗନ୍ନାଥଙ୍କୁ ଶର୍ଦ୍ଦି ବା ଜ୍ୱର ହୋଇଥାଏ ।

ତାଙ୍କ ରୋଗର ଉପଶମ ନିମନ୍ତେ ଦଇତାପତିମାନେ ଦଶମୂଳ ପାଚନ ଓ ନାନାବିଧ ଚେରମୂଳି ଔଷଧ ପ୍ରୟୋଗ କରିଥାନ୍ତି ।

ଅଧରପଣା: (ଅଧର ଣ୍ଠ ପଣା) ସଂସ୍କୃତ 'ଅଧର' (ଓଠ) ଶବ୍ଦରେ ଓଡିଆ 'ପଣା' ଶବ୍ଦ ମିଶି 'ଅଧରପଣା' ଶବ୍ଦର ସୃଷ୍ଟି ହୋଇଛି । ଏହା ଦେଶଜ ବିଶେଷ୍ୟ ପଦ । ଏହି ଯୁଗ୍ମ ଶବ୍ଦଟିର ଅର୍ଥ ଏହି ଯେ ଶ୍ରୀଜୀଉଙ୍କ ଅଧର ପର୍ଯ୍ୟନ୍ତ ପଣାହାଣ୍ଡି ବା ଶ୍ରୀଜୀଉଙ୍କ ଶ୍ରୀଅଧର ଲାଗି ପଣା ଏହା ଷୋଡଶ ଶତାବ୍ଦୀରୁ ପ୍ରଚଳିତ ।

ଅଧରପଣା ସାଧାରଣତଃ ନଅଗୋଟି ମିଶ୍ରିତ ପଦାର୍ଥରେ ପ୍ରସ୍ତୁତ ହୋଇଥାଏ । ଯଥା–କ୍ଷୀର, ସର, ଛେନା, ନବାତ, ପାଚିଲା କଦଳୀ, ଗୋଲମରିଚ ଗୁଣ୍ଡ, ଜାଇଫଳ ଘୋରା, କର୍ପୁର ଓ ଜଳ । ପ୍ରକୃତରେ ତିନି ରଥରେ ଅଧରପଣା ହେଉଛି ବାର ହାଣ୍ଡି । ଶ୍ରୀଜଗନ୍ନାଥଙ୍କ ରଥରେ ତିନି ହାଣ୍ଡି, ମଦନମୋହନଙ୍କ ପାଇଁ ଏକ ହାଣ୍ଡି । ଶ୍ରୀବଳଭଦ୍ରଙ୍କ ରଥରେ ତିନି ହାଣ୍ଡି, ରାମକୃଷ୍ଣଙ୍କ ପାଇଁ ଦୁଇଟି ଛୋଟ ହାଣ୍ଡି । ଶ୍ରୀସୁଭଦ୍ରାଙ୍କ ରଥରେ ତିନି ହାଣ୍ଡି ।

ଅଖଣ୍ଡ: ସଂସ୍କୃତ (ବିଶେଷଣ ପଦ) ଅ ଣ୍ଠ ଖଣ୍ଡ, ପୂର୍ଣ୍ଣ, ସମଗ୍ର, ଅକ୍ଷତ, ଅଭଗ୍ନ (ଶବ୍ଦତତ୍ତ୍ୱ ବୋଧ ଅଭିଧାନ) ଯହିଁରୁ କୌଣସି ଅଂଶ ଖଣ୍ଡିତ ହୋଇନାହିଁ ।

'ଅମୂଲ୍ୟ ରତ୍ନ ସିଂହାସନ ମଧ୍ୟେ ଅଖଣ୍ଡ କୃଷ୍ଣାଜୀନନ୍ତି ।'

(ଭୂପତି ପଣ୍ଡିତ–ପ୍ରେମପଞ୍ଚାମୃତ)

(ପୂର୍ଣ୍ଣଚନ୍ଦ୍ର ଭାଷାକୋଷ–ପ୍ରଥମଖଣ୍ଡ–ପୃ–୬୨)

ଶ୍ରୀମନ୍ଦିରରେ ନିରବଚ୍ଛିନ୍ନ ଭାବରେ ଗୋଟିଏ ରାଶିତେଲ ଦୀପ ରତ୍ନ ସିଂହାସନ ଉପରେ ଜଳୁଥାଏ । ଏହା ରାଜଖଞ୍ଜା । ଶ୍ରୀମନ୍ଦିରର ନୀତିକ୍ରାନ୍ତି ମଧ୍ୟରେ ଦୀପ ଓ ଦିହୁଡିରେ (ଠାକୁରଙ୍କ ବିଜେ ସମୟରେ) ରାଶି ତେଲ ବ୍ୟବହୃତ ହୁଏ । ଠାକୁରଙ୍କ ଅବସ୍ଥାନ କାଳରେ ରତ୍ନସିଂହାସନ ସଂଲଗ୍ନ ରାଶି ତେଲରେ ଯେଉଁ ଅଖଣ୍ଡ ଦୀପ ସଦାସର୍ବଦା ଜଳୁଥାଏ, ତାକୁ ଅଖଣ୍ଡ ଦୀପ କୁହାଯାଏ । ଶ୍ରୀମନ୍ଦିରରେ ଭକ୍ତମାନେ ଅହରହ ପ୍ରଭୁଙ୍କ ପାଖରେ ଯେଉଁ ଭଜନ କୀର୍ତ୍ତନ କରନ୍ତି, ତାକୁ ମଧ୍ୟ ଅଖଣ୍ଡ ନାମ କୁହାଯାଏ । ଶ୍ରୀମନ୍ଦିରର ଏହି ପଦ୍ଧତି ଅନୁସରଣ କରି ଶ୍ରୀମନ୍ଦିର ତଥା ଅନ୍ୟାନ୍ୟ ସ୍ଥାନରେ ଥିବା ମଠ ଓ ମନ୍ଦିରମାନଙ୍କର ଅଖଣ୍ଡ ଦୀପ ଓ ଅଖଣ୍ଡ ନାମ ଅନୁଷ୍ଠାନ କାର୍ଯ୍ୟକ୍ରମ ଚାଲିଅଛି ।

ତତ୍ତ୍ୱ: ଅଭୀଷ୍ଟ ସିଦ୍ଧି ପାଇଁ ଯଦି କୌଣସି ଦୀପ ବା ଆଲୋକବର୍ତ୍ତିକା ଅଖଣ୍ଡ ଭାବରେ ବା କ୍ରମାନ୍ୱୟରେ ବା ଅବିରତ ଭାବରେ ଜଳାଯାଏ, ତାହା ଠାକୁରଙ୍କୁ ସନ୍ତୁଷ୍ଟ କରିବାର ଧାରାରେ ଅବସ୍ଥାପିତ ହୁଏ । ତେଣୁ ଠାକୁର ଭକ୍ତକୁ କୃପାଦାନ କରିଥାନ୍ତି ଓ ଭକ୍ତର ଅଭିଳାଷ ପୂରଣ କରିଥାନ୍ତି । ଶ୍ରୀମନ୍ଦିରରେ ଭକ୍ତମାନେ ନିଜର ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ମହାପ୍ରଭୁଙ୍କୁ ଜଣାଣ, ନାମ ସଂକୀର୍ତ୍ତନ, ନମ୍ର ନିବେଦନ ଦିବାରାତ୍ର କରିଥାନ୍ତି । ଏହା ଏକ ଅଖଣ୍ଡ ନାମ ଯଜ୍ଞ ପରି । ନାମଯଜ୍ଞ ଦ୍ୱାରା ଅଭିଳାଷ ପୂରଣ ହୁଏ ।

ଗ୍ରା–ଦୋଳଗୋବିନ୍ଦପୁର
ପୋ– ବୀରପ୍ରତାପପୁର
ଜି–ପୁରୀ–୭୫୨୦୧୨

# ନାଗାର୍ଜୁନ ବେଶ ଓ ଶ୍ରୀକ୍ଷେତ୍ରରେ ସାହି ପରମ୍ପରା

ରଜତ ରଶ୍ମି ସ୍ୱାଇଁ

ଶ୍ରୀଜଗନ୍ନାଥଙ୍କର ବର୍ଷ ସାରା ଯେତେଗୁଡ଼ିଏ ବେଶ ଅନୁଷ୍ଠିତ ହୁଏ, ସବୁଗୁଡ଼ିକ ପାରମ୍ପରିକ ନୁହେଁ। ସେଥିରୁ କିଛି ଗଜପତିଙ୍କ ଅନୁମତିକ୍ରମେ ବିଭିନ୍ନ ସାମନ୍ତ ରାଜାଙ୍କ ଦ୍ୱାରା ପ୍ରବର୍ତ୍ତିତ ଯଜମାନୀ ବେଶ ରହିଛି। ଶ୍ରୀମନ୍ଦିର ପ୍ରଶାସନ ତରଫରୁ ମହାପ୍ରଭୁଙ୍କ ପାରମ୍ପରିକ ବେଶଗୁଡ଼ିକ ଅନୁଷ୍ଠିତ ହେଉଥିଲା ବେଳେ ଠାକୁର ରାଜାଙ୍କ ଅନୁମତିକ୍ରମେ ବ୍ୟବସ୍ଥିତ ଅର୍ଥରେ ବିଭିନ୍ନ ବୈଷ୍ଣବ ମଠ ଓ ସେବକମାନଙ୍କ ଦ୍ୱାରା ପୁରୁଷାନୁକ୍ରମରେ ଯଜମାନୀ ବେଶ ସମ୍ପାଦିତ ହୋଇଆସୁଛି। ଏଥିରେ ଏପରି କେତେ ବେଶ ଅନ୍ତର୍ଭୁକ୍ତ, ତାହା ପ୍ରତିବର୍ଷ ଅନୁଷ୍ଠିତ ହୋଇ ନଥାଏ। ପଞ୍ଜିକା ଗଣନାନୁସାରେ ସ୍ୱତନ୍ତ୍ର ଯୋଗାଯୋଗର କାଳ ନିରୂପଣରେ ଯେଉଁ ବେଶର ଆୟୋଜନ କରାଯାଏ, ତାହା ସାମୟିକ ଅଟେ।

ଶ୍ରୀଜଗନ୍ନାଥଙ୍କ ସାମୟିକ ବେଶ ମଧ୍ୟରେ ନାଗାର୍ଜୁନ ବେଶ ଅନ୍ୟତମ। ଏହି ନାଗାର୍ଜୁନ ବେଶର ବିଶେଷତ୍ୱ ହେଉଛି ଶ୍ରୀଜୀଉଙ୍କ ଅନ୍ୟାନ୍ୟ ବେଶ ସଦୃଶ ଏହା ପ୍ରତିବର୍ଷ କୌଣସି ନିର୍ଦ୍ଦିଷ୍ଟ ତିଥିରେ ଅନୁଷ୍ଠିତ ହୁଏ ନାହିଁ। ଯେଉଁ ବର୍ଷ କାର୍ତ୍ତିକ ମାସରେ ପଞ୍ଚକ ପାଞ୍ଚଦିନ ପରିବର୍ତ୍ତେ ଛଅ ଦିନ ହୁଏ, ସେହି ବର୍ଷ ନାଗାର୍ଜୁନ ବେଶ ଅନୁଷ୍ଠିତ ହୁଏ। ଅର୍ଥାତ୍ କାର୍ତ୍ତିକ ଶୁକ୍ଳ ଏକାଦଶୀରୁ ଚତୁର୍ଦ୍ଦଶ ପର୍ଯ୍ୟନ୍ତ ଗୋଟିଏ ତିଥି ଦୁଇ ଦିନ ଭୋଗ ହୁଏ, ସେହି ବର୍ଷ ପଞ୍ଚକରେ ଶ୍ରୀଜୀଉଙ୍କୁ ନାଗାର୍ଜୁନ ବେଶ କରାଯାଇଥାଏ।

ନାଗାର୍ଜୁନ ବେଶର ନାମକରଣର ତାତ୍ପର୍ଯ୍ୟ ଏଯାବତ ଠିକ୍ ଭାବେ ନିର୍ଣ୍ଣିତ ହୋଇପାରି ନଥିଲେ ମଧ୍ୟ ନାଗାବେଶ ଯେ ସ୍ଥାନୀୟ ଲୋକ ସଂସ୍କୃତିର ଏକ ନିଜସ୍ୱ ପରିକଳ୍ପନା, ଏଥିରେ ଦ୍ୱିମତ ନାହିଁ। ଶ୍ରୀକ୍ଷେତ୍ରର ସାଂସ୍କୃତିକ ପରିବେଶରେ ନାଗାବେଶର ଏକ ସମୃଦ୍ଧ ପରମ୍ପରା ରହିଛି। ଶ୍ରୀକ୍ଷେତ୍ର ଲୋକ ସଂସ୍କୃତିରେ ନାଗାବେଶ/ ନାଗାନାଚ ହେଉଛି ଏକ ଲୋକପ୍ରିୟ ଅଙ୍ଗ। ପୁରୀର ସାହିଯାତ୍ରାରେ ବଳବାନ ବ୍ୟକ୍ତିଙ୍କୁ ନାଗା ବେଶରେ ସଜାଇ ଶୋଭାଯାତ୍ରାରେ ସାମିଲ କରାଯାଇଥାଏ। ଏଥିସହିତ ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ବିଭିନ୍ନ ପର୍ବପର୍ବାଣିରେ ଦେବଦେବୀଙ୍କ ଯାତ୍ରା ପଟୁଆରରେ ନାଗା ନର୍ତ୍ତକମାନଙ୍କ ଦ୍ୱାରା ନୃତ୍ୟ ପ୍ରଦର୍ଶନ ଆକର୍ଷଣର କେନ୍ଦ୍ର ବିନ୍ଦୁ ପାଲଟିଥାଏ। ଦଶହରା ସମୟରେ ବିଶାଳକାୟ ନାଗାମୂର୍ତ୍ତିମାନ ନିର୍ମାଣ କରାଯାଇ ଗୋସାଣି ରୂପେ ପୂଜାର୍ଚ୍ଚନା କରିବା ପରେ ପଲଟଣରେ ନାଗାମେଢ଼ ବାହାର କରାଯାଏ। ବିଶେଷତଃ ହନୁମାନ ସଦୃଶ ନାଗା ମହାବୀର, ବ୍ରହ୍ମଚାରୀ ତଥା ଦିଗମ୍ବର ହୋଇଥିବାରୁ ବିଷୁବ ସଂକ୍ରାନ୍ତି ଦିନ ଶ୍ରୀକ୍ଷେତ୍ରରେ ବିରାଜିତ ହନୁମାନ ବିଗ୍ରହଙ୍କୁ ନାଗାବେଶ କରାଯାଇ ମହାବୀର ଜୟନ୍ତୀ ପାଳନ କରାଯାଇଥାଏ। ସର୍ବୋପରି ଶ୍ରୀକ୍ଷେତ୍ରର ଐଶାନ ପ୍ରାନ୍ତରେ ଅଧିଷ୍ଠିତ ସିଦ୍ଧ ମହାବୀରଙ୍କୁ ମାର୍ଗଶିର କୃଷ୍ଣ ପଞ୍ଚମୀରେ ଧନୁଶର, ବର୍ଚ୍ଛା, ଖଣ୍ଡା, ଛୁରା, ଢ଼ାଲ, ଘଣ୍ଟି, ହାଣ୍ଡିଆ, ବାହୁଟି, ବାଘଛାଲ, ଖଡ଼ୁବଳା ଓ ଓଳମାଳରେ ନାଗା ବେଶରେ ସଜ୍ଜିତ କରାଯାଏ। ଏଥିରୁ ଯାହା ଜଣାଯାଏ, ନାଗାବେଶ ହେଉଛି ବୀରତ୍ୱର ବେଶ । ନାଗା ମୂର୍ତ୍ତି ପୂଜା ହେଉଛି ଶୌର୍ଯ୍ୟର ପୂଜା ଓ ନାଗା ଶୋଭାଯାତ୍ରା ହେଉଛି ପରାକ୍ରମର ପ୍ରଦର୍ଶନ। ଶ୍ରୀକ୍ଷେତ୍ରର ନାଗା ନର୍ତ୍ତକ ତଥା ନାଗାମେଢ଼ର ବେଶ ସହିତ ରତ୍ନ ସିଂହାସନରେ ଅନୁଷ୍ଠିତ ମହାପ୍ରଭୁଙ୍କ ନାଗାର୍ଜୁନ ବେଶର ସାଦୃଶ୍ୟ ଦେଖିବାକୁ ମିଳିଥାଏ। ଶ୍ରୀଜଗନ୍ନାଥଙ୍କ ନାଗାର୍ଜୁନ ବେଶ ପ୍ରଭାବରେ ନାଗା ନର୍ତ୍ତକ ବା ନାଗାମୂର୍ତ୍ତିର ବେଶ ପ୍ରଭାବିତ ହୋଇଛି କି ନାଗାମେଢ଼ ଓ ନାଗା ନର୍ତ୍ତକର ବେଶ ଅନୁକରଣରେ ଶ୍ରୀଜଗନ୍ନାଥଙ୍କୁ ନାଗାର୍ଜୁନ ବେଶ କରାଯାଉଛି, ତାହା କହିହେବ ନାହିଁ। ସମସ୍ତେ ଶ୍ରୀମନ୍ଦିର ଅଭ୍ୟନ୍ତରରେ ଏ ବେଶ ଦର୍ଶନ କରିବା ମଧ୍ୟ ସମ୍ଭବ ନୁହେଁ। ମାତ୍ର ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ଅନେକ ବର୍ଷ ବ୍ୟବଧାନରେ ଶ୍ରୀଜଗନ୍ନାଥଙ୍କ ନାଗାର୍ଜୁନ ବେଶ ଅନୁଷ୍ଠିତ ହେଉଥିବାରୁ ଏହାକୁ ଦେଖିବା ପାଇଁ ପ୍ରବଳ ଜନସମାଗମ ହୋଇଥାଏ।

ପ୍ଲଟ୍ ନଂ–୧୬, ଇନ୍ଦ୍ରପ୍ରସ୍ଥ, ପୋଖରୀପୁଟ, ଭୁବନେଶ୍ୱର



# ବିଜ୍ଞାନମୟ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

ସୁରମା ବଳିଆର ସିଂହ

ବେଦର ଓଁକାର ବ୍ରହ୍ମ ବୋଲି ପ୍ରତିପାଦିତ। ଏହି ଓଁକାର, ଅ କାର, ଉ କାର ଓ ମ କାରର ସମଷ୍ଟି (ଅ, ଉ, ମ) । ଅକାର ବ୍ରହ୍ମାତ୍ମକ, ଉକାର ବିଷ୍ଣୁଆତ୍ମକ, ମକାର ଶିବାତ୍ମକ। ଏହି ତ୍ରିଦେବ ଶକ୍ତି, ଶ୍ରୀଜଗନ୍ନାଥ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ରୂପେ ମୂର୍ତ୍ତିମନ୍ତ ହୋଇଛନ୍ତି। ଜଗନ୍ନାଥ, ବ୍ରହ୍ମ, ସୁଭଦ୍ରା ପ୍ରକୃତି ଓ ବଳଭଦ୍ର ଜୀବସାର ପ୍ରତୀକ ଅଟନ୍ତି। ସତ୍ୱ, ରଜ ଓ ଏହି ତିନିଗୁଣ ତ୍ରିଦେବ ଶକ୍ତି।

ପରଂବ୍ରହ୍ମ ଜଗନ୍ନାଥ ସର୍ବବ୍ୟାପୀ ସର୍ବଶକ୍ତିମାନ ଓ ସର୍ବଜ୍ଞ ବୋଲି ବେଦ, ପୁରାଣ ବର୍ଣ୍ଣନା କରିଛନ୍ତି । ସର୍ବବ୍ୟାପୀ ଜଗନ୍ନାଥ ସ୍ଥାବର ଜଙ୍ଗମ ସବୁଠି ଅଛନ୍ତି । ସେ ପ୍ରତ୍ୟେକ ଜୀବ ମଧ୍ୟରେ ମଧ୍ୟ ଜୀବୀଭୂତ ଦୃଶ୍ୟ ଅଦୃଶ୍ୟ ସ୍ଥାନମାନଙ୍କରେ ମଧ୍ୟ ତାଙ୍କ ସ୍ଥିତି ଅଛି । ଜଳ ସ୍ଥଳ ବନ ଗିରି ଆକାଶ ସବୁଠାରେ ପରଂବ୍ରହ୍ମ ଜଗନ୍ନାଥଙ୍କର ଶୋଭା ପ୍ରକାଶିତ । ସନାତନ ଧର୍ମର ଦେବତା ଶ୍ରୀଜଗନ୍ନାଥ ବିଜ୍ଞାନମୟ । ସେ ନୃସିଂହ ରୂପରେ ଖମ୍ବରୁ ବାହାରି ପାରନ୍ତି। କୃଷ୍ଣ ଅବତାରରେ ଗୋବର୍ଦ୍ଧନ ପର୍ବତକୁ ଧାରଣ କରିପାରନ୍ତି । ରାମ ରୂପରେ ଶିବଧନୁ ଭାଙ୍ଗି ପାରନ୍ତି, ଜଗନ୍ନାଥ ରୂପରେ ରାଜା ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି ଯୁଦ୍ଧରେ ବିଜୟୀ କରିବା ପାଇଁ କଳା ଧଳା ଘୋଡ଼ାରେ ଜଗା, ବଳିଆ ରୂପରେ ଯାତ୍ରା କରିପାରନ୍ତି । ତାଙ୍କ କରୁଣା ଅପାର ।

ଭକ୍ତ ସାଲବେଗ କୁଷ୍ଠ ରୋଗରୁ ମୁକ୍ତ ହେବା ପାଇଁ ଜଗନ୍ନାଥଙ୍କୁ ବିକଳ ହୋଇ ପ୍ରାର୍ଥନା କରିଥିଲେ । ତାଙ୍କ ପ୍ରାର୍ଥନା ବିଫଳ ହୋଇନଥିଲା । ଜଗନ୍ନାଥଙ୍କ ଅପାର କରୁଣା ବଳରେ ସେ ତାଙ୍କ ପୂର୍ବ ଦୀପ୍ତିମନ୍ତ ଶରୀର ଫେରି ପାଇଥିଲେ । ଏହା ଥିଲା ସାଲବେଗଙ୍କ ପ୍ରାର୍ଥନାର ଏକ ଅଲୌକିକ ଶକ୍ତି । ଯାହା ମଧ୍ୟରେ ବିଜ୍ଞାନ ଲୁଚି ରହିଛି ।

ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ଯେତେବେଳେ ରୋଗ ଦୁରାରୋଗ୍ୟ ହୋଇପଡ଼େ, ରୋଗୀ ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ବ୍ୟାକୁଳ ହୋଇପଡ଼େ, ତା'ପରେ ସେ ଐଶୀ ଶକ୍ତିର ସାହାଯ୍ୟ ଲୋଡ଼େ । ସମୂହ ଭାବରେ ଭଗବାନଙ୍କୁ ପ୍ରାର୍ଥନା କରିବା ଦ୍ୱାରା ଅନେକ ସମୟରେ ଅଲୌକିକ (ଯାହା କି ବିଜ୍ଞାନ) ଘଟଣାମାନ ଘଟିଯାଇଛି ।

ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଆତ୍ମା ରୂପୀ ଜଗନ୍ନାଥ ସମସ୍ତ କର୍ମ କରୁଛନ୍ତି । ତେଣୁ ଭାଗବତରେ ବର୍ଣ୍ଣନା ଅଛି– କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ– ସେ ଆଖି ମଧ୍ୟ ଦେଇ ଦେଖୁଛନ୍ତି ଓ କାନରେ ଶୁଣୁଛନ୍ତି । ସେ ପ୍ରତ୍ୟେକ ଇନ୍ଦ୍ରୀୟ ଓ ନବ ଦ୍ୱାରକୁ କର୍ମକ୍ଷମ କରୁଛନ୍ତି । (ଗୀତା ୧୪।୧୧) ତଦ୍ୱାରା ଆନନ୍ଦ ସଂଜାତ ହେଉଛି । ଆନନ୍ଦର ପ୍ରତୀକ ହେଉଛନ୍ତି ସୁଦର୍ଶନ ।

ଆପଣଙ୍କୁ ଭୋକ ଲାଗୁଛି । ଆପଣ ଖାଦ୍ୟ ଦର୍ଶନ କଲେ । ଏହାଦ୍ୱାରା ଆପଣଙ୍କ ଭୋକ ମେଣ୍ଟିବ ନାହିଁ । ଯେଉଁ ଜଗନ୍ନାଥ ଆପଣଙ୍କ ମଧ୍ୟରେ ନିତ୍ୟ ଶ୍ୱାସ ଟାଣୁଛନ୍ତି, ଆପଣ ତାଙ୍କୁ ଖୁଆଇ ଦେଲେ । ତାଙ୍କର ସମ୍ୟକ ଆନନ୍ଦ ହେଲା, ଏହା ଦର୍ଶନ ନୁହେଁ । ସୁଦର୍ଶନ ଅର୍ଥାତ୍ ସୁନ୍ଦର ରୂପେ ଦର୍ଶନ ପ୍ରତ୍ୟେକ ପ୍ରାଣ ଭାବ ଓ ଅଭିବ୍ୟକ୍ତି ମଧ୍ୟରେ ଯେଉଁ ଯେଉଁ ଆନନ୍ଦ ତାହା ହିଁ ବ୍ରହ୍ମ । 'ଆନନ୍ଦ ବ୍ରହ୍ମ ଇତି ବ୍ୟଜାନାତ୍'– । ସାଧନା କଲେ ସର୍ବ କର୍ମ ମଧ୍ୟରେ ଏହା ଉପଲବ୍ଧି କରିପାରିବ । ଏହା ହିଁ ହେଉଛି ଜ୍ଞାନର ବିଜ୍ଞାନ । ତେଣୁ ଜଗନ୍ନାଥ ସର୍ବାନ୍ତ କରଣରେ ବିଜ୍ଞାନମୟ ।

ଗୀତା ୧୩–୧୪ ଶ୍ଳୋକରେ ବର୍ଣ୍ଣନା କରାଯାଇଛି 'ସର୍ବତଃ ପାଣି ପାଦଂ...' । ଜଗନ୍ନାଥ ତାଙ୍କର ସମସ୍ତ ହାତ, ପାଦ, ଆଖି, ମୁଖ, ସମସ୍ତ ଜୀବକୁ ଦେଇ ସବୁ କର୍ମ ଆବୃତ୍ତ କରି ଜୀବତତ୍ତ୍ୱ ହୋଇଛନ୍ତି । ବିଶ୍ୱରେ ଯେଉଁଠି ଯାହା ଜୀବନ୍ତ ମୂର୍ତ୍ତି

ଦେଖିବେ, ସେମାନଙ୍କ ମଧ୍ୟରେ ଉପଲବ୍ଧି କରିପାରିବେ । ଏହା ହିଁ ପ୍ରକୃତ ଜଗନ୍ନାଥ ଉପଲବ୍ଧି । ଏହା ହିଁ ଜଗନ୍ନାଥ ତତ୍ତ୍ୱ ଓ ଜଗନ୍ନାଥ ବିଜ୍ଞାନ ।

ମାୟା, ମୋହ, ଭ୍ରାନ୍ତି ଓ ଅଜ୍ଞାନ ବଶତଃ ମଣିଷ ନିଜକୁ ଶରୀର ବୋଲି ଭାବେ । ଶରୀରକୁ ଖାଦ୍ୟ ସର୍ବସ୍ୱ ବୋଲି ଭାବେ । ଏହି ଶରୀର ସ୍ଥିତି ପାଇଁ ମୁଖ୍ୟ ଧାର୍ମିକ ପ୍ରାଣ ଶକ୍ତି 'ଲାଇଭ୍ ଏନର୍ଜି ବା ଲାଇଭ୍‌ଟ୍ରୋନ୍‌ସ' ବୋଲି ଜାଣି ନଥାଏ ।

ଏହି ପ୍ରାଣଶକ୍ତି ଅଣୁ ପରମାଣୁ ଶକ୍ତିଠାରୁ ଆହୁରି ସୂକ୍ଷ୍ମତର ହୋଇ ବିଶ୍ୱର ସମସ୍ତଙ୍କ ଭିତରେ ଜୀବନ ସଂଚାର କରିଥାଏ । ସାଧାରଣତଃ ଏହା ଦୁଇ ପ୍ରକାର । ବିଶ୍ୱ ଚରାଚର ସମସ୍ତ ଜୀବନ ଭିତରେ ଜୀବନ ଓ ଶକ୍ତି ଭରି ଦେଇଥିବା ମହାଶକ୍ତି ହେଉଛି ଏହାର ଏକ ଅଙ୍ଗ ସ୍ୱରୂପ ଅନ୍ୟଟି ସୂକ୍ଷ୍ମ ଭାବେ ପ୍ରତ୍ୟେକ ମାନବ ଶରୀର ମଧ୍ୟରେ ପ୍ରବାହିତ ହୋଇଥାଏ । ଯେତେବେଳେ ଏହି ମହାଶକ୍ତି (କସ୍‌ମିକ୍ ଏନର୍ଜି) ମଣିଷ ଶରୀରରୁ ଅପସାରିତ ହୋଇଥାଏ, ସେତେବେଳେ ବାହାରୁ ଆଦ୍ୟ ବା ଅନ୍ୟ କୃତ୍ରିମ ସାହାଯ୍ୟ ମଣିଷକୁ ବଞ୍ଚାଇପାରେ ନାହିଁ । ଏହି ପ୍ରାଣଶକ୍ତି ମଣିଷ ସ୍ଥୂଳ ଶରୀର ଓ ମନ ମଧ୍ୟରେ ସଂଯୋଗ ସ୍ଥାପନ କରେ । ପ୍ରାଚୀନ କାଳରୁ ଭାରତର ସିଦ୍ଧ ସାଧୁଗଣ ପ୍ରାଣସ୍ଥିତିକୁ ଆବିଷ୍କାର କରି ପ୍ରାଣାୟାମର ବୈଜ୍ଞାନିକ ସ୍ଥିତିର ଭିତ୍ତିଭୂମି ପ୍ରତିଷ୍ଠା କରିଥିଲେ । ପରମପିତା ଯୀଶୁ ଖ୍ରୀଷ୍ଟ ଦୀର୍ଘ ୪୦ ଦିନ ଉପବାସ ରହିଲା ପରେ କହିଥିଲେ ମଣିଷ କେବଳ ଖାଦ୍ୟ ଦ୍ୱାରା ବଞ୍ଚେ ନାହିଁ, ଭଗବାନଙ୍କ ମୁଖ ନିସୃତ ଶବ୍ଦ ଦ୍ୱାରା ବଞ୍ଚେ । ଶବ୍ଦ ହେଉଛି ଓଁ ରୂପେ ପରିପ୍ରକାଶ ହେଉଥିବା ମହା ଜାଗତିକ ପରମାତ୍ମା କମ୍ପନ (କସ୍‌ମିକ୍ ଭାଇବ୍ରେସନ୍) । ଏହା ସମଗ୍ର ବିଶ୍ୱକୁ ତଥା ଜୀବଜଗତକୁ ନିଜର ମହାଜାଗତିକ କମ୍ପନ ଶକ୍ତି (କସ୍‌ମିକ୍ ଭାଇବ୍ରେଟୋରି ଏନର୍ଜି) ଦ୍ୱାରା ସୃଷ୍ଟି ତଥା ପରିପୃଷ୍ଟ କରିଥାଏ । ଯୋଗ ଶାସ୍ତ୍ରରେ ମଣିଷ ମସ୍ତିଷ୍କର ପଶ୍ଚାଦ୍ ଭାବରେ ଥିବା ମେଡୁଲା ଅବଲାଙ୍ଗଟ୍ ପରମାତ୍ମାଙ୍କର ମୁଖ ବୋଲି କୁହାଯାଏ । ଏହା ମେରୁଦଣ୍ଡ ଭିତରେ ଥିବା ସୁସୁମ୍ନା ଇନ୍ଦ୍ର ସହ ମିଶିଯାଇଛି । ଏହି ଦ୍ୱାର ଦେଇ ଯାଇଥିବା ପରଂବ୍ରହ୍ମର କମ୍ପନଶୀଳ ପ୍ରାଣଶକ୍ତି ମଣିଷକୁ ପରିପୃଷ୍ଟ ଓ ଉତ୍‌ଥାନ କରିଥାଏ । ଏହି ସତ୍ୟକୁ ଉନ୍ନୀତ ହେଲେ ସେ ବୁଝିପାରେ, ଅନୁଭବ କରିପାରେ ଯେ ଶରୀର ନୁହେଁ, ମନ ବି ଖାଦ୍ୟ ମଧ୍ୟ ନୁହେଁ, ଏ ସବୁକୁ ଧାରଣ କରିଥିବା ମହାଜାଗତିକ ପରଂବ୍ରହ୍ମଙ୍କର କମ୍ପନଶୀଳ ଶକ୍ତି ହିଁ ସମସ୍ତ ସୃଷ୍ଟିର ମୂଳାଧାର ଓ ଚିରନ୍ତନ ସତ୍ୟ ଓ ବିଜ୍ଞାନ । ପରମାତ୍ମା ସର୍ବତ୍ର ବିଦ୍ୟମାନ ସମସ୍ତ ଶକ୍ତି ଓ ଜ୍ଞାନର ଆଧାର । ବୈଜ୍ଞାନିକ କୌଶଳରେ ଆତ୍ମଦର୍ଶନ ଓ ଗଭୀର ଭଗବତ୍ ଅନୁସନ୍ଧିତ୍ସା ଉପଲବ୍ଧି ହିଁ ବିଜ୍ଞାନ । ଶକ୍ତି ଓ ଜ୍ଞାନ ଯେଉଁଠି ସେଠିତ ବିଜ୍ଞାନ ଆତ୍ମପ୍ରକାଶ କରେ ।

ମଣିଷର ଜ୍ଞାନ ରାଶି ଏକ ଯନ୍ତ୍ର ରହିତ ବାସ୍ତବ ଆଡ଼କୁ ମୁହାଁଇଛି । ସମଗ୍ର ବିଶ୍ୱ ଏକ ବିଶାଳ ଇଚ୍ଛାର ପ୍ରତିଫଳନ ରୂପେ ଜଣାପଡୁଛି । ଏହି ବିଶ୍ୱ ସଚରାଚରକୁ ସୃଷ୍ଟି କରୁଥିବା ଇଲେକ୍‌ଟ୍ରୋନିକ୍ସ କମ୍ପନ ଯେ ସେହି ବିଶାଳ ପରମାତ୍ମାର ଇଚ୍ଛା ଶକ୍ତିଦ୍ୱାରା ସୃଷ୍ଟ, ଏଥିରେ ସନ୍ଦେହ ନାହିଁ । ତେଣୁ ଇଲେକ୍‌ଟ୍ରୋନିକ୍ସ କମ୍ପନ ବା ଶକ୍ତି ହିଁ ସତ୍ୟ ଓ ବସ୍ତୁର ଆପ୍ରେକ୍ଷିତ ସ୍ଥିତି ପାଇଁ ଦାୟୀ ଏକଥା ବୈଜ୍ଞାନିକମାନେ ସ୍ୱୀକାର କରନ୍ତି ।

ଆଜିର ବୈଜ୍ଞାନିକ ନିଜରୁ ଯୁକ୍ତି ବୁଦ୍ଧି, ତାତ୍ତ୍ୱିକ ବିଶ୍ଳେଷଣ ଏବଂ ବିଜ୍ଞାନାଗାର ପରୀକ୍ଷା ଦ୍ୱାରା ଆବିଷ୍କାର କରିପାରିଛି ଯେ ଦୃଶ୍ୟ ଉପଖଣ୍ଡ କେବଳ ଅଦୃଶ୍ୟ ସୂକ୍ଷ୍ମ ଇଲେକ୍‌ଟ୍ରୋନିକ୍ସ ଶକ୍ତିର ରୂପାନ୍ତର । ତେଣୁ ପ୍ରାଚୀନ ଭାରତରେ ବେଦ ବେଦାନ୍ତ ଓ ଉପନିଷଦ ବାଣୀ ଆଦି ଏକ ବିଜ୍ଞାନ ସିଦ୍ଧାନ୍ତ ରୂପେ ପ୍ରତିପାଦିତ ହୋଇଛି । ଏହି ଗତିଶୀଳ, ଚଳଚଞ୍ଚଳ, ବିଶ୍ୱ ବ୍ରହ୍ମାଣ୍ଡର ପ୍ରତ୍ୟେକ କ୍ଷଣଭଙ୍ଗୁର, ଅସ୍ଥିର ଓ ଭ୍ରାନ୍ତିପୂର୍ଣ୍ଣ ସୃଷ୍ଟିର ଅନ୍ତସ୍ଥଳେ ଏକ ଚିରନ୍ତନ ସତ୍ୟ ରହିଛି । ତାହା ହେଉଛି ଈଶ୍ୱରଙ୍କର ସୃଜନଶୀଳ, ଚିରନ୍ତନ ଓ ପରିବର୍ତ୍ତନୀୟ ଇଚ୍ଛା ଯାହା ଆଲୋକ ବା କମ୍ପନଶୀଳ ଶକ୍ତିରେ ପରିପ୍ରକାଶ ହୋଇ ସୃଷ୍ଟି ସର୍ଜନା କରିଛି । ଶ୍ରୀଜଗନ୍ନାଥଙ୍କ ଏହି ହିନ୍ଦୁ ସନାତନ ଧର୍ମ ନିସୃତ ସତ୍ୟକୁ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କରାଚାର୍ଯ୍ୟ ବିଶ୍ୱ ବ୍ରହ୍ମମୟ ବୋଲି କହିଥିଲେ। ବିଂଶ ଶତାବ୍ଦୀର ବୈଜ୍ଞାନିକମାନେ ସନାତନ ଧର୍ମର ବେଦ ବେଦାନ୍ତର ବାଣୀକୁ ବିଜ୍ଞାନ ସମ୍ମତ ପ୍ରମାଣ କଲେଣି ।

ଜଗନ୍ନାଥ ଧର୍ମ ପ୍ରଦର୍ଶିତ ସାର୍ବଜନୀନ ଗୋଷ୍ଠୀ ସମ୍ପ୍ରଦାୟିକ ରହିତ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସନାତନ ଭାବେ ପ୍ରବାହିତ ଯୋଗଧାରକୁ ଆଶ୍ରାକଲେ ବିଶ୍ୱ ସ୍ୱର୍ଗ ହୋଇଯିବ । ଏହି ଚିରନ୍ତନ ସତ୍ୟକୁ ଭାରତ ପାଶ୍ଚାତ୍ୟ ସଭ୍ୟତା ଅଜ୍ଞାନ ମହାନିଦ୍ରାରୁ ଉଠିବାର ବହୁ ପୂର୍ବରୁ ଉପଲବ୍ଧି କରିପାରିଲା ଏବଂ ଧର୍ମ ଏକ ଶ୍ରେଷ୍ଠ ବିଜ୍ଞାନ ବୋଲି ଅଭିହିତ କରିପାରିଥିଲା ଏବଂ ପରମାତ୍ମା ସମସ୍ତ ଶକ୍ତି ଓ ଜ୍ଞାନର ଆଧାର ।

ଯୁଗ ନିର୍ମାଣ ଯୋଜନା ଅଧୁରା ଦ୍ୱାର ଗାୟତ୍ରୀ ଯଜ୍ଞ ସାଧନା ମାଧ୍ୟମରେ ବ୍ୟକ୍ତିତ୍ୱ ନିର୍ମାଣ ଓ ବ୍ୟକ୍ତିତ୍ୱ ନିର୍ମାଣ ଦ୍ୱାରା ପରିବାର ଓ ସମାଜ ନିର୍ମାଣର ମହାନ ପରିକଳ୍ପନାକୁ କାର୍ଯ୍ୟକାରିତା ନିଶ୍ଚୟ ସତ୍ୟ ଯୁଗ ବା ପ୍ରଜ୍ଞାନ ଯୁଗ ନିର୍ମାଣର ଲକ୍ଷ୍ୟ ପୂରଣ କରିବ।

ଏ ତ ପରମାତ୍ମା ଶ୍ରୀଜଗନ୍ନାଥଙ୍କର ନିରାକାରତତ୍ତ୍ୱ ଗାୟତ୍ରୀ ମହାଶକ୍ତିର ନିରାକାର ଯୁଗଶକ୍ତି ଓ ଯୁଗାବତାର ପ୍ରଜ୍ଞାବତାର ବୃଦ୍ଧାବତାରଙ୍କ ଯୁଗାନ୍ତକାରୀ ଚେତନା । ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ବିଜ୍ଞାନମୟ ଓ ପ୍ରଜ୍ଞାନମୟ ଅଟନ୍ତି । ବୈଜ୍ଞାନିକ ସମ୍ମତ ବେଦବେଦାନ୍ତ ନିସୃତ ଓ ଭାରତର ଯୋଗମୁନି ଅନୁଭୂତ ଭାଗବତ ବାଣୀକୁ କେବଳ ଯୁକ୍ତି, ତର୍କ, ତର୍ଜମା, ବିଶ୍ଳେଷଣ ବା ବୁଦ୍ଧି ଦ୍ୱାରା ହୃଦୟଙ୍ଗମ ବା ଅନୁଭବ କରିହେବ ନାହିଁ । ଯେ ପର୍ଯ୍ୟନ୍ତ ମଣିଷ ଶାସ୍ତ୍ର ସମ୍ମତ ବୈଜ୍ଞାନିକ ଜ୍ଞାନକୌଶଳ ବସ୍ତୁକୁ ପ୍ରତ୍ୟକ୍ଷୀକରଣ କରିଥିବା ପ୍ରାଣଶକ୍ତିରେ ଓ ପ୍ରାଣଶକ୍ତିକୁ ପରମାତ୍ମା ସଚେତନତାରେ ଶ୍ରୀଜଗନ୍ନାଥ, ଯୀଶୁ ଏବଂ ଅନ୍ୟାନ୍ୟ ଆତ୍ମଦର୍ଶୀମାନଙ୍କ ଭଳି ପରିଣତ ନ କରିଛି, ସେ ପର୍ଯ୍ୟନ୍ତ ସେ ଅଜ୍ଞାନର ତମସାରେ ବୁଡ଼ି ରହିଛି ବୋଲି ଭାବିବାକୁ ପଡ଼ିବ । ସାଧନା ସିଦ୍ଧି ଦ୍ୱାରା ପରମାତ୍ମା ସଚେତନତାକୁ ଉନ୍ନୀତ ହେଲେ ମଣିଷ ସର୍ବଶ୍ରେଷ୍ଠ ଓ କେବଳ ବାସ୍ତବ ଏବଂ ସତ୍ୟ ବୁଝିପାରିବ ।

ଜ୍ଞାନ ବିଜ୍ଞାନର ଚରମ ଅବସ୍ଥା ଘନକୃଷ୍ଣ ବର୍ଣ୍ଣ । ତେଣୁ ନିର୍ଗୁଣ ବ୍ରହ୍ମ ଶ୍ରୀଜଗନ୍ନାଥ ଅବ୍ୟକ୍ତ ବା କଳା। ହିନ୍ଦୁ ଶାସ୍ତ୍ର ଏବଂ ଭାରତର ଯୋଗୀ ସିଦ୍ଧ ସାଧକମାନେ କହି ଆସୁଛନ୍ତି ପରମାତ୍ମା ସର୍ବତ୍ର ବିଦ୍ୟମାନ ଓ ସମସ୍ତ ଶକ୍ତି ଓ ଜ୍ଞାନର ଆଧାର ।

ଶ୍ରୀକୃଷ୍ଣଙ୍କ ପାଟି ମଧ୍ୟରେ ମା ଯଶୋଦା ବିଶ୍ୱ ବ୍ରହ୍ମାଣ୍ଡର ଦୃଶ୍ୟ ଦେଖିଥିଲେ । ଅର୍ଜୁନ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ କରିଥିଲେ। ପ୍ରଳୟ କାଳରେ ମାର୍କଣ୍ଡେୟ ମୁନି ମଧ୍ୟ ପରମାତ୍ମାଙ୍କ ମୁଖ ଗହ୍ୱରରେ ସାରା ବିଶ୍ୱ ବ୍ରହ୍ମାଣ୍ଡର ଦୃଶ୍ୟ ଦର୍ଶନ କରିଥିଲେ ବୋଲି ସ୍କନ୍ଦ ପୁରାଣରେ ବର୍ଣ୍ଣନା ଅଛି ।

ଶ୍ରୀଜଗନ୍ନାଥଙ୍କୁ ଭକ୍ତ ବିଭିନ୍ନ ରୂପରେ କଳ୍ପନା କରିଥାନ୍ତି । ସେ ବୁଦ୍ଧ, ଜୈନ, ଶିବ, ବିଷ୍ଣୁ, ଗଣେଷ ଆଦି ବିଭିନ୍ନ ରୂପରେ ପୂଜିତ । ବିଭିନ୍ନ ସମୟରେ ପ୍ରଖ୍ୟାତ ଧର୍ମ ପ୍ରଚାରକମାନେ ପୁରୀ ଧାମକୁ ଆସିଛନ୍ତି । ଆଦି ଶଙ୍କରାଚାର୍ଯ୍ୟ ପୁରୀ ଧାମକୁ ଆସି ଜଗନ୍ନାଥଙ୍କୁ ଆରାଧନା କରିଥିଲେ ଓ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ... ସ୍ତୋତ୍ର ରଚନା କରିଥିଲେ । ସେ ଜଗନ୍ନାଥଙ୍କ ଦାରୁ ବିଗ୍ରହ ପ୍ରତିଷ୍ଠା କରିବା ଓ ଗୋବର୍ଦ୍ଧନ ମଠ ପ୍ରତିଷ୍ଠା କରିଥିଲେ । ଶ୍ରୀ ରାମାନୁଜ ଶ୍ରୀକ୍ଷେତ୍ରକୁ ଆସି, ରାଜାଙ୍କୁ ବଶ କରି ନୂତନ ପୂଜା ପଦ୍ଧତି ପ୍ରଚଳନ କରିବା କଥା ଜଣାପଡ଼େ । ଶିଖ ଧର୍ମଗୁରୁ ନାନକ ମଧ୍ୟ ଶ୍ରୀକ୍ଷେତ୍ର ଆସିଥିଲେ । ମହାପୁରୁଷ ଶ୍ରୀଚୈତନ୍ୟ ପୁରୀରେ ତାଙ୍କର ଶେଷ ଜୀବନ ଅତିବାହିତ କରିଥିଲେ । ଶ୍ରୀଜଗନ୍ନାଥ ସାଂପ୍ରତିକ ଦ୍ୱେଷର ଉର୍ଦ୍ଧ୍ୱରେ ଥିଲେ ଏବଂ ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତଙ୍କର ଭକ୍ତି ଓ ଶ୍ରଦ୍ଧାର ପାତ୍ର ଥିଲେ । ୧୭୦୭ ଖ୍ରୀଷ୍ଟାବ୍ଦ ରେ ଆଲେକ୍ ଜାଣ୍ଡାର ହାମିଲ୍ଟନ୍ ପୁରୀ ଭ୍ରମଣରେ ଆସି କହିଛନ୍ତି ଯେ, ଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ସେସମୟରେ ହିନ୍ଦୁ, ଖ୍ରୀଷ୍ଟିଆନ ଏପରିକି ଭେଦଭାବ ନଥିଲା । ଜଗନ୍ନାଥ ସବୁ ଧର୍ମର ସମନ୍ୱୟର ସେତୁ ପରି ଥିଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମହାରାଜା ରଣଜିତ ସିଂହ ଅମୂଲ୍ୟ ହୀରା କୋହିନୂରକୁ ଜଗନ୍ନାଥଙ୍କୁ ଉତ୍ସର୍ଗ କରିଥିବାର ସୂଚନା ସମସାମୟିକ ନଥିପତ୍ରରୁ ଜଣାପଡ଼େ । କିନ୍ତୁ ଘଟଣାଚକ୍ରରେ କୋହିନୂର ହୀରା ପୁରୀ ନ ଆସି ଲଣ୍ଡନକୁ ଚାଲିଯାଇଥିଲା । କିନ୍ତୁ ଲାହୋରରୁ ପଠାଯାଇଥିବା ରଣଜିତ ସିଂହଙ୍କ ଅର୍ଥରେ ଜଗନ୍ନାଥ ମନ୍ଦିରର ପଶ୍ଚିମ ଦ୍ୱାର ଗୁମଟର ଜୀର୍ଣ୍ଣ ସଂସ୍କାର କରାଯାଇଥିଲା । ଏ ବିଷୟରେ ଏକ ଶିଳାଲେଖ ପଶ୍ଚିମ ଦ୍ୱାରରେ ଥିବାର ଜଣାଯାଏ ।

ସବୁଧର୍ମକୁ ଆପଣେଇ ପାରୁଥିବା ଧର୍ମ ହେଉଛି ଜଗନ୍ନାଥ ଧର୍ମ । ଜଗନ୍ନାଥ ଧର୍ମରେ ଥିବା ଉଦାର ଚେତନା ବୋଧେ ଅନ୍ୟ କେଉଁ ଧର୍ମରେ ନାହିଁ । ଦେଶ ବିଦେଶରେ ଜଗନ୍ନାଥ ଧର୍ମର ମହକ ମହକି ଉଠୁଛି । ଜଗନ୍ନାଥ ସଂସ୍କୃତି ସମ୍ପନ୍ନ ସନାତନ ଧର୍ମଠାରୁ ଧର୍ମ ନିରପେକ୍ଷ ଧର୍ମ ବୋଧହୁଏ ପୃଥିବୀରେ ବିରଳ । ସବୁଧର୍ମ ମତ, ପଥ, ପନ୍ଥ ପ୍ରତି ସମାନ ଦୃଷ୍ଟି ଦେଉଛି ଜଗନ୍ନାଥ ସଂସ୍କୃତି । ଏହା ସନାତନ ବୈଦିକ ପରମ୍ପରା । ଏହା ହିଁ ସଂଖ୍ୟାଗରିଷ୍ଠ ଅଧିବାସୀ ହିନ୍ଦୁମାନଙ୍କର ମହତ୍ୱ । କେବଳ ଏହା ଆଜିର ସ୍ଲୋଗାନ ନୁହେଁ ଏହା ହିଁ ଐତିହାସିକ ସତ୍ୟ । ଜଗନ୍ନାଥ ଧର୍ମର ଏ ମହାନତା ବିବେକାନନ୍ଦ ବଜ୍ର କଣ୍ଠରେ ଚିକାଗୋ ଧର୍ମ ସମ୍ମିଳନୀରେ ଘୋଷଣା କରିଥିଲେ । ଭାରତ ହିନ୍ଦୁ ସଂଖ୍ୟା ଗରିଷ୍ଠ ବୋଲି ହିଁ ଧର୍ମ ନିରପେକ୍ଷତାକୁ ଗ୍ରହଣ କରିଛି ଓ ସଂଖ୍ୟାଲଘୁମାନଙ୍କୁ ସମାନ ଅଧିକାର ଦେଉଛି ।

ପ୍ରାକ୍ ବୈଦିକ ଅରଣ୍ୟ ସଂସ୍କୃତିର ପାର୍ବତ୍ୟକନ୍ଦରରୁ ଦେବୋତ୍ତର ପୌରାଣିକ ସଂସ୍କୃତିର ସାଗର ବେଳାକୁ ପ୍ଳାବିକ କରି ବହି ଆସିଛି ଶ୍ରୀଜଗନ୍ନାଥ ସଂସ୍କୃତିର ସାର୍ବଜନୀନ ସ୍ରୋତ । ପ୍ରତୀକାତ୍ମକ ଦାରୁ ବିଗ୍ରହରେ ସାକାର, ନିରାକାର, ପ୍ରାଚ୍ୟ ପାଶ୍ଚାତ୍ୟ ସମଗ୍ର ବିଶ୍ୱ ଦର୍ଶନର କାରୁକଳା ପର୍ଯ୍ୟାପ୍ତ ।

ମାନବ ଜାତିର ପରମ୍ପରା, ଜୀବନଚର୍ଯ୍ୟା, ଆଧ୍ୟାତ୍ମିକ, ସାମାଜିକ ଓ ରାଜନୈତିକ ଜୀବନର ନିରବଚ୍ଛିନ୍ନ ପ୍ରତିଫଳନରେ ପ୍ରାଣବନ୍ତ, ଛବିଳ ଓ ମହିମାନ୍ୱିତ ହୋଇଛି ଜଗନ୍ନାଥ ତତ୍ତ୍ୱ , ଜଗନ୍ନାଥ ସଂସ୍କୃତି ଓ ଜଗନ୍ନାଥ ବିଜ୍ଞାନ ।

ତଳମାଳି ସାହି, ପୁରୀ

# ଶ୍ରୀଜୀଉଙ୍କ ମାଉସୀ ମା

**କୃଷ୍ଣଚନ୍ଦ୍ର ସୁଆର**

ବିଶ୍ୱ ମୈତ୍ରୀ ଓ ମାନବିକତାର ପ୍ରତୀକ ହେଉଛନ୍ତି ଶ୍ରୀଜଗନ୍ନାଥ। ଅନାଦି କାଳରୁ ତାଙ୍କ ଲୀଳା ଏ ବିଶ୍ୱ ବ୍ରହ୍ମାଣ୍ଡରେ ଅଜ୍ଞେୟ ଓ ରହସ୍ୟାବୃତ୍ତ ହୋଇ ରହିଛି। ମୁନି–ଋଷି–ତତ୍ତ୍ୱଦର୍ଶୀମାନେ ତାଙ୍କର ଆଦି–ଅନ୍ତ ଖୋଜି ପାଇ ନାହାନ୍ତି। ଦେବତାମାନେ ତାଙ୍କର ଦିବ୍ୟ ସ୍ୱରୂପ ଦର୍ଶନ କରିପାରି ନାହାନ୍ତି। କେତେ ମତ, ତତ୍ତ୍ୱ, ଧର୍ମ, ଦର୍ଶନ, ବୈଚିତ୍ର୍ୟ, ବିରୋଧାଭାସର ବ୍ୟୂହ ଭିତରେ ସେ ହୋଇ ଉଠିଛନ୍ତି ଆହୁରି ଅବ୍ୟକ୍ତ, ଅଚିନ୍ତ୍ୟ ଓ କଳ୍ପନାତୀତ। ତାଙ୍କ ପାଇଁ ସୃଷ୍ଟି ହୋଇଛି କେତେ ପୁରାଣ, ଇତିହାସ, ସାହିତ୍ୟ, ସଂସ୍କୃତି, କାହାଣୀ ଓ କିମ୍ବଦନ୍ତୀ।

ଶ୍ରୀଜଗନ୍ନାଥଙ୍କ ଭକ୍ତ ଓ ତତ୍ତ୍ୱ ସମୀକ୍ଷକ ସ୍ୱର୍ଗତ ପଣ୍ଡିତ ସଦାଶିବ ରଥଶର୍ମା କହନ୍ତି– 'ଜଗନ୍ନାଥ ପ୍ରଥମେ ସ୍ଥାପନ ହେଲାବେଳେ ଯଜ୍ଞ ଅନୁଷ୍ଠିତ ହୋଇ ଯଜ୍ଞ ମଧ୍ୟରୁ ପ୍ରକଟିତ ହେଲେ। ତେଣୁ ସେ ଯଜ୍ଞୋଦ୍‌ଭବ, ଯଜ୍ଞ ଜଗନ୍ନାଥଙ୍କର କଳ୍ପିତ ଜନକ। ଯଜ୍ଞଙ୍କର ପତ୍ନୀ ସ୍ୱାହା ଓ ଯଜ୍ଞଙ୍କର ଶକ୍ତି ଯୂପର ପ୍ରତୀକ ଅଟେ। ଜଗନ୍ନାଥଙ୍କ ଯଜ୍ଞର ପ୍ରତିଷ୍ଠିତ ଯୂପଙ୍କର ନାମ 'ଅର୍ଦ୍ଧଶୋଷଣୀ' ବା 'ଅର୍ଦ୍ଧାଶନୀ'। ସେହିଠାରେ ଯଜ୍ଞର ଉଦକ ଅର୍ପିତ ହୋଇଥିଲା ବୋଲି ସେ ଏପରି ନାମ ନେଇଛନ୍ତି। ସେ ଯଜ୍ଞପତ୍ନୀ ସ୍ୱାହାଙ୍କର ପ୍ରତୀକ ବିଗ୍ରହ। ରହସ୍ୟମୟ ଏ ବିଗ୍ରହଙ୍କ ଉପରକୁ ସୁଭଦ୍ରାଙ୍କ ସାଦୃଶ ଥିବା ଏକ ଶାସ୍ତ୍ରୀୟ ଦେବୀମୂର୍ତ୍ତି ପ୍ରସ୍ତର ନିର୍ମିତ ଭାବରେ ଅଛନ୍ତି। ବାସ୍ତବରେ ମହାଯଜ୍ଞର ସହଜାତା ଶକ୍ତି ଲୋକ ମତରେ ମାଉସୀ ମା'। ତେଣୁ ପ୍ରାଚୀନ ଗ୍ରନ୍ଥରେ ବର୍ଣ୍ଣିତ ଅଛି – 'ନ ମାତା ଜନକ ଜନ୍ମ ନରୂପା ବୟବ ସ୍ତଥା / ସର୍ବ ତତ୍ତ୍ୱମୟ ସାକ୍ଷାତ୍ ବ୍ରହ୍ମାଣ୍ଡଂ ପୁରୁଷୋତ୍ତମ।'

ଅର୍ଦ୍ଧାଶନୀ ବା ମାଉସୀ ମା'ଙ୍କ ମନ୍ଦିର ସିଂହଦ୍ୱାରରୁ ଶ୍ରୀଗୁଣ୍ଡିଚା ମନ୍ଦିର ଯିବା ବାଟରେ ବଡ଼ଦାଣ୍ଡରେ ଦଇତାପଡ଼ା ସାହିର ପାର୍ଶ୍ୱରେ ବଳଗଣ୍ଡି ପୂର୍ବରୁ ପଡ଼େ। କେଶରୀ ବଂଶର ରାଜାଙ୍କ ସମୟରେ ଏ ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ। ଏହି ମନ୍ଦିର ୧୫ ଡିସିମିଲି ଜମି ଉପରେ ପ୍ରତିଷ୍ଠିତ। ଏହି ମନ୍ଦିର ଓ ଏହାର ଉଚ୍ଚତା ପ୍ରାୟ ପଚିଶ ହାତ। ସାହାଣ ପଥରରେ ଅର୍ଦ୍ଧାଶନୀଙ୍କ ଦ୍ୱିଭୁଜା ରମଣୀୟ ବିଗ୍ରହ ନିର୍ମିତ। ମା'ଙ୍କ ବିଗ୍ରହର ଦୁଇ ପାର୍ଶ୍ୱରେ ଦୁଇଜଣ ପାର୍ଶ୍ୱଦେବୀ ଛାୟା ଓ ମାୟାଙ୍କ ମୂର୍ତ୍ତି ବିଦ୍ୟମାନ। ମୂର୍ତ୍ତିର କଟି ଦେଶ ଉପର ଅଂଶକୁ ଆଚ୍ଛାଦିତ କରି ଦେବୀ ସୁଭଦ୍ରାଙ୍କ ମୁଖ ରହିଛି। ଆଶ୍ୱିନ ଓ ଆଷାଢ଼ ମାସରେ ବର୍ଷକୁ ଦୁଇଥର ଏହି ମୁଖାକୁ ବନକଲାଗି କରାଯାଇଥାଏ। ଦେବୀ ଅର୍ଦ୍ଧାଶନୀ ହେଉଛନ୍ତି ସୁଭଦ୍ରାଙ୍କ ଅଙ୍ଗ ସମ୍ଭୂତା। ତେଣୁ ତାଙ୍କ ମୁଖାରବିନ୍ଦ ସୁଭଦ୍ରାଙ୍କ ମୁଖ ସହ ସାଦୃଶ ଥିବା ଜଣାଯାଏ। ଏହି ମନ୍ଦିର ସକାଳ ଛଅ ଘଟିକାରୁ ରାତ୍ର ନଅ ଘଟିକା ପର୍ଯ୍ୟନ୍ତ ପ୍ରାୟ ଖୋଲା ରହିଥାଏ। ପ୍ରତ୍ୟହ ମନ୍ଦିରରୁ ସମର୍ପଣ ପାଇଁ ମା'ଙ୍କ ମନ୍ଦିରକୁ ମହାପ୍ରସାଦ ଆସିଥାଏ। ମାହାର୍ଦ୍ଧ ସମର୍ପଣ ପରେ ଦେବୀଙ୍କ ପହୁଡ଼ ପଡ଼େ। ମନ୍ଦିର ପରିସରରେ ଏକ ତୁଳସୀ ଚଉରା ଓ ପର୍ଯ୍ୟଟକମାନଙ୍କ ସୁବିଧା ନିମିତ୍ତଏକ ଚାପାକଳ ଅଛି। ମନ୍ଦିର ଦ୍ୱାର ଦେଶରେ ଦୁଇଟି ବଡ଼ ସିଂହ ବଡ଼ଦାଣ୍ଡକୁ ମୁହଁ କରି ରହିଛନ୍ତି। ଦେବୀଙ୍କର ଦ୍ୱାର ସମ୍ମୁଖକୁ ଦେବୀଙ୍କର ମହାକେଶରୀ ଅଜ୍ଞାତ ରୂପକ ଗଜକୁ ମାଡ଼ି ବସି ଜ୍ଞାନମୟୀ ଦେବୀଙ୍କୁ ନିତ୍ୟ ଦର୍ଶନ କରୁଛି। ମନ୍ଦିର ଜଗମୋହନରେ ଶିବ, ନୃସିଂହ, ହନୁମାନ, ଦୁର୍ଗା, ଦଶଅବତାର, ଗଣେଶ, ଦଶମହାବିଦ୍ୟା, ଶିବପାର୍ବତୀ ଓ ନବଗ୍ରହ ଆଦି ନିଭିନ୍ନ ଦେବାଦେବୀଙ୍କ ସମେତେ ଯଜ୍ଞେଶ୍ୱର ମୂର୍ତ୍ତି ମଧ୍ୟ ପୂଜା ପାଉଛନ୍ତି। କ୍ଷେତ୍ର ଶକ୍ତିଙ୍କର ଧ୍ୟାନରୁ ଜଣାପଡ଼େ ଯେ, ସେ ଦ୍ୱିଭୁଜା ମାଳା ଓ ଅଭୟ ମୁଦ୍ରା ବିଭୂଷିତା। ସେ ହେଉଛନ୍ତି ବିଷ୍ଣୁଙ୍କର ପ୍ରିୟ ଦେବୀ ଓ ପ୍ରଳୟବାରି ଶୋଷଣକାରୀ। ତେଣୁ ତାଙ୍କର ପ୍ରାର୍ଥନା ନିମିତ୍ତ ଭକ୍ତ କଣ୍ଠରୁ ନିଷ୍ପନ୍ନ ହୁଏ– 'ଦ୍ୱିଭୁଜା ସୌମ୍ୟବଦନାଂ ଅଭୟ ଅକ୍ଷ ଧାରିଣୀ

/ବିଷ୍ଣୁ ପ୍ରିୟାଙ୍ଗ ସମ୍ଭୂତା ପ୍ରଳୟବାରି ଶୋଷିକାଃ/ନାନା ବସନ ଭୂଷିତାଂ ଆର୍ତ୍ତତ୍ରାଣ ପରାୟଣୀ/ଅର୍ଦ୍ଧାଶନୀ ନିମନ୍ତେ ତୁ ଭକ୍ତାନାଂ ଅଭୟ ପ୍ରଦାମ୍।' ଏହି ମନ୍ଦିରର ଏକ ବିଶେଷତ୍ୱ ହେଲା ଏହା ଦେବୀ ମନ୍ଦିର ହୋଇଥିଲେ ମଧ୍ୟ ଏଠାରେ ଆମିଷ ଭୋଗ ହୁଏ ନାହିଁ ଓ ପ୍ରାତ୍ୟହିକ ଅନ୍ନ ଭୋଗର ବ୍ୟବସ୍ଥା ନାହିଁ। ଦେବୀଙ୍କୁ କେବଳ ଶୀତଳ ଭୋଗ କରାଯାଏ। ଦେବୀ ପରମ ବୈଷ୍ଣବୀ। ଏଠାରେ ଶାରଦୀୟ ବା ବାସନ୍ତିକ ଦୁର୍ଗାପୂଜା କରାଯାଏ ନାହିଁ। ନୃସିଂହ ଚତୁର୍ଦ୍ଦଶୀ ଦିନ ଦେବୀଙ୍କର ମହାଭିଷେକ କରାଯାଇ ଫଳ, ଶୁଖିଲା ଭୋଗ କରାଯାଇଥାଏ। କେହି ଭକ୍ତ ଅନ୍ନ ଭୋଗ କରିବାକୁ ଇଚ୍ଛା କଲେ ନିରାମିଷ ବ୍ୟଞ୍ଜନ ପ୍ରସ୍ତୁତ କରି ଭୋଗ କରି ଥାଆନ୍ତି। ଅର୍ଦ୍ଧାଶନୀଙ୍କ ପ୍ରକୃତ ନାମ ଅର୍ଦ୍ଧଶୋଷଣୀ ବୋଲି ଭକ୍ତମାନେ କହିଥାନ୍ତି। ବଙ୍ଗୀୟ ଯାତ୍ରୀମାନେ ଏହି ମନ୍ଦିରକୁ 'ମାସୀମା' ବାଡ଼ି ବା ମାଉସୀମା ମନ୍ଦିର ରୂପେ ଜାଣନ୍ତି ଏବଂ ଏଠାକୁ ମା'ଙ୍କ ଦର୍ଶନ ନିମିତ୍ତ ବହୁ ସଂଖ୍ୟାରେ ଆସିଥାନ୍ତି।

ଏକ ପ୍ରସଙ୍ଗରୁ ଜଣାଯାଏ – ମହାପ୍ରଳୟ କାଳରେ ଶ୍ରୀକ୍ଷେତ୍ରସ୍ଥ ରୋହିଣୀ କୁଣ୍ଡରୁ କାରଣୋଦକ ନିଃସୃତ ହୋଇ ପ୍ରଳୟ ଘଟାଇବା ପରେ ପୁଣି ସେହି କୁଣ୍ଡରେ ଲୀନ ହୋଇ ଯାଇଥାଏ। ଏହା ଯୁଗାବର୍ତ୍ତନ କାଳରେ ହିଁ ସମ୍ଭବ ହୋଇଥାଏ। ଏକଦା ପ୍ରଳୟ ଘଟିଲା ପରେ ସେହି ଜଳ କୁଣ୍ଡ ମଧ୍ୟରେ ଲୀନ ହେଲା ନାହିଁ। ତେଣୁ ଏହାର ପ୍ରତିକାର ସ୍ୱରୂପ ମା' ଲକ୍ଷ୍ମୀ ଯୋଗମାୟା ସୁଭଦ୍ରିକାଙ୍କ ନିକଟରେ ଏ ଘଟଣା ଜଣାଇବାରୁ ସେ ନିଜ ଅଙ୍ଗରୁ ଏକ ଶକ୍ତି ଜାତକରି ପ୍ରଳୟୋଦକଙ୍କୁ ଶୋଷଣ ପ୍ରକ୍ରିୟା ମାଧ୍ୟମରେ ନିଃଶେଷ କରିବା ପାଇଁ ଆଦେଶ ଦେଲେ। ସୃଷ୍ଟି ଦେବୀ ଚଳୁ କଲା ରକମ ପ୍ରଳୟୋଦକଙ୍କୁ ଶୋଷଣ କରିବାରୁ କ୍ଷେତ୍ର ଆସନ୍ନ ବିପଦରୁ ରକ୍ଷା ହୋଇଥିଲା ଓ ଏଥିରେ ସମସ୍ତେ ଆଶ୍ୱସ୍ତ ହୋଇଥିଲେ। ତେଣୁ ପୁରାଣ ପୃଷ୍ଠାରେ ବର୍ଣ୍ଣିତ ଅଛି – 'ଯୋଗମାୟାଙ୍ଗ ସମ୍ଭୂତାଂ ପ୍ରଳୟୋଦକ ଶୋଷିଣୀ / ଅର୍ଦ୍ଧାଶନୀ ମହାଦେବୀ କ୍ଷେତ୍ର ରକ୍ଷା ବିଧାୟିନୀ।'

ଏତଦ୍‌ବ୍ୟତୀତ ଶ୍ରୀକ୍ଷେତ୍ରର ଆରାଧିତା, ରକ୍ଷାକାରିଣୀ ଅର୍ଦ୍ଧାଶନୀଙ୍କ ସମ୍ପର୍କରେ କଥିତ ଅଛି – ପୂର୍ବେ ବଳଗଣ୍ଡି ନିକଟରେ ମାଳିନୀ ନାମରେ ଏକ କ୍ଷୁଦ୍ର ନଦୀ ପ୍ରବାହିତ ହେଉଥିଲା। ତେଣୁ ଶ୍ରୀଜୀଉଙ୍କ ରଥଯାତ୍ରା ବେଳେ ଭାରି ଅସୁବିଧାର ସମ୍ମୁଖୀନ ହେବା ସଙ୍ଗେ ଛଅଟି ରଥ ନିର୍ମାଣ କରାଯାଉଥିଲା। ଚାପରେ ଶ୍ରୀବିଗ୍ରହମାନଙ୍କୁ ନଦୀ ପାର କରାଯାଇ ଅପରପାର୍ଶ୍ୱରେ ନିର୍ମିତ ତିନୋଟି ରଥରେ ଆରୂଢ଼ କରାଯାଉଥିଲା। ନଦୀର ଅପରପାର୍ଶ୍ୱରେ ନିର୍ମିତ ତିନିରଥ ହିଁ ଗୁଣ୍ଡିଚା ମନ୍ଦିରକୁ ଯାଉଥିଲା। ଦେବୀ ଅର୍ଦ୍ଧାଶନୀ ମାଳିନୀ ନଦୀର ଜଳକୁ ଶୋଷି ନେବା ଫଳରେ କ୍ଷେତ୍ର ମଧ୍ୟକୁ ବନ୍ୟା ଜଳ ପ୍ରବେଶରୁ ରକ୍ଷା ମିଳିବା ସଂଗେ ନଦୀ ଶଯ୍ୟା ଶୁଷ୍କ ହୋଇଗଲା ଏବଂ ରଥଯାତ୍ରା ସୁଗମ ହେଲା। ନଦୀ ଜଳ ଶୋଷି ନେଇ ଥିବାରୁ ଦେବୀଙ୍କ ନାଁ ଅର୍ଦ୍ଧଶୋଷଣୀ ବା ଅର୍ଦ୍ଧାଶନୀ ହୋଇଥିବା ବିଶ୍ୱାସ କରାଯାଏ।

କେବଳ ପ୍ରଳୟୋଦକକୁ ଶୋଷଣ କରି କ୍ଷେତ୍ରକୁ ରକ୍ଷା କରିବା କ୍ଷେତ୍ରରେ ନୁହେଁ ଶବରମାନଙ୍କ ବାସସ୍ଥଳକୁ ରକ୍ଷା କରି ଥିବାରୁ ସେମାନେ ଇଷ୍ଟଦେବୀ ବୋଲି ମାନି ପୂଜାର୍ଚ୍ଚନା କରିଥାନ୍ତି। ଏହି ଦେବୀ ବନଦୁର୍ଗା ମନ୍ତ୍ରରେ ପୂଜା ପାଆନ୍ତି। ଗୃହ୍ୟ ଦେବୀ ଭାବରେ ସେମାନେ ପୂଜା କରନ୍ତି। ଅର୍ଦ୍ଧାଶନୀ ହେଉଛନ୍ତି ଯୋଗମାୟାଙ୍କ ଭଗିନୀ । ତେଣୁ ସୁଭଦ୍ରାଙ୍କ ପରି ହେବା ବିଧେୟ ଭାବି ଏବଂ ଶୈଳ ନିର୍ମିତ ମୂର୍ତ୍ତିକୁ ଶବର ଜାତିର ଜନଜୀବନରେ ଏକାତ୍ମ ଆପଣାର ଇଷ୍ଟ ମନେ କରି ଉତ୍ତର ପୂର୍ବ ପାର୍ଶ୍ୱରେ ବସତି ସ୍ଥାପନ କଲାବେଳେ ଉକ୍ତ ମୂର୍ତ୍ତିର ଉର୍ଦ୍ଧ୍ୱଭାଗକୁ ଲେପ ସଂସ୍କାର କର୍ମ ଅନୁସାରେ ଲେପ ଦ୍ୱାରା ତାଙ୍କ ଦେବୀ ସୁଭଦ୍ରାଙ୍କ ମୁଖାରବିନ୍ଦ ପରି ସେମାନେ ନିର୍ମିତ କରିଥିଲେ। ଏହି ରେଖ ମନ୍ଦିରର ଦ୍ୱାରା ଦେଶରେ ଥିବା ଏକ କୁଟିଳ ଲିପିକୁ ବଙ୍ଗୀୟ ଲିପିରେ ଲେଖାଇ ତତ୍କାଳୀନ ସେବକଙ୍କ ସହାୟତାରେ ଜଗମୋହନରେ ସ୍ଥାପିତ କରାଯାଇଥିଲା। ଅପରପକ୍ଷରେ ହୃଦୟର ଅଜ୍ଞାନତାକୁ ଯିଏ ଭେଦ ବା ଶୋଷଣ କରନ୍ତି ସେ ଅର୍ଦ୍ଧଶୋଷଣୀ ଶକ୍ତି। ସାମଗ୍ରିକ ପୌରାଣିକ ତଥ୍ୟାନୁଯାୟୀ ଅନୁମିତ ହୁଏ, ଦେବୀ ଅର୍ଦ୍ଧାଶନୀ ଅଖିଳ ଲୋକ ଜନନୀ ସୁଭଦ୍ରାଙ୍କ ଭଗ୍ନୀ ଭାବରେ ମାତୃଭଗ୍ନୀ ବା ମାଉସୀ ଭାବରେ ଖୁବ୍ ପ୍ରସିଦ୍ଧ।

ରଥଯାତ୍ରା ସମୟରେ ମାଉସୀମା' ମନ୍ଦିର ସମସ୍ତଙ୍କ ପାଇଁ ବିଶେଷ ଆକର୍ଷଣ ଓ ଚଳଚଞ୍ଚଳ ହୋଇଥାଏ। ଗୁଣ୍ଡିଚା ଦିନ ତିନି ରଥରେ ମହାପ୍ରଭୁ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରୁଥିବା ସମୟରେ ମାଉସୀମା' ମନ୍ଦିର ପାଖରେ ରଥ ଟିକିଏ ଅଟକି ଥାଏ। କାରଣ ମହାପ୍ରଭୁ ବଡ଼ ବ୍ୟସ୍ତ ଥାଆନ୍ତି ଗୁଣ୍ଡିଚା ମନ୍ଦିରକୁ ଯିବା ପାଇଁ। କେବଳ ମାଉସୀମା'ଙ୍କ ଦର୍ଶନ ନିମନ୍ତେ ରଥ କିଛି ସମୟ ଅଟକି ଥାଏ, କିନ୍ତୁ ବାହୁଡ଼ା ଯାତ୍ରା ଦିନ ଅର୍ଥାତ୍ ଗୁଣ୍ଡିଚା ମନ୍ଦିରରୁ ନବଦିନ ଯାତ୍ରା ସାରି ଫେରିଲା ବେଳକୁ ମହାପ୍ରଭୁ ଭାଇ ଓ ଭଉଣୀଙ୍କ ସହିତ ମାଉସୀମା' ମନ୍ଦିର ନିକଟରେ ରଥକୁ ଅଟକାଇଥାନ୍ତି। ସେଠାରେ ରୀତି ଅନୁସାରେ ମାଉସୀମା' ମନ୍ଦିର ତରଫରୁ ମହାପ୍ରଭୁମାନଙ୍କର ପ୍ରିୟ ପୋଡ଼ପିଠା ନୈବେଦ୍ୟ କରାଯାଇଥାଏ।

ଜଗତରନାଥ ଶ୍ରୀଜଗନ୍ନାଥଙ୍କର ପୋଡ଼ପିଠା ଅତିପ୍ରିୟ। ଏହା ଛେନା,ଅଟା, ଚାଉଳଚୁନା, ଘିଅ, ଖଣ୍ଡ ଲବଣୀ, ଦ୍ରାକ୍ଷା, ପେସ୍ତା, ବାଦାମ, କର୍ପୂର,ଦାରୁଚିନି, ଅଳେଇଚ, ଲବଙ୍ଗ ପ୍ରଭୃତିର ମିଶ୍ରଣରେ ପ୍ରସ୍ତୁତ ହୋଇଥାଏ। ସେଇଥି ପାଇଁ ମାଉସୀମା'ଙ୍କର ଶ୍ରଦ୍ଧାର ନିଦର୍ଶନ ସ୍ୱରୂପ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପୋଡ଼ପିଠା ଭୋଗ ଲାଗେ। ପ୍ରଥା ଓ ପରମ୍ପରା ଅନୁଯାୟୀ ମହାପ୍ରଭୁ ମାଉସୀଙ୍କଠାରୁ ପୋଡ଼ପିଠା ଖାଇ ଶ୍ରୀମନ୍ଦିର ଅଭିମୁଖେ ଯାତ୍ରା କରିଥାନ୍ତି। ମାଉସୀ ପୁଣି ଅପେକ୍ଷା କରି ରହିଥାନ୍ତି ଆସନ୍ତା ରଥଯାତ୍ରାକୁ। ଆମର ସାମାଜିକ ଚଳଣିରେ ପିଲାମାନେ ମାଉସୀ ଘରକୁ ଗଲାବେଳେ ମାଉସୀ ଘରେ ଯେପରି ଆତିଥ୍ୟ ଓ ଶ୍ରଦ୍ଧା ପାଇଥାନ୍ତି, ଠିକ୍ ସେହିପରି ଜଗନ୍ନାଥ ସଂସ୍କୃତିରେ ସାମାଜିକ ପରମ୍ପରା ପ୍ରତିଫଳିତ ହୋଇଛି । ଜଗନ୍ନାଥ ମହାପ୍ରଭୁଙ୍କ ମାଉସୀମା'ଙ୍କ ପ୍ରତି କେତେ ଆତ୍ମୀୟତା ଭାବ ଓ ଶ୍ରଦ୍ଧା ରହିଛି, ଘୋଷଯାତ୍ରାରେ ମାଉସୀମା' ମନ୍ଦିରର ନୀତି ତାହାର ଏକ ନିଦର୍ଶନ। ପୁରାଣ ପୃଷ୍ଠାରୁ ଜଣାଯାଏ ତ୍ରେତୟା ଯୁଗରେ ରାମାବତାରରେ ପ୍ରଭୁ ରାମଚନ୍ଦ୍ର ବନବାସ ଯିବା ସମୟରେ କାକୀମା' କୈକେୟୀଙ୍କୁ କହିଥିଲେ ଆପଣଙ୍କର ମୋର ସମ୍ପର୍କ ଜନ୍ମ ଜନ୍ମାନ୍ତର ରହିତ। ମା', ମୁଁ ଆସିଛି ଏକ ମହାନ କର୍ମ ସମ୍ପାଦନ ପାଇଁ। ରାକ୍ଷସ ରାବଣର ଉତ୍ପୀଡ଼ନରେ ସମସ୍ତେ ଅତିଷ୍ଠ ହେତୁ ମୋତେ ତାକୁ ବିନାଶ କରିବାକୁ ହେବ। ସେଥିପାଇଁ ମୁଁ ଚଉଦ ବର୍ଷ ବନବାସୀ ହେବି। ଅଯୋଧ୍ୟାର ରାଜା ହେବାକୁ ମୁଁ ଆସିନାହିଁ। ତୁମର ମନେଥିବ– ସମରାସୁର ଯୁଦ୍ଧାନ୍ତେ ତୁମରି ଅପୂର୍ବ ସେବା ପରାୟଣତାରେ ପ୍ରୀତ ହୋଇ ପିତା ତୁମକୁ ଦୁଇଟି ବର ପ୍ରଦାନର ପ୍ରତିଶ୍ରୁତି ଦେଇଥିଲେ। ବର ଯାଚନ୍ତାର ସମୟ ସମାଗତ ହେବ ଠିକ୍ ମୋର ଅଭିଷେକ ହେବାକୁ ଥିବା ପୂର୍ବଦିନ। ପିତାଙ୍କୁ ପ୍ରାର୍ଥନା କରି ବସିବ ସେ ଦୁଇଟି ବର। ପ୍ରଥମଟି ହେଲା – ରାମ ଚଉଦ ବର୍ଷ ବନବାସ ଯିବ। ଆଉ ଦ୍ୱିତୀୟଟି ହେଲା – ସେହି ସମୟ ପାଇଁ ଅଯୋଧ୍ୟାର ରାଜା ହେବ ଭରତ।' ହଁ ପ୍ରାର୍ଥନା କରିବ ମୋ ପାଇଁ, ଜଗତ ପାଇଁ, ପରମ ସତ୍ୟ ପାଇଁ'। ଏଥିପାଇଁ ଜନ ସମାଜରେ ତୁମେ ଅଶେଷ ଅବାଞ୍ଛିତ ଲାଞ୍ଛନାର ଶରବ୍ୟ ହେବ ସତ, କିନ୍ତୁ ସ୍ରଷ୍ଟାଙ୍କର ତୁମେ ହେବ ପରମ ପୂଜାରିଣୀ। ମର୍ଯ୍ୟାଦା ପୁରୁଷୋତ୍ତମ ପରଂବ୍ରହ୍ମ ରାମଚନ୍ଦ୍ରଙ୍କ ସହ କାକୀମା'ଙ୍କ ଯେଉଁ ଗୁପ୍ତ ବୁଝାମଣା ହୋଇଥିଲା ଆଜି ମଧ୍ୟ ଅନେକେ ଜାଣନ୍ତି ନାହିଁ। କୈକେୟୀଙ୍କ ଚରିତ୍ର କଥା ଶୁଣିଲେ କେତେ ଘୃଣ୍ୟ ଓ କଦାଚାର କହି ନାକ ଟେକନ୍ତି।

ଆଉ ଏକ କିମ୍ବଦନ୍ତୀରୁ ଜଣାଯାଏ ଏକଦା ରାଜ ଉଦ୍ୟାନରେ ବୁଲିବା ବେଳେ ରାଜା ଦଶରଥ ରାଣୀ କୈକେୟୀଙ୍କ ସହିତ ସାମାନ୍ୟ କ୍ଳାନ୍ତ ଅନୁଭବ କରି ବିଶ୍ରାମ କରିବା ପାଇଁ ଗଛ ତଳେ ବସି ଯାଇଥାନ୍ତି। ଦଶରଥଙ୍କ ଆଖି ପଡ଼ିଯାଇଛି। ଗଛ ଉପରେ ଶୁଆଶାରୀ ଦୁଇଟି କଥା ହେଉଛନ୍ତି ଅଯୋଧ୍ୟାକୁ ଏବେ ଶନିରାହୁଙ୍କର କୋପ ଦୃଷ୍ଟି ପଡ଼ିଛି। ଫଳରେ ରାଜ୍ୟରେ ବହୁତ କ୍ଷତି ହେବ, ଲୋକ ମୃତାହତ ହେବେ । ରାଜ୍ୟରେ ଅଶାନ୍ତି ଲାଗି ରହିବା ସଂଗେ ବିଶୃଙ୍ଖଳା ଦେଖା ଦେବ। ଏ ସମସ୍ତ ପକ୍ଷୀମାନଙ୍କ ଭାଷାରୁ କୈକେୟୀ ବୁଝି ପାରିଲେ। କାରଣ ସେ ପିଲାବେଳେ ମହର୍ଷି ଦୁର୍ବାସାଙ୍କ ସେବା କରିଥିଲେ ବୋଲି ଋଷି ପ୍ରୀତ ହୋଇ ପଶୁପକ୍ଷୀମାନଙ୍କ କଥା ସେ ଶୁଣି ପାରିବେ କିନ୍ତୁ କାହାକୁ କହିଲେ ମୂର୍ଦ୍ଧନାପାତ ହେବ ବୋଲି ବର ପାଇଥିଲେ । ତେବେ ରାମଚନ୍ଦ୍ରଙ୍କ ଅଭିଷେକ ଉତ୍ସବ ଆସନ୍ନ ସମୟେ ଏ କଥାକୁ ମନରେ ରଖି ମୋ' ପୁଅ ଭରତ ବରଂ ରାଜା ହେଉ, ରାମର କୌଣସି କ୍ଷତି ନହେଉ। କାରଣ ରାମଚନ୍ଦ୍ରଙ୍କୁ କୈକେୟୀ ଅତି ଶ୍ରଦ୍ଧା କରୁଥିଲେ ଓ ତାଙ୍କୁ ଖୋଇବା ଦାୟିତ୍ୱ କୈକେୟୀଙ୍କ ଉପରେ ନ୍ୟସ୍ତ ଥିଲା। କାରଣ ପ୍ରଭୁ ଶ୍ରୀରାମ ବାଲ୍ୟ କାଳରେ ଖାଇବା ବେଳେ ଭାରି ଅଝଟ କରୁଥିଲେ। ସେଥିପାଇଁ ରାମଚରିତ ମାନସରେ ତୁଳସୀ ଦାସ କହନ୍ତି –

'ଭୋଜନ କରତ ଚପଲ ଚିତ୍ତ
ଇତ ଉତ ଅବସରୁ ପାଇ
ଭାଗି ଚଲତ କିଲକତ ମୁଖ
ଦଧି ଓଦନ ଲପଟାଇ।'

ରାଜ୍ୟର ପାପ ରାଜା ମୁଣ୍ଡରେ। ନିଜ ପୁଅକୁ ବଳି ଦେବାକୁ ପଠାଇ ଦେଇ ଯେ ରାମଚନ୍ଦ୍ରଙ୍କ ମଙ୍ଗଳ କାମନା କରେ ସେ କେବେ ଖରାପ ପ୍ରକୃତିର ହୋଇ ନପାରନ୍ତି। ତାଙ୍କ ଭଳି ଆଦର୍ଶ ମହିୟସୀ, ଚରିତ୍ରବତ୍ତା ଜନନୀ ବାସ୍ତବରେ ବିରଳ ଓ ଯୁଗସ୍ରଷ୍ଟା। ତେଣୁ ରାମଚନ୍ଦ୍ର କହିଥିଲେ – ଏହିପରି ଦୁଃସାହସିକ କର୍ମ ସମ୍ପାଦନ ପାଇଁ ତୁମ ଭଳି ବ୍ୟକ୍ତି ଅତ୍ୟନ୍ତ ଦୁର୍ଲଭ। ଅବତାରମାନ ସେହି ଦୁର୍ଲଭ ଜୀବନମାନଙ୍କୁ ସଙ୍ଗରେ ଧରି ଅବତୀର୍ଣ୍ଣ ହୁଅନ୍ତି। ମୁଁ ତୁମର ସନ୍ତାନ ହୋଇ ତୁମ ପ୍ରେମର ଅବଦାନ ଗ୍ରହଣ କରୁଥିବି କାଳେ କାଳେ। ହଁ, ଆଗାମୀ ଦ୍ୱାପର ଯୁଗରେ ମୁଁ ପୁଣି ଆସିବି ଅନ୍ୟ ଏକ ମହାନ କର୍ମ ସମ୍ପାଦନ ପାଇଁ। ସେତେବେଳେ ତୁମେ ପୁଣି ଆସିବ ମା' ଯଶୋମତୀ ହୋଇ। ଆଉ ମୁଁ ହେବି ବାଳଗୋପାଳ ଲବଣୀ ଚୋର ଶ୍ରୀକୃଷ୍ଣ। ଗର୍ଭରେ ନଧରିଲେ ମଧ୍ୟ ଜନ୍ମରୁ ମୋର ଲାଳନ ପାଳନ ଭାର ବହନ କରିବ ତୁମେ, ତୁମରି ହାତରେ ଖୁଆଇ ଦେବ ସରଲବଣୀ, ଆଉ ମୁଁ ମୃଦୁ ମୃଦୁ ହସି ଅଝଟିଆ ହେଲାବେଳେ ମୋତେ ଛାଟ

ଧରି ଶାସନ କରୁଥିବ । ଦ୍ୱାପର ପରେ ପଦ୍ମକ୍ଷେତ୍ରରେ ମୁଁ ପୂଜିତ ହେବି ଦାରୁବ୍ରହ୍ମ ଜଗନ୍ନାଥ ରୂପରେ । ଆଉ ତୁମେ ମୋର ମାଉସୀ ମା' ହୋଇ ବଳଗଣ୍ଡିଠାରେ ଅବସ୍ଥାନ କରିବ । ରଥଯାତ୍ରା କାଳରେ ମୁଁ ତୁମରି ଦ୍ୱାରସ୍ଥ ହୋଇ ତୁମରି ହାତରୁ ମୋର ସେହି ପ୍ରିୟ ପୋଡ଼ପିଠା ଖାଉଥିବି ବର୍ଷକୁ ବର୍ଷ...

ମା'ଙ୍କ ମହିମା ଅପାର । ପ୍ରଳୟ ଜଳରେ ସମସ୍ତ ସ୍ଥାନ ଜଳମଗ୍ନ ହେଲେ ବି ଶ୍ରୀକ୍ଷେତ୍ର ଏଥିରୁ ବାଦ୍ ପଡ଼ିଥାଏ । କାରଣ ସେହି ପ୍ରଳୟ ଜଳର ଅର୍ଦ୍ଧଭାଗ ଦେବୀ ଶୋଷଣ କରି ନିଅନ୍ତି । ତାଙ୍କୁ ଦର୍ଶନ ଓ ପ୍ରଣାମ କଲେ ଶାଶ୍ୱତ ଭୋଗ ପ୍ରାପ୍ତ ହୋଇଥାଏ । ତେଣୁ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି –

କପାଳ ମୋଚନଠାରୁ ନାଭି ଦେଶଯାଏ
ବିରାଜିତା ଅର୍ଦ୍ଧାଶନୀ ଶକ୍ତି ଶୋଭାପାଏ
ମହାପ୍ରଳୟ ବର୍ଦ୍ଧିତ ଜଳ ହୁଏ ଯେତେ
ଅଧେ ତହୁଁ ସୃଷ୍ଟି ଆଦ୍ୟେ ଅଶନ କରନ୍ତେ

ଅର୍ଦ୍ଧାଶନୀ ଶକ୍ତି ନାମ ହୋଇଛି ତାହାର
ଦର୍ଶନ ପ୍ରଣାମ କଲେ ଭବୁଁ ହେବ ପାର ।।'

ରସ ବିନୋଦରେ ମଧ୍ୟ ପ୍ରଳୟ ଜଳ ଓ ସେସମୟରେ ଅର୍ଦ୍ଧଶୋଷଣୀଙ୍କ କାମ ବିଷୟରେ ସୂଚନା ଦିଆଯାଇଛି –

'କାରୁଣ୍ୟ ଜଳଧି ନିମନ୍ତେ ସେ ହାଦେ ବସିଥାଇ ଏଥେ
ଅର୍ଦ୍ଧଶୋଷଣୀ ନାମ ତାର ଖର୍ପର ଘେନିଥାଇ କରେ
କାରୁଣ୍ୟ ଜଳଧିର ପାଣି ପାତାଳୁ ଉଠଇ ଉଜାଣି
ଜଳ ଖପରେ ହେଲେ ଆସି ସେ ତହୁଁ ଭାଗେ ନେବେ ଶୋଷି
ଅର୍ଦ୍ଧ ଖପରେ ଆଉ ଥିବ ତହୁଁରେ ବ୍ରହ୍ମା ପ୍ରଳେଯିବ ।'

ଧନ୍ୟ ଜଗନ୍ନାଥ, ଧନ୍ୟ ତୁମର ଓ ମାଉସୀଙ୍କ ଲୀଳା...

ଏମ୍.ଆଇ.ଜି. ୱାନ୍– ୪୨/୧,
ଚନ୍ଦ୍ରଶେଖରପୁର, ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର–୧୬

# ଯାତ୍ରା କଥା

**ରକ୍ଷକ ନାୟକ**

ଅନେକ ଅନେକ ପଥ ଅତିକ୍ରମି
ମୁଁ ପହଞ୍ଚିଛି । ଏଇଠି ।
ଯେଉଁଠି ମୋ ଅତୀତର ଅତୀତ
ଓ ଭବିଷ୍ୟତର ଭବିଷ୍ୟତକୁ ଭେଟିଛି ।

କେତେ କେତେ ଆଖି
ଆକାଶ ହୋଇଯାଇଛି ।
ଦୃଶ୍ୟ ହୋଇଛି ଦର୍ଶନ
ଭ୍ରାନ୍ତ ଭ୍ରମଣ ।
ଅସରନ୍ତି ଅବସୋସର ଅଠାକାଠିରେ
ଅତ୍ୟାଶା ହୋଇଛି ଅତ୍ର ତତ୍ର ଅନ୍ୱେଷଣ ।

ଯେତେବେଳେ କିଛି ବୋଲି କିଛି ନଥିଲା
କିଛି ହେଇପାରେ ବୋଲି ବି ଜଣାନଥିଲା



ସେତେବେଳେ କିନ୍ତୁ ସେ ଥିଲା,
ସମୟର ସୃଷ୍ଟି ପୂର୍ବରୁ
ଅଥଚ ଖୋଜି ଖୋଜି ମୋର
ସବୁ ସମୟ ସରିଗଲା ।
ଆଖି ପତା ଉପରେ ଲଦି ହୋଇଗଲା
ଯାତ୍ରା ପଥର ଧୂଳି
ଅନ୍ଧାରରେ ଅଦୃଶ୍ୟ ଅନନ୍ୱିତ ଅବୟବ
ସବୁ ଆଲୁଅ ଅପସରି ଗଲାପରେ
ମୁଁ ଆଲୁଅ ହେଇଗଲି,
ଅଂତର୍ବାତ୍ୟା ମୋର, ଆଖି ଖୋଲି ଦେଲା
ମୁଁ ଏଇଠି ପହଞ୍ଚି ଗଲି ।

ପାଇକସାହି, ସୋରଡା
ନୟାହାଟ, ପୁରୀ–୭୫୨୧୦୭

# ରଥଯାତ୍ରା, ଶୂନ୍ୟପୁରୁଷ ଶ୍ରୀଜଗନ୍ନାଥ ଓ ଅଚ୍ୟୁତାନନ୍ଦ

ନିଗମାନନ୍ଦ ଗୋସ୍ୱାମୀ

ଅଚ୍ୟୁତାନନ୍ଦ, ପୁରୀ ଓ ରଥଯାତ୍ରା ଏକତ୍ର ଜଡିତ । ସନ ୧୬୦୯-୧୦ ଖ୍ରୀଷ୍ଟାବ୍ଦରେ ୧୦୮ ବର୍ଷ ବୟସରେ ଶୂନ୍ୟ ସାଧକ ଶ୍ରୀ ଅଚ୍ୟୁତାନନ୍ଦ ନେମାଳ ବଟ ମୂଳରେ ଶୂନ୍ୟ ସମାଧିସ୍ଥ ହୋଇଥିଲେ । ସେ ଇଚ୍ଛାମୃତ୍ୟୁ ବରଣ କରି ସଶରୀରେ ଶୂନ୍ୟ ହୋଇଯାଇଥିଲେ । ଏକ ମହାଶୂନ୍ୟରୁ ବ୍ରହ୍ମାଣ୍ଡର ସୃଷ୍ଟି- ଏହା ସମ୍ପୂର୍ଣ୍ଣଭାବେ ଅଚ୍ୟୁତାନନ୍ଦ ବିଶ୍ୱାସ କରନ୍ତି । ଅଚ୍ୟୁତାନନ୍ଦ ଶୂନ୍ୟତାକୁ କଳ୍ପନା କରିଛନ୍ତି ଶୂନ୍ୟ ପୁରୁଷ ଭାବେ । ଯଥା ନିରାକାର ପରଂବ୍ରହ୍ମ ଏବଂ ସଚ୍ଚିଦାନନ୍ଦ । ଅଚ୍ୟୁତଙ୍କ ଭଜନ ହେଉଛି ଶୂନ୍ୟ ଭଜନ । ଶୂନ୍ୟ ଭଜନ ଅଗ୍ନିହୁଳା ପରି, ଯାହାଦ୍ୱାରା କି କୋଟି ପାପ ଭସ୍ମୀଭୂତ ହୋଇଥାଏ । ଶୂନ୍ୟ ଭଜନରେ ଅପାର ସୁଖଲାଭ ହୁଏ ଏବଂ ଶୂନ୍ୟପୁରୁଷ ପ୍ରାପ୍ତ ହୁଏ ।



ଶୂନ୍ୟ ମନ୍ତ୍ର ହେଉଛି 'ଓଁ ଧ୍ଲୀ ବୀଜ ଶୂନ୍ୟବ୍ରହ୍ମଙ୍କ ନମଃ ।' ଏହି ମନ୍ତ୍ରକୁ ପ୍ରତ୍ୟେକ ଦିନ ପ୍ରଭାତରୁ ଉଠି ସ୍ମରଣ କଲେ, ଭଜନ କଲେ ପ୍ରାଣୀ ଜନ୍ମଜନ୍ମାନ୍ତରରେ ସୁଖଲାଭ କରିଥାଏ । ଭକ୍ତି ସହିତ ଏହି ମନ୍ତ୍ର ଭଜନ କଲେ ନିରାକାର ପରଂବ୍ରହ୍ମ ବିପଦ ଆପଦରୁ ରକ୍ଷା କରିବେ । ଦିନଟି ସର୍ବ ସୁଖମୟ ହେବ । ଶୂନ୍ୟଯନ୍ତ୍ରକୁ ଧାରଣ କଲେ ଦେହରୁ ଅସାଧ ରୋଗ ଉପଶମ ହୋଇଥାଏ । ଅଚ୍ୟୁତଙ୍କ ଶୂନ୍ୟଗାଦିର ବଟପତ୍ର ଏବଂ ଶୂନ୍ୟଯନ୍ତ୍ର ମିଶାଇ ଝାଡିଲେ ତନ୍ତ୍ର, ଗୁଣି, ଗାରେଡି ଆଦି ଭୟ ରହେ ନାହିଁ । ଏହି ମନ୍ତ୍ର ଉଚ୍ଚାରଣ ମାତ୍ରକେ ସ୍ୱୟଂ ଗଣନାଥ ଶୂନ୍ୟରେ ଆବିର୍ଭୂତ ହୋଇ ଛାତ୍ରମାନଙ୍କୁ ବିଦ୍ୟା ବୁଦ୍ଧି ପ୍ରଦାନ କରନ୍ତି । ଦାରିଦ୍ର୍ୟଜନିତ କଷ୍ଟ ଦୂର ହୋଇ ଗୃହରେ ଶାନ୍ତି ଆବିର୍ଭାବ ହୁଏ ।

ବୌଦ୍ଧ ଓ ନାଥ ଧର୍ମର ଶୂନ୍ୟବାଦ ପରେ ପଞ୍ଚସଖା ଶୂନ୍ୟବାଦରେ ଅନ୍ତର୍ଲୀନ ହୋଇଛନ୍ତି । ସୃଷ୍ଟି ଓ ସୃଷ୍ଟିକର୍ତ୍ତାର ଆଦି ଉତ୍ସ ହେଉଛି ଶୂନ୍ୟ । ହିନ୍ଦୁ ଦର୍ଶନ ପରମ କାରଣକୁ ଖୋଜିବାକୁ ଯାଇ ଶୂନ୍ୟଠାରେ ପହଞ୍ଚେ । ଅଚ୍ୟୁତାନନ୍ଦ ଜଗନ୍ନାଥଙ୍କୁ ଶୂନ୍ୟପୁରୁଷ, ନିରାକାର, ଜ୍ୟୋତିବ୍ରହ୍ମ, ପରଂବ୍ରହ୍ମ, ଅଲେଖ, ଅନାମ, ଅଣାକାର ରୂପେ ଗ୍ରହଣ କରିଛନ୍ତି । ନିରାକାର ଜଗନ୍ନାଥ ସକଳ ସୃଷ୍ଟିର ମୂଳଉତ୍ସ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଶ୍ୱେତ-ପୀତ-ଲୋହିତ-କୁଙ୍କୁମ ଜ୍ୟୋତିର ଏକ ମହାମିଳନ । ଅଚ୍ୟୁତାନନ୍ଦଙ୍କ ମତରେ ସେମାନେ ଏକ ଓ ଅଭିନ୍ନ । ତେଣୁ ଅଚ୍ୟୁତାନନ୍ଦ ନୀଳାଚଳକୁ ନିତ୍ୟ ଗୋଲଖ ଧାମ ଓ ଜଗନ୍ନାଥଙ୍କୁ ନିତ୍ୟରାଧା ଓ ନିତ୍ୟକୃଷ୍ଣଙ୍କର ମିଳିତ ତନୁ ବୋଲି ପ୍ରତିପାଦନ କରିଛନ୍ତି । ଶୂନ୍ୟଭଜନ ଦ୍ୱାରା ନିରାକାର ବ୍ରହ୍ମପ୍ରାପ୍ତି ହୁଏ । ଏହା ଅଚ୍ୟୁତାନନ୍ଦ ପ୍ରଚାର କରିଥିଲେ ।

ସେ ପୁରୀରେ ଅବସ୍ଥାନ କାଳରେ ବ୍ରାହ୍ମଣମାନେ ତାଙ୍କ ପ୍ରତି ଈର୍ଷାପରାୟଣ ହୋଇ ଠାକୁରରାଜା ପ୍ରତାପରୁଦ୍ର ଦେବଙ୍କୁ ତାଙ୍କ ବିରୁଦ୍ଧରେ କହିଲେ । ପ୍ରତାପରୁଦ୍ର ଏକଥା ଶୁଣି ଅତ୍ୟନ୍ତ କ୍ରୋଧରେ ଶ୍ରୀମନ୍ଦିର ପ୍ରବେଶ ନିମିତ୍ତ ଆକଟ କଲେ । ଜଣେ ବ୍ରାହ୍ମଣ, ଅଚ୍ୟୁତଙ୍କୁ କହିଲେ ରାଜାଙ୍କ ଆଦେଶ ତୁ ଆଉ ମନ୍ଦିରକୁ ଯାଇପାରିବୁ ନାହିଁ । ଅଚ୍ୟୁତାନନ୍ଦ ଉତ୍ତର ଦେଇଥିଲେ ମୁଁ ଶୂନ୍ୟପୁରରେ ରହି ଶୂନ୍ୟଭଜନ ଦ୍ୱାରା ଶୂନ୍ୟପୁରୁଷ ଜଗନ୍ନାଥଙ୍କୁ ଦର୍ଶନ କରିବି ଏବଂ ମୋର ଶ୍ରୀମନ୍ଦିର ଯିବା ଦରକାର ନାହିଁ । ପୁରୀର ବ୍ରାହ୍ମଣମାନେ ଶାସ୍ତ୍ରନିପୁଣ ଥିବାରୁ ଅଚ୍ୟୁତାନନ୍ଦଙ୍କୁ ଶୂନ୍ୟଭଜନ କ'ଣ ଏବଂ ଜଗନ୍ନାଥଙ୍କୁ କାହିଁକି

ଶୂନ୍ୟପୁରୁଷ କହୁଛ, ଏହା କହି ରାଜାଙ୍କ ପାଖକୁ ନେଇଗଲେ । ପରେ ରାଜା, ଅଚ୍ୟୁତଙ୍କୁ ଶୂନ୍ୟରେ ବସିଥିବାର ଦେଖି ଚକିତ ହୋଇଯାଇଥିଲେ । ରଥଯାତ୍ରା ଦିନ ଅଚ୍ୟୁତ ଶୂନ୍ୟ ନିତ୍ୟ ରାସ, ଶୂନ୍ୟବାଙ୍ଗି, ଗନ୍ଧର୍ବ ମଠଠାରେ ଦ୍ୱାଦଶ ଓ ଗୋପାଳଙ୍କ ସହିତ ପ୍ରଥମେ କୀର୍ତ୍ତନ ଆରମ୍ଭ କରିଥିଲେ । ଏହି ନିତ୍ୟ ରାସ କୀର୍ତ୍ତନ ଶ୍ରବଣ କଲେ ଏବଂ ଏହାର ଶବ୍ଦ ଧ୍ୱନି ଯେଉଁ ସ୍ଥାନ ପର୍ଯ୍ୟନ୍ତ ଶୁଭିବ, ସେ ସ୍ଥାନକୁ ବିପଦ ଆସିବ ନାହିଁ । ଏହି ଶୂନ୍ୟ ନିତ୍ୟରାସ କାର୍ତ୍ତିକ ମାସରେ ଗନ୍ଧର୍ବ ମଠ ପୁରୀଠାରେ ପ୍ରତ୍ୟେକ ଜନ୍ମ ମାସ ବୋଲି ଧରାଯାଏ । ମାଘ ପୂର୍ଣ୍ଣିମା ଦିନ ଏହି ଶୂନ୍ୟବାଙ୍ଗି ଆଶ୍ରମରେ ଅଚ୍ୟୁତଙ୍କ ଜନ୍ମ ଦିବସ ପାଳନ କରାଯାଏ । ଜନ୍ମ ଦିବସରେ ଅଚ୍ୟୁତାନନ୍ଦଙ୍କ ଷଡାକ୍ଷର ମନ୍ତ୍ର ଯଥା 'ହରେ ରାମ କୃଷ୍ଣ' ମନ୍ତ୍ରରେ ଅଷ୍ଟପ୍ରହର ବ୍ୟାପି ନାମ ଯଜ୍ଞ ଅନୁଷ୍ଠିତ ହୁଏ ।

ରାମତତ୍ତ୍ୱ ସାରତତ୍ତ୍ୱ । ରାମନାମ ଅଗତିକୁ ଗତି କରେ । ସେ ହେଉଛି ଆତ୍ମାରାମ ପରମାତ୍ମା । ସେ ତତ୍ତ୍ୱ ନିରଞ୍ଜନ, ଅନାଦି ଆଦିରାମ । ରାମ ନାମ ସ୍ମରଣ କଲେ ମନର ଦୁର୍ଭାବନା, ବ୍ୟଥା ଦୁଃଖ ଦୂର ହୋଇଥାଏ । ରାମ ନାମ ସ୍ମରଣ କଲେ ନିତିଦିନ ଲକ୍ଷ୍ମୀ ବରଦାୟକ ହୁଅନ୍ତି । 'ରାମ ନାମ ସ୍ମରଣ କଲେ ଭୌତିକ କାଳ ପଶି ପାରେ ନାହିଁ । କୃଷ୍ଣ ନାମ ଭଜନ କଲେ ଜୀବ ନିର୍ବାଣ ପ୍ରାପ୍ତ ହୋଇଥାଏ ।' ତେଣୁ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଭାଷାରେ–

'କୃଷ୍ଣ ପ୍ରାପ୍ତି ହେଲେ ଲୀଳା ସରିଲା
ତେଣୁ ରାମ ନାମ ଆଗ ରହିଲା ।'

ଅଚ୍ୟୁତାନନ୍ଦ ସିଦ୍ଧ ସାଧକ । ସେ ରାମ ନାମ ଉପରେ ବହୁ ପ୍ରାଧାନ୍ୟ ଆରୋପ କରିଛନ୍ତି । ମନ୍ତ୍ରର ସର୍ବ ପ୍ରଥମେ ରାମ ନାମ ଉଚ୍ଚାରଣ କରିବାକୁ ସେ ଉପଦେଶ ଦେଇଛନ୍ତି । 'ରା' ହେଉଛି ନିରାକାର ପୁରୁଷ ଓ 'ମ' ସ୍ୱୟଂ ଭଗବାନ ବୋଲି ଉଲ୍ଲେଖ କରିଛନ୍ତି । 'ରା' ଅକ୍ଷର ଶ୍ରୀରାଧା ଓ 'ମ' ଶ୍ରୀକୃଷ୍ଣ । ଆଜିର ସନ୍ତୁଳିତ ମନୁଷ୍ୟ ନାମକୁ ଆଶ୍ରା କଲେ 'ହରି' ସାନ୍ନିଧ ଲାଭ କରିପାରେ । ଅଚ୍ୟୁତାନନ୍ଦ କଳ୍ପବଟ କିମ୍ବା ବଟବୃକ୍ଷ ମୂଳେ ରାମ ନାମ ଜପ କଲେ ସ୍ୱୟଂ ପ୍ରଭୁ ଆବିର୍ଭାବ ହୋଇ ଦୁଃଖ ଲାଘବ କରନ୍ତି ଏବଂ ମନସ୍କାମନା ପୂର୍ଣ୍ଣ କରନ୍ତି । ମନୁଷ୍ୟ ଜୀବନର ଦୁଃଖ ବିନାଶ ହୋଇ ସୁଖ ସଞ୍ଚାର ହୁଏ । ତେଣୁ ଅଚ୍ୟୁତାନନ୍ଦ ଲେଖିଛନ୍ତି–

'ଦେବନାସନ ବଟ ଏହି,
ଦୁଃଖନାଶନ କରିବଇ ।'

ପୁରୀ ଗର୍ନ୍ଧବ ମଠର ବଟପତ୍ରକୁ ଯିଏ ଧାରଣ କରିବ ଦୁଃଖ, ଦୁର୍ଦ୍ଦଶା, ଅଭାବ, ଅନଟନ, ବିପଦ ଆଦି କୌଣସି ଅମଙ୍ଗଳ ତାକୁ ସ୍ପର୍ଶ କରିବ ନାହିଁ । ଦୁର୍ଘଟଣା ଆପେ ଆପେ ଅପସରି ଯିବ । ସୁଖ ସମ୍ପଦରେ ଘର ଭରପୂର ହୋଇ ଉଠିବ । ଏହା ବହୁ ପରୀକ୍ଷିତ । ମହାପୁରୁଷ ଲେଖିଛନ୍ତି–

'ଏ ବଟପତ୍ର ମୋ ଶରୀର
ଯେହୁ ଘେନିବ ଶୁର ନର
ଦୁର୍ଦ୍ଦଶା ଘୁଞ୍ଚି ଘୁଞ୍ଚି ଯିବ
ସମ୍ପଦ ସମର୍ପଣ ହେବ ।'

ଅଚ୍ୟୁତାନନ୍ଦଙ୍କ ଶୂନ୍ୟବାଙ୍ଗି ଆଶ୍ରମ ଗନ୍ଧର୍ବ ମଠ ପୁରୀଠାରେ ପଶ୍ଚିମ ଦିଗରେ ଯେଉଁ ବଟବୃକ୍ଷ ବିଦ୍ୟମାନ, ସେହି ବଟବକଳ ଏବଂ ପତ୍ରକୁ ୨୧ ଦିନ ପାଖରେ ରଖିଲେ ମହାବ୍ୟାଧି ଆରୋଗ୍ୟ ଲାଭ କରିବ । ସେହି ବଟବୃକ୍ଷରେ ମହାଯନ୍ତ୍ର, ମହାତନ୍ତ୍ର, ମହାମନ୍ତ୍ର ବିଦ୍ୟମାନ । ଶୂନ୍ୟରେ ସାଧୁମାନେ ସେଠାରେ ତନ୍ତ୍ରରେ ଆହୂତି କରୁଛନ୍ତି ଏବଂ ତାହା ଅଦୃଶ୍ୟ । ଅଚ୍ୟୁତାନନ୍ଦଙ୍କ ଭାଷାରେ–

ବଟ ବୃକ୍ଷରେ
ମନ୍ତ୍ର ଯନ୍ତ୍ର ତନ୍ତ୍ର ଅଛି
ସାଧୁଏ ତନ୍ତ୍ରେ ଆହୂତି କରନ୍ତି
ସଜନୀ ଗୋ, ବ୍ୟାଧି ନପଶଇ ସେଠି
ସଜନୀ ଗୋ...

ସେହି ବଟବୃକ୍ଷ ମୂଳରେ ସାଧୁମାନେ ବ୍ୟାଧି ନିରୋଧ ତନ୍ତ୍ରରେ ପ୍ରତ୍ୟେକ ଦିନ ଶୂନ୍ୟରେ ଆହୂତି କରନ୍ତି । ବିଶେଷତଃ ରଥଯାତ୍ରା ସମୟରେ ଏହି ମଠର ସ୍ୱତନ୍ତ୍ରତା ଉପଲବ୍ଧ ହୁଏ ।

ମହାପୁରୁଷ କଳିଯୁଗରେ ମହାମନ୍ତ୍ରର ପ୍ରାଧାନ୍ୟ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥ ହିଁ 'ଓଁକାର' ବ୍ରହ୍ମ ଗାୟତ୍ରୀ ଓ ମହାମନ୍ତ୍ର ସ୍ୱରୂପ ବୋଲି ଦର୍ଶାଇଛନ୍ତି । ତାଙ୍କର ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ଥିଲା ମାନବର ସର୍ବାଙ୍ଗୀନ ଉନ୍ନତି । ତାଙ୍କର ଭାବଧାରାରେ ଅନୁପ୍ରାଣିତ ହେଲେ ମହାପୁରୁଷ ଶ୍ରୀ ଅଚ୍ୟୁତାନନ୍ଦ ନିଶ୍ଚିତ ଭାବରେ ସର୍ବାଙ୍ଗୀନ ଉନ୍ନତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ସାଂସାରିକ ସୁଖ ପ୍ରଦାନ କରି ମୁକ୍ତିପଥର ଯାତ୍ରୀ କରିପାରିବେ ଏଥିରେ ସନ୍ଦେହ ନାହିଁ । ପବିତ୍ର ରଥଯାତ୍ରାରେ ଶୂନ୍ୟପୁରୁଷ ଶ୍ରୀଜଗନ୍ନାଥ ଓ ଅଚ୍ୟୁତାନନ୍ଦଙ୍କୁ ସ୍ମରଣ କରିବା ଆମର ଧ୍ୟେୟ ହେଉ ।

ଗନ୍ଧର୍ବ ମଠ,
ପୁରୀ

# ଶ୍ରୀଜଗନ୍ନାଥଙ୍କ ସ୍ନାନବେଦି, ସ୍ନାନ ଓ ମହାସ୍ନାନ

ପୀତାମ୍ବର ପ୍ରଧାନୀ

ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର କେତେଗୁଡ଼ିଏ ନୀତିରେ ଷୋଡ଼ଶ ଉପଚାରରେ ପୂଜା ହେଉଥିବାବେଳେ ଅନ୍ୟ କେତେଗୁଡ଼ିଏ ନୀତିରେ ପଞ୍ଚ ଉପଚାରରେ ପୂଜା ହୁଏ । ଗୋପାଳବଲ୍ଲଭ ଭୋଗ, ଭୋଗମଣ୍ଡପ ଭୋଗ ବା ଭଅଣ୍ଡ ଭୋଗ, ବଡ଼ସିଂହାର ଧୂପ ଏହି ୩ଟି ନୀତିରେ ପଞ୍ଚ ଉପଚାରରେ ପୂଜା ହୁଏ । ଅନ୍ୟ ନୀତି ଅର୍ଥାତ୍ ସକାଳ ଧୂପ, ମଧ୍ୟାହ୍ନ ଧୂପ ଏବଂ ସନ୍ଧ୍ୟା ଧୂପରେ ଷୋଡ଼ଶ ଉପଚାରରେ ପୂଜା ହୁଏ । ଏଠାରେ ଅନୁସୃତ ହେଉଥିବା ଷୋଡ଼ଶ ଉପଚାର ହେଲା – ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ମଧୁପର୍କ, ଆଚମନୀୟ, ସ୍ନାନ, ବସ୍ତ୍ର, ଆଚରଣ,ଗନ୍ଧ, ପୁଷ୍ପ, ଦୀପ, ଧୂପ, ନୈବେଦ୍ୟ ଓ ବନ୍ଦନା । ପଞ୍ଚ ଉପଚାର ପୂଜାରେ କେବଳ ଗନ୍ଧ, ପୁଷ୍ପ, ଦୀପ, ଧୂପ, ନୈବେଦ୍ୟ ଏହି ପାଞ୍ଚଟି ଉପଚାର ବିଧି ଅନୁସୃତ ହୁଏ । ତେଣୁ ସ୍ନାନ ହେଉଛି ଷୋଡ଼ଶ ଉପଚାର ଭିତରୁ ଗୋଟିଏ ଉପଚାର ।



ସକାଳେ ମଙ୍ଗଳ ଆରତି ପରେ ଅବକାଶ ନୀତି ପାଳିତ ହୁଏ । ଏ ନୀତିରେ ଠାକୁରମାନଙ୍କୁ ଦାନ୍ତ ଘଷାଇ ଦିଆଯାଏ ଏବଂ ସ୍ନାନ କରାଯାଏ । ଅବକାଶ ସମୟରେ ଯଦିଓ ଠାକୁରମାନେ ସ୍ନାନ କରିଥାନ୍ତି ପୁଣି ଷୋଡ଼ଶ ଉପଚାର ପୂଜା ବେଳେ ଏହି ସ୍ନାନ ଉପଚାର ପୁଣି ଥରେ ପ୍ରତୀକ ଭାବରେ ମନ୍ତ୍ରପାଠ କରି ପାଳନ କରାଯାଏ ।

ସ୍ନାନ ପାଇଁ ତିନିଗରା ଜଳ ଆଣି ତିନି ଠାକୁରଙ୍କ ସାମ୍ନାରେ ରଖାଯାଏ । ତିନୋଟି ପିଢ଼ା ଉପରେ ତିନୋଟି ଧାତୁ ନିର୍ମିତ ଦର୍ପଣ ରଖାଯାଏ । ଏହି ଦର୍ପଣଗୁଡ଼ିକ ଏମିତି ଭାବରେ ଥୁଆଯାଏ, ଯେମିତିକି ଯେଉଁ ଠାକୁରଙ୍କର ସାମ୍ନାରେ ଦର୍ପଣ ଥିବ, ସେହି ଠାକୁରଙ୍କର ପ୍ରତିଛବି ଏ ଦର୍ପଣ ଉପରେ ପଡ଼ିବ । ବିମଳାଙ୍କ ମନ୍ଦିର ସାମ୍ନାରେ ଯେଉଁ କୂଅ ଅଛି, ସେହି କୂଅରୁ ପାଣି ଆଣି ବିଧି ଓ ଅନ୍ୟାନ୍ୟ କାମରେ ବ୍ୟବହୃତ ହୁଏ । ସ୍ନାନ ଯାତ୍ରାଦିନ ୧୦୮ ଗରା ଜଳରେ ଠାକୁରମାନେ ସ୍ନାନ କରନ୍ତି, ତାହା ଶୀତଳାଙ୍କ ଆଗରେ ଥିବା ସୁନା କୂଅରୁ ଆନୀତ ହୋଇଥାଏ । ବିମଳାଙ୍କ କୂପର ଜଳରେ ଠାକୁରମାନେ ସ୍ନାନବେଦୀରେ ସ୍ନାନ କରନ୍ତି ନାହିଁ ।

ସ୍ନାନ ପାଇଁ ୩ଟି ରୂପା ଝରିରେ ପାଣି ରଖାଯାଏ । ଏଥିରେ ଦହି, କର୍ପୂର, ଚନ୍ଦନ ଗୋଳା ହୋଇଥାଏ । ପୂଜକ ମନ୍ତ୍ରପାଠ କରି ଏହି ଦର୍ପଣରେ ପ୍ରତିଫଳିତ ଠାକୁରଙ୍କ ଉପରେ ସ୍ନାନଜଳ ସିଞ୍ଚି ଦିଅନ୍ତି । କେତେକ ଭାବନ୍ତି ଯେ ସ୍ନାନ ବେଳକୁ ବିଗ୍ରହମାନଙ୍କ ଉପରେ ସିଞ୍ଚାଯାଏ । ମାତ୍ର ଏହା ଠିକ୍ ନୁହେଁ ।

ମହାସ୍ନାନର ଆକ୍ଷରିକ ଅର୍ଥ ଯଦିଓ ବଡ଼ସ୍ନାନ, ଏହା ବଡ଼ଦେଉଳରେ ଏକ ବିଶେଷ ନୀତି, ଯାହାକି ବିଭିନ୍ନ କାରଣରୁ ପାଳିତ ହୁଏ । ଏଥିପାଇଁ ସ୍ନାନ ସବୁଦିନ ଏକାପ୍ରକାରର ହୁଏ ନାହିଁ । ସ୍ନାନ ଯେପରି ପ୍ରତିଦିନ ଅବକାଶ ଓ ଷୋଡ଼ଶ ଉପଚାର ପୂଚାର ଏକ ଅଙ୍ଗ, ସେପରି କୌଣସି ପୂଜା ବା ନୀତିରେ ମହାସ୍ନାନ ଦୈନିକ ନୀତି ଭାବରେ ପାଳିତ ହୁଏ ନାହିଁ । ଯଦି କୌଣସି ଅସମୟରେ ଅନୀତି ହୁଏ, ତେବେ ଯାଇ ମହାସ୍ନାନ ବିଧି ପାଳିତ ହୁଏ ।

ଓଡ଼ିଶା ସରକାରଙ୍କ ତରଫରୁ ନିଯୁକ୍ତ ହୋଇଥିବା ସ୍ପେଶାଲ ଅଫିସର ୧୯୬୫ ମସିହାରେ ଏକ ରିପୋର୍ଟ

ଦେଇଥିଲେ । ଏହି ରିପୋର୍ଟରେ ଅଶୌଚ ବା ଦୁର୍ଘଟଣାଜନିତ ନୀତିର ବ୍ୟତିକ୍ରମ ଓ ପ୍ରକ୍ଷାଳାଦି ବ୍ୟବସ୍ଥା ଶିରୋନାମାରେ ନିମ୍ନଲିଖିତ କାରଣଗୁଡ଼ିକ ଦର୍ଶାଯାଇ ଥିଲା । ଏହା ଅନୁଧ୍ୟାନ କଲେ କେଉଁ ନୀତିର ବ୍ୟତିକ୍ରମ କଲେ ମହାସ୍ନାନ ହୁଏ ଏବଂ ଏହି ମହାସ୍ନାନ କିପରି କରାଯାଏ, ସେ ବିଷୟରେ ସୂଚନା ମିଳେ ।

୧. ଅକସ୍ମାତ୍ ଦୁର୍ଘଟଣା ହେଲେ ଅର୍ଥାତ୍ କୁକୁର ପ୍ରବେଶ କଲେ କିମ୍ବା ଶ୍ରୀମନ୍ଦିର ହତାରେ ଶବ ବା ଅସ୍ଥି ଦେଖାଦେଲେ ଠାକୁରମାନଙ୍କର ହେଉଥିବା ନୀତି ବନ୍ଦ ରଖାଯିବ ଓ ନୀତିର ଉପକରଣମାନ ବାହାରକୁ ବାହାର କରାଯିବ । ଜୟ ବିଜୟ ଦ୍ୱାରଠାରୁ ଭିତର ପୋଖରିଆ ପର୍ଯ୍ୟନ୍ତ ଉତ୍ତମ ରୂପରେ ଧୂଆହୋଇ ଚୂନପାଣି ପଡ଼ିବ । ପାଳିଆ ମେକାପ ରତ୍ନସିଂହାସନରେ ପୋଛା ମାରିବେ । ଏହାପରେ ସିଂହାସନ ତଳେ ମହାସ୍ନାନ ଠା ହୋଇ ମହାସ୍ନାନ ବଢ଼ିବ । ଏହି ମହାସ୍ନାନ ପୂର୍ବରୁ ସମସ୍ତ ରୋଷ ଧୋ ପଖାଳ ହେବ । ଭୋଗଆଡ଼େ ଥିବା ସମସ୍ତ ଭୋଗ ପାଣି ପଶିଥିବା ସମସ୍ତ ପଦାର୍ଥମାନ ପାଣିହାଣ୍ଡି, ଶିକା ବାଉଁଶ ବାହାର ହେବ । ପୁନର୍ବାର ରୋଷଘରେ ହୋମ ହେବ । ସୂର୍ଯ୍ୟ ପୂଜା ଓ ଦ୍ୱାରପାଳ ପୂଜା ହେବ । ଏହାପରେ ଯେଉଁଠାରୁ ନୀତି ବନ୍ଦ ହୋଇଥିବ ତାହା ଆରମ୍ଭ ହୋଇ କ୍ରମାନ୍ୱୟରେ ଅନ୍ୟାନ୍ୟ ସମସ୍ତ ନୀତି ହେବ । ନୀତି ବିଳମ୍ବର ଅନେକ କାରଣ ଥିଲେ ମଧ୍ୟ ମହାସ୍ନାନ ବା ବଡ଼ ମହାସ୍ନାନ ହେତୁ ନୀତି ବିଳମ୍ବ ଜନିତ ଅଧିକ କାର୍ଯ୍ୟରେ ଦୈନିକ ମନ୍ଦିର ନୀତିରେ ସ୍ନାନ ପାଇଥାଏ ଏବଂ ଏଥିସହିତ ସମ୍ପୃକ୍ତ ସେବାୟତମାନେ ଅଧିକା କାର୍ଯ୍ୟ କରିଥାନ୍ତି ।

୨. ଭିତର କାଠ ପାଖଠାରୁ ସିଂହାସନ ପର୍ଯ୍ୟନ୍ତ ସ୍ଥାନରେ ଯଦି କୌଣସି ଲୋକ ମଳତ୍ୟାଗ କରେ ବା ପରିସ୍ରା କରେ କିମ୍ବା ଛେପ ପକାଏ, ତାହାହେଲେ ଭିତର ଓ ବାହାର ଧୋ ପଖାଳ ହୋଇ ଚୂନପାଣି ପଡ଼ିଲା ପରେ ପଶୁପାଳକମାନେ (ପୁଷ୍ପାଳକ) ଯାଇ ଠାକୁରଙ୍କୁ ମଇଲମ କରନ୍ତି । ତାପରେ ଶୁଦ୍ଧ ସୁଆର ବଡ଼ ମହାସ୍ନାନର ପୂଜା ଠା କରନ୍ତି । ଠାକୁରମାନେ ମହାସ୍ନାନ ହୋଇ ଅନ୍ୟାନ୍ୟ ନୀତି ହୁଏ । ମଳତ୍ୟାଗ ସ୍ଥାନରେ ୯ଥର ଲହଣ ମରାହୁଏ ଓ ସେଠାରେ ଚୂଆ ପଡ଼େ । ମହାସ୍ନାନ ପାଇଁ ଆବଶ୍ୟକ ସମସ୍ତ ପଦାର୍ଥ ପ୍ରଧାନୀ ସେବକମାନେ ସଂଗ୍ରହ କରିଥାନ୍ତି ଏବଂ ମହାସ୍ନାନର କାର୍ଯ୍ୟକ୍ରମରେ ସାହାଯ୍ୟ ଓ ସହଯୋଗ ଅନ୍ୟ ସେବାୟତମାନଙ୍କୁ କରିଥାନ୍ତି ।

୩. ଦର୍ଶନ ସମୟରେ କିମ୍ବା ଅନ୍ୟ ସମୟରେ ଯଦି କେହି ହାତ ବଢ଼ାଇ ଛୁଇଁଦିଏ, ତା'ହେଲେ ଉକ୍ତ ଲୋକଠାରୁ ଏକଟଙ୍କା ଛଅଅଣା ନିଆଯାଇ ମହାସ୍ନାନ ଇତ୍ୟାଦିରେ ଖର୍ଚ୍ଚ ହୁଏ (ଏହା ପରିବର୍ତ୍ତନଶୀଳ) । ମହାସ୍ନାନ ବଢ଼ିଲା ପରେ ଅନ୍ୟାନ୍ୟ ନୀତି ହୋଇଥାଏ ।

ଆଗରୁ ସୂଚନା ଦିଆଯାଇଛି, ଗୋପାଳବଲ୍ଲଭ, ଭଅଣ୍ଡ ଭୋଗ ଓ ବଡ଼ସିଂହାର ଧୂପରେ ପଞ୍ଚମ ଉପଚାରରେ ପୂଜା ହୁଏ ଏବଂ ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପରେ ଷୋଡ଼ଶ ଉପଚାରରେ ପୂଜା ହୁଏ । ମାତ୍ର ପ୍ରତ୍ୟେକ ମହାସ୍ନାନରେ ଷୋଡଶ ଉପଚାରରେ ପୂଜା ହୁଏ ଏବଂ ମହାସ୍ନାନ ପୂଜା ସରିଲେ ଯେଉଁ ନୀତିଠାରୁ ବନ୍ଦ ହୋଇଥିବ ସେହି ନୀତିଠାରୁ ପୁଣି ସମସ୍ତ ନୀତି ଓ ପୂଜା ହେବ ।

ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରା ବାରମାସରେ ତେରଯାତ୍ରା ମଧ୍ୟରେ ଅନ୍ୟତମ । ରଥଯାତ୍ରାର ବିଭିନ୍ନ ପ୍ରକ୍ରିୟା ସ୍ନାନଯାତ୍ରାରୁ ହିଁ ହୋଇଥାଏ ଓ ଅଧିକା ସେବକ ସେମାନଙ୍କ କାର୍ଯ୍ୟ ଆରମ୍ଭ କରିଥାନ୍ତି । ମା'ଶୀତଳାଙ୍କ ଦେବସଭା ମଧ୍ୟରେ ଥିବା ସୁନାକୂଅରୁ ଜଳ ସଂଗ୍ରହ କରାଯାଇଥାଏ । ବର୍ଷକ ପରେ ଏହି ଜଳ ସୁନାକୂଅରୁ ସ୍ନାନଯାତ୍ରା ପାଇଁ ସଂଗୃହୀତ ହୋଇଥାଏ । ସ୍ନାନମଣ୍ଡପରେ ଠାକୁରମାନେ ଅବସ୍ଥାନ କରନ୍ତି ।

ସ୍ନାନବେଦି ପୁଣି ଚଳଚଞ୍ଚଳ ହୋଇଯାଏ । ପ୍ରଧାନୀ ଓ ତଳୁଛ ମହାପାତ୍ର ସ୍ନାନ ଜଳକୁ ଆଣିବା ପାଇଁ ପଟୁଆର କରିଥାନ୍ତି। ସୁନା ଗୋସାଇଁ (ସ୍ମାର୍ତ୍ତ ଗୁରୁ) ସୁନାକୂଅରୁ ଜଳସଂଗ୍ରହ କରି ସ୍ନାନମଣ୍ଡପକୁ ଆଣିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ସଂଗହୀତ ଜଳକୁ ପବିତ୍ର ଓ ସ୍ନାନ ଉପଯୋଗୀ କରିବା ପରେ ସଂଗୃହୀତ ସ୍ଥାନରୁ ସ୍ନାନ ମଣ୍ଡପକୁ ଅଣାଯିବା ଦୃଶ୍ୟ ଅତ୍ୟନ୍ତ ମନୋହର । ସ୍ନାନବେଦିରେ ସ୍ନାନ ଦୃଶ୍ୟ ଓ ୧୦୮ ଗରା ପାଣିରେ ସ୍ନାନ ମଧ୍ୟ ଅତ୍ୟନ୍ତ ଶୋଭନୀୟ । ଏଥିପାଇଁ ବର୍ଷରେ ଅଦ୍ୱିତୀୟ ଉତ୍ସବ ସମସ୍ତେ ଖୁସିରେ ଉପଭୋଗ କରିଥାନ୍ତି । ସ୍ନାନବେଦିରେ ଅଁଳା ନବମୀ ଦିନ ଖେଚୁଡ଼ି ଭୋଗକୁ ଲିପି ତାକୁ ସେବା କଲେ ଅଶେଷ ପୁଣ୍ୟ ହୋଇଥାଏ । ତେଣୁ ସ୍ନାନ ପୂର୍ଣ୍ଣମୀ ଛାଡ଼ିଦେଲେ ଅଁଳା ନବମୀ ଦିନ ଜଗନ୍ନାଥ ମହାପ୍ରଭୁ ନ ଥିଲେ ମଧ୍ୟ ସ୍ନାନବେଦି ଚଳଚଞ୍ଚଳ ହୋଇଥାଏ । ସ୍ନାନବେଦି ଖେଚୁଡ଼ି ମହାପ୍ରସାଦ ଗ୍ରହଣ କରି ଭକ୍ତମାନେ ଧନ୍ୟ ହୋଇଥାନ୍ତି ।

ଶ୍ରୀମନ୍ଦିର ପ୍ରଧାନୀ ଓ ବିମାନବଡୁ ସେବାୟତ
ବିମାନବଡୁ ସାହି, ପୁରୀ ଟାଉନ୍, ପୁରୀ

# ଜଗନ୍ନାଥ ତତ୍ତ୍ୱ ଓ ଓଡ଼ିଆ ସାହିତ୍ୟରେ ତାର ପ୍ରଭାବ

ଇନ୍ଦୁଭୂଷଣ କର

ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଯେ, ଜଗନ୍ନାଥ ତତ୍ତ୍ୱ ଓଡ଼ିଶାର ଆଧ୍ୟାତ୍ମିକ ଜୀବନ ସହିତ ସାଂସ୍କୃତିକ ଜୀବନକୁ ବିଶ୍ୱବନ୍ଦିତ କରିଅଛି । ଓଡ଼ିଶାର କଳା, ସାହିତ୍ୟ, ଭାସ୍କର୍ଯ୍ୟ ଓ ସଂସ୍କୃତିରେ ଜଗନ୍ନାଥ ତତ୍ତ୍ୱର ପ୍ରଭାବ ଅତି ସୁସ୍ପଷ୍ଟ ।

**ଜଗନ୍ନାଥ ତତ୍ତ୍ୱ**

ଜଗନ୍ନାଥ ତତ୍ତ୍ୱ ସମ୍ପର୍କରେ ଅନେକ ଜ୍ଞାନୀ, ଗୁଣୀ, ଧାର୍ମିକ ମନୀଷୀମାନେ ଗବେଷଣା କରି ଅନେକ ତଥ୍ୟ ପ୍ରଦାନ କରିଯାଇଛନ୍ତି । ସେବିଷୟରେ ଏତିକି ସଂକ୍ଷେପରେ କୁହାଯାଇପାରେ ଯେ, ଏହା ହେଉଛି ଏକ ଧର୍ମଧାରା, ଯାହା ସାମ୍ୟ, ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱର ପ୍ରସାର ଓ ପ୍ରଚାର କରିଥାଏ । ଜଗନ୍ନାଥ ତତ୍ତ୍ୱକୁ କେତେକ ଗବେଷକ ''ଜଗନ୍ନାଥ ସଂସ୍କୃତି'' ବୋଲି କହନ୍ତି ।

ଶ୍ରୀଜଗନ୍ନାଥ ବିଶ୍ୱର ଦେବତା (Lord of Universe) ରୂପେ ପୂଜିତ ହୋଇ ଆସିଛନ୍ତି । ପୁରୀ ମନ୍ଦିର ନିର୍ମାଣର ବହୁବର୍ଷ ପୂର୍ବରୁ ଶ୍ରୀଜଗନ୍ନାଥ ''ଦାରୁ ଦେବତା'' ରୂପରେ ଶବରମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ଡକ୍ଟର ବେଣୀ ମାଧବ ପାଢ଼ୀ, ତାଙ୍କର ଗବେଷଣାମୂଳକ ଗ୍ରନ୍ଥ – ''ଦାରୁଦେବତା'' ରେ ଏହି ଜଗନ୍ନାଥ ତତ୍ତ୍ୱର ଉତ୍ପତ୍ତି ଓ ଶ୍ରୀଜଗନ୍ନାଥଙ୍କର ପୂଜା ଉପାସନାର ବିସ୍ତୃତ ବିବରଣୀ ଦେଇଛନ୍ତି । ଡ଼ଃ କେ.ସି. ମିଶ୍ରଙ୍କ Cult of Jagannath, ବିଶିଷ୍ଟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ Lord Jagannath, ମାୟାଧର ମାନସିଂହଙ୍କ Saga of the Land of Jagannath, ଗୁରୁଚରଣ ପଟ୍ଟନାୟକଙ୍କ ''ଜଗତ ଦର୍ଶନରେ ଜଗନ୍ନାଥ'' (କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଗ୍ରନ୍ଥ) A.Eschmann, H.Kulke & G.C. Tripathyଙ୍କ ଲିଖିତ The Cult of Jagannath and Regional Tradition ପ୍ରଭୃତି ପ୍ରାମାଣିକ, ଗବେଷଣାମୂଳକ ପୁସ୍ତକମାନଙ୍କରେ ଜଗନ୍ନାଥ ତତ୍ତ୍ୱ ସମ୍ପର୍କରେ ବହୁ ଜ୍ଞାତବ୍ୟ ବିଷୟମାନ ବର୍ଣ୍ଣନା ରହିଛି । ଏହିସବୁ ପୁସ୍ତକଗୁଡ଼ିକୁ ପ୍ରତ୍ୟେକ ଧର୍ମପ୍ରାଣ ସ୍ୱାଭିମାନୀ ଓଡ଼ିଆ ପଢ଼ିବା ଉଚିତ୍ ବୋଲି ମୁଁ ମନେକରେ । କାରଣ ଶ୍ରୀଜଗନ୍ନାଥ ହିଁ ଓଡ଼ିଆ ଜାତିର ମହାପ୍ରଭୁ ଓ ଅନନ୍ୟ ''ଗଣଦେବତା'' (Lord of people) । ସେ ବର୍ଷରେ ଥରେ ଆଷାଢ଼ ମାସରେ ରଥଯାତ୍ରାରେ ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ଭକ୍ତମାନଙ୍କୁ ଦେଖା ଦିଅନ୍ତି । ସେ ଦୀନବନ୍ଧୁଙ୍କ ରଥଯାତ୍ରା (ଗୁଣ୍ଡିଚା ଯାତ୍ରାରେ) ପୁରୀର ବଡ଼ଦାଣ୍ଡ ଭକ୍ତମାନଙ୍କ ସମାବେଶରେ ଉତ୍ସବ ମୁଖର ହୋଇ ଉଠେ । ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ଧ୍ୱନିରେ ପ୍ରକମ୍ପିତ ହୁଏ ବଡଦାଣ୍ଡ । ଏହିଠାରେ ସାମ୍ୟ, ମୈତ୍ରୀ ଓ ବିଶ୍ୱ ଭ୍ରାତୃତ୍ୱର ନିଦର୍ଶନ ଦେଖିବାକୁ ମିଳେ, ଆର୍ତ୍ତ ଭକ୍ତମାନେ ଗାଇ ଉଠନ୍ତି, ଭକ୍ତ ଶିରୋମଣି ସାଲବେଗଙ୍କ ଭଜନ ।

''ଜଗନ୍ନାଥ ହେ, କିଛି ମାଗୁନାହିଁ ମୁଁ ତୋତେ
ମାଗୁନାହିଁ ଧନ, ମାଗୁନାହିଁ ଜନ
ମାଗୁଛି ଶରଧା ବାଲିରୁ ହାତେ'' ।

ପୁରୀର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ ଓଡ଼ିଶାର ରାଜା ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବ (୧୦୭୮–୧୧୪୭) । ମନ୍ଦିରରେ ଶ୍ରୀଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠିତ ହେଲା । ସବୁଠାରୁ ବିସ୍ମୟକର କଥା ହେଉଛି ଯେ, ଶ୍ରୀଜଗନ୍ନାଥଙ୍କୁ ସବୁ ହିନ୍ଦୁ ଧର୍ମର ଗୁରୁମାନେ ନିଜ ନିଜ ଧର୍ମର ଦେବତା ରୂପେ ପୂଜା ଓ ଉପାସନା କରିଆସୁଛନ୍ତି । ଭାରତର ବିଭିନ୍ନ ଧର୍ମ ବିଶ୍ୱାସର ସନ୍ଥମାନେ ପୁରୀକୁ ଆସିଛନ୍ତି ଓ ଶ୍ରୀଜଗନ୍ନାଥଙ୍କୁ ଜଗତର ନାଥ, ସ୍ୱୟଂ ଭଗବାନ ରୂପେ ସ୍ୱୀକାର

କରିଛନ୍ତି । ଶୈବ, ଶାକ୍ତ, ବୈଷ୍ଣବ, ଶିଖ ଓ ଜୈନ ଧର୍ମର ଗୁରୁମାନେ ପୁରୀ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଧାମକୁ ଆସି ଶ୍ରୀଜଗନ୍ନାଥଙ୍କୁ ବିଶ୍ୱ–ଦେବତା (Lord of Universe) ଓ ଗଣ ଦେବତା (Lord of People) ରୂପେ ସ୍ୱୀକାର କରିଛନ୍ତି । ଏହିଠାରେ ଜଗନ୍ନାଥ ତତ୍ତ୍ୱର ମୂଳ ଦର୍ଶନ ସମନ୍ୱିତ ସଂସ୍କୃତି (Syncretic culture) ପ୍ରତିଫଳିତ । ଜଗନ୍ନାଥ ତତ୍ତ୍ୱ– ଶିକ୍ଷାଦିଏ ନର ମଧ୍ୟରେ ରହିଛନ୍ତି ନାରାୟଣ । ମୈତ୍ରୀ, ସାମ୍ୟ, ବିଶ୍ୱଭ୍ରାତୃତ୍ୱ ଓ ଧାର୍ମିକ ସହନଶୀଳତା ହିଁ ଆଣିଦିଏ ସୁଖ ଓ ଶାନ୍ତି । ବୈଚିତ୍ର ମଧ୍ୟରେ ଐକ୍ୟଭାବ (Unity in Diversity) ଏହାହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର । ଏହା ସାଂସ୍କୃତିକ ଚେତନା ଜଗନ୍ନାଥ ଚେତନା ମଧ୍ୟରେ ରହିଛି ।

ଭାରତର ହିନ୍ଦୁ ଧର୍ମର ଶ୍ରେଷ୍ଠସନ୍ଥ ଶଙ୍କରାଚାର୍ଯ୍ୟ (ଖ୍ରୀ ୭୮୮–୮୨୨)ରେ ପୁରୀକୁ ଆସି ଶ୍ରୀଜଗନ୍ନାଥଙ୍କୁ ଉପାସନା କରିଥିଲେ । ତାଙ୍କଦ୍ୱାରା ଲିଖିତ ଶ୍ରୀଜଗନ୍ନାଥାଷ୍ଟକ ଭକ୍ତମାନଙ୍କ ଅତ୍ୟନ୍ତ ପ୍ରିୟ ପ୍ରାର୍ଥନା । ଶ୍ରୀଜଗନ୍ନାଥଙ୍କୁ ଶଙ୍କରାଚାର୍ଯ୍ୟ ଶ୍ରୀକୃଷ୍ଣ ହିନ୍ଦୁ ଦେବତା ରୂପେ ଉପାସନା କରିଥିଲେ । ଶଙ୍କରାଚାର୍ଯ୍ୟଙ୍କ ବ୍ୟତୀତ ଅନ୍ୟ ସନ୍ଥମାନଙ୍କ ମଧ୍ୟରେ ବୈଷ୍ଣବ ଧର୍ମର ଗୁରୁ ଶ୍ରୀଚୈତନ୍ୟ, ଶିଖଧର୍ମର ଗୁରୁ ନାନକ ଓ ନିମ୍ବାର୍କ ମଧ୍ୟ ପୁରୀ ଆସି ଶ୍ରୀଜଗନ୍ନାଥଙ୍କୁ ପୂଜା ଓ ଅର୍ଚ୍ଚନା କରିଛନ୍ତି ଓ ଶ୍ରୀଜଗନ୍ନାଥଙ୍କୁ ପରମବ୍ରହ୍ମ ରୂପେ ଉପାସନା କରିଛନ୍ତି ।

୧୨ ଶତାବ୍ଦୀରେ ସନ୍ଥକବି ନିମ୍ବାର୍କ ପନ୍ଥୀ ଜୟଦେବ ଲେଖିଲେ ''ଗୀତଗୋବିନ୍ଦ'' ସଂସ୍କୃତ ଭାଷାରେ । ସେ ଶ୍ରୀଜଗନ୍ନାଥଙ୍କୁ ରାଧାମାଧବ ରୂପେ ତାଙ୍କ କାବ୍ୟରେ ବର୍ଣ୍ଣନା କରିଛନ୍ତି ।

ଭାରତରେ ଅନ୍ୟଜଣେ ଅନନ୍ୟ ସନ୍ଥ ରାମକୃଷ୍ଣ ପରମହଂସ – ଶ୍ରୀଜଗନ୍ନାଥ ତତ୍ତ୍ୱରେ ''ସର୍ବଧର୍ମ–ସମନ୍ୱୟର ବାଣୀ'' ନିହିତ ବୋଲି ମୁକ୍ତକଣ୍ଠରେ ଘୋଷଣା କଲେ । ଜଗନ୍ନାଥ ତତ୍ତ୍ୱର ମହତ୍ତ୍ୱ ସମ୍ପର୍କରେ ଜର୍ମାନ ଦେଶର ବିଶିଷ୍ଟ ପ୍ରାଚ୍ୟ ତତ୍ତ୍ୱବିତ୍, ଗବେଷକ ପ୍ରଫେସର ଡ଼କ୍ଟର ହେରମାନ କୁଲକେ (Dr.Herman Kulke) ମଧ୍ୟ ଅଭିମତ ପୋଷଣ କରିଛନ୍ତି ଯେ ଓଡ଼ିଶାର ଆଦିବାସୀ ଶବରମାନଙ୍କ ଦାରୁଦେବତା କାଳକ୍ରମେ ଓଡ଼ିଶାର ରାଜାମାନଙ୍କ ଦ୍ୱାରା ସ୍ୱୀକୃତ ହେଲା ଓ ''ନୃସିଂହ ମୂର୍ତ୍ତି'' ମଧ୍ୟ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ହେଲା । ନୃସିଂହଙ୍କ ସହିତ ତ୍ରିଶୂଳ ମଧ୍ୟ ସ୍ଥାପିତ ହେଲା । ସମୟ ସ୍ରୋତରେ ଶୈବମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ଶିବରୂପେ ପୂଜା କଲେ । ବୌଦ୍ଧ, ଶୈବ, ଜୈନ, ଶାକ୍ତ ଧର୍ମର ବିଭିନ୍ନ ରୀତିନୀତି ମଧ୍ୟ ଶ୍ରୀଜଗନ୍ନାଥ ଉପାସନାରେ ସଂମିଶ୍ରିତ ହେଲା । ଶ୍ରୀଜଗନ୍ନାଥ ତତ୍ତ୍ୱରେ ଏହି ପ୍ରକାର ସବୁ ଧର୍ମର ସମନ୍ୱୟ ହୋଇଥିବାରୁ ଓଡ଼ିଶାର ଜଗନ୍ନାଥ ସଂସ୍କୃତିକୁ ସମନ୍ୱିତ ସଂସ୍କୃତି (Syncretic culture) ବୋଲି ଐତିହାସିକମାନେ ଯଥାର୍ଥରେ ଅବିହିତ କରିଛନ୍ତି ।

### ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ତତ୍ତ୍ୱର ପ୍ରଭାବ

ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିର ଏକ ସ୍ୱତନ୍ତ୍ର ଆତ୍ମା–ପରିଚୟ ରହିଛି । ଓଡ଼ିଶାର କଳା ମଧ୍ୟରେ ପଟ୍ଟଚିତ୍ରର ଉଦ୍ଭବ, ଓଡ଼ିଶୀ ନୃତ୍ୟର ବିକାଶ ଓ ସାଂସ୍କୃତିକ ଓ ସାମାଜିକ ଜୀବନଧାରାକୁ ଶ୍ରୀଜଗନ୍ନାଥ–ଦର୍ଶନ ବହୁ ଭାବରେ ପ୍ରଭାବିତ କରିଛି ।

ଓଡ଼ିଶା ସାହିତ୍ୟର ଶ୍ରୀବୃଦ୍ଧି କଥା ଚିନ୍ତା କଲେ ପ୍ରଥମେ ମନକୁ ଆସେ, ପଞ୍ଚଦଶ ଶତାବ୍ଦୀର ଆଦିକବି ସାରଳା ଦାସଙ୍କ ମହାଭାରତ କଥା । ସାରଳା ଦାସ ତାଙ୍କ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ଓ ବୁଦ୍ଧ ଦେବତା ରୂପରେ ବର୍ଣ୍ଣନା କରିଛନ୍ତି । କବି ସାରଳା ଦାସ ସଭାପର୍ବରେ ପୁରୁଷୋତ୍ତମ କ୍ଷେତ୍ରର ମହାତ୍ମା ଜଗନ୍ନାଥଙ୍କ ବନ୍ଦନା କରିଛନ୍ତି । ଜଗନ୍ନାଥଙ୍କୁ ବିଷ୍ଣୁ, ବଳଭଦ୍ରଙ୍କୁ ଶିବ ଓ ସୁଭଦ୍ରାଙ୍କୁ ବ୍ରହ୍ମ ରୂପେ ସ୍ୱୀକାର କରି ଲେଖିଛନ୍ତି ମହାଭାରତର ଆଦିପର୍ବରେ ।

ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସଙ୍କଠାରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ୫୦୦ ବର୍ଷର ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ଉପରେ ଜଗନ୍ନାଥ ତତ୍ତ୍ୱର ପ୍ରଭାବ ଅତୀବ ବର୍ଣ୍ଣାଢ଼୍ୟ ଓ ମହତ୍ତ୍ୱପୂର୍ଣ୍ଣ । ଓଡ଼ିଶାର କବି, ନାଟ୍ୟକାର ତଥା କଥାକାର ଓ ଔପନ୍ୟାସିକମାନଙ୍କୁ ଜଗନ୍ନାଥ–ଚେତନା ଏତେ ବିମୋହିତ କରିଥିଲା ଯେ ତାର ବିସ୍ତୃତ ବିବରଣୀ ଦେବା ଏହି କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ । ତେବେ ସଂକ୍ଷେପରେ କେତେକ ଉଲ୍ଲେଖଯୋଗ୍ୟ ସାହିତ୍ୟିକ କୃତି ସମ୍ପର୍କରେ ସୂଚନା ଦେବା ପ୍ରାସଙ୍ଗିକ ହେବ ।

ଓଡ଼ିଆ ସାହିତ୍ୟର ବିକାଶର ମଧ୍ୟଯୁଗରେ ଏକାଦାଶ ଓ ଦ୍ୱାଦଶ ଶତାବ୍ଦୀରେ ଶାସନ କରୁଥିବା ଗଙ୍ଗ ରାଜତ୍ୱ କାଳରେ ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଲିଖିତ 'ମାଦଳାପାଞ୍ଜି' (Drum chronicle of Palmleaf manuscript)ରେ ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତି ସମ୍ପର୍କରେ ଅନେକ ତଥ୍ୟ ଲିପିବଦ୍ଧ ହୋଇଅଛି । ସାରଳା ଦାସଙ୍କ ପରେ ପରବର୍ତ୍ତୀ କବି ଅର୍ଜୁନ ଦାସଙ୍କ ରାମବିଭା, କଳ୍ପଲତା, କବି ବଳରାମ ଦାସଙ୍କ ଲକ୍ଷ୍ମୀ ପୁରାଣ, ଅତିବଡ଼ି ଜଗନ୍ନାଥ ଦାସଙ୍କ ଦାରୁବ୍ରହ୍ମ ଗୀତାରେ ଶ୍ରୀଜଗନ୍ନାଥଙ୍କ ମହିମା ସମ୍ପର୍କରେ ହୃଦୟସ୍ପର୍ଶୀ କବିତାମାନ ରହିଛି । ଓଡ଼ିଆ ସାହିତ୍ୟର ପଞ୍ଚସଖା

ଯୁଗର କବିମାନଙ୍କ ମଧ୍ୟରେ ଯଶୋବନ୍ତ, ଅଚ୍ୟୁତାନନ୍ଦ ଓ ଅନନ୍ତ ମଧ୍ୟ ଶ୍ରୀଜଗନ୍ନାଥଙ୍କ ଗୁଣକୀର୍ତ୍ତନ ଉପରେ କବିତାମାନ ରଚନା କରିଛନ୍ତି । କବି ପୁରୁଷୋତ୍ତମ ଦାସ ଏକ ଐତିହାସିକ କାବ୍ୟ ''କାଞ୍ଚି କାବେରୀ'' ରଚନା କରିଥିଲେ, ଯାହା ଧର୍ମପ୍ରାଣ ଓଡ଼ିଆ ପାଠକମାନଙ୍କ ହୃଦୟକୁ ଆହ୍ଲାଦିତ କରିଥିଲା ।

ଏହି ଜଗନ୍ନାଥ ତତ୍ତ୍ୱ ଓଡ଼ିଆ ଭକ୍ତି ସାହିତ୍ୟକୁ ବିଶେଷ କରି ଜଣାଣ, ଭଜନ ଓ ଭକ୍ତିଗୀତକୁ ଋଦ୍ଧିମନ୍ତ କରିଛି । କବି ମାଧବୀ ଦାସୀ ୧୬ ଶତାବ୍ଦୀରେ ଅନେକ ଜଗନ୍ନାଥ ଜଣାଣମାନ ଲେଖିଥିଲେ, ତା ମଧ୍ୟରୁ ''ଚକାନୟନ ହେ''– ଅତ୍ୟନ୍ତ ଲୋକପ୍ରିୟ । ସେହିପରି ଅନେକ ହୃଦୟସ୍ପର୍ଶୀ ଭଜନ ଲେଖିଥିଲେ ସାଲବେଗ (୧୭ଶ ଶତାବ୍ଦୀରେ) ତା ମଧ୍ୟରୁ ''ଜଗନ୍ନାଥ ହେ,'' ଏବେ ବି, ଗାଁ ଗହଳିରେ ଓଡ଼ିଆ ଭକ୍ତ ଭାଇ ଭଉଣୀମାନେ ଗାଉଛନ୍ତି । କବି ବନମାଳୀ ଦାସ ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ଭଜନ ଓଡ଼ିଆ ସଂଗୀତକୁ ମଧ୍ୟ ଋଦ୍ଧିମନ୍ତ କରିଅଛି । ୧୭ ଶତାବ୍ଦୀରେ କବି ଲୋକନାଥ ବିଦ୍ୟାଧର ଏକ ମନୋଜ୍ଞ କାବ୍ୟଗ୍ରନ୍ଥ 'ନୀଳାଦ୍ରି ମହୋତ୍ସବ' ଲେଖିଥିଲେ । ସେହି କାବ୍ୟରେ ସେ ଶ୍ରୀଜଗନ୍ନାଥ ମନ୍ଦିର, ବିଭିନ୍ନ ପୂଜା ଓ ଉତ୍ସବର କଥା ବର୍ଣ୍ଣନା କରିଛନ୍ତି । ସେହିଭଳି ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ବେଶର ବର୍ଣ୍ଣନା କରିଛନ୍ତି କବି ଗୋପୀନାଥ ସିଂହ ତାଙ୍କର 'ନୀଳାଦ୍ରି ବିହାରୀ' ଗ୍ରନ୍ଥରେ ।

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଓଡ଼ିଶାର ସ୍ୱନାମଧନ୍ୟ ଭକ୍ତ କବି ଭୀମଭୋଇ, ଦୀନକୃଷ୍ଣ ଦାସ, ବଳଦେବ ବଡ଼ଜେନା ପ୍ରଭୃତି କବିମାନେ ଶ୍ରୀଜଗନ୍ନାଥଙ୍କ ଉପରେ ଅନେକ କାବ୍ୟ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧିଶାଳୀ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ଚେତନା ଉପରେ ଭଜନ, ଜଣାଣ, ଯାତ୍ରା ଲୀଳା, ସୁଆଙ୍ଗ ପ୍ରଭୃତି ଲେଖି ଓଡ଼ିଆ କବିମାନେ ଓଡ଼ିଆ ଲୋକ ସାହିତ୍ୟର ମଧ୍ୟ ଶ୍ରୀବୃଦ୍ଧି କରିଛନ୍ତି । ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗରେ ନାଟ୍ୟକାର, ରାମଶଙ୍କର ରାୟଙ୍କ ନାଟକ 'କାଞ୍ଚିକାବେରୀ', କବି କାଳିନ୍ଦୀ ପାଣିଗ୍ରାହୀଙ୍କ କବିତା '' ପୁରୀ ମନ୍ଦିର'', ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସ 'ନୀଳଶୈଳ' (୧୯୬୮), ନୀଳାଦ୍ରି ବିଜୟ (୧୯୮୦) ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଅନେକ କବିତା, ରାଧାମୋହନ ଗଡ଼ନାୟକ ଓ ବ୍ରହ୍ମୋତ୍ରୀ ମହାନ୍ତି ଶ୍ରୀଜଗନ୍ନାଥ ଉପରେ ମର୍ମସ୍ପର୍ଶୀ ଅନେକ କବିତା ଲେଖି ଓଡ଼ିଆ ସାହିତ୍ୟର ଐତିହ୍ୟକୁ ମହୀୟାନ କରିଛନ୍ତି । ଓଡ଼ିଶାର ଯଶସ୍ୱୀ କବି ମାୟାଧର ମାନସିଂହ ଜଗନ୍ନାଥ ତତ୍ତ୍ୱର ମହିମା ସମ୍ପର୍କରେ ଯାହା ଲେଖିଛନ୍ତି ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ପ୍ରାସଙ୍ଗିକ ବୋଲି ମୁଁ ମନେ କରେ ।

ପୂର୍ବତନ ସଚିବ, ଓଡ଼ିଶା ସାହିତ୍ୟ ଏକାଡ଼େମୀ
୧୫୯୫, ଶ୍ରଦ୍ଧାନିବାସ, ଭକ୍ତମଧୁ ନଗର
ଭୁବନେଶ୍ୱର–୩୦

# ହେ ଜଗନ୍ନାଥ

ବଦ୍ରି ମିଶ୍ର

ତୁମେ ହୋଇ ମୋର ରଥର ସାରଥି
ବାହନ୍ତ ଜୀବନ ରଥ
ଜୀବନ ଯୁଦ୍ଧରେ ତୁମ ବିଶ୍ୱରୂପ ଦେଖନ୍ତି
ହେ ଜଗନ୍ନାଥ ।

ଚିନ୍ତା ନାହିଁ ଆସୁ ବିପଦ ଜୀବନେ
ଦେଖିଛି ଅନେକ ଶେଷ
ଡର ନାହିଁ ମୋର ସଂସାର ଦୁଃଖକୁ
ପିଇଛି ଅନେକ ବିଷ
ସଖା ହୋଇ ଯଦି ସାଥେ ସାଥେ ଅଛ
ଅନ୍ଧାର ବି ଦେବ ବାଟ ।



ବିଷ ବଳୟର ବିପଦ ଘେରରେ
ଖୋଜୁଛି ଅମୃତ ଧାରା
କେତେ ଯେ ଜିତିଛି, କି ଅବା ପାଇଛି
କେବଳ ହାରିବା ଛଡା
ମରୁଛି, ସରୁଛି, ତଥାପି ଲଢୁଛି
ପାଇବାକୁ ନିତ୍ୟ ସତ୍ୟ ।

ଗୀତିକାର,
ସର୍ବୋଦୟ ନଗର, ପୁରୀ



# ବଂଶୀ ବୀଣା ବୁଦ୍ଧାବତାର

ମଧୁସୂଦନ ପଟ୍ଟନାୟକ

ଗୋଲକଧାମ । ସ୍ୱର୍ଗପୁରର ବିଷ୍ଣୁଲୋକ । ବିଷ୍ଣୁ, ଇନ୍ଦ୍ର ଓ କୃଷ୍ଣଙ୍କ ନିବାସ । ବ୍ରହ୍ମା, ବିଷ୍ଣୁ, ମହେଶଙ୍କ ସ୍ୱତନ୍ତ୍ର ବୈଠକ କକ୍ଷ । ପରମବ୍ରହ୍ମ ବିଷ୍ଣୁଙ୍କର ବୈଠକ କକ୍ଷ ଅପରୂପ ସୌନ୍ଦର୍ଯ୍ୟରେ ଉଦ୍‌ଭାସିତ । ହୀରା, ନୀଳା, ମୋତି ମାଣିକ୍ୟାଦି ଦୁର୍ମୂଲ୍ୟ ପ୍ରସ୍ତର ଖଣ୍ଡରେ ଚତୁଃପାର୍ଶ୍ୱ ଜାଜ୍ୱଲ୍ୟମାନ । ବୈଦୁର୍ଯ୍ୟ ଖଚିତ ଚନ୍ଦ୍ରାତପ ସଂଲଗ୍ନ ବିବିଧ ରଙ୍ଗରେ ରଙ୍ଗାୟିତ ସ୍ୱୟଂ ବିଶ୍ୱକର୍ମା ହସ୍ତାଙ୍କିତ ଚିତ୍ରପଟ ଦୋଦୁଲ୍ୟମାନ । ସର୍ବୋପରି ନାରାୟଣଙ୍କ ବୀର ବେଶର ବିବିଧ ଚିତ୍ରପଟ ସହିତ ନିଷ୍ଠୁର ଦୈତ୍ୟମାନଙ୍କର ଦୟନୀୟ ନିଧନ ଅତି ନିଖୁଣ ଭାବରେ ଚିତ୍ରିତ ହୋଇଛି । କକ୍ଷର ତଳଭାଗ ଶୁଭ୍ର ଶଙ୍ଖ ମଲମଲ ପ୍ରସ୍ତର ଆଚ୍ଛାଦିତ ହୋଇ ଅପୂର୍ବଶ୍ରୀ ଧାରଣ କରିଛି । ଏତଦ୍‌ଭିନ୍ନ ବିଷ୍ଣୁଙ୍କର ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ରାମ, ବଳରାମ ଓ ପର୍ଶୁରାମ ଏହି ଅଷ୍ଟ ଚିତ୍ରପଟ ସ୍ଥାନିତ ହୋଇଛି ।

କକ୍ଷ ମଧ୍ୟରେ ଗତାଗତ କକ୍ଷେ ଦୁଇ ପ୍ରବେଶ ଦ୍ୱାର ପୂର୍ବ ଓ ପଶ୍ଚିମ । ପୂର୍ବଦ୍ୱାର ମହାଦେବୀ ମା’ ଲକ୍ଷ୍ମୀ ଶ୍ରୀଦେବୀ ଏବଂ ପଶ୍ଚିମ ଦ୍ୱାର ମା ସରସ୍ୱତୀ ଭୂଦେବୀଙ୍କର ଆଗମନ ପାଇଁ ଉଦ୍ଦିଷ୍ଟ । ଏକଦା ଆକସ୍ମିକ ଭାବେ ଏକ ସମୟରେ ମା’ ଲକ୍ଷ୍ମୀ ଓ ସରସ୍ୱତୀ ‘ବଂଶୀ ବଂଶୀ’ ଡାକ ଦେଇ ପ୍ରବେଶ କଲେ କକ୍ଷ ମଧ୍ୟରେ । ବଂଶୀ ବୈକୁଣ୍ଠପୁରର ମୁଖ୍ୟ ଦାସୀ । ବେଶଭୂଷାରେ ଭୂଷିତ କରିବା ତାର କାମ । ଲକ୍ଷ୍ମୀ ସରସ୍ୱତୀଙ୍କର ଆଗମନର ଉଦ୍ଦେଶ୍ୟ ବଂଶୀ ସେମାନଙ୍କ ପାଦରେ ଅଳତା ଲଗାଇବ । ବଂଶୀ ଠିକ୍ କରିପାରିଲା କେଉଁ ମା’ଙ୍କ ପାଦରେ ଆଗେ ଅଳତା ଲଗାଇବ । ଏହାଦ୍ୱାରା ପରବର୍ତ୍ତୀ ଅପର ଜଣଙ୍କର ନିଶ୍ଚୟ ଗାତ୍ର ଦାହ ହେବ ।

ଏହି ଘଡିସନ୍ଧି ମୁହୂର୍ତ୍ତରେ ବୀଣା ବଜାଇ ବଜାଇ ଦେବର୍ଷି ନାରଦ ଉପସ୍ଥିତ ହେଲେ । ତତ୍‌କ୍ଷଣାତ୍ ଲକ୍ଷ୍ମୀ ସରସ୍ୱତୀ ସ୍ୱ ସ୍ୱ ଆସନରୁ ଉଠି ପ୍ରଣିପାତ ଜଣାଇ ଯଥାବିଧି ପୂଜାର୍ଚ୍ଚନା କରିବା ପରେ ନାରଦ ବିଷ୍ଣୁ କାହାନ୍ତି ବୋଲି ପଚାରି ବୁଝିଲେ ଯେ ସେ ରତି କନ୍ଦର୍ପର ବିବାହ ଉତ୍ସବର ମୁଖ୍ୟ ପୁରୋଧା ଭାବେ ଯୋଗଦାନ ପାଇଁ ଚାଲି ଯାଇଛନ୍ତି । ଲକ୍ଷ୍ମୀ ସରସ୍ୱତୀ ପାଦରେ ଅଳତା ଲଗାଇ ବେଶଭୂଷା ହୋଇ ସେଠାକୁ ଯିବାକୁ ଆସିଛନ୍ତି ।

ନାରଦଙ୍କ ମନେ ପଡିଗଲା– ଓହୋ ! ମୁଁ ମଧ୍ୟ ନିମନ୍ତ୍ରଣ ପାଇଛି । ଏତିକି ବେଳେ ଦାସୀ ବଂଶୀ ନାରଦଙ୍କୁ ଅନୁନୟ ହୋଇ ପଚାରିଲା– ଦେବର୍ଷି ! ଲକ୍ଷ୍ମୀ ସରସ୍ୱତୀ ଉଭୟେ ଗୋଡରେ ଅଳତା ଲଗାଇବା ପାଇଁ ବ୍ୟଗ୍ର । ମୁଁ ଠିକ୍ କରିପାରୁନି– କାହା ପାଦରେ ପ୍ରଥମେ ଅଳତା ଲଗେଇବି ?

‘ବିଦ୍ୟା ସର୍ବତ୍ର ପୂଜ୍ୟତେ’ କହି ବୀଣା ବଜାଇ ନାରଦ ଚାଲିଗଲେ । ଏଥିରେ ମା’ ଲକ୍ଷ୍ମୀ ଈର୍ଷାନ୍ୱିତ ହୋଇ ସଙ୍ଗେ ସଙ୍ଗେ ସରସ୍ୱତୀଙ୍କ ବେଶ ପରିଧାନପୂର୍ବକ ପାଦ ଦୁଇଟି ବଂଶୀ ପାଖକୁ ଲମ୍ୱେଇ ଦେଲେ । ଏହା ଦେଖି ସରସ୍ୱତୀଙ୍କ କ୍ରୋଧ ସୀମାତୀତ ହେଲା । ବଂଶୀ ଉପରେ ରାଗ ଶୁଝାଇବା ପାଇଁ ‘ଏତେ ଦିମାକ୍ ତୋର’ ବୋଲି କହି ତମତମ ହୋଇ ଚାଲିଗଲେ ସରସ୍ୱତୀ ।

ବଂଶୀ କିଂକର୍ତ୍ତବ୍ୟବିମୂଢା । ଲକ୍ଷ୍ମୀଙ୍କ ପାଦଧରି କାକୁତିମିନତି ହୋଇ କହିଲା– ମା’ ଆପଣ ମାୟା କଲେ । ମୋ ଜୀବିକା ବୁଡିଲା । ଲକ୍ଷ୍ମୀ ବଂଶୀକୁ ସାହସ ଦେଇ କହିଲେ– ତୁ ଭୟ କରନା । ମୋତେ ଏପରି ବେଶଭୂଷା କରିଦେବୁ ଯେ ନାରାୟଣଙ୍କ ମନମୋହିତ ହୋଇଯିବ । ମୁଁ ଏକାକୀ ତାଙ୍କ ସହିତ ବିଚରଣ କରିବା ଭିତରେ ସବୁକଥା ନାରାୟଣଙ୍କୁ କହିଦେବିଯେପରିକି ସରସ୍ୱତୀ ତାଙ୍କ ଘରକୁ ଯାଇପାରିବେ ନାହିଁ ।

ଲକ୍ଷ୍ମୀ ତ ଅନିନ୍ଦ୍ୟ ସୁନ୍ଦରୀ । ବଂଶୀ ହାତରେ ତାଙ୍କର ରୂପସଜ୍ଜା ଓ ବିବିଧ ଅଳଙ୍କାର ପରିଧାନ ଏକ ମାୟାମରୀଚିକା ସୃଷ୍ଟି

କଲା । ବଂଶୀ ଲକ୍ଷ୍ମୀଙ୍କ କେଶ ପ୍ରସାଧନ କରି ସାରି ମସ୍ତକରେ ଗୋଟି ଗୋଟି ହୀରା ମାଣିକ୍ୟର ବିଭିନ୍ନ ବର୍ଣ୍ଣମଣ୍ଡିତ ଗୋଲାପ, ଚମ୍ପକ, ସେବତୀ, ପାରିଜାତ ଅଳଙ୍କାର ଭରି ଦେଇଛି । ସୀମନ୍ତରେ ସୀମନ୍ତକ ମଣି । କର୍ଣ୍ଣରେ ମରକତ, ମୁକ୍ତା, ନୀଳା, ମାଣିକ୍ୟର କର୍ଣ୍ଣଦୋଳ ଓ ନାସିକାର ଦୁଇ ପୁଟରେ ମାଣିକ୍ୟର ବସଣୀ । ଅଳଙ୍କାର ସମୂହରୁ ବିଚ୍ଛୁରିତ ଆଭା ଦେବୀଙ୍କ ଗୋଲାପଗଣ୍ଡ ମଣ୍ଡଳରେ ବିଞ୍ଚି ଦେଇଛି । ଶତପତ୍ର ବୀଣା ନୟନଯୁଗଳରେ କ୍ଷୀଣ ଅଞ୍ଜନ ଗାର ଓ ତା ମଧ୍ୟରେ କଳା ଭ୍ରମର ବୀଣାଡୋଳା ଖେଳା କଜ୍ଜ୍ୱଳ ପତତ୍ରୀ ବିଭଙ୍ଗମର ଚଞ୍ଚଳତା ଓ ହରିଣୀର ଗତି ଚପଳତା ଅନୁକରଣ କରି ଇତସ୍ତତଃ ବିଚରଣ କରୁଅଛି । ଅଧରର ଆରକ୍ତ ଆଭା ଓ ମୁକ୍ତାନିନ୍ଦି କୁନ୍ଦଦନ୍ତପଙ୍କ୍ତି ଅବର୍ଣ୍ଣନୀୟ ଶୋଭା ଧାରଣ କରିଅଛି । ପଟ୍ଟବସ୍ତ୍ର ଭେଦକରି ବୈଦୁର୍ଯ୍ୟର ବାହୁବନ୍ଧ ପ୍ରତୀୟମାନ ହେଉଛି । କବ୍‌ଜିରେ ହୀରା ମାଣିକ୍ୟ ନୀଳା ମର୍କତ ଓ ମୁକ୍ତାଯୁକ୍ତ ବିଭିନ୍ନ ବର୍ଣ୍ଣ ରଞ୍ଜିତ ଚୁଡି ଓ ମଗର ମଥାଯୁକ୍ତ ମଣିବନ୍ଧନୀ ଖଡୁ ଓ ପଇଞ୍ଚି ପୁଣି ଦଶ ଆଙ୍ଗୁଳି ଭରି ହୀରକ ମୁଦ୍ରିକା । ଗଭାମଣ୍ଡନ କରି ନାଭିସ୍ପର୍ଶୀ ହୀରା, ମୋତି, ମାଣିକ୍ୟଭରା ଚନ୍ଦ୍ରହାରଗୁଚ୍ଛ । ଶ୍ରୀପଦରେ ମୁକ୍ତାଯୁକ୍ତ ପାହୁଡ, ବଳା ଓ ପାଉଞ୍ଜି । କଟି ଦେଶରେ ହୀରକ କମରବନ୍ଧ । ଏ ସମସ୍ତ ଭୂଷଣ ସାଙ୍ଗକୁ ଦେହାଭ୍ୟନ୍ତରରେ ଜଡିତ ଗାଢ ଲାଲ ବର୍ଣ୍ଣର ପଟ୍ଟକାଞ୍ଚଲା ଉପରେ ଗାଢ ହଳଦୀ ରଙ୍ଗର ସ୍ୱର୍ଣ୍ଣବୁଟ ଦିଆ ପଟ୍ଟବସ୍ତ୍ର ପରିଧାନ ଓ ଗାଢନୀଳ ଉତ୍ତରୀୟ ଶୋଭାରେ ବିଷ୍ଣୁପ୍ରିୟା କମଳାଳୟା ମହାଦେବୀ ମହାଲକ୍ଷ୍ମୀ ଆଜି ନାହିଁନଥିବା ଅପରୂପା ସୁଷମା ବିମଣ୍ଡିତା ।

ଲକ୍ଷ୍ମୀଙ୍କର ପାଦରେ ଚିତ୍ରିତ ଅଳତା ଦେଖି ବିଷ୍ଣୁ ପଚାରିଲେ– ଦେବୀ ! ତୁମର ପାଦରେ ଏ ଅଳତା ପରିପାଟୀ ଚିତ୍ରିତ କରିଛି କିଏ ? ଉତ୍ତର ମିଳିଲା– ମୁଖ୍ୟ ଦାସୀ ବଂଶୀ । ନାରାୟଣ ଆଶ୍ଚର୍ଯ୍ୟଭରା କଣ୍ଠରେ କହିଲେ– ସତରେ, ସେ ଏତେ ସୁନ୍ଦର ଅଳତା ଆଙ୍କିପାରେ ! ଥରେ ତାକୁ ଡକାଅ ତ ବୋଲି କହି ବିଷ୍ଣୁ ବୈକୁଣ୍ଠର ସିଂହାସନରେ ନିଜର ବାମ ପାର୍ଶ୍ୱରେ ଲକ୍ଷ୍ମୀଙ୍କ ହାତଧରି ବସାଇଦେଲେ । ସେତେବେଳକୁ ସରସ୍ୱତୀଙ୍କୁ ସେ ପୂରାପୂରି ଭୁଲି ଯାଇଥିଲେ ।

ଦେବାର୍ଚ୍ଚନା ଆରମ୍ଭ ହେଲା । କାହାଳୀ ଦୁନ୍ଦୁଭି ଶଙ୍ଖ ବାଜି ଉଠିଲା । ସପ୍ତମହର୍ଷି ବେଦ ଉଚ୍ଚାରଣ କଲେ । ରମ୍ଭା, ମେନକା, ଉର୍ବଶୀ ନୃତ୍ୟରତା ହେଲେ । ତିରିଶ କୋଟି ଦେବତା ସ୍ତୁତିଗାନ କଲେ । ଧୂପଦୀପରେ ମହକ ଉଚ୍ଛୁଳିଲା । କ୍ରମେ କ୍ରମେ ସମସ୍ତେ ଅପସରି ଗଲେ ।

ବଂଶୀ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇ କହିଲା– ମୋର ଆଜି କି ଭାଗ୍ୟ ! ପ୍ରଭୁ ମୋତେ ଡକାଇଛନ୍ତି କାହିଁକି ? ବିଷ୍ଣୁ ତତ୍‌କ୍ଷଣାତ୍ କହିଲେ– ମୋ ପାଦରେ ଅଳତା ଆଙ୍କି ପାରିବୁ ? ବଂଶୀ କହିଲା– ପ୍ରଭୁ ! ମୋର ଏତେ ଭାଗ୍ୟ ଆସିବ କେଉଁଠୁ ? ଯେଉଁ ପଦରଜରେ ସୃଷ୍ଟି ଆତଯାତ ହୁଏ, ମୁଁ କ'ଣ ସେ ପଦ ସ୍ପର୍ଶ କରିବା ପାଇଁ ଯୋଗ୍ୟ ! ତାହା ମୋର ପୂର୍ବ ତପସ୍ୟାର ଫଳ । ଆଦେଶ ପାଇ ବଂଶୀ ବିଦାୟ ନେଲା ।

ପରଦିନ । ବିଷ୍ଣୁ ବଂଶୀ ଦ୍ୱାରରେ ହାଜର । ପ୍ରଭୁଙ୍କର ଅପ୍ରତ୍ୟାଶିତ ଆଗମନ ଦେଖି ବଂଶୀ ଧୂପଦୀପ ପୁଷ୍ପଚନ୍ଦନ ନେଇ ପାଦପୂଜା କରି ସାଷ୍ଟାଙ୍ଗ ପ୍ରଣିପାତ କଲା । ବିଷ୍ଣୁ ଘର ଭିତରେ ପଲଙ୍କ ଉପରେ ଉପବେଶନ କରି ଶ୍ରୀପାଦ ବଢେଇ ଦେଲେ ବଂଶୀ ପାଖକୁ । ବଂଶୀ ତୂଳୀ ଧରି ବସିଗଲା । ବିଷ୍ଣୁଙ୍କ ପାଦପଦ୍ମ ଦ୍ୱୟକୁ ନିଜ କୋଳକୁ ଟାଣି ନେଇ ନିଖୁଣ ଚିତ୍ରଣ କଲା।

ବର୍ତ୍ତମାନ ଦେବୀ ସରସ୍ୱତୀଙ୍କ କଥା ଭାବନ୍ତୁ ତ ଥରେ । ସେ ବଂଶୀ ଓ ମା' ଲକ୍ଷ୍ମୀଙ୍କ ଉପରେ କ୍ଷୁବ୍ଧ । ମାୟା ବଳରେ ଲକ୍ଷ୍ମୀଙ୍କ ମାନସ ବିବ୍ରତ ହେଲା । ଖୋଜି ଖୋଜି ଅସ୍ତବ୍ୟସ୍ତ ହୋଇ ପହଞ୍ଚିଲେ ବୈଠକ କକ୍ଷରେ । ଏତିକି ବେଳେ ବୀଣା ବଜାଇ 'ନାରାୟଣ ନାରାୟଣ' କହି ନାରଦ ମା' ଲକ୍ଷ୍ମୀଙ୍କୁ ବିଷ୍ଣୁ କାହାନ୍ତି ବୋଲି ପଚାରିଲେ । ଲକ୍ଷ୍ମୀ ତା ବି ଜାଣିବେ କୁଆଡୁ ? ନାରଦ ଧ୍ୟାନବଳରେ ଜାଣିଲେ ଯେ ବିଷ୍ଣୁ ଅଛନ୍ତି ବଂଶୀ ପାଖରେ । ଲକ୍ଷ୍ମୀ ତରତର ହୋଇ ବଂଶୀ ଘର ଆଡକୁ ଅଗ୍ରସର ହୁଅନ୍ତେ ନାରଦ ବିଷ୍ଣୁଙ୍କ ବୈଠକ କକ୍ଷରେ ଶୋଭା ପାଉଥିବା ଅଷ୍ଟ ଅବତାର ନିକଟରେ ବିଷ୍ଣୁଙ୍କର ପରବର୍ତ୍ତୀ ଅବତାର ଯଥାକ୍ରମେ ବୁଦ୍ଧ ଓ କଳ୍କୀ ଚିତ୍ରପଟଦ୍ୱୟ ଟାଙ୍ଗି ଦେଇ ଚାଲିଗଲେ ।

ଲକ୍ଷ୍ମୀ ବଂଶୀ ଦ୍ୱାରରେ ହାଜର ହୋଇ କବାଟଟିକୁ ଠେଲି ଦେଖିଲେ– ବିଷ୍ଣୁ ପଲଙ୍କ ଉପରେ ବସି ପାଦ ଦୁଇଟିକୁ ବଂଶୀ ପାଖକୁ ବଢାଇ ଦେଇଛନ୍ତି । ବଂଶୀ ତଳେ ବସି ପାଦ ଦୁଇଟିକୁ ଛାତିରେ ଧରି ଚିତ୍ରଣରେ ଲାଗିପଡିଛି । ଲକ୍ଷ୍ମୀ ରାଗରେ ଗରଗର ହୋଇ ଗର୍ଜି ଉଠିଲେ– ବଂଶୀ ! ତୋର ଏତେ ଦିମାକ୍ । ଦାସୀ ହୋଇ ମୋର ଅନୁମତି ନନେଇ ସେହି ମହାନ୍ ପାଦପଦ୍ମ ଦ୍ୱୟକୁ ସ୍ପର୍ଶ କଲୁ । ତୋର ଏ ଦୁଃସାହସ ପାଇଁ ମୋର ଏ ଅଭିଶାପ ନେ । ତୁ ମର୍ତ୍ତ୍ୟପୁରରେ ଜନ୍ମ ନେଇ ନିର୍ଯାତନା ଭୋଗ କର ।

ସହସା ବିଷ୍ଣୁ ଠିଆ ହୋଇ କହିଲେ– ମୋ ଆଦେଶରେ ବଂଶୀ ଅଳତା ଚିତ୍ରଣ କରୁଥିଲା । ତେବେ ତୁମର ଆଦେଶ ଅନ୍ୟଥା ହେବନାହିଁ । ବଂଶୀ ପାଇଁ ମୁଁ ମଧ୍ୟ କୃଷ୍ଣ ଅବତାର ଧରି ମର୍ତ୍ତ୍ୟକୁ ଚାଲିଯିବି । ସେ ସର୍ବଦା ମୋ ସହିତ ରହିବ । ତା'ର ମଧୁର ସ୍ୱରରାଜିରେ ତୁମେ ପ୍ରେମରସ ପାଗଳ ହୋଇ କାନନକାନ୍ତାର ଘୂରି ବୁଲିବ ।

ଠିକ୍ ଏତିକିବେଳେ ମର୍ତ୍ତ୍ୟଧାମରେ ଦୃଷ୍ଟ ନିବାରଣ ପାଇଁ ଯଜ୍ଞ କରୁଥିଲେ । ସେମାନଙ୍କ ଦୌରାତ୍ମ୍ୟରେ ଧରା ଅତିଷ୍ଠ ହୋଇ ପଡିଥିଲା । ଏଣେ ଲକ୍ଷ୍ମୀଙ୍କ ଅଭିଶାପ ହେତୁ ବଂଶୀ ଆର୍ତ୍ତନାଦ କରି ସ୍ୱର୍ଗରୁ ଖସି ଆସି ଯଜ୍ଞକୁଣ୍ଡରେ ନିପତିତ ହେଲା। ପ୍ରବଳ ଅଗ୍ନିବିଭାରେ ଯଜ୍ଞସ୍ଥଳୀ ବିସ୍ଫାରିତ ହେଲା । ବ୍ରହ୍ମା କିୟତ୍‌କ୍ଷଣ ଚକ୍ଷୁ ମୁଦ୍ରିତ କରି ଧ୍ୟାନମଗ୍ନ ରହିବା ପରେ ଜ୍ଞାତ ହେଲେ । ଯଜ୍ଞ ଆହୂତିରେ ମନ୍ତ୍ର ଉଚ୍ଚାରଣ କରନ୍ତେ ଦେଖୁ ଦେଖୁ ଯଜ୍ଞକୁଣ୍ଡରୁ ଏକ ବିରାଟକାୟ ବାଉଁଶ ବୃକ୍ଷ ଜନ୍ମ ଲାଭ କରି ଅଠର ହାତ ବଢିଗଲା । ବ୍ରହ୍ମା ତ ପୂର୍ବରୁ ଏକଥା ଜାଣନ୍ତି । ସେହି ବାଉଁଶ ବୃକ୍ଷକୁ ଖଣ୍ଡ ଖଣ୍ଡ କରି ପିନାକ, କୋଦଣ୍ଡ, ଗାଣ୍ଡିବ ଧନୁକୁ ତିଆରି କଲେ । ପରିଶେଷରେ ଏକ ହାତ ବଳିପଡିଲା । ସେହି ଏକ ହାତ ଖଣ୍ଡିକ ଶ୍ରୀକୃଷ୍ଣଙ୍କ ମୋହନ ବଂଶୀ ପାଇଁ ସାଇତି ରଖିଲେ ।

ଶ୍ରୀକୃଷ୍ଣ ଦେବକୀଙ୍କ ଗର୍ଭରୁ ଜନ୍ମଲାଭ କରିବା ପୂର୍ବରୁ ନାରଦ ଏ ସମସ୍ତ କଥା ଦେବକୀଙ୍କୁ ଜଣାଇ ଦେଇଛନ୍ତି । କାରଣ ସମସ୍ତ ପୂର୍ବ ଘଟଣା ନାରଦଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ଲକ୍ଷ୍ମୀ ସରସ୍ୱତୀଙ୍କ ସପତ୍ନୀ ଭାବ ଓ ବଂଶୀର ଅଭିଶାପ ଭୋଗ ମୂଳରେ ଏତେ କଥା ଗୋପନ ରହିଗଲା । ଭଗବାନ ଶ୍ରୀକୃଷ୍ଣ ମର୍ତ୍ତ୍ୟପୁରରେ ଜନ୍ମ ନେଇ ଯେଉଁ ପବିତ୍ର ଗୋପଲୀଳା ରଚିଲେ, ଅସୁରମାନଙ୍କୁ ନିଧନ କଲେ, ମହାଭାରତ ଯୁଦ୍ଧ ସୃଷ୍ଟିକଲେ ଏବଂ ଭଗବତ୍ ଗୀତା ମାଧ୍ୟମରେ ଅପୂର୍ବ ଆଧ୍ୟାତ୍ମିକ ଚିନ୍ତାଧାରା ଜଗତରେ କୁହାଇଦେଲେ, ଏସବୁ ମୂଳରେ ବଂଶୀର ଶିଳ୍ପଚାତୁରୀ ବିଦ୍ୟମାନ ।

ମଥୁରାରେ ଷୋଳ ସହସ୍ର ଗୋପୀଙ୍କ ଗହଣରେ କୃଷ୍ଣ ରହିଗଲେ । ଲକ୍ଷ୍ମୀ ସରସ୍ୱତୀ ବୈକୁଣ୍ଠ ଧାମରେ ଏକାକୀ ରହି ବିରହ ଯନ୍ତ୍ରଣା ଭୋଗ କଲେ । ପାଖରେ ବିଷ୍ଣୁ ନଥିବାରୁ ଉଭୟଙ୍କ ମଧ୍ୟରେ ପୂର୍ବ ସପତ୍ନୀ ଭାବ ଆଉ ରହିଲା ନାହିଁ । ସମଧର୍ମ ପ୍ରଭାବରେ ଦୁଇଭଉଣୀ ପରି ସ୍ନେହ ସୌହାର୍ଦ୍ଦ୍ୟରେ ବିରହ ଦିନଗୁଡିକୁ କଟାଇଲେ । ଦିନେ ଦିନେ ଉଭୟେ ଉଭୟଙ୍କ ଉପରେ ଦୋଷ ଲଦି ତାହା ବିଷ୍ଣୁଙ୍କର ଇଚ୍ଛା ବୋଲି ଗ୍ରହଣ କରି ନେଉଥିଲେ । ଦିନେ ଉଭୟେ ଠିକ୍ କଲେ ଯେ ସେମାନେ ଦେବକୀଙ୍କ ପାଖକୁ ଯାଇ– ବିଷ୍ଣୁ କୃଷ୍ଣ ରୂପରେ ଆଉ କେତେଦିନ ରହିବେ– ବୁଝି ଆସିବେ ।

ଦେବକୀ ଉଭୟଙ୍କୁ ଦେଖି ଭାରି ଆନନ୍ଦିତ ହେଲେ । କହିଲେ– ବୈକୁଣ୍ଠପୁରର ବିଷ୍ଣୁ ଓ ମର୍ତ୍ତ୍ୟପୁରର ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ ଭିନ୍ନ ଭିନ୍ନ ରୂପ ମାତ୍ର । କୃଷ୍ଣଙ୍କ ଗୋପଲୀଳା ଅତି ପବିତ୍ର ଯାହାକୁ ମୁନିଋଷିମାନେ ବୁଝିବାକୁ ଅକ୍ଷମ । ତେବେ ତୁମର ଉଦ୍‌ବେଗ ଦେଖି ମୁଁ ତୁମକୁ ସେହି ଗୋପଲୀଳା କଥା ବର୍ଣ୍ଣନା କରିବି । ସେହି ଗୋପଲୀଳାର ପ୍ରେମଭକ୍ତି ମୁକ୍ତି କହିବା କ୍ଷଣି କୃଷ୍ଣ ବଳରାମ ଯେଉଁଠି ଥିଲେ ମଧ୍ୟ ଦୌଡି ଆସିବେ । କିନ୍ତୁ ଗୋଟିଏ କଥା ସେମାନଙ୍କ ଆଗରେ ସେହି ଅବ୍ୟକ୍ତ ପ୍ରେମଲୀଳା ବର୍ଣ୍ଣନା କରି ପାରିବି ନି । ସୁଭଦ୍ରା ଦ୍ୱାର ଦେଶରେ ଜଗି ରହି କୃଷ୍ଣ ବଳରାମଙ୍କୁ ଭିତରକୁ ନଛାଡିଲେ ମୁଁ ସେହି ଗୋପଲୀଳା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବୁଝାଇ କହିବି ।

ସେୟା ହେଲା । ଲକ୍ଷ୍ମୀ ସରସ୍ୱତୀଙ୍କ ଆଗରେ ଜନନୀଦେବୀ ଦେବକୀ ବର୍ଣ୍ଣନା କଲେ । ଗୋପଲୀଳା ବର୍ଣ୍ଣନା କର୍ଣ୍ଣରେ ପଡିଲା ମାତ୍ରେ ହାଜର ହୋଇଗଲେ ରାମକୃଷ୍ଣ । କିନ୍ତୁ ସୁଭଦ୍ରା ଯେ ଦ୍ୱାରଦେଶରେ ଦ୍ୱାରପାଳିକା ନିର୍ବାହ କରୁଛନ୍ତି । ସେମାନଙ୍କୁ ପଥ ଓଗାଳିଲେ, ଭିତରକୁ ଛାଡିଲେ ନାହିଁ । ଦ୍ୱାର ମୁହଁରେ ତିନିହେଁ ଦଣ୍ଡାୟମାନ । ମଝିରେ ସୁଭଦ୍ରା । ଦୁଇଭାଇ ଜଣେ ବାମପାର୍ଶ୍ୱରେ, ଆଉ ଜଣେ ଦକ୍ଷିଣ ପାର୍ଶ୍ୱରେ । କାନ ଡେରି ଗୋପଲୀଳା ଶୁଣୁଛନ୍ତି ।

ଏତିକିବେଳେ ନାରଦ ବୀଣା ବଜାଇ ନାରାୟଣ ନାରାୟଣ କହି ହାଜର ହୋଇଗଲେ ଏବଂ ଏକ ଜାଗାରେ ବଳଭଦ୍ର ସୁଭଦ୍ରା ଜଗନ୍ନାଥଙ୍କୁ ଦେଖି ବହୁଦିନର ତପସ୍ୟା ସାର୍ଥକ ହୋଇଛି ବୋଲି ନିଜକୁ ଧନ୍ୟ ମଣିଲେ । ଆନନ୍ଦରେ ଅଧିର ହୋଇ ଗଦ୍‌ଗଦ୍ ଗଳାରେ କହିଲେ, 'ପ୍ରଭୋ ! ଏହି ତିନି ରୂପ ଜଗତ କେବେ ଦେଖିବ ପ୍ରଭୁ । ଆଦେଶ ଦେବା ହେଉ ।' ଶ୍ରୀକୃଷ୍ଣ କହିଲେ– 'ଆମେ ଏହି ତିନି ରୂପରେ ନୀଳାଚଳ ଧାମରେ ଦାରୁବ୍ରହ୍ମ ବା ଦାରୁଦେବତା ନାମରେ ଅବତୀର୍ଣ୍ଣ ହେବୁ । ତାହାହିଁ ହେବ ଭଗବାନଙ୍କ ନବମ ଅବତାର ବୁଦ୍ଧ ଅବତାର । ତୁମର ବୀଣା ନିନାଦରେ ନିତ୍ୟ ହେବ ମୋର ପୂଜାର୍ଚ୍ଚନା ।' ବୀଣା ବାଦନ କରି ନାରଦ ଶୂନ୍ୟେ ଶୂନ୍ୟେ ବୈକୁଣ୍ଠ ଗମନ କଲେ ।

ଲକ୍ଷ୍ମୀ ସରସ୍ୱତୀ ବୈକୁଣ୍ଠପୁର କକ୍ଷରେ ସ୍ୱ ସ୍ୱ ଆସନରେ ବିଷର୍ଣ୍ଣ ମନରେ ଆସୀନ । ନାରଦ ଉଭୟଙ୍କର ବିଷାଦଭରା ମୁଖ ଅବଲୋକନ କରି କହିଲେ– ଅଳ୍ପଦିନ ପରେ ବିଷ୍ଣୁ ବୌଦ୍ଧ ଅବତାର ରୂପ ପରିଗ୍ରହ କରି ନୀଳାଚଳ ଧାମରେ ଆବିର୍ଭାବ ହେବେ । ସେଠାରେ ତୁମେ ଦୁହେଁ ବି ପୂଜା ପାଇବ । ମୁଁ ସେହି ଅବତାରର ଚିତ୍ରପଟ ଆଗରୁ ତୁମର ବୈଠକ କକ୍ଷରେ ଟାଙ୍ଗି ଦେଇଛି । ବୁଦ୍ଧ ଅବତାର ପରେ ଦଶମ ଅବତାର ରୂପେ କଳ୍କୀ ଅବତାରର ଛବି ବି ସେଠାରେ ଅଛି ।

ଲକ୍ଷ୍ମୀ ସରସ୍ୱତୀ ବିଶ୍ୱକର୍ମା ନିର୍ମିତ ବୌଦ୍ଧ ଓ କଳ୍କିଅବତାର ରୂପ ଦେଖି ଅବାକ୍ ହେଲେ ।

କୈବଲ୍ୟ, ଦଉଡୋଟା, ପୁରୀ



# ଶ୍ରୀମହାପ୍ରସାଦ

ଲାଲମୋହନ ପଟ୍ଟନାୟକ

ହିନ୍ଦୁମାନଙ୍କର ଆରାଧ୍ୟ ତେତିଶି କୋଟି ଦେବଦେବୀଙ୍କୁ ଅର୍ପିତ ନୈବେଦ୍ୟକୁ ଭୋଗ ବା ପ୍ରସାଦ କୁହାଯାଏ । କିନ୍ତୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନିବେଦିତ ନୈବେଦ୍ୟ କେବଳ ପ୍ରସାଦ ନୁହେଁ । ଏହା 'ମହାପ୍ରସାଦ'ରୂପେ ବିବେଚିତ । ଏହା ହେଉଛି ମହାପ୍ରଭୁଙ୍କ 'ମହାପ୍ରସାଦ' ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହାପ୍ରସାଦକୁ ସର୍ବସାଧାରଣ ଛୁଆଁ ଅଛୁଆଁ ସଙ୍ଖୁଡି ବା ଅଇଁଠା ବାରଣ ନକରି ସ୍ଥାନ କାଳ ପାତ୍ର ବିଚାର ନ କରି ପାଇବା ମାତ୍ରେ ସେବନ କରିଥାନ୍ତି। କୋଟି କୋଟି ଭକ୍ତ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଏବଂ ମହାପ୍ରଭୁଙ୍କ ମହାପ୍ରସାଦ ସେବନ ପାଇଁ ପୁରୀ ଆସିଥାନ୍ତି । ମହାପ୍ରସାଦ ସେବନରେ ମହାପାତକ ବିନାଶ ହୋଇଥାଏ । ଜାତି,ବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଏକତ୍ର ମହାପ୍ରସାଦ ସେବନ କରି ପରମ ଆନନ୍ଦ ଓ ତୃପ୍ତି ଅନୁଭବ କରିଥାନ୍ତି। ଏହି ଏକତ୍ୱ ଭାବ ଭ୍ରାତୃଭାବ ହେଉଛି ଜଗନ୍ନାଥ ଚେତନାର ମହତ୍ତ୍ୱ। ଭକ୍ତମାନେ ଏକତ୍ର ମହାପ୍ରସାଦ ସେବନ ଦ୍ୱାରା ଶ୍ରୀଜଗନ୍ନାଥଙ୍କ ସାନିଧ୍ୟ ଲାଭ କରିଥାନ୍ତି। ମହାପ୍ରସାଦ ହେଉଛି 'ଅନ୍ନବ୍ରହ୍ମ' ବା 'ବ୍ରହ୍ମାନ୍ନ'। ଭକ୍ତମାନେ ମହାପ୍ରଭୁଙ୍କଠାରୁ ମହାପ୍ରସାଦକୁ ନ୍ୟୂନ ମନେ କରନ୍ତି ନାହିଁ। ମହାପ୍ରଭୁଙ୍କ ମୁଖନିଃସୃତ ବାଣୀ ହେଉଛି– ମତ୍ କୈବଲ୍ୟ ମମାଧିକମ୍ । ଶ୍ରୀମହାପ୍ରସାଦ ହେଉଛନ୍ତି ମହାଭାବ ଓ ମହା ଆନନ୍ଦର ପ୍ରତୀକ ।

ମହାପ୍ରସାଦର ବ୍ୟବହାରରେ ବାରଣ ନାହିଁ । ଜାତି କୁଟୁମ୍ବ ପର ଆପଣାର ଭେଦ ଏଥିରେ ନାହିଁ, ଭଲମନ୍ଦର ବିଚାର ଏଥିରେ ନାହିଁ। ଭୋଜନରେ ବିଧିକ୍ରମ ବି ନାହିଁ । ମହାପ୍ରସାଦର ସ୍ୱାଦ ଅସ୍ୱାଦ ଓ ତ୍ୟାଜ୍ୟ, ଶୌଚ, ଅଶୌଚର ବାରଣ ନାହିଁ । ଗ୍ରହଣ କରିବି କି ନାହିଁ ଏଥିରେ ଦ୍ୱନ୍ଦ୍ୱ ବି ନାହିଁ । ଏହା ଶୁଦ୍ଧ, ସ୍ୱାଦିଷ୍ଟ ଦିବ୍ୟ ଏବଂ ପୁଣ୍ୟମୟ । ଯାହା ବ୍ରହ୍ମାଦି ଦେବତାମାନଙ୍କ ପାଇଁ ଦୁର୍ଲ୍ଲଭ। ଏହା ଭାଗ୍ୟଲବ୍ଧ ମଧ୍ୟ । ମହାପ୍ରସାଦରେ ଶ୍ରାଦ୍ଧ ଏବଂ ପିଣ୍ଡଦାନ ଯିଏ କରେ ସେ ଗୟା ଶ୍ରାଦ୍ଧ ଫଳ ପାଏ । ତାର ପିତୃପୁରୁଷ ମୁକ୍ତିପ୍ରାପ୍ତ ହୁଅନ୍ତି। ପଦ୍ମପୁରାଣ, ବିଷ୍ଣୁପୁରାଣ, ଭବିଷ୍ୟପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ଭାଗବତ ପୁରାଣ, ବିଷ୍ଣୁଧର୍ମ ପୁରାଣ, ବରାହ ପୁରାଣ, ଗରୁଡ ପୁରାଣ, ସ୍କନ୍ଦପୁରାଣ, ବ୍ରହ୍ମପୁରାଣ, ରୁଦ୍ରଯାମଳ, ବାୟୁପୁରାଣ, ତତ୍ତ୍ୱଯାମଳ, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ଜଗନ୍ନାଥ ପୁରାଣ, ଶ୍ରୀଚୈତନ୍ୟ ଚରଣାମୃତ ପ୍ରଭୃତି ଗ୍ରନ୍ଥରେ ମହାପ୍ରସାଦର ମହିମା ବର୍ଣ୍ଣିତ ହୋଇଛି। ପୌରାଣିକ ଯୁଗରେ ମହାପ୍ରସାଦର ପ୍ରଚଳନ ହୋଇଥିଲେ ମଧ୍ୟ ତାହା ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀରେ ନିୟମିତ ଭାବେ ପ୍ରବର୍ତ୍ତିତ ହୋଇଥିବା ଇତିହାସ କହେ । ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ ମତରେ ଆଦି ଶଙ୍କରାଚାର୍ଯ୍ୟଙ୍କ ପରାମର୍ଶରେ ଯଯାତିକେଶରୀଙ୍କ ସମୟରେ ଶ୍ରୀଜଗନ୍ନାଥଙ୍କ ସେବାନୀତିରେ ଅନ୍ନମହାପ୍ରସାଦ ପ୍ରବର୍ତ୍ତିତ ହୋଇଛି । ଅନ୍ୟ ମତରେ ମହାରାଜା ଅନଙ୍ଗଭୀମ ଦେବ ୧୨୩୦ରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିବା ପରେ (ନାଗରୀ ତାମ୍ର ଶାସନ ଅନୁସାରେ) ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ସମ୍ପାଦନ କରି ସେଥିରେ ଛତିଶା ନିଯୋଗ ପ୍ରବର୍ତ୍ତନ କରିଥିଲେ। ନିଜର ସମସ୍ତ ଅଧିକାର ଶ୍ରୀପୁରୁଷୋତ୍ତମଙ୍କ ନାମରେ ଉତ୍ସର୍ଗ କରି ନିଜେ ତାଙ୍କର ସେବକ (ରାଉତ) ହୋଇରହିଲେ। ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ରାଜାଧିରାଜ ବିଧିରେ ସେବା କରିବା ସଂଗେ ସଂଗେ 'ରାଜଭୋଗ' ପ୍ରବର୍ତ୍ତିତ କରିଥିଲେ। ଆଷାଢ଼ ଶୁକ୍ଳ ନବମୀ ତିଥିରେ ମହାପ୍ରସାଦର ସୃଷ୍ଟି ମହାବେଦୀ ଶ୍ରୀଗୁଣ୍ଡିଚା ମଣ୍ଡପରେ ହୋଇଥିଲା। ଶ୍ରୀଗୁଣ୍ଡିଚା ମନ୍ଦିରରେ ମହାପ୍ରସାଦକୁ 'ଆଡପ ଅବଢା' କୁହାଯାଏ। ନୀଳାଦ୍ରି ବିଜେ ପରେ ଶ୍ରୀମନ୍ଦିରରେ ପ୍ରଥମେ ହେଉଥିବା ମହାପ୍ରସାଦକୁ 'ନୀଳାଚଳ ଅବଢା' କୁହାଯାଏ। ମାଟି କୁଡୁଆରେ ପାକ ହୋଇ ମହାପ୍ରଭୁଙ୍କୁ ନୈବେଦ୍ୟ ହୋଇଥିବା ମହାପ୍ରସାଦକୁ ସେହି ମାଟି କୁଡୁଆରୁ ନ ବାଢି ନିର୍ବିକାର ଭାବେ ଜାତି ବର୍ଣ୍ଣ ନିର୍ବିଶେଷରେ

ସମସ୍ତେ ସ୍ୱହସ୍ତରେ ନେଇ ସେବନ କରିଥାନ୍ତି । ତେଣୁ ମହାପ୍ରସାଦକୁ 'ଅବଢ଼ା' କୁହାଯାଏ । ମହାପ୍ରଭୁଙ୍କର ଶୁଷ୍କ ଅନ୍ନ ମହାପ୍ରସାଦ ସର୍ବସାଧାରଣରେ ନିର୍ମାଲ୍ୟ ଭାବରେ ପୂଜିତ । ଭକ୍ତମାନଙ୍କର ବିଶ୍ୱାସ ମହାପ୍ରଭୁ ସ୍ୱୟଂ ନିର୍ମାଲ୍ୟ କଣିକାରେ ବିଦ୍ୟମାନ ହୋଇ ପୃଥବୀର ସର୍ବତ୍ର ଉପଲବ୍ଧ ହେଉଛନ୍ତି । ନିର୍ମାଲ୍ୟ ହେଉଛି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର 'ଅନ୍ନାବତାର' । ଭକ୍ତର ବିଶ୍ୱାସ ମନୁଷ୍ୟ ବିନା ଜପ ତପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନିର୍ମାଲ୍ୟ କଣିକାଏ ସେବନ କରି ଶରଣାପନ୍ନ ହୋଇ ପାରିଲେ ବିଷ୍ଣୁଲୋକକୁ ଗମନ କରିହୁଏ । ଭକ୍ତ ପ୍ରତ୍ୟହ ନିର୍ମାଲ୍ୟ କିଣିକାଏ ସେବନ କରି ମହାପ୍ରଭୁଙ୍କ ସାନିଧ୍ୟ ଲାଭର ମହାନଭାବ ଅନୁଭବ କରିଥାଏ । ଓଡିଆର ବିଶ୍ୱାସ ଦେହତ୍ୟାଗ ସମୟରେ ନିର୍ମାଲ୍ୟ ପାଣି ଟୋପାଏ ପାଇଲେ ମୁକ୍ତି ମିଳିଥାଏ । ମହାପ୍ରସାଦ ବା ନିର୍ମାଲ୍ୟ ସେବାରେ ଓଡ଼ିଆ ଘରେ ସମସ୍ତ ଶୁଭକାର୍ଯ୍ୟରେ ଶୁଭାରମ୍ଭ ହୋଇଥାଏ ।

ଶ୍ରୀଜଗନ୍ନାଥଙ୍କ ନିର୍ମାଲ୍ୟ ହେଉଛି ଅମୃତ ସ୍ୱରୂପ । ସାଧାରଣତଃ ଶୁଖିଯାଇଥିବା ଅନ୍ନ ମହାପ୍ରସାଦ ନିର୍ମାଲ୍ୟ ରୂପେ ଗ୍ରହଣ କରାଯାଇଥାଏ । ନିର୍ମାଲ୍ୟ ପ୍ରସ୍ତୁତି ପାଇଁ ଶ୍ରୀମନ୍ଦିର ପାକଶାଳାରେ ସ୍ୱତନ୍ତ୍ର ପାକର ମଧ୍ୟ ବ୍ୟବସ୍ଥା ଅଛି । ବଡଦେଉଳର ରୋଷଘରେ ନିର୍ଦ୍ଦିଷ୍ଟ ଚୂଲିରେ ନିର୍ମାଲ୍ୟ ପାଇଁ ସ୍ୱତନ୍ତ୍ର ଭାବେ ଅନ୍ନ ପାକ କରନ୍ତି । ଶ୍ରୀବିଗ୍ରହମାନଙ୍କୁ ଭୋଗ ଅର୍ପଣ ବେଳେ ଏହି ନିର୍ମାଲ୍ୟ ଅନ୍ନ ମଧ୍ୟ ଭୋଗ ହୁଏ । ଭୋଗ ହୋଇଥିବା ଏହି ନିର୍ମାଲ୍ୟ ଅନ୍ନକୁ ଶ୍ରୀମନ୍ଦିର ବାହାର ବେଢାରେ ଦକ୍ଷିଣ–ପଶ୍ଚିମ ଭାଗରେ ଥିବା ନୀଳାଚଳ ଉପବନ ମଧ୍ୟରେ ନିର୍ମାଲ୍ୟ ଖଳା ବା ନିର୍ମାଲ୍ୟ ମଣ୍ଡପ (ଏକ ସୁଉଚ୍ଚ ମଣ୍ଡପ)ରେ ଶୁଖାଯାଇ ନିର୍ମାଲ୍ୟ ପ୍ରସ୍ତୁତ କରାଯାଏ । ଶ୍ରୀମନ୍ଦିର ନିର୍ମାଲ୍ୟ ମାହାଲ ବର୍ଷକୁ ଥରେ ନିଲାମ ଦିଆଯାଇଥାଏ । ନିର୍ମାଲ୍ୟ ମାହାଲ ନିଲାମ ନେଇଥିବା ବ୍ୟକ୍ତି ନିର୍ମାଲ୍ୟ ଅନ୍ନ ପାକ କରାଇବା ଏବଂ ବିକ୍ରି କରିବାର ଅଧିକାର ପାଇଥାନ୍ତି । ଏହି ନିର୍ମାଲ୍ୟ ମଣ୍ଡପ ସମ୍ମୁଖ ଭାଗରେ ନିର୍ମାଲ୍ୟ ମହାବୀର (ପଞ୍ଚମୁଖୀ ମହାବୀର) ବିରାଜମାନ ହୋଇଛନ୍ତି ଏକ ସ୍ୱତନ୍ତ୍ର ମନ୍ଦିରରେ । ନିର୍ମାଲ୍ୟଖଳା ହେଉଛି ଶ୍ରୀମନ୍ଦିର ପରିସରରେ ଏକ ମହାନ ପବିତ୍ର ସ୍ଥାନ । ମହାପ୍ରଭୁଙ୍କ ମୂଳପାଣ୍ଠିକୁ ଦାନ କରିଥିବା ଦାତାମାନଙ୍କର ନାମ ମାର୍ବଲ ଫଳକରେ ଖୋଦିତ କରାଯାଇ (ସ୍ମୃତିଫଳକ) ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଏହି ନିର୍ମାଲ୍ୟ ମଣ୍ଡପରେ ନିର୍ମାଲ୍ୟ ମହାବୀରଙ୍କ ସମ୍ମୁଖରେ ସ୍ଥାପନ କରାଯାଉଅଛି । ନିର୍ମାଲ୍ୟ ମହାବୀର ହେଉଛନ୍ତି ନିର୍ମାଲ୍ୟ ଖଳାର ରକ୍ଷକ ।

ମହାପ୍ରଭୁଙ୍କ ଭୋଜନ ନୀତିକୁ ସାଧାରଣ ଭାଷାରେ ମଣୋହି କୁହାଯାଏ । ରତ୍ନସିଂହାସନରେ ବିରାଜମାନ କରିଥିବା ମହାପ୍ରଭୁଙ୍କ ଭୋଗକୁ 'ଅମୃତମଣୋହି ଭୋଗ'କୁହାଯାଏ । ଅମୃତମଣୋହି ଭୋଗର ଅନ୍ୟନାମ 'ରାଜଭୋଗ' । ପ୍ରତ୍ୟହ ମହାପ୍ରଭୁଙ୍କୁ ପାଞ୍ଚଥର 'ରାଜଭୋଗ' ଲାଗି ହୋଇଥାଏ । (୧) ଗୋପାଳ ବଲ୍ଲଭ, (୨) ସକାଳ ଧୂପ, (୩) ମଧ୍ୟାହ୍ନ ଧୂପ, (୪) ସନ୍ଧ୍ୟା ଧୂପ ଓ (୫) ବଡସିଂହାର ଧୂପ । 'ରାଜଭୋଗ' ବା କୋଠଭୋଗ ବ୍ୟତୀତ ଅନ୍ୟ ଏକ ଭୋଗ ହୁଏ ଯାହାର ନାମ 'ଭୋଗମଣ୍ଡପ ଭୋଗ' । ଭୋଗମଣ୍ଡପ ଭୋଗ ବିଭିନ୍ନ ମଠ ସେବାୟତ ଓ ବ୍ୟକ୍ତି ବିଶେଷଙ୍କ ବରାଦ ଅନୁସାରେ ଓ ବିକ୍ରିୟ ପାଇଁ ହୋଇଥାଏ । ଭୋଗମଣ୍ଡପ ଭୋଗ ପାଇଁ ଶ୍ରୀମନ୍ଦିର ପ୍ରଶାସନ କୌଣସି ଖର୍ଚ୍ଚ ବହନ କରନ୍ତି ନାହିଁ । ରାଜଭୋଗର ସମସ୍ତ ଖର୍ଚ୍ଚ ଶ୍ରୀମନ୍ଦିର ପ୍ରଶାସନ ବହନ କରିଥାନ୍ତି । ଅମୃତମଣୋହି ଭୋଗ ବା ରାଜଭୋଗରୁ ମହାପ୍ରଭୁଙ୍କ ସେବକମାନେ– ଗଜପତିଙ୍କଠାରୁ ଆରମ୍ଭ କରି ସମସ୍ତ ପାଳିଆ ସେବକ– ପ୍ରତ୍ୟହ ପରମ୍ପରାକ୍ରମେ 'ଖେଇ' ପାଇଥାନ୍ତି । ଅମୃତମଣୋହି ଭୋଗର ଖର୍ଚ୍ଚ ତୁଳାଇବା ପାଇଁ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ମାର୍ଫତରେ ଭକ୍ତମାନେ ଦେଇଥିବା ସମ୍ପତ୍ତିକୁ ଅମୃତମଣୋହି ଖଞ୍ଜା କୁହାଯାଏ ।

ଶ୍ରୀମନ୍ଦିରରେ ଦୈନନ୍ଦିନ ଭୋଗ ବ୍ୟତୀତ କେତେକ ବିଶେଷ ଦିନରେ ବିଶେଷ ପ୍ରକାରର ଭୋଗ ହୁଏ । କାର୍ତ୍ତିକ ମାସରେ ଏକ ବିଶେଷ ଧୂପ ହୁଏ । ସକାଳ ଧୂପ ସମୟରେ ଏହି ବିଶେଷ ଧୂପ ବା ବାଳଧୂପ ବା ବାଳଭୋଗ ହୁଏ । ବାଳଧୂପରେ ମୁଖ୍ୟତଃ ଗରୁଡଲିଆ (ଅଦାମିଶା ଦୋଭଜାଲିଆ) କୋରା, ନଡିଆ ଖୁଦି ଖଇ, ପାଚିଲା କଦଳୀ, ସେଓ, କାକୁଡି, କମଳା, ପଇଡ ଆଦି ଭୋଗ ହୋଇଥାଏ । ଏହି ଧୂପ ସମୟରେ ରାଧାକାନ୍ତ ମଠ ବୈଷ୍ଣବମାନେ ନାଟମଣ୍ଡପରେ ସଂକୀର୍ତ୍ତନ କରିଥାନ୍ତି । ସେହିପରି ପୌଷମାସ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଗୋପାଳ ବଲ୍ଲଭ ଭୋଗ ସହ ଏକ ବିଶେଷ ଭୋଗ ପହିଲି ଭୋଗ ହୋଇଥାଏ । ପହିଲି ଭୋଗରେ ଚୁଡାଭଜା, ଛତୁଆ, ନାଡି, ବଡି ବଡା, କାକରା, ଗଇଁଠା, ମଣ୍ଡା, ଏଣ୍ଡୁରି, ଚୁଡାପୁଆ, ଅମାଲୁ, ଝଡେଇନେଦା, ଝିଲି, କାନ୍ତି, ନଡୁଗଜା, ନଳିମୁଗେଇ, ଆରିସା ଆଦି ପ୍ରାୟ ତେଇଶି ପ୍ରକାର ଭୋଗ ସାମଗ୍ରୀ ନୈବେଦ୍ୟ ହୋଇଥାଏ । ପଣାସଂକ୍ରାନ୍ତି (ମହାବିଷୁବସଂକ୍ରାନ୍ତି) ଦିନ ଛତୁଆ ଓ ପଣା ଭୋଗ ହୋଇଥାଏ । ମକର ଚାଉଳ ମକର ସଂକ୍ରାନ୍ତି ଦିନ ଭୋଗ ହୁଏ । ଦୋଳଯାତ୍ରା ସମୟରେ କଷି ଆମ୍ବ ଭୋଗ ଲାଗେ । ବଉଳ ଓ ଗଇଁଠା ପିଠା ବଉଳ ଅମବାସ୍ୟା ଦିନ ଭୋଗ ହୁଏ । ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରଶାସନ ଦ୍ୱାରା ପ୍ରାୟୋଜିତ ତଥା ଓଡିଶା ସରକାରଙ୍କ ଦ୍ୱାରା ଅନୁମୋଦିତ ଦୁଇଗୋଟି ସ୍ୱତନ୍ତ୍ର ଦାନ ଯୋଜନାର ବ୍ୟବସ୍ଥା କରାଯାଇଅଛି । ସେଥିରୁ ଗୋଟିଏ ହେଉଛି ଅମୃତମଣୋହି

(ରାଜଭୋଗ) ଦାନ ଯୋଜନା ଓ ଅନ୍ୟଟି ହେଉଛି ମୂଳପାଣ୍ଠି ଦାନ ଯୋଜନା । ଏହି ଯୋଜନାରେ ଦାନଲବ୍ଧ ଅର୍ଥ କୌଣସି ଜାତୀୟକରଣ ବ୍ୟାଙ୍କରେ ଅଥବା ନିର୍ଭରଯୋଗ୍ୟ ଆର୍ଥିକ ସଂସ୍ଥାରେ ଜମା ରହେ ଏବଂ ସେଥିରୁ ମିଳୁଥିବା ସୁଧରେ ଦାତାଙ୍କ ଦ୍ୱାରା ନିର୍ଦ୍ଧାରିତ ଦିନରେ ମହାପ୍ରଭୁଙ୍କୁ ରାଜଭୋଗ ଅର୍ପଣ କରାଯାଏ । ଏହି ଯୋଜନାରେ ଦାନ କରୁଥିବା ବ୍ୟକ୍ତିମାନଙ୍କୁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ କେତେକ ବିଶେଷ ସୁବିଧା ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ଶ୍ରୀଜୀଉଙ୍କ ଭୋଗ ପୂଜା ନିର୍ଦ୍ଦିଷ୍ଟ ଶାସ୍ତ୍ରୀୟ ପଦ୍ଧତିରେ ହୋଇଥାଏ । ଗୋପାଳବଲ୍ଲଭ ଭୋଗମଣ୍ଡପ ଓ ବଡସିଂହାର ଧୂପ ପଞ୍ଚୋପଚାର ପୂଜାବିଧିରେ ହୁଏ ଏବଂ ସକାଳ ଧୂପ ମଧ୍ୟାହ୍ନ ଧୂପ ସନ୍ଧ୍ୟାଧୂପ ଷୋଡଶ ଉପଚାର ବିଧିରେ ହୁଏ । ଶ୍ରୀଜଗନ୍ନାଥ ମନ୍ଦିରରେ ଅନୁସୃତ ବା ପ୍ରଚଳିତ ପୂଜା ପଦ୍ଧତି କେବଳ ପୂଜାପଣ୍ଡାମାନଙ୍କୁ ଗୋଚର । ଏହି ଗୋପନୀୟ ଏବଂ ଅପ୍ରକାଶ୍ୟ । ଗୋପାଳବଲ୍ଲଭ ଭୋଗରେ କୌଣସି ଅନ୍ନ ବ୍ୟଞ୍ଜନ ନଥାଏ । ଗୋପାଳବଲ୍ଲଭ ଭୋଗ ବଲ୍ଲଭ ପିଣ୍ଡି (ଅନବସର ପିଣ୍ଡି)ରେ ଏବଂ ସକାଳ ଧୂପ ମଧ୍ୟାହ୍ନ ଧୂପ । ସନ୍ଧ୍ୟାଧୂପ ଓ ବଡସିଂହାର ଧୂପ ଭୋଗ ଗର୍ଭଗୃହରେ ରତ୍ନସିଂହାସନ ସମ୍ମୁଖରେ ପୋଖରିଆରେ ବଢା ହୁଏ । ଭୋଗମଣ୍ଡପ ଭୋଗ ପୂଜା ଭୋଗମଣ୍ଡପରେ ହୁଏ ।

ବଡଦେଉଳରେ ଗୋପାଳବଲ୍ଲଭ ଭୋଗ ବାଢିବା ପରେ ଭକ୍ତମାନଙ୍କର ଅମୁଣିଆ ଭୋଗ ଫଳ, ମୂଳ, ଶୁଖିଲି ଦ୍ରବ୍ୟ ନାଟ ମନ୍ଦିରରେ ଉତ୍ତର ପାର୍ଶ୍ୱରେ ଗୋଟିଏ ସ୍ତମ୍ଭ ମୂଳରେ (ଗରୁଡ ସ୍ତମ୍ଭର ସମ୍ମୁଖ ଭାଗରେ ଉତ୍ତରପଟକୁ) ଜଣେ ପୂଜାପଣ୍ଡା ଭୋଗ କରିଥାନ୍ତି । ଏହି ସ୍ତମ୍ଭ ମୂଳରେ ଛିଡା ହେଲେ କେବଳ ବଡଠାକୁର ଶ୍ରୀବଳଭଦ୍ରଙ୍କ ମୁଖାରବିନ୍ଦ ଦେଖାଯାଏ । ସେହିଠାରେ ଭୋଗ ପୂଜା ହୁଏ । ଏହା ସର୍ପା ମଣୋହି ବା ସର୍ବାମଣୋହି ଭାବେ ଅଭିହିତ । ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ଏ ସମ୍ବନ୍ଧରେ ବର୍ଣ୍ଣନା ଅଛି । ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ସହିତ ଶ୍ରୀଚୈତନ୍ୟଙ୍କ ପ୍ରଶ୍ନୋତ୍ତରରେ କୁହାଯାଇଛି ଅମଣିଆ ଦ୍ରବ୍ୟ ବଡଠାକୁର ଶ୍ରୀବଳଭଦ୍ରଙ୍କୁ ସମର୍ପଣ କଲେ ଶ୍ରୀବଳଭଦ୍ର ମା ସୁଭଦ୍ରାଙ୍କୁ ଦେବେ । ଦେବୀ ସୁଭଦ୍ରା ତାହା ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବେ । ସୁତରାଂ ରତ୍ନସିଂହାସନ ସମ୍ମୁଖରେ ତଳେ ବଡଠାକୁରଙ୍କୁ ମୂଳ କରି ସୁଭଦ୍ରା କ୍ରମରେ ସମର୍ପିତ ନୈବେଦ୍ୟ ଶ୍ରୀଜଗନ୍ନାଥଙ୍କ ମଣୋହି ଶେଷରେ ମହାପ୍ରସାଦରେ ପରିଣତ ହୋଇଥାଏ । ଯଜ୍ଞାଗ୍ନି ଆବହନ ପୂର୍ବକ ସ୍ୱତନ୍ତ୍ର ପଦ୍ଧତିରେ ପାକ ହୋଇ ଦାରୁବ୍ରହ୍ମଙ୍କ ରତ୍ନସିଂହାସନ ସମ୍ମୁଖରେ ସମର୍ପିତ ନୈବେଦ୍ୟ ମା ବିମଳାଙ୍କୁ ସମର୍ପଣ କରାଯାଇଥାଏ । ଭୋଗ ପରେ ପାଳିଆ ପନ୍ତି ବଡୁ ବଡବାଡ (ଶ୍ରୀବଳଭଦ୍ରଙ୍କ) ଥାଳି ବିମଳାଙ୍କୁ ସମର୍ପଣ ପାଇଁ ନେଇଥାନ୍ତି । ପ୍ରତ୍ୟହ ମା ସୁଭଦ୍ରାଙ୍କ ଅଧରମାଳା ଆସି ଭୁବନେଶ୍ୱରୀଙ୍କୁ ଲାଗି ହୋଇଥାଏ । ସକାଳ ଧୂପରୁ ମହାପ୍ରଭୁଙ୍କ ବାଡରୁ ଖେଜଡି ଆଣି ସରସ୍ୱତୀଙ୍କୁ ସମର୍ପଣ କରାଯାଇଥାଏ । ଶ୍ରୀମନ୍ଦିରର ମହାପ୍ରସାଦ ଅନ୍ୟ ଦେବାଦେବୀଙ୍କୁ ମଧ୍ୟ ସମର୍ପଣ କରାଯାଇଥାଏ । ଏହା ବିମଳା ମନ୍ଦିରର ପାର୍ଶ୍ୱ ଦେବଦେବୀ– ଦଶମହାବିଦ୍ୟା କାର୍ତ୍ତିକେୟ, ଛାୟାମାୟାଙ୍କ ମୁକ୍ତି ମଣ୍ଡପରେ କାଳୀ, କୁତ୍ତାମ ଚଣ୍ଡୀ ଓ ବସନ୍ତେଇଙ୍କୁ ମଧ୍ୟ ସମର୍ପଣ କରାଯାଏ । ଶ୍ରୀଗୁଣ୍ଡିଚା ଯାତ୍ରାରେ ରଥାରୂଢ ସମୟରେ ମହାପ୍ରଭୁଙ୍କୁ ସମର୍ପିତ କରାଯାଉଥିବା ଭୋଗକୁ ସର୍ପାମଣୋହି ବା ସର୍ବମଣୋହି କୁହାଯାଏ । ରଥାରୂଢ ଶ୍ରୀଜୀଉମାନଙ୍କୁ କେବଳ ଶୁଖିଲି ଦ୍ରବ୍ୟ କୋରା, ଖଇ, ଶାକର, ପାଚିଲା ଫଳ ଇତ୍ୟାଦି ଭୋଗ ହୋଇଥାଏ । ଶ୍ରୀମନ୍ଦିର ନୀଳଚକ୍ର ଦୃଶ୍ୟମାନ ହେଉଥିବା ଯେକୌଣସି ସ୍ଥାନରେ ନୀଳଚକ୍ରଙ୍କ ଉଦ୍ଦେଶ୍ୟରେ ନୈବେଦ୍ୟ ସମର୍ପିତ ହେଲେ ଚକ୍ରମଣୋହି କୁହାଯାଏ । ଯେକୌଣସି ବିଶେଷ ପରିସ୍ଥିତିରେ ମହାପ୍ରଭୁଙ୍କୁ ଭୋଗ ହେଉଥିବା ନିସଙ୍ଖୁଡି ଭୋଗକୁ ଶୀତଳ ମଣୋହି କୁହାଯାଏ । ନିର୍ମାଲ୍ୟର ଅନ୍ୟ ନାମ କୈବଲ୍ୟ । ମହାପ୍ରଭୁଙ୍କ ଲାଗି ହୋଇ ମଇଲମ ହୋଇଥିବା ଚନ୍ଦନ, କର୍ପୁର, ତୁଳସୀ, ପୁଷ୍ପ, କରାଳ ଚନ୍ଦନକୁ ମଧ୍ୟ କୈବଲ୍ୟ ରୂପେ ପ୍ରକାଶ କରାଯାଏ । କୌଣସି ଆସନରେ ବସି ମହାପ୍ରସାଦ ସେବନ କରାଯାଏ ନାହିଁ । ମହାପ୍ରସାଦକୁ ଅତି ପବିତ୍ର ମନେକରି ଭକ୍ତ ଯେଉଁ ହସ୍ତରେ ମହାପ୍ରସାଦ ସେବନ କରିଥାଏ, ସେହି ହସ୍ତକୁ ମସ୍ତକରେ ପୋଛି ଦେଇଥାଏ । ଏହି ପ୍ରଥା ବୈଦିକ ଯୁଗରୁ ପ୍ରଚଳିତ । ବୈଦିକ ଯୁଗରେ ଋଷିମାନେ ଯଜ୍ଞ ଶେଷରେ ଚରୁ ଅନ୍ନ ସେବନ କରି ହାତ ନ ଧୋଇ ସେହି ହାତକୁ ନିଜ ମୁଣ୍ଡରେ ପୋଛି ଦେଇଥାନ୍ତି । ଉତ୍କଳୀୟ ସଂସ୍କୃତିର ମର୍ମ ହେଉଛି ମହାପ୍ରସାଦର ଦିବ୍ୟତ୍ୱରେ ବିଶ୍ୱାସ ଏବଂ ମହାପ୍ରଭୁ ଶ୍ରୀଜଗନ୍ନାଥ ଉପରେ ଆସ୍ଥା ।

ରୋଷଘର (ପାକଶାଳା): ଶ୍ରୀଜୀଉଙ୍କ ଭୋଗ ସାମଗ୍ରୀ ପ୍ରସ୍ତୁତ କରିବା ପାଇଁ ଶ୍ରୀମନ୍ଦିର ବାହାର ବେଢାରେ ଦକ୍ଷିଣ ପୂର୍ବ କୋଣରେ ଏକ ବିରାଟ ରୋଷଘର ଅଛି । ଏହା ବ୍ୟତୀତ ଅନ୍ୟ ଏକ ରୋଷଘର ସତ୍ୟନାରାୟଣ ମନ୍ଦିର ପାଖରେ ଅଛି, ଯାହାକୁ ମେରଦା ରୋଷ କୁହାଯାଏ । ବର୍ତ୍ତମାନର ମୁଖ୍ୟ ରୋଷଘର ତିଆରି ହେବା ସମୟରେ ମେରଦା ରୋଷରେ ଭୋଗ ସାମଗ୍ରୀ ପ୍ରସ୍ତୁତି ହେଉଥିଲା । ଏବେ ମେରଦା ରୋଷରେ ରୋଷେଇ ନହୋଇ ଏହା ଏକ ସରଘର ରୂପେ ବ୍ୟବହୃତ ହେଉଛି । ମହାଲକ୍ଷ୍ମୀଙ୍କ ଏବଂ ସୂର୍ଯ୍ୟଙ୍କର ମଧ୍ୟ ସ୍ୱତନ୍ତ୍ର ରୋଷଘର ଅଛି । ଏହି ରୋଷଘରେ ମହାଲକ୍ଷ୍ମୀଙ୍କର ଏବଂ ବଡଦେଉଳ ବେଢାରେ ବିଜେ କରିଥିବା ଅନ୍ୟ ଦେବାଦେବୀଙ୍କ ପାଇଁ ଭୋଗ ପ୍ରସ୍ତୁତ କରାଯାଏ । ମହାଲକ୍ଷ୍ମୀ ଓ ବେଢାରେ ବିଜେ କରିଥିବା ଅନ୍ୟ ଦେବାଦେବୀଙ୍କୁ କେବଳ ନିସଙ୍ଖୁଡି ଭୋଗ ଅର୍ପଣ କରାଯାଏ । ମୁଖ୍ୟ ରୋଷଘରେ ମହାଲକ୍ଷ୍ମୀଙ୍କ ଶାସ୍ତ୍ରୀୟ ବିଧି ବିଧାନ

ଅନୁସାରେ ପାଚିକା ଭାବେ ଆବାହନ କରିବା ପରେ ଶ୍ରୀଜଗନ୍ନାଥଙ୍କ ନୈବେଦ୍ୟ ପ୍ରସ୍ତୁତି ପାଇଁ ପାକକ୍ରିୟା ଆରମ୍ଭ ହୁଏ । କିନ୍ତୁ ଏହି ରୋଷଘରେ ପ୍ରସ୍ତୁତ ନୈବେଦ୍ୟ ମହାଲକ୍ଷ୍ମୀ ଗ୍ରହଣ କରନ୍ତି ନାହିଁ। ପଣ୍ଡିତମାନେ କହନ୍ତି ମହାଲକ୍ଷ୍ମୀ ପରମବୈଷ୍ଣବୀ ହେତୁ ଚାଉଳ କିମ୍ବା ବିରିରେ ପ୍ରସ୍ତୁତ କୌଣସି ଭୋଗ ତାଙ୍କୁ ଅର୍ପଣ କରାଯାଏ ନାହିଁ। କେବଳ ତାଙ୍କ ନିଜ ରୋଷ ଘରେ ପ୍ରସ୍ତୁତ ଅଟା ଏବଂ ସୁଜିରେ ପ୍ରସ୍ତୁତ ଲଡୁ ମହନଭୋଗ , କାକରା, ଗଜା ଇତ୍ୟାଦି ଭୋଗ ମହାଲକ୍ଷ୍ମୀଙ୍କୁ ଅର୍ପଣ କରାଯାଏ। ବଡ ଦେଉଳ ବେଢାରେ ଥିବା ବର୍ତ୍ତମାନର ମୁଖ୍ୟ ରୋଷଘରଟି ରାଜା ଦିବ୍ୟସିଂହଙ୍କ ଦେବଙ୍କ ରାଜତ୍ୱ କାଳରେ ତାଙ୍କର ପ୍ରଧାନମନ୍ତ୍ରୀ ଗୋବିନ୍ଦଙ୍କ ତତ୍ତ୍ୱାବଧାନରେ ରାମଚନ୍ଦ୍ର ରାୟ ତାଙ୍କ ନିଜ ଖର୍ଚ୍ଚରେ ତୋଳାଇଥିବା କୁହାଯାଏ। ରୋଷଘରଠାରୁ ନାଟ ମନ୍ଦିର ପର୍ଯ୍ୟନ୍ତ ଛାତ ଥିବା ବାଟଟି ଅଚିନ୍ତା ପହଣ୍ଡ ନାମରେ ନାମିତ । ଏହି ଅଚିନ୍ତା ପହଣ୍ଡ ବାଟରେ ରୋଷରେ ପାକ ହୋଇଥିବା ସାମଗ୍ରୀ ଭୋଗ ଦେବା ପାଇଁ ଦେଉଳ ଗର୍ଭଗୃହ ଭିତରକୁ ଓ ଭୋଗମଣ୍ଡପକୁ ନିଆଯାଇଥାଏ। ମନ୍ତ୍ରୀ ଭଗବାନ ଭ୍ରମରବର ରାୟ ଏହା ତୋଳାଇ ଥିଲେ। ରୋଷଘରୁ ଦକ୍ଷିଣ ପଟେ ମେଘନାଦ ପ୍ରାଚୀର ବାହାରକୁ ଗୋଟିଏ ନଳା ଅଛି, ଏହି ନଳା ବାଟେ ରୋଷଘରୁ ପେଜ ମେଘନାଦ ପ୍ରାଚୀର ଦକ୍ଷିଣ ପଟେ ଥିବା ପେଜକୁଣ୍ଡକୁ ବୋହିଯାଏ। ଏହି ନଳାକୁ ପେଜନଳା କୁହାଯାଏ। ଏହି କୁଣ୍ଡରୁ ଶହ ଶହ ଗାଈଗୋରୁ ପେଜ ପିଉଥିବା ଦେଖାଯାଏ।

ଏହି ରୋଷ ଘରର ଲମ୍ୱ ପ୍ରାୟ ୧୩୫ ହାତ, ଓସାର ପ୍ରାୟ ୧୦୦ ହାତ ଓ ଉଚ୍ଚତା ପ୍ରାୟ ୩୫ ହାତ। ରୋଷରେ ତିନି ପ୍ରକାର ଚୁଲିରେ ଭୋଗ ସାମଗ୍ରୀ ପାକ ହୁଏ । ସେଗୁଡିକ ହେଲା ଅନ୍ନ ଚୁଲି, ଅହିଆ ଚୁଲି ଓ ପିଠାଚୁଲି । ଏଥିରୁ କେତେକ ଚୁଲି ନଅ ଝିଙ୍କା ଓ କେତେକ ଛଅ ଝିଙ୍କା ବିଶିଷ୍ଟ । ଥରକେ ଚୁଲିରେ ନଅଟି ଲେଖାଏଁ କୁଡୁଆ ବସି ପାକ ହୋଇଥାଏ। ଚାରି ପାକରେ ଅର୍ଥାତ୍ ଭୀମପାକ, ନଳପାକ ଓ ସୌରି ପାକ ଓ ଗୌରିପାକରେ ପାକ ହୁଏ । ମାଟିପାତ୍ର (କୁଡିଆ)ରେ ପାକ ହୁଏ ଏବଂ ପାକ ହୋଇଥିବା ସାମଗ୍ରୀ କୁଡୁଆରେ ବଢା ହୁଏ । ମାଟି ପାତ୍ରରେ ରନ୍ଧା ହେବା ଏବଂ ବଢା ହେବା ଶ୍ରୀମନ୍ଦିରରେ ଏକ ସ୍ୱତନ୍ତ୍ର ବ୍ୟବସ୍ଥା । ନୀଳାଦ୍ରି ମହୋଦୟରେ ବର୍ଣ୍ଣନା ଅନୁସାରେ ଶ୍ରୀମନ୍ଦିରରେ ବ୍ୟବହାର ହେବା ପାଇଁ କେବଳ ନାଲି ବର୍ଣ୍ଣର କୁଡୁଆ ଆବଶ୍ୟକ। କଳା କୁଡୁଆରେ ଭୋଗ ହେବା ନିଷେଧ।

ରୋଷରେ ପ୍ରତ୍ୟେକ ଥର ନୂଆ କୁଡୁଆ ବ୍ୟବହାର ହୁଏ। ଚୁଲିରୁ ଥରେ କୁଡୁଆ କଢା ହୋଇଗଲେ ତାହା ଆଉଥରେ ଚୁଲିରେ ବସେ ନାହିଁ। ଯେଉଁ କୁଡୁଆରେ ପାକ ହୁଏ, ତାହା ଚୁଲିର ଅଗ୍ନିସହ ସିଧା ସଂସ୍ପର୍ଶରେ ଆସେ ନାହିଁ । ଚୁଲିର ଅଗ୍ନି ଏବଂ ରନ୍ଧା ହେଉଥିବା କୁଡୁଆ ମଝିରେ ଜଳପୂର୍ଣ୍ଣ କୁଡୁଆ ରଖାଯାଇଥାଏ। ପାକ ସାଧାରଣତଃ ଜଳର ବାଷ୍ପରେ ବା ବାମ୍ଫରେ ହୋଇଥାଏ। କେତେକ ବ୍ୟଞ୍ଜନ ଅହିଆ ଚୁଲିର ନିଆଁରଡ ଉପରେ ବସାଯାଇ କରାଯାଏ।

ଶ୍ରୀମନ୍ଦିର ପାକଶାଳାରେ ଇନ୍ଧନ ଭାବେ କେବଳ କାଠ ବ୍ୟବହାର କରାଯାଏ । ମୁଖ୍ୟତଃ ଝାଉଁ କାଠ ବ୍ୟବହାର କରାଯାଏ। କାରଣ ଝାଉଁକାଠ ନିଆଁରଡ ବେଶୀ ସମୟ ରହେ। ରାଜ୍ୟ ଜଙ୍ଗଲ ବିଭାଗ ଏହିସବୁ କାଠ ଶ୍ରୀମନ୍ଦିର ପ୍ରଶାସନଠାରୁ ଉଚିତ୍ ମୂଲ୍ୟ ନେଇ ଯୋଗାଇଥାନ୍ତି।

ରୋଷରେ ବ୍ୟବହାର ହେବା ପାଇଁ ରୋଷଘର ନିକଟରେ ଗଙ୍ଗା, ଯମୁନା ନାମରେ ଦୁଇଟି କୂଅ ଅଛି। କୂଅର ଗୋଲେଇ ପ୍ରାୟ କୋଡିଏ ଫୁଟରୁ ଅଧିକ ଓ ଗଭୀରତା ଏକଶହ ଫୁଟରୁ ଅଧିକ। ଏହି କୂଅର ଜଳରେ ରୋଷଘରେ ସମସ୍ତ ଭୋଗ ସାମଗ୍ରୀ ପ୍ରସ୍ତୁତ କରାଯାଏ ।

ପ୍ରତ୍ୟୁଷରେ ରୋଷ ପାଇକଙ୍କ ତତ୍ତ୍ୱାବଧାନରେ ଅଙ୍ଗାରୁଆ ସେବକ ଓ ଧୋପଖାଳିଆ ସେବକମାନେ ରୋଷଘର ପରିଷ୍କାର କରିବାପରେ ରୋଷ ହୋମ ନୀତି ସମ୍ପାଦନା କରାଯାଏ । ଶ୍ରୀଜୀଉମାନେ ବେଶ ହେଉଥିବା ସମୟରେ ପୂଜାପଣ୍ଡା ରୋଷ ହୋମ ନୀତି ସମ୍ପାଦନ କରିଥାନ୍ତି।

ରୋଷର ଅଗ୍ନିକୁ ବୈଷ୍ଣବାଗ୍ନି କୁହାଯାଏ। ବୈଷ୍ଣବାଗ୍ନି କେବେ ହେଲେ ନିର୍ବାପିତ ନ ହୋଇ ହଜାରେ ବର୍ଷରୁ ଅଧିକ କାଳରୁ ପ୍ରଜ୍ୱଳିତ ଅଛି। ଇନ୍ଦ୍ରନୀଳ ପୁରାଣରେଏହି ବୈଷ୍ଣବାଗ୍ନି ସମ୍ପର୍କରେ ବର୍ଣ୍ଣନା ଅଛି। ଶ୍ରୀମନ୍ଦିର ବୈଷ୍ଣବାଗ୍ନି ସଂସାରରେ ସବୁଠାରୁ ପବିତ୍ର ଅଗ୍ନି ।

ଶ୍ରୀମନ୍ଦିରରେ ମହାପ୍ରଭୁଙ୍କୁ ଯେତେ ପ୍ରକାରର ଓ ଯେତେ ପରିମାଣର ବ୍ୟଞ୍ଜନ ପ୍ରତ୍ୟହ ଭୋଗ ହୁଏ ସେଭଳି ସାରା ଦୁନିଆରେ ଅନ୍ୟ କୌଣସି ଦେବାଳୟରେ ହୁଏ ନାହିଁ । ତେଣୁ ବଡଦେଉଳରେ ମହାପ୍ରଭୁ ହେଉଛନ୍ତି ଛପନ ଭୋଗୀ ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ଏବଂ ମହାପ୍ରସାଦ ସେବନ ସାରା ବିଶ୍ୱରେ କୋଟି କୋଟି ଜଗନ୍ନାଥ ଭକ୍ତଙ୍କର ଏକାନ୍ତ କାମ୍ୟ ।

ଏନ–୧/୧୯୭
ଆଇ.ଆର.ସି. ଭିଲେଜ, ଭୁବନେଶ୍ୱର–୧୫



# ଶ୍ରୀଜଗନ୍ନାଥ ସଂସ୍କୃତିର ଐତିହ୍ୟରେ ସଂଖୁଡି ଭୋଗ

ଡକ୍ଟର ରମାକାନ୍ତ କର

ଶ୍ରୀଜଗନ୍ନାଥ ସଂସ୍କୃତି ବହୁ ଘାତପ୍ରତିଘାତ ଦେଇ ନିଜର ଅସ୍ତିତ୍ୱ ବଞ୍ଚାଇ ରଖିବା ସହିତ ବିଶ୍ୱ ସଂସ୍କୃତିରେ ସ୍ୱତନ୍ତ୍ର ସ୍ଥାନ ରକ୍ଷା କରି ପାରିଛି । ଶ୍ରୀଜଗନ୍ନାଥ ସଂସ୍କୃତିର ଐତିହ୍ୟକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସନାତନ ଧର୍ମ ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ଉପାସନାର ସତ୍ତା ଥିଲା । ଶ୍ରୀଜଗନ୍ନାଥଙ୍କ ପୂର୍ବ ସ୍ୱରୂପ ନୀଳମାଧବ ହିଁ ବ୍ରାହ୍ମଣ ଓ ଶବର ଏହି ଦ୍ୱୈତ ଜାତିଦ୍ୱାରା ପୂଜିତ ହେଉଥିଲେ । ଏହାର କିମ୍ବଦନ୍ତୀ ମଧ୍ୟ ରହିଛି ବିଦ୍ୟାପତି (ବ୍ରାହ୍ମଣ) ଓ ବିଶ୍ୱାବସୁ (ଶବର) । ଜମ୍ବୁଦୀପର ନୀଳାଚଳରେ ଗୁପ୍ତଭାବରେ ଏକ ଗୁମ୍ଫା ମଧ୍ୟରେ ବିଶ୍ୱାବସୁ ନୀଳମାଧବଙ୍କୁ ପୂଜା କରିବାର ଦୃଷ୍ଟାନ୍ତ ମିଳେ । ଏହାକୁ ଗୁପ୍ତ ସେବା କୁହାଯାଏ । ଶବରମାନେ ପ୍ରଭୁଙ୍କର ସେବକ, ସେମାନେ ବଂଶଧର କିପରି ହେଲେ, ତାହା ମଧ୍ୟ ଗବେଷଣା ସାପେକ୍ଷ । ନୀଳମାଧବଙ୍କ ସ୍ୱପ୍ନରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏକ ମନ୍ଦିର ପ୍ରତିଷ୍ଠା କରି ନୀଳମାଧବଙ୍କ ଦାରୁ ସ୍ୱରୂପକୁ ସାକାର ରୂପରେ ବ୍ରାହ୍ମଣଙ୍କ ଦ୍ୱାରା ପୂଜାନୀତି କରିବାର ପରିକଳ୍ପନା ନେଇ ବ୍ରହ୍ମାଙ୍କର ପରାମର୍ଶ ପାଇଁ ଯିବାରେ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଇନ୍ଦ୍ରଦ୍ୟୁମ୍ନ ଫେରିଆସି ଦେଖନ୍ତେ ନୀଳମାଧବ ଦାରୁମୂର୍ତ୍ତି ନାହାନ୍ତି । ସେ ଦେଖିଥିବା ଦାରୁମୂର୍ତ୍ତିଙ୍କୁ ତ୍ରିତତ୍ତ୍ୱରେ ଭେଦ କରି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ରୂପରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କୁ ପ୍ରତିଷ୍ଠା କରି ମନ୍ଦିର ନୀତି ଚଳାଇଲେ । ଶ୍ରୀମନ୍ଦିରକୁ କେନ୍ଦ୍ର କରି ସାରା ଭାରତବର୍ଷରେ ସନାତନ ଧର୍ମର ଉତ୍‌ଥାନ ହେବା ସହିତ ବ୍ରାହ୍ମଣମାନଙ୍କ ଦ୍ୱାରା ଯଜ୍ଞ କାର୍ଯ୍ୟାନୁଷ୍ଠାନାଦି କାର୍ଯ୍ୟର ବିକାଶ ଘଟିଲା । ସନାତନ ଧର୍ମରେ ସମସ୍ୟା ଦେଖାଗଲା, କାରଣ ବୌଦ୍ଧ, ଜୈନ ତଥା ଅନ୍ୟାନ୍ୟ ନାସ୍ତିକ ଦର୍ଶନଭିତ୍ତିକ ଧର୍ମଗୁଡିକ ଉତ୍‌ଥାନ ଘଟିଲା । ବିଶେଷତଃ ଭାରତବର୍ଷରେ ବିଶେଷକରି ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ଅଧିକ ହେବା ଫଳରେ ସନାତନ ଧର୍ମରେ ସଙ୍କଟ ଦେଖାଗଲା । ବୁଦ୍ଧଙ୍କର ବୌଦ୍ଧଧର୍ମର ପ୍ରଚାର ଲୋକପ୍ରିୟ ହେବାକୁ ଲାଗିଲା । ସନାତନ ଧର୍ମର ଆସ୍ତିକବିତ୍‌ମାନେ ବିଚାର କଲେ ଯେ ସନାତନ ଧର୍ମକୁ ଏହି ନାସ୍ତିକ ଦର୍ଶନକୁ ଲୋପ କଲେ ଆସ୍ତିକ ଦର୍ଶନର ଉତ୍‌ଥାନ ହୋଇପାରିବ । ଏହି ସନାତନ ଧର୍ମର ସଙ୍କଟ ସମୟରେ ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ହେଲା । ସେ ଖୁବ୍ କମ ବର୍ଷରେ ଜ୍ଞାନ ଲାଭ କରି ଆସ୍ତିକ ଦର୍ଶନବିତ୍‌ମାନଙ୍କୁ ସଂଗଠନ କରି ଭାରତବର୍ଷର ସନାତନ ଧର୍ମରୁ ନାସ୍ତିକ ଦର୍ଶନ ବହନ କରୁଥିବା ଧର୍ମଗୁଡିକୁ ତର୍କ ଛଳରେ ପରାସ୍ତ କରି ବିତାଡିତ କରିବା ଫଳରେ ସନାତନ ଧର୍ମର ଅବଶିଷ୍ଟାଂଶକୁ ହିନ୍ଦୁଧର୍ମ ନାମରେ ପରବର୍ତ୍ତୀ କାଳରେ ନାମିତ ହେଲା । ଶ୍ରୀମଦ୍ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଏହି ସମସ୍ତ ତତ୍ତ୍ୱକୁ ଅନୁଧ୍ୟାନ କରି ପଦବ୍ରଜରେ ଭାରତ ଭ୍ରମଣ କରିବା ସହିତ ହିନ୍ଦୁ ସନାତନ ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା କରିବା ସହିତ ଭାରତବର୍ଷର ଚତୁର୍ଦ୍ଦିଗରେ ଚତୁର୍ଯ୍ୟୁଗକୁ କେନ୍ଦ୍ର କରି ଚାରିଧର୍ମର ପ୍ରତିଷ୍ଠା କଲେ । ଚାରିଧାମରେ ଶଙ୍କରାଚାର୍ଯ୍ୟ ମଠର ଧର୍ମପୀଠ ସ୍ଥାପନ କଲେ । ସତ୍ୟଯୁଗରେ ଉତ୍ତରରେ ବଦ୍ରିନାଥ ଧାମରେ ଜ୍ୟୋତିଃପୀଠ, ତ୍ରେତୟାରେ ଦକ୍ଷିଣଦିଗରେ ରାମେଶ୍ୱର ବା ରାମନାଥ ଧାମରେ ଶୃଙ୍ଗେରୀ ପୀଠ, ଦ୍ୱାପର ଯୁଗରେ ପଶ୍ଚିମ ଦିଗରେ ଦ୍ୱାରନାଥ ଧାମରେ ଶାରଦା ପୀଠ ଓ କଳିଯୁଗରେ ଶ୍ରୀଜଗନ୍ନାଥ ଧାମରେ ପୂର୍ବଦିଗରେ ଗୋବର୍ଦ୍ଧନ ପୀଠ ଭୋଜନ କ୍ଷେତ୍ର ବା ଭୋଗବାରୀ ଭାବରେ ପ୍ରତିଷ୍ଠିତ ହେଲା । ଏହି ଚାରିଧାମର ପରିକଳ୍ପନା ହିଁ ଭାରତବର୍ଷକୁ ଧର୍ମଭିତ୍ତିରେ ଗୋଟିଏ ସୂତ୍ରରେ ଏପର୍ଯ୍ୟନ୍ତ ବାନ୍ଧି ରଖି ପାରିଛି ।

ଶ୍ରୀଜଗନ୍ନାଥ ମନ୍ଦିରରେ ବର୍ତ୍ତମାନ ପ୍ରଚଳିତ ପୂଜାପଦ୍ଧତି ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଆରମ୍ଭ ହୋଇଥିବାର ପ୍ରମାଣ ଉପଲବ୍ଧ ହୁଏ । ଶ୍ରୀ ଶଙ୍କରାଚାର୍ଯ୍ୟ ୬ଟି ନିଯୋଗ ପ୍ରତିଷ୍ଠା କରି ଶ୍ରୀମନ୍ଦିରର ପୂଜାର୍ଚ୍ଚନାରେ ବ୍ୟାପକ ସଂସ୍କାର ଆଣି ପାରିଥିଲେ ।

ପରବର୍ତ୍ତୀ ପ୍ରାୟ ଦ୍ୱାଦଶ ଶତାବ୍ଦୀରେ ଐତିହାସିକଙ୍କ ମତରେ ଗଙ୍ଗବଂଶୀ ରାଜା ଅନଙ୍ଗଭୀମଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା ହେବା ପରେ ଶ୍ରୀଜୀଉଙ୍କର ସେବାପୂଜାର ସୁବନ୍ଦୋବସ୍ତ ପାଇଁ ଛଅଟି ନିଯୋଗକୁ ଛତିଶା ନିଯୋଗ ବା ୩୬ଟି ନିଯୋଗରେ ବିଭକ୍ତ କରି ସେହି ନିଯୋଗ ସଦସ୍ୟ ସେବକମାନଙ୍କୁସେବାକୁ ସୁଚାରୁରୂପେ ସମ୍ପାଦନ କରିବା ପାଇଁ ଆବଶ୍ୟକୀୟ ଜମି, ଜାଗିରି ଇତ୍ୟାଦି ଖଞ୍ଜି ଦେଇଥିଲେ । ଅନଙ୍ଗଭୀମ ଦେବଙ୍କଠାରୁ ରାଜାମାନେ ଏହି ପରମ୍ପରାରେ ପୃଷ୍ଠପୋଷକ ଭାବରେ ସେବାପୂଜା ଚଳାଇଥିଲେ । ଷୋଡଶ ଶତାବ୍ଦୀ ମଧ୍ୟ ଭାଗରେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁରାଜା ଭାବରେ ମୁକୁନ୍ଦଦେବ ଦୁର୍ବଳ ଥିବା ହେତୁ ବହୁ ମୁସଲମାନ, ଆଫ୍‌ଗାନ, ମୋଗଲ ଓ ମରାଠାମାନଙ୍କ ଦ୍ୱାରା ଓଡ଼ିଶା ଶାସିତ ହେବା ପରେ ଓଡ଼ିଶାକୁ ଶାସନ କରିବା ପାଇଁ ବ୍ରିଟିଶମାନେ ଆସିଲେ। ଏହିପରି ବହୁଶାସକଙ୍କ ଶ୍ରୀମନ୍ଦିରରେ ପ୍ରଭାବ ପଡିଥିଲେ ମଧ୍ୟ କୌଣସି ଶାସକ ଶ୍ରୀମନ୍ଦିର ନୀତିରେ ବିଶୃଙ୍ଖଳା କରିନଥିଲେ। ସେବାପୂଜାରେ ବ୍ୟତିକ୍ରମ ହୋଇନଥିଲା । ଶ୍ରୀମନ୍ଦିରର ପବିତ୍ରତା ରକ୍ଷା କରିବା ପାଇଁ ବ୍ରିଟିଶ ପ୍ରଶାସକ ଶ୍ରୀମନ୍ଦିର ସିଂହଦ୍ୱାରଠାରେ ମାର୍ବଲ ପଥରରେ ଅଣହିନ୍ଦୁମାନଙ୍କର ପ୍ରବେଶକୁ ନିଷିଦ୍ଧ କରିଥିଲେ । କେତେକ ବିଭିନ୍ନ ଧର୍ମର ଦୁର୍ବୃତ୍ତ ଶ୍ରୀମନ୍ଦିରକୁ ସମୟେ ସମୟେ ଆକ୍ରମଣ କରିଥିଲେ ହେଁ ପ୍ରାୟ ଦ୍ୱାଦଶ ଶତାବ୍ଦୀଠାରୁ ଶ୍ରୀମନ୍ଦିରର ସେବାପୂଜା ଓ ନୀତି ନିର୍ବିଘ୍ନରେ ଚଳିବା ସହିତ ସଂଖୁଡି ଭୋଗ ପାଇଁ ବ୍ୟବସ୍ଥା କରାଯାଇ କୁମ୍ଭାର ବିଶୋଇ ସେବା ପାଇଁ ସ୍ୱତନ୍ତ୍ର କୁମ୍ଭାରପଡାର ସୃଷ୍ଟି ହୋଇଛି । ଶ୍ରୀମନ୍ଦିରର ନୀତି ମଧ୍ୟରେ ସକାଳଧୂପ, ମଧ୍ୟାହ୍ନଧୂପ, ଭଅଣ୍ଡ, ସନ୍ଧ୍ୟାଧୂପରେ ସଂଖୁଡି ଭୋଗ ଅନ୍ନବ୍ୟଞ୍ଜନାଦି ପ୍ରସ୍ତୁତ ପାଇଁ ସୁଆର ଓ ମହାସୁଆର ସେବା ଓ ଏହି ଭୋଗରେ ବ୍ୟବହୃତ ହାଣ୍ଡି, କୁଡୁଆ, ସରା ଇତ୍ୟାଦି ତିଆରି କରିବା ପାଇଁ କୁମ୍ଭାର ବିଶୋଇଙ୍କ ସେବା ସ୍ଥାନ ପାଇଛି । ୧୫୯୨ରେ ରାଜା ତୋଡରମଲ୍ଲ ଜୀଉଙ୍କର ଜମିଜମାର ସୁରକ୍ଷା ପାଇଁ ବନ୍ଦୋବସ୍ତ କରିବା ସହିତ ସଙ୍ଖୁଡି ଭୋଗ ପାଇଁ ସ୍ୱତନ୍ତ୍ର ଜମିର ସୁରକ୍ଷା କରିଥିଲେ । ୧୭୫୧–୧୮୦୩ରେ ମରାଠା ଶାସନ କାଳରେ ୨୭ ହଜାରୀ ମାହାଲ ନାମରେ ଅମୃତ ମଣୋହି ସଙ୍ଖୁଡି ଭୋଗ ପାଇଁ ହଜାର ହଜାର ଏକର ଜମି ଶ୍ରୀଜଗନ୍ନାଥଙ୍କର ସେବାପୂଜା ପାଇଁ ଖଞ୍ଜିଥିଲେ । ଏହି ମରାଠାମାନେ ସ୍ୱଳ୍ପକାଳ ଶାସନ କରିଥିଲେ ମଧ୍ୟ ତାଙ୍କର କୀର୍ତ୍ତି ବର୍ତ୍ତମାନ ସୁଦ୍ଧା ସିଂହଦ୍ୱାରଠାରେ କୋଣାର୍କରୁ ଆସିଥିବା ଗୋଟିଏ ପଥରରେ ନିର୍ମିତ ଅରୁଣସ୍ତମ୍ଭ ବିଦ୍ୟମାନ, ଅବଶ୍ୟ କୋଣାର୍କ ସୂର୍ଯ୍ୟମନ୍ଦିର ଅବସାନ ପରେ ସାତ ମହଣ ସୁନାର ଲକ୍ଷ୍ମୀଙ୍କୁ କୋଣାର୍କରୁ ଆଣି ଶ୍ରୀମନ୍ଦିରରେ ପ୍ରତିଷ୍ଠା କରିଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ବର୍ତ୍ତମାନ ତାହା ଦେଖିବାକୁ ମିଳୁନାହିଁ । ୧୮୦୩ରେ ଇଂରେଜମାନେ ଓଡ଼ିଶା ଦଖଲ କଲେ । ସେମାନେ ମଧ୍ୟ ସଙ୍ଖୁଡି ଭୋଗ ଓ ଅନ୍ୟାନ୍ୟ ନୀତି ପାଇଁ ବାର୍ଷିକ ତେପନ ହଜାର ଟଙ୍କା ଖଞ୍ଜିଥିଲେ । ୧୮୦୫ରେ ତତ୍କାଳୀନ ପୁରୀ ଜିଲ୍ଲାପାଳ ଶ୍ରୀ ଗ୍ରୋମ୍ ସାହେବ ଚାରି ସଙ୍ଖୁଡି ଭୋଗ, ସେବାପୂଜା ଓ ନୀତି ପାଇଁ ଏକ ବିସ୍ତୃତ ପ୍ରକଳ୍ପ ପ୍ରସ୍ତୁତ କରି ରାଜସ୍ୱ ବୋର୍ଡକୁ ପଠାଇ ଥିଲେ । ସେହି ରିପୋର୍ଟରେ ଶ୍ରୀଜୀଉଙ୍କର ୨୪୮ ପ୍ରକାର ସେବାର ନିଦର୍ଶନ ରହିଛି । ୧୯୫୨ ମସିହାରେ ଶ୍ରୀମନ୍ଦିରର ପ୍ରଶାସନ ରାଜ୍ୟ ସରକାର ବହନ କଲେ । ପଣ୍ଡା କମିଶନ ବସାଗଲା । ଏଥିରେ ସେବା ସଂଖ୍ୟାକୁ କମାଇ ୧୨୯ ପ୍ରକାର ସେବା ସ୍ଥାନ ପାଇଲା । ଏହିବର୍ଷ ନୂତନ ଭାବରେ ରେକର୍ଡସ ଅଫ୍ ରାଇଟ୍‌ସ୍ ସ୍ୱତ୍ୱଲିପି ପ୍ରସ୍ତୁତ କରାଗଲା । ୧୯୫୨ ମସିହାରେ ପ୍ରକାଶିତ ଶ୍ରୀମନ୍ଦିର ରେକର୍ଡ ଅଫ୍ ରାଇଟ୍‌ସ୍ ସ୍ୱତ୍ୱଲିପିରେ ସଙ୍ଖୁଡି ଭୋଗ ଓ ଅନ୍ୟାନ୍ୟ ନୀତିପାଇଁ କୁମ୍ଭକାର ବିଶୋଇ ସେବାକୁ ପର୍ବଯାତ୍ରା ସେବା କୁମ୍ଭାର, ବଲ୍ଲଭ ତଥା ବାହାର ଦେଉଳୀ ସେବା କୁମ୍ଭାର ଓ ଦୈନିକ ସେବା କୁମ୍ଭାର ଭାବରେ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ସଙ୍ଖୁଡି ଭୋଗ ପାଇଁ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ମାଟିପାତ୍ର ପ୍ରସ୍ତୁତ କରାଯାଇ କୁମ୍ଭାରମାନେ କୁଡୁଆ, ହାଣ୍ଡି, ଓଳି, ସରା ଇତ୍ୟାଦି ଯୋଗାଇବାର ବ୍ୟବସ୍ଥା କରାଯାଇଛି । ସଙ୍ଖୁଡି ଭୋଗରେ ୫୬ ପଉଟି ଅର୍ଥାତ୍ ୫୬ ପ୍ରକାରର ଭୋଗ ପ୍ରସ୍ତୁତ କରାଯାଇ ପ୍ରତ୍ୟହ ପ୍ରଭୁଙ୍କୁ ଅମୃତମଣୋହି କରାଯିବାର ବ୍ୟବସ୍ଥା ଅଦ୍ୟାବଧି ଶ୍ରୀମନ୍ଦିରରେ ପ୍ରଚଳିତ ଅଛି । ସଙ୍ଖୁଡି ଭୋଗ ରୋଷଘରେ ପ୍ରସ୍ତୁତ କରାଯାଏ । ସେଥିପାଇଁ ରୋଷଶାଳା ମଧ୍ୟରେ ଗଙ୍ଗା ଓ ଯମୁନା ନାମକ ଦୁଇଟି କୂଅ ଜଳ ଯୋଗାଏ । ଯୋଗାଣିଆମାନେ ପାଣି, ମସଲାବଟା, କୋରା ନଡିଆ ଇତ୍ୟାଦି ଯୋଗାନ୍ତି । ସୁଆର ଓ ମହାସୁଆରମାନେ ଖାଦ୍ୟ ପ୍ରସ୍ତୁତ କରନ୍ତି । ପୂଜାପଣ୍ଡା ସାମନ୍ତମାନେ ସଙ୍ଖୁଡି ଭୋଗକୁ ପ୍ରଭୁଙ୍କ ସମ୍ମୁଖରେ ମଣୋହି କରନ୍ତି । ଅସରନ୍ତି ସଙ୍ଖୁଡି ଭୋଗକୁ ଲକ୍ଷ୍ୟ କରି ଶ୍ରୀମନ୍ଦିରକୁ ପୃଥିବୀର ବଡ ହୋଟେଲ୍ ବୋଲି ଆଖ୍ୟା ମିଳିଛି । ଯେତେ ସଂଖ୍ୟକ ଭକ୍ତ ଶ୍ରୀମନ୍ଦିରକୁ ଆସିଲେ ମଧ୍ୟ ମହାପ୍ରସାଦର ଅଭାବ ନାହିଁ କହିଲେ ଚଳେ ।

ଗୁଡିଆ ସାହି
ପୁରୀ–୧

# ପୁରାଣ ପ୍ରସଙ୍ଗରେ ଶ୍ରୀପୁରୁଷୋତ୍ତମ

**ହରିଶ୍ଚନ୍ଦ୍ର ବେହେରା**

ଭାରତୀୟ ଦର୍ଶନ ଶାସ୍ତ୍ରରେ ପୁରୁଷ ଶବ୍ଦଟିକୁ ପରମାତ୍ମାଙ୍କ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି । ଦର୍ଶନ ତତ୍ତ୍ୱାନୁଯାୟୀ ପୁରୁଷ ହିଁ ଅମୃତ ତତ୍ତ୍ୱର ଆଧାର । ପୁରୁଷମାନଙ୍କ ମଧ୍ୟରେ ଯିଏ ଉତ୍ତମ ଅଟନ୍ତି ବା ଶ୍ରେଷ୍ଠ ଅଟନ୍ତି ସେ ହେଉଛନ୍ତି ପୁରୁଷୋତ୍ତମ । ପୁରୁଷ କେବଳ ଏକ ବିନ୍ଦୁ ମାତ୍ର କିନ୍ତୁପୁରୁଷୋତ୍ତମ ସକଳ ବିନ୍ଦୁର ଆଧାର, ଆକାର ଓ ସମଷ୍ଟି । ସେହିଁ ସମଗ୍ର ବିଶ୍ୱର ଆଧାର, ସୃଷ୍ଟି, ସ୍ଥିତି ଓ ବିଲୟର କାରଣ ଅଟନ୍ତି । ପୁରୁଷୋତ୍ତମ ସ୍ୱୟଂ ବ୍ରହ୍ମମୟ ଅଟନ୍ତି । ସେ ପୁଣି ସମସ୍ତ ନିର୍ଗୁଣରେ ପରିପୂରକ । ସେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ପରିବ୍ୟାପୃତ ଓ ପଞ୍ଚ ମହାଭୂତରେ ସଂଶ୍ଳିଷ୍ଟ । ବେଦ ପୁରାଣ ଓ ଉପନିଷଦ ସମୂହରେ ବର୍ଣ୍ଣିତ ସେ ହେଉଛନ୍ତି ପରଂବ୍ରହ୍ମ, ପୁରାଣ ପୁରୁଷ, ଯଜ୍ଞ ପୁରୁଷ, ଲୀଳା ପୁରୁଷ, ମର୍ଯ୍ୟାଦା ପୁରୁଷ, ଯୁଗ ପୁରୁଷ, ଆଦି ପୁରୁଷ, ସହସ୍ରଶୀର୍ଷା ପୁରୁଷ, ଅଣାକାର ପୁରୁଷ । ଶ୍ରୀମଦ୍ ଭଗବଦ୍ ଗୀତାରେ ସେ ହେଉଛନ୍ତି ଅକ୍ଷର, ମନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ଅଚିନ୍ତ୍ୟ, ସର୍ବଜ୍ଞେୟ, ସର୍ବତ୍ର ବିଦ୍ୟମାନ, କୁଟସ୍ଥ ଓ ଅଚଳ ଅଟନ୍ତି । ସେ ସର୍ବୋତ୍ତମ, ପୁରୁଷୋତ୍ତମ ଏବଂ ପ୍ରଧାନ ବା ଶ୍ରେଷ୍ଠ ଅଟନ୍ତି । ସେହି ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ବୋଲି ବର୍ଣ୍ଣନା କରାଯାଇଛି । କେବଳ ଶ୍ରୀଜଗନ୍ନାଥ ନୁହନ୍ତି, ସେ ଅବସ୍ଥାନ କରୁଥିବା କ୍ଷେତ୍ରକୁ ମଧ୍ୟ ପୁରୁଷୋତ୍ତମ କ୍ଷେତ୍ର କୁହାଯାଏ । ସମସ୍ତ ଦର୍ଶନ, ସମସ୍ତ ବେଦ ଓ ଉପନିଷଦର ସାରବତ୍ତା ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ହେଉଛନ୍ତି ପ୍ରଣବର ବାହ୍ୟ ରୂପ ଓ ବେଦ ପୁରୁଷ । ରଗ୍‌ବେଦରେ ଦାରୁବ୍ରହ୍ମଙ୍କୁ ଅପୌରୁଷେୟ ଭାବରେ ବର୍ଣ୍ଣନା କରାଯାଇଛି ।

ମହାସମୁଦ୍ର ବକ୍ଷରେ ଇତସ୍ତତଃ ଭାସମାନ ଅବସ୍ଥାରେ ଥିବା ଅପୌରୁଷେୟ (ଲକ୍ଷ୍ମୀଯୁକ୍ତ ନହୋଇ) ଦାରୁଙ୍କୁ ଦର୍ଶନ କରି ପରସ୍ତର ଅର୍ଥାତ୍ ବିଷ୍ଣୁଲୋକକୁ ଗମନ କରିବା ପାଇଁ ରଷି ଦୁର୍ହଣଙ୍କୁ ଉପଦେଶ ଦିଆଯାଇଥିବାର ପ୍ରମାଣ ମିଳେ । ଏହା ପୁରୁଷୋତ୍ତମ ଉପାସନାର ଆଦ୍ୟ ପର୍ବ ।

ଉପନିଷଦମାନଙ୍କରେ ଯେଉଁ ପୁରୁଷମାନଙ୍କର ପ୍ରଶସ୍ତିଗାନ କରାଯାଇଛି, ସେଥିରୁ ସୂଚନା ମିଳୁଛି ଯେ ପୁରୁଷ ହିଁ ପୂର୍ଣ୍ଣତମ । ସେ ନିଖିଳ ବିଶ୍ୱର ସ୍ରଷ୍ଟା । ହସ୍ତ ପଦ ନଥାଇ ମଧ୍ୟ ସେ ସର୍ବାଧିକାରୀ । ଚକ୍ଷୁ ନଥାଇ ମଧ୍ୟ ସେ ସର୍ବଦ୍ରଷ୍ଟା । କର୍ଣ୍ଣ ନଥାଇ ମଧ୍ୟ ସେ ସର୍ବଶ୍ରୋତା ।

ବେଦ ବର୍ଣ୍ଣିତ ସେହି ମହସ୍ର ଶୀର୍ଷା ପୁରୁଷ ହିଁ ଦାରୁବ୍ରହ୍ମ ଭାବରେ ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ । ବୈଦିକ ଧର୍ମ ଓ ଦର୍ଶନରେ ପୁରୁଷୋତ୍ତମ କ୍ଷେତ୍ରର ଅଧିପତି ହେଉଛନ୍ତି ଶ୍ରୀଜଗନ୍ନାଥ । ସେ ସ୍ୱୟଂ ଯଜ୍ଞେଶ, ପ୍ରଣବ ସ୍ୱରୂପ । ସ୍ଥୂଳ ରୂପରେ ମହାଦାରୁରେ ରୂପାନ୍ତରିତ ହୋଇଛନ୍ତି । ତାଙ୍କ ଦାରୁ ମୂର୍ତ୍ତିରେ ହସ୍ତ, ପଦ, ନେତ୍ର, ଶ୍ରବଣ ପ୍ରଭୃତି ଇନ୍ଦ୍ରିୟମାନଙ୍କର ଆଭାସ ମିଳୁଥିଲେ ମଧ୍ୟ ତାଙ୍କର ପୂର୍ଣ୍ଣ ଅବୟବ ନାହିଁ । ସେ ନିର୍ଗୁଣ ରୂପରେ ବିଶ୍ୱନିୟନ୍ତା ଓ ସଗୁଣ ରୂପେ ବିଶ୍ୱର ସ୍ରଷ୍ଟା ଓ ସକଳ ଜୀବମାନଙ୍କ ପାଦର ଚଳତ୍ ଶକ୍ତି ଅଟନ୍ତି । ସେ ସମସ୍ତ ଜୀବମାନଙ୍କ ଇନ୍ଦ୍ରିୟ ଗୁଣାଭାସର ଅଧିକାରୀ ଅଟନ୍ତି ।

ବୃହଦାରଣ୍ୟକ ଉପନିଷଦରେ ପୁରୁଷଙ୍କୁ ଜ୍ୟୋତି ବା ପ୍ରାଣ ରୂପେ ବର୍ଣ୍ଣନା କରାଯାଇଛି । ଛାନ୍ଦୋଗ୍ୟ ଉପନିଷଦ୍‌ର ବର୍ଣ୍ଣନାନୁଯାୟୀ ଯେଉଁ ପୁରୁଷ ନେତ୍ରରେ ଦୃଶ୍ୟମାନ ସେ ହିଁ ଆତ୍ମା ତଥା ବ୍ରହ୍ମ ଅଟନ୍ତି । ଉପନିଷଦର ବ୍ରହ୍ମାନୁଭୂତିରେ ତାଙ୍କୁ ଶ୍ରେଷ୍ଠ, ଜ୍ୟେଷ୍ଠ ଓ ମହତ୍ ପୁରୁଷ ଭାବରେ ବର୍ଣ୍ଣନା କରାଯାଇଛି ସେ ପୁଣି ପୁରୁଷୋତ୍ତମ ତତ୍ତ୍ୱର ସଗୁଣ ସାକାର ବିଗ୍ରହ । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ତାଙ୍କୁ ପ୍ରାତଃ ସ୍ମରଣୀୟ ପୁରୁଷୋତ୍ତମ ଭାବରେ ସମ୍ବୋଧନ କରିଛନ୍ତି ।

ମହାଭାରତର ଅଜ୍ଞାତ ବାସ ବା ବନପର୍ବରେ ବର୍ଣ୍ଣିତ ହୋଇଛି ଯେ ପଞ୍ଚ ପାଣ୍ଡବ ଘଟଣାକ୍ରମେ ପୁରୁଷୋତ୍ତମ କ୍ଷେତ୍ରରେ ନୀଳଗିରିରେ ପୂଜିତ ହେଉଥିବା ନୀଳ ବିଗ୍ରହ ରୂପୀ ପୁରୁଷୋତ୍ତମଙ୍କୁ ଦର୍ଶନ କରିଥିଲେ । ଉକ୍ତ ବେଦୀକୁ ସେତେବେଳେ ପୁରୁଷ ମଣ୍ଡପ ବୋଲି କହୁଥିଲେ ।

ଶ୍ରୀମଦ୍ ଭଗବତ୍ ଗୀତା ପଞ୍ଚଦଶ ଅଧ୍ୟାୟ ପୁରୁଷୋତ୍ତମ ଯୋଗରେ ସେହି ଲୀଳା ପୁରୁଷଙ୍କ ବିଷୟରେ ବିଶଦ୍ ଭାବରେ ବର୍ଣ୍ଣନା କରାଯାଇଛି । ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଯେ ସଂସାର ରୂପୀ ବୃକ୍ଷରେ ନର କିନ୍ନର, ଯକ୍ଷ, ରକ୍ଷ, ଦେବତାଦି ବାସ କରନ୍ତି । ଏହି ସଂସାର ବୃକ୍ଷରେ ଜୀବ ପଲ୍ଲବୀତ ହୋଇ ସତ୍ତ୍ୱାଦି ଗୁଣଯୁକ୍ତ ହେଲେ ସ୍ୱର୍ଗକୁ ଗମନ କରେ ନଚେତ୍ ଜୀବର ଅର୍ଦ୍ଧପତନ ହୋଇ ନର୍କଗାମୀ ହୁଏ । ଏହି ସଂସାର ବୃକ୍ଷର ଆଦି ଅନ୍ତ ଅଛି । ବୈରାଗ୍ୟ ଭାବକୁ ଗ୍ରହଣ କରି ଯେଉଁ ଜ୍ଞାନୀମାନେ ତତ୍ତ୍ୱାନ୍ୱେଷୀ ହୁଅନ୍ତି ସେମାନେ ଏହି ସଂସାର ରୂପକ ସାଗରରୁ ତରିଯାଆନ୍ତି ।

'ମୁଁ' କ୍ଷରଠାରୁ ପୃଥକ୍, ଅକ୍ଷରଠାରୁ ଶ୍ରେଷ୍ଠ ଅଟେ । ବେଦରେ ମୁଁ ପୁରୁଷୋତ୍ତମ ଭାବରେ ପ୍ରଣିଧାନ, ମୁଁ ଶ୍ରେଷ୍ଠ, ଜ୍ୟେଷ୍ଠ, ମୋତେ ଛାଡ଼ିଦେଲେ ପଞ୍ଚମହାଭୂତର ସ୍ଥିତି ନାହିଁ । ଯିଏ ଦେହ ଓ ଦେହୀ ଦୁଇଜଣଙ୍କୁ ଠିକ୍ ଭାବରେ ବୁଝିପାରେ, ସେ ପ୍ରକୃତରେ ତତ୍ତ୍ୱଦର୍ଶୀ ଅଟେ ।

ବେଦ, ଉପନିଷଦ, ରାମାୟଣ, ମହାଭାରତ ବ୍ୟତୀତ ପୁରାଣ ସାହିତ୍ୟରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ବର୍ଣ୍ଣନା ଓ ଉପାସନା ବହୁଳ ଭାବରେ ପରିଦୃଷ୍ଟ ହୁଏ । ବ୍ରହ୍ମ ପୁରାଣରେ ପରଂବ୍ରହ୍ମ ପୁରୁଷୋତ୍ତମଙ୍କୁ ସକଳ ମତବାଦ, ଧର୍ମଧାରାର ଆଦି ଦେବତା ଭାବରେ ଗ୍ରହଣ କରାଯାଇ ତାଙ୍କୁ ଦାରୁବ୍ରହ୍ମ ପୁରୁଷୋତ୍ତମ ରୂପେ ପ୍ରତିପାଦିତ କରାଯାଇଛି । ପୁରୁଷୋତ୍ତମ ଜଗନ୍ନାଥ ଚେତନାର ବ୍ୟାପକ ପ୍ରସାର ଘଟାଇବାରେ ପଦ୍ମପୁରାଣ ସର୍ବଦା ଅଗ୍ରଗାମୀର ଭୂମିକା ଗ୍ରହଣ କରିଛି । ପୁରାଣ ପୁରୁଷଙ୍କ ହୃଦୟ ସ୍ୱରୂପ ଏହି ପୁରୁଷୋତ୍ତମ କ୍ଷେତ୍ରର ତଥା ଜଗନ୍ନାଥଙ୍କର ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣର ବର୍ଣ୍ଣନାନୁଯାୟୀ ପୁରୁଷୋତ୍ତମ ଜଗନ୍ନାଥ ନୀଳାଚଳବାସୀ ଦାରୁବ୍ରହ୍ମ ଅଟନ୍ତି । ତାଙ୍କ ନିତ୍ୟ, ନୈମିତ୍ତିକ, ଲୀଳା, ପୂଜା ଓ ନୈବେଦ୍ୟ ପ୍ରସଙ୍ଗରେ ପଦ୍ମପୁରାଣ ଶତମୁଖ । ଅଧିକନ୍ତୁ ଏହି ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ର ଓ ଶ୍ରୀକ୍ଷେତ୍ରର ଅଧିଶ୍ୱରୀ ମହାଲକ୍ଷ୍ମୀଙ୍କୁ ସୀତା ଭାବରେ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣ ମତରେ ପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ବେଦୋକ୍ତ ପୁରୁଷୋତ୍ତମ ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ର ଓ ଲୀଳା ପୁରୁଷ କୃଷ୍ଣଚନ୍ଦ୍ର । ଯୁଗେ ଯୁଗେ ସେ ପୁରୁଷୋତ୍ତମରେ ବିଜେ ହୋଇ ଦିବ୍ୟଲୀଳା ସଂରଚନା କରୁଛନ୍ତି । ପଦ୍ମପୁରାଣ ପରି ବିଷ୍ଣୁପୁରାଣ ମଧ୍ୟ ଏକ ପ୍ରାଚୀନ ମୌଳିକ ଶାସ୍ତ୍ର । ବୈଷ୍ଣବ ଭକ୍ତି ବାଦର ପ୍ରଚାର ଓ ପ୍ରସାର ଦିଗରେ ଏହି ପୁରାଣର ଭୂମିକା ଅବର୍ଣ୍ଣନୀୟ । ଏହି ପୁରାଣରେ ବିଷ୍ଣୁଙ୍କୁ 'ମହାବିଭୂତି ସଂସ୍ଥାନେ ନମସ୍ତେ ପୁରୁଷୋତ୍ତମ' ନାମରେ ଅଭିହିତ କରାଯାଇଛି । ବିଷ୍ଣୁ ପୁରାଣ ବିଚାରରେ ନିର୍ଗୁଣ ନିରାକାର ପରଂବ୍ରହ୍ମ କୃଷ୍ଣ, ବିଷ୍ଣୁ, ନାରାୟଣ, ବାସୁଦେବ, ଜଗନ୍ନାଥ, ପୁରୁଷୋତ୍ତମ, ବାମନ, ଶଙ୍କର୍ଷଣ ଅନନ୍ତ ପ୍ରଭୃତି ବହୁ ନାମରେ ପ୍ରସିଦ୍ଧ । ଏହି ପ୍ରାଚୀନ ପୁରାଣମାନଙ୍କରେ ପୁରୁଷୋତ୍ତମ ଓ ଜଗନ୍ନାଥ ନାମ ବହୁଳ ଭାବରେ ବ୍ୟବହୃତ ହୋଇଥିବାର ପ୍ରମାଣ ମିଳେ । ଏହି ପୁରାଣମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ର ସମ୍ପର୍କରେ ସ୍ୱଷ୍ଟ ଭାବରେ ଉଲ୍ଲେଖ କରାଯାଇଛି । ଉଦାହରଣ ସ୍ୱରୂପ କଣ୍ଡୁମୁନିଙ୍କର ତପସ୍ୟା ଶକ୍ତି କ୍ଷୀଣ ହୋଇଯିବା ପରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ପୁନଃ ତପସ୍ୟା ଆରମ୍ଭ କଲେ ଓ ପୂର୍ବବତ୍ ପୂର୍ଣ୍ଣଶକ୍ତି ଫେରିପାଇଲେ । ଏହା ହିଁ ହେଉଛି ଏହି କ୍ଷେତ୍ରର ମହାତ୍ମ୍ୟ ।

ବିଷ୍ଣୁ ପୁରାଣରେ ସର୍ବତ୍ର ବିଷ୍ଣୁଙ୍କୁ ପୁରୁଷୋତ୍ତମ ଜଗନ୍ନାଥ ବୋଲି ବର୍ଣ୍ଣନା କରାଯାଇଛି । ଏପରିକି କେଶୀ ବଧ ପରେ ତାଙ୍କୁ ଜଗନ୍ନାଥ ସମ୍ବୋଧନପୂର୍ବକ ସ୍ତୁତି କରାଯାଇଛି ।

ଏଠାରେ ଜଗନ୍ନାଥ ଶବ୍ଦ ବିଶେଷ ଭାବରେ ବ୍ୟବହୃତ ହୋଇଥିବାରୁ ହୃଦ୍‌ବୋଧ ହୁଏ ଯେ ସେହି ସମୟରେ ପୁରୁଷୋତ୍ତମଙ୍କର ଜଗନ୍ନାଥ ନାମ ପ୍ରସିଦ୍ଧି ଲାଭ କରିଥିଲା । ଏହି ପୁରାଣରେ ବହୁ ସ୍ଥାନରେ ଜଗନ୍ନାଥ ଶବ୍ଦ ବିଶେଷ ଭାବରେ ବ୍ୟବହାର କରାଯାଇଛି । ଏଥିରୁ ସ୍ୱଷ୍ଟ ପ୍ରମାଣିତ ହୁଏ ଯେ ଦୁଇ ହଜାର ବର୍ଷ ପୂର୍ବରୁ ପୁରୁଷୋତ୍ତମ ଓ ଜଗନ୍ନାଥ ନାମ ପ୍ରସିଦ୍ଧ ଲାଭ କରିଥିଲା । ଏହି ପୁରାଣରେ ବହୁ ସ୍ଥାନରେ ଜଗନ୍ନାଥ ଶବ୍ଦ ବିଶେଷ ଭାବରେ ବ୍ୟବହାର କରାଯାଇଛି । ଏଥିରୁ ସ୍ୱଷ୍ଟ ପ୍ରମାଣିତ ହୁଏ ଯେ ଦୁଇ ହଜାର ବର୍ଷ ପୂର୍ବରୁ ପୁରୁଷୋତ୍ତମ ଓ ଜଗନ୍ନାଥ ଉଭୟ ନାମ ପ୍ରସିଦ୍ଧି ଲାଭ କରିଥିଲା ।

ବ୍ରହ୍ମପୁରାଣ ସଦୃଶ ନାରଦ ପୁରାଣରେ ମଧ୍ୟ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଅଥଚ ଏହି ଦୁଇ ପୁରାଣରେ ନୀଳମାଧବ ଓ ବିଶ୍ୱାବସୁ ପ୍ରସଙ୍ଗରେ ବର୍ଣ୍ଣନା ନାହିଁ । ବାମନ ପୁରାଣ ଅନୁଯାୟୀ ପୁରୁଷୋତ୍ତମ କ୍ଷେତ୍ର ହିଁ ଜଗନ୍ନାଥଙ୍କ ନିତ୍ୟଧାମ । ଏଠାରେ ବିରାଜିତ ପୁରୁଷୋତ୍ତମ ଜଗନ୍ନାଥ ହିଁ ସକଳ ପାପ ପ୍ରଶମନ କରନ୍ତି ।

ଭବିଷ୍ୟ ପୁରାଣରେ କୁହାଯାଇଛି ଯେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଉପାସନା ହିଁ ଯଥାର୍ଥରେ ମହାବିଷ୍ଣୁଙ୍କ ପୂଜା । ସେ ନାରାୟଣ, ମହାବିଷ୍ଣୁ, ରାମ, କୃଷ୍ଣ, ହରି ଓ ଜଗନ୍ନାଥ ଅଟନ୍ତି ।

ମତ୍ସ୍ୟପୁରାଣ ଦୁଇ ହଜାର ବର୍ଷ ପୂର୍ବେ ରଚିତ ଏକ ପ୍ରାଚୀନ ପୁରାଣ । ଏହି ପୁରାଣରେ 'ଗଙ୍ଗାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମ' ଏହା ପ୍ରମାଣ ସିଦ୍ଧ ଯେ ମତ୍ସ୍ୟ ପୁରାଣ ରଚନା ସମୟକୁ ପୁରୁଷୋତ୍ତମ ଜଗନ୍ନାଥ ପ୍ରସିଦ୍ଧି ଲାଭ କରିସାରିଥିଲା ।

ସ୍କନ୍ଦପୁରାଣ ଉତ୍କଳଖଣ୍ଡ ପୁରୁଷୋତ୍ତମ ମହାତ୍ମ୍ୟରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ପୀଠ, ମନ୍ଦିର ନିର୍ମାଣ, ପୂଜା ପଦ୍ଧତି ସମ୍ପର୍କରେ ସବିଶେଷ ବିବରଣୀ ପ୍ରଦାନ କରାଯାଇଛି । ଏହି ପୁରାଣ ମାନ୍ୟତାରେ ପୁରୁଷୋତ୍ତମ ଜଗନ୍ନାଥ ହିଁ ସହସ୍ରଶୀର୍ଷ ପୁରୁଷ ଅଟନ୍ତି । ସ୍ୱୟଂ ବ୍ରହ୍ମଦେବ ଶ୍ରୀକ୍ଷେତ୍ରକୁ ଆଗମନ କରି ମନ୍ଦିର ଓ ମୂର୍ତ୍ତିକୁ ସ୍ଥାପନ କରିଥିଲେ । ଏହି ପୁରାଣ ଅନୁଯାୟୀ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କୁ ସହସ୍ର ଶୀର୍ଷା ପୁରୁଷ, ବିଶ୍ୱରୂପ, ପରଂବ୍ରହ୍ମ ଓ ପରମାତ୍ମା ବୋଲି ସ୍ତୁତି କରିଥିଲେ । ତାଙ୍କର ନିତ୍ୟ ନୈମିତ୍ତିକ ପୂଜାରେ ପୁରୁଷ ସୂକ୍ତ ମନ୍ତ୍ର ପୂଜା ବିଧି ଅଦ୍ୟାବଧି ପ୍ରଚଳିତ ।

ଏତଦ୍‌ବ୍ୟତୀତ ଅନ୍ୟ ପୁରାଣମାନଙ୍କରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ତତ୍ତ୍ୱ ଓ ଲୀଳା ବର୍ଣ୍ଣନା କରାଯାଇଛି । ବିଶେଷତଃ ଓଡ଼ିଶାରେ ରଚିତ ଇନ୍ଦ୍ରନୀଳମଣି ପୁରାଣ, ଯାତ୍ରା ଭାଗବତ, କପିଳ ସଂହିତା, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ସାରଳା ମହାଭାରତ, ଦାଣ୍ଡି ରାମାୟଣ, ଦେଉଳ ତୋଳା, ଜଗନ୍ନାଥ ଚରିତାମୃତ, ଦାରୁବ୍ରହ୍ମ ଗୀତା, ପ୍ରେମ ଭକ୍ତି, ବ୍ରହ୍ମଗୀତା, ଭାଗବତ, ରସକଲ୍ଲୋଳ, ରହସ୍ୟ ମଞ୍ଜରୀ, ମର୍ତ୍ତ୍ୟ ବୈକୁଣ୍ଠ ପୁରାଣ ପ୍ରଭୃତିରେ ଶ୍ରୀଜଗନ୍ନାଥଙ୍କ ଲୀଳା ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଏତଦ୍‌ଭିନ୍ନ ତନ୍ତ୍ରସାର, ରୁଦ୍ରଯାମଳ ତନ୍ତ୍ର ଯାମଳ, କାଳୀକାପୁରାଣ, ତନ୍ତ୍ର ଚିନ୍ତାମଣି, ଉଡ୍ଡୀୟାନ ଜୈନଶାସ୍ତ୍ର, ବୌଦ୍ଧଶାସ୍ତ୍ର, ନ୍ୟାୟଶାସ୍ତ୍ର, ସାଂଖ୍ୟ ଶାସ୍ତ୍ର, ଶୈବଶାସ୍ତ୍ର ଓ ବୈଷ୍ଣବ ଶାସ୍ତ୍ର ସମୂହରେ ମଧ୍ୟ ପୁରୁଷୋତ୍ତମ ଜଗନ୍ନାଥଙ୍କ ଦିବ୍ୟଲୀଳାର ବିଶଦ୍ ବର୍ଣ୍ଣନା ରହିଛି । ବେଦ, ଉପନିଷଦ, ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ରରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଲୀଳା ଓ ତତ୍ତ୍ୱ ପ୍ରଚାର ପ୍ରସାର ହେବା ସଙ୍ଗେ ସଙ୍ଗେ ପୃଥିବୀରେ ପୁରୁଷୋତ୍ତମ ଜଗନ୍ନାଥ ଚେତନାକୁ ଋଦ୍ଧିମନ୍ତ ଓ ପରିପୃଷ୍ଟ କରିଆସିଛି । ଏହି କ୍ଷେତ୍ରର ମହନୀୟତା ହେଉଛି ଆର୍ଯ୍ୟ, ଆର୍ଯ୍ୟୋତ୍ତର, ବେଦାନ୍ତୀ, ଶୈବ, ଶାକ୍ତ, ବୈଷ୍ଣବ, ଜୈନ, ବୌଦ୍ଧ, ଗାଣପତ୍ୟ, ସୌର ଆଦି ଧର୍ମାବଲମ୍ବୀମାନେ ସମସ୍ତେ ବଡ଼ଦାଣ୍ଡରେ ଏକତ୍ରିତ ହୋଇ ଆପଣାର ଜାତି, ଧର୍ମ, ବର୍ଣ୍ଣର ଭେଦଭାବ ଭୁଲି ବସୁଧୈବ କୁଟୁମ୍ବକମ୍ ମହାନୁଭବତାରେ ତଲ୍ଲୀନ ହୋଇଯାଆନ୍ତି ।

ଘ.ନଂ–୧୧୩(ଏସ୍)
ମୈତ୍ରୀ ବିହାର, ଭୁବନେଶ୍ୱର–୨୩

# ତୁମେ ଅଛ ସବୁଠାରେ

**ଶ୍ୟାମ ପ୍ରକାଶ ସେନାପତି**



ହେ ପ୍ରଭୁ !
ତୁମେ ଅଛ
ବଇଁଶୀ ସ୍ୱନରେ
ଆଉ ସାଗର ଜଳରେ
ଅଛ ପୁଣି
ପାପ ଓ ପୁଣ୍ୟରେ,
ପ୍ରକୃତି ଛାତିରେ
ସବୁଜ କେଦାରେ,
ନଦୀ ବନସ୍ତରେ

ନୃତ୍ୟ–ଗୀତ କୋମଳ ଛନ୍ଦରେ
ଅନ୍ତହୀନ ଆକାଶ କୋଳରେ !
ଆଉ ଅଛ
ଦୁଃଖ–ଆନନ୍ଦ ମେଳରେ
ସ୍ନେହମୟୀ ମାଆର କୋଳରେ ।

ସେନାପତି ଭବନ
ଗ୍ରାଣ୍ଡ ରୋଡ୍, ପୁରୀ

# ଶ୍ରୀଜଗନ୍ନାଥ ଏକ ସଂସ୍କୃତି ଓ ସଂହତିର ଆଧାର

**ଡ଼ାକ୍ତର ଦୀନବନ୍ଧୁ ମହାରଣା**

ଓଡ଼ିଶାର ସବୁଠାରୁ ବଡ଼ ଆକର୍ଷଣୀୟ ଧର୍ମପୀଠ ଭାବେ ନୀଳାଚଳ ପୁରୁଷୋତ୍ତମ ଧାମ ନୀଳାଦ୍ରି ନିବାସୀ ଶ୍ରୀକ୍ଷେତ୍ର ଶ୍ରୀମନ୍ଦିରସ୍ଥିତ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନ ଏହି ଚତୁର୍ଦ୍ଧା ମୂର୍ତ୍ତିକୁ ଧର୍ମାର୍ଥୀ ହିନ୍ଦୁ ଦର୍ଶନ କଲେ ତୀର୍ଥାଟନ ପରିପୂର୍ଣ୍ଣ ହୁଏ – ଏପରି ଏକ ବିଶ୍ୱାସ ପ୍ରାୟ ସମସ୍ତ ହିନ୍ଦୁଙ୍କର ରହିଛି ଏବଂ ଏହି ବିଶ୍ୱାସ ହିଁ ସବୁଧର୍ମର ମୂଳ– ହିନ୍ଦୁଧର୍ମ ବରଂ ବିଶ୍ୱାସ ଅପେକ୍ଷା ବିଚାରକୁ ଅଧିକ ଗୁରୁତ୍ୱ ଦେଇଥିବାରୁ ହିନ୍ଦୁ ଧର୍ମରେ ଭଗବାନଙ୍କର ଅଗଣିତ ନାମ–ରୂପ–ଗୁଣର ପ୍ରାଦୁର୍ଭାବ ଅନୁଭୂତ ହୁଏ ଯାହା ଅନ୍ୟ କୌଣସି ଧର୍ମରେ ନାହିଁ । ସମ୍ଭବତଃ ଏଇଥିପାଇଁ ହିନ୍ଦୁ ଧର୍ମରେ ଏତେ ଗୋଷ୍ଠୀ, ଏତେ ମତ, ଏତେ ପଥର କଳହ ଯୁଗଯୁଗ ଧରି ରହିଆସିଛି । ଏହାର ସମାଧାନ ପାଇଁ ହୁଏତ ବିଶ୍ୱବିଧାନ କର୍ତ୍ତା ବା ଏକ ବିଶ୍ୱନିୟମ –ଶୃଙ୍ଖଳାରେ ଜଗନ୍ନାଥଙ୍କ ଆବିର୍ଭାବ ହୋଇଛି– ଯାହାର ସେପରି କିଛି ନିର୍ଦ୍ଦିଷ୍ଟ କାଳ ନାହିଁ । କେବଳ କିଛି କିମ୍ବଦନ୍ତୀକୁ ଆଶ୍ରୟ କରି ଏହି ପୀଠର ପ୍ରାଚୀନତାକୁ ଅନୁମାନ କରିହୁଏ । କାରଣ ଏହି ପୀଠ ସମ୍ପର୍କରେ ପଞ୍ଚଦଶ ଶତାବ୍ଦୀର ଶୂଦ୍ରମୁନି ସାରଳାଦାସ ତାଙ୍କ ରଚିତ ଓଡ଼ିଆ ମହାଭାରତରେ ଜଗନ୍ନାଥଙ୍କ ସଂକ୍ରାନ୍ତ କିଛି ପ୍ରସଙ୍ଗ ଉଲ୍ଲେଖ କରିଥିଲେ ଏବଂ ଏହା ପୁରାଣଯୁଗରୁ ବିଭିନ୍ନ ପୁରାଣ ଯଥା– କଳିକା ପୁରାଣ, ସ୍କନ୍ଦ ପୁରାଣ, ବ୍ରହ୍ମ ପୁରାଣ, ମାର୍କଣ୍ଡ ପୁରାଣ ଇତ୍ୟାଦିରେ ନାନା ଭାବରେ ବର୍ଣ୍ଣିତ ହୋଇଛି । ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି–

''ତୀର୍ଥାନାଂ କ୍ଷେତ୍ର ରାଶିନାଂ ମଧ୍ୟେଚ ପୁରୁଷୋତ୍ତମ''

ଅର୍ଥାତ୍, ଭାରତବର୍ଷ ଯାହାର ଅନ୍ୟ ନାମ ଆର୍ଯ୍ୟାବର୍ତ୍ତ ସେଇଠି ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ତୀର୍ଥ ହେଲା ପୁରୁଷୋତ୍ତମ ଧାମ ।

ଏହିପରି ଶହଶହ ବର୍ଷ ଧରି ପୁରାଣ ଯୁଗଠାରୁ ଆରମ୍ଭ କରି ଇତିହାସ ଯୁଗ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ଅବସ୍ଥିତି ଓ ମହିମା ସମ୍ପର୍କରେ ବହୁ ସନ୍ଥ, ମହାତ୍ମା, ମନୀଷୀ ସେମାନଙ୍କ ରଚନାରେ କିଛି କିଛି ଉଲ୍ଲେଖ କରାଯାଇଥିବାର ଦେଖାଯାଏ । ଜଗନ୍ନାଥଙ୍କୁ ବୈଦିକ ରୀତିରେ ଉପାସନା କରାଯାଏ ଏବଂ ତାନ୍ତ୍ରିକ ମତରେ ମଧ୍ୟ ଉପାସକ କରାଯିବାର ପ୍ରମାଣ ମିଳେ । ଜଗନ୍ନାଥଙ୍କ ରତ୍ନବେଦୀ ଭୈରବୀ ଚକ୍ର ଉପରେ ନିର୍ମିତ ହୋଇଛି ବୋଲି ତନ୍ତ୍ରଶାସ୍ତ୍ରର ମତ ଏବଂ ଜଗନ୍ନାଥଙ୍କୁ ମହାଭୈରବ ବୋଲି ତାହା କହିଛି । ''ତନ୍ତ୍ର ଯାମଳ'' ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ–

''ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥେ ଭକ୍ତନାମ ଭୟପ୍ରଦ ।।''

ଭାରତବର୍ଷରେ ମୂଳରୁ ବୈଦିକ–ସନାତନ ଧର୍ମର ପଦ୍ଧତି ପ୍ରଚଳିତ ହୋଇଥିଲା । ଯଜ୍ଞ ଥିଲା ତା'ର ପ୍ରଧାନ ଅଙ୍ଗ । କିନ୍ତୁ କାଳକ୍ରମେ ଯଜ୍ଞର ଜଟିଳ ବ୍ୟବସ୍ଥାକୁ ସହଜ କରିବା ପାଇଁ ବିଭିନ୍ନ ସାଂପ୍ରଦାୟିକ ମତବାଦର ପ୍ରତିଷ୍ଠା ହେଲା – ସେଥିରେ ବୈଷ୍ଣବ ସଂପ୍ରଦାୟ, ଶାକ୍ତ ସଂପ୍ରଦାୟ, ଶୈବ ସଂପ୍ରଦାୟ ଇତ୍ୟାଦି ଅନ୍ତର୍ଭୁକ୍ତ ହୋଇଥିଲା । ପରିଶେଷରେ ଏସବୁର ସମ୍ମିଶ୍ରଣରେ ହିନ୍ଦୁ ଧର୍ମର ବିକାଶ ଘଟିଲା । ହିନ୍ଦୁଧର୍ମ ହୋଇଗଲା ଭାରତୀୟ ସଂସ୍କୃତିର ଏକ ବିଶାଳ ପ୍ରେକ୍ଷାପଟ । ଏଥିରେ ଓଡ଼ିଶାର ଜଗନ୍ନାଥ ଧାମର ଏକ ସମନ୍ୱୟର ସୂତ୍ର ଗୁନ୍ଥି ହୋଇଗଲା ଏବଂ ଓଡ଼ିଶାର ଏହି ଜଗନ୍ନାଥ ଧାମକୁ ସମଗ୍ର ଭାରତବର୍ଷରେ ଭୂସ୍ୱର୍ଗ ଓ ପବିତ୍ର ତୀର୍ଥର ମାନ୍ୟତା ମିଳିଲା ।

ଜଗନ୍ନାଥ ଧାମର ଖ୍ୟାତି ସମଗ୍ର ଭାରତର ଚତୁର୍ଦ୍ଦିଗକୁ ବ୍ୟାପି ଯାଇଥିଲା । ଦକ୍ଷିଣରୁ ଶଙ୍କରାଚାର୍ଯ୍ୟ, ରାମାନୁଜ ପ୍ରମୁଖ ବିଦ୍ୱାନ ସନ୍ଥ, ଉତ୍ତରରୁ ସନ୍ଥ ତୁଳସୀ ଦାସ, ପଶ୍ଚିମରୁ ଗୁରୁ ନାନକ, ଭକ୍ତ କବୀର ପ୍ରମୁଖ, ପୂର୍ବରୁ ମହାପ୍ରଭୁ ଶ୍ରୀଚୈତନ୍ୟ, ଶଙ୍କରଦେବ

ପ୍ରମୁଖ ମହାନ୍ ସନ୍ଥଙ୍କର ଏହି କ୍ଷେତ୍ରକୁ ସମାଗମ ହୋଇଥିଲା । ଫଳରେ ଜଗନ୍ନାଥ ଧାମର ମହିମା ଏତେ ବ୍ୟାପକ ହୋଇଥିଲା ଯେ, ଓଡ଼ିଶାକୁ ଜଗନ୍ନାଥ ଦେଶ ଭାବେ କୁହାଯାଇଥିଲା । ଜଗନ୍ନାଥଙ୍କୁ ହିନ୍ଦୁ ଧର୍ମର ଦଶଅବତାର ଭିତରେ ସ୍ଥାନିତ କରାଯାଇ ନାହିଁ । ଯେହେତୁ ଭଗବାନ ବିଷ୍ଣୁଙ୍କର ଯେତେ ଅବତାର ହୋଇଛି ସେସବୁ ଜଗନ୍ନାଥଙ୍କର ଗୋଟିଏ ଗୋଟିଏ ଅଂଶ ମାତ୍ର । ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ ବୋଲି କୁହାଯାଏ  ଏବଂ ସବୁ ଅବତାର ଜଗନ୍ନାଥଙ୍କ ଭିତରୁ ଆସିଥାନ୍ତି ଏବଂ ସେଥିରେ ଲୀନ ହୋଇଥାନ୍ତି । ଜଗନ୍ନାଥଙ୍କୁ ତେଣୁ ଅବତାରୀ କୁହାଯାଏ ।

ଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ଏହା ମଧ୍ୟ ଏକ ପୌରାଣିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଜଗନ୍ନାଥ ସହସ୍ର ନାମରେ ଜଗନ୍ନାଥଙ୍କୁ ‘‘ବିୟଦ୍‌ବ୍ୟାପୀ ଦାରୁରୂପୋ’’ ବୋଲି ନାମିତ କରାଯାଇଛି । ଏହା  ବ୍ରହ୍ମ ପୁରାଣରେ ଭୀଷ୍ମ–ଯୁଧିଷ୍ଠିର ସମ୍ବାଦରେ ବର୍ଣ୍ଣିତ । ଜଗନ୍ନାଥଙ୍କୁ ଭଗବାନ ବିଷ୍ଣୁଙ୍କର ସବୁ ଅବତାରର ରୂପକଳ୍ପ ଜଗନ୍ନାଥଙ୍କଠାରେ ନିହିତ ଥିବାରୁ ଜଗନ୍ନାଥ ହିଁ ସ୍ୱୟଂ ପରଂବ୍ରହ୍ମ, ପରାତ୍ପର ତାହା ଶାସ୍ତ୍ର ଓ ବିଶ୍ୱାସ ଅନୁଯାୟୀ ପ୍ରମାଣିତ । ଏପରିକି ଜଗନ୍ନାଥଙ୍କ ସମୁଦ୍ର, ଶୈଳ, ଶାଳଗ୍ରାମ ଇତ୍ୟାଦି ପ୍ରାକୃତିକ ପଞ୍ଚତତ୍ତ୍ୱ ଓ ପଞ୍ଚାତ୍ମା । ପ୍ରାଣ, ଅପାନ ଇତ୍ୟାଦି ସଂଜ୍ଞାରେ ସମ୍ବୋଧିତ କରାଯାଇଥିବାରୁ ଜଗନ୍ନାଥ ହିଁ ଜଗତ୍‌ସତ୍ତା ଓ ଏ ସମସ୍ତ ସତ୍ତାର ସ୍ରଷ୍ଟା–ଦ୍ରଷ୍ଟା ଭାବେ ସବୁ ଦିବ୍ୟଦର୍ଶୀ ମହାତ୍ମା, ମହାପୁରୁଷମାନେ ସ୍ୱୀକାର କରିଯାଇଛନ୍ତି ।

ସୁତରାଂ ଜଗନ୍ନାଥ ଏପରି ଏକ ଅଦ୍‌ଭୁତ ଆଶ୍ଚର୍ଯ୍ୟକର ଭୂମିକାରେ ଓଡ଼ିଶାର ଗଣଦେବତା ଭାବେ ଏତେ ଚର୍ଚ୍ଚିତ ହୋଇଗଲେ ଯେ ତାଙ୍କ ଦର୍ଶନ ପାଇଁ କେତେ ଦୂରଦୂରାନ୍ତରରୁ ଭକ୍ତ ଓ ସନ୍ଥମାନେ ଛୁଟି ଆସିଥିଲେ । ଆମରି ଏ ସ୍ମରଣୀୟ ଇତିହାସର ପୃଷ୍ଠାପଟରେ –ହିନ୍ଦୁଧର୍ମର ବହୁମୁଖୀ ଉପାସନାରେ ସେ ହିଁ ଏକମାତ୍ର ବିଗ୍ରହ ଯାହାଙ୍କୁ ସବୁ ମତବାଦର ଅନୁଗାମୀ କେବଳ ଦର୍ଶନ କରି ପରିତୃପ୍ତ ହୋଇଥାନ୍ତି ଏବଂ ପ୍ରତ୍ୟେକ ତାଙ୍କର ଇଷ୍ଟଙ୍କୁ ଜଗନ୍ନାଥଙ୍କ ବିଗ୍ରହରେ ଦେଖି ବିମୋହିତ ହୋଇଥାନ୍ତି । ଏ ହେଉଛି ଜଗନ୍ନାଥଙ୍କ ପରମବ୍ରହ୍ମ ତତ୍ତ୍ୱର ଏକ ପ୍ରମାଣ । ତୁଳସୀଦାସଙ୍କର ଇଷ୍ଟ ଶ୍ରୀରାମ । ଜଗନ୍ନାଥଙ୍କୁ ସେ ସେହି ଭାବରେ ଦେଖିଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ଭାବରେ ଦେଖି ବିଭୋର ହୋଇଥିଲେ । ଆମର ଓଡ଼ିଶାର ଜଣେ ବରେଣ୍ୟ ଭକ୍ତକବି ଜୟଦେବ ‘ଗୀତଗୋବିନ୍ଦ’ କାବ୍ୟ ରଚନା କରି ସେହି ଜଗନ୍ନାଥଙ୍କୁ ହିଁ ସମର୍ପଣ କରି ରାସତତ୍ତ୍ୱର ପରିପ୍ରଚାର କରିଥିଲେ । ଏହିପରି ବହୁ ଭକ୍ତ ଜଗନ୍ନାଥଙ୍କୁ ହିଁ  ସର୍ବୋତ୍ତମ ଓ ସର୍ବୋଚ୍ଚ ପରମାର୍ଥ ତତ୍ତ୍ୱ ମୂର୍ତ୍ତି ଭାବରେ ଉପାସନା କରି ଶ୍ରୀକ୍ଷେତ୍ର ଶ୍ରୀପୁରୁଷୋତ୍ତମ ଧାମର ମହିମା ମୁକ୍ତ କଣ୍ଠରେ ପ୍ରଚାର କରି ଯାଇଛନ୍ତି । କେତେକ ବିଦେଶାଗତ ମହାପୁରୁଷ ମଧ୍ୟ ପୁରୀଧାମର ଧର୍ମ, ସଂସ୍କୃତି ଓ ବିଶ୍ୱାସର ଏହି ସମନ୍ୱିତ ବିଗ୍ରହ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଆଗ୍ରହୀ ହୋଇ ଅନୁଧ୍ୟାନ କରିବାର ଜଣାଯାଏ । ବିଶେଷ କରି ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ଯେଉଁ ପଞ୍ଚସଖା ଯୁଗ – ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ବଳରାମ  ଓ ଜଗନ୍ନାଥ ଏହି ପଞ୍ଚସଖାଙ୍କ ରଚନାବଳୀରେ ଯେଉଁ ଭକ୍ତି ଓ ଜ୍ଞାନର ପ୍ରବାହ ସୃଷ୍ଟି ହୋଇଥିଲା ତା'ର ଉପଜୀବ୍ୟ ଥିଲେ ଶ୍ରୀଜଗନ୍ନାଥ । କେବଳ ସେତିକି ନୁହେଁ ବହୁ ଭକ୍ତ, ସନ୍ଥ, ମନୀଷୀ ପୁରୀ ଶ୍ରୀକ୍ଷେତ୍ରର ଅଧିବାସୀ ଭାବେ ରହି ନିଜ ନିଜକୁ କୃତାର୍ଥ ମନେ କରୁଥିଲେ । ପ୍ରାୟ ହିନ୍ଦୁ ଧର୍ମର ସବୁ ସମ୍ପ୍ରଦାୟର ମଠ ବା ଆଶ୍ରମ ପୁରୀରେ ରହିଥିବାର  ଜଣାଯାଏ । ପୁରୀ ଆଜିସୁଦ୍ଧା ଭାରତୀୟ ଧର୍ମ, ଆଧ୍ୟାତ୍ମିକତା, ସଂସ୍କୃତି ଓ ସଂହତିର ଏକ ତୀର୍ଥକ୍ଷେତ୍ର କେବଳ ପର୍ଯ୍ୟଟନ କ୍ଷେତ୍ର ଭାବରେ ପ୍ରସିଦ୍ଧ । ପୁରୀଠାରୁ ଅଳ୍ପ ଦୂରରେ ‘କୋଣାର୍କ’ । ସୂର୍ଯ୍ୟମନ୍ଦିରର କଳାକୀର୍ତ୍ତି ବିଶ୍ୱବିଖ୍ୟାତ । ଏହାମଧ୍ୟ ସୂର୍ଯ୍ୟ ଉପାସନାର ଏକ ପୀଠ । ପୁରୀ ସଂଲଗ୍ନ ବହୁ ଅଞ୍ଚଳ ଐତିହାସିକଙ୍କ କୀର୍ତ୍ତିର ସ୍ମାରକୀ ବହନ କରିଛି । ପୁରୀ–ସାକ୍ଷୀଗୋପାଳ–ଭୁବନେଶ୍ୱର–ଏମିତି କେତେକ'ଣ ପୁଣ୍ୟ ସ୍ମୃତି ବହନ କରିଆସିଛି, ତାହା କହିଲେ ସରିବ ନାହିଁ ।

ଏଥିରୁ ପୁରୀ ଶ୍ରୀକ୍ଷେତ୍ର ନୀଳାଦ୍ରି ଶ୍ରୀମନ୍ଦିର ଶ୍ରୀଜଗନ୍ନାଥଙ୍କ ମହିମାର ବିପୁଳ ଆଲେଖ୍ୟ ରହିଛି । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦୃଷ୍ଟିରେ ଶ୍ରୀକ୍ଷେତ୍ର ପୁରୀ ହେଉଛି ସର୍ବଶ୍ରେଷ୍ଠ ଧାମ । ତେଣୁ  ସେ ଲେଖିଛନ୍ତି :

‘‘ଭାରତ ସରସେ ଉତ୍କଳ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ’’

ସମ୍ପ୍ରତି ଶ୍ରୀଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ରଥଯାତ୍ରା ଏକ ବିଶ୍ୱ ମାନବତାର ଐକ୍ୟ, ମୈତ୍ରୀ ଓ ସଂହତିର ସନ୍ଦେଶ ବହନ କରି ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ଶ୍ରୀଜଗନ୍ନାଥ ଯୁଗେ ଯୁଗେ ବହୁ ଜନମାନସଙ୍କ ଦୃଷ୍ଟିରେ ଏକ ମାନବିକ ଭାବ ବିନିମୟ ଓ ସାମାଜିକ ତଥା ସାଂସ୍କୃତିକ ପରିଚର୍ଯ୍ୟାର ଏକ ଆଧାର ହୋଇଆସିଛି । ରଥଯାତ୍ରା ହେଉଛି ତାଙ୍କର ଏକ ଧର୍ମନିରପେକ୍ଷ ଗଣ ସମାବେଶର ଉତ୍ସବ, ଯାହା ପୃଥିବୀର ପର୍ଯ୍ୟଟନ ମାନଚିତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି ।

ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧,ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ

# ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଓ କ୍ଷେତ୍ରରାଜ ଶ୍ରୀଜଗନ୍ନାଥ

ସୁବାସ ଚନ୍ଦ୍ର ପରିଡ଼ା

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଓଡ଼ିଆ ଜାତିର ରାଷ୍ଟ୍ରଦେବତା ପୂର୍ଣ୍ଣଚନ୍ଦ୍ର, ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ସର୍ବଧର୍ମ ସମନ୍ୱୟର ଦେବତା ଭାବରେ ପରିଚିତ । ଏହି ଦେବତାଙ୍କ ଲୀଳାକ୍ଷେତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସକଳ ତୀର୍ଥ ମଧ୍ୟରେ ଶ୍ରେଷ୍ଠ ପ୍ରତିପାଦିତ ହୋଇଛି । ଏହି କ୍ଷେତ୍ରରେ ଅଯୋଧ୍ୟା, ମଥୁରା, ବୃନ୍ଦାବନ ଓ ଦ୍ୱାରାବତୀ ପ୍ରଭୃତି ନିତ୍ୟସ୍ଥଳ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟରେ ବିଦ୍ୟମାନ ବୋଲି ଶାସ୍ତ୍ର, ପୁରାଣମାନଙ୍କରେ ବର୍ଣ୍ଣିତ । ପ୍ରାଚୀନ କାଳରୁ ମୁନିଋଷିଗଣ ଜଗନ୍ନାଥ ଧାମ ବା ପୁରୁଷୋତ୍ତମ ଧାମକୁ ଶ୍ରେଷ୍ଠ ଧାମ ଭାବେ ସ୍ୱୀକୃତି ପ୍ରଦାନ କରିଛନ୍ତି । ଏପରିକି ପୁରୁଷୋତ୍ତମ କ୍ଷେତ୍ର ସଦୃଶ୍ୟ ପୂର୍ଣ୍ଣକ୍ଷେତ୍ର ଆଉ ଦ୍ୱିତୀୟ ନାହିଁ ବୋଲି ବିଭିନ୍ନ ପୁରାଣ ଓ ଗ୍ରନ୍ଥମାନଙ୍କରେ ବର୍ଣ୍ଣନା କରାଯାଇଅଛି । ପୁରୁଷୋତ୍ତମ କ୍ଷେତ୍ରକୁ ଭୂସ୍ୱର୍ଗ ବୋଲି ପ୍ରତିପାଦିତ କରି ‘‘ବାୟୁପୁରାଣ’’ କହେ ‘‘ଭୂସ୍ୱର୍ଗଃ ପୁରୁଷୋତ୍ତମଃ’’ ସେହିପରି ‘‘ସ୍କନ୍ଦ ପୁରାଣ’’ରେ ଭୂସ୍ୱର୍ଗ ସାମ୍ପ୍ରତିଂ ହୋଷ କଥିତ ପୁରଷୋତ୍ତମ ଏବଂ ‘‘ତନ୍ତ୍ର ଯାମଳ’’ରେ ‘‘ଭୂସ୍ୱର୍ଗ ପୁରୁଷୋତ୍ତମ’’ କୁହାଯାଇଛି । ଏପରିକି ମର୍ତ୍ତ୍ୟ, ସ୍ୱର୍ଗ ଓ ନାଗଲୋକରେ ମଧ୍ୟ ଉତ୍ତମ କ୍ଷେତ୍ର ଆଉ ନାହିଁ ବୋଲି ‘‘ସମ୍ମୋହନ ତନ୍ତ୍ର’’ ଗ୍ରନ୍ଥରେ କୁହାଯାଇଅଛି । ପୁରୁଷୋତ୍ତମ କ୍ଷେତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ପୁରାଣକାର ‘ନୃସିଂହ ପୁରାଣ’ରେ କହନ୍ତି ।



‘‘ ଏ ନୀଳ ଗିରି ନିତ୍ୟ ସମ । ତେଣୁ ଶ୍ରୀକୃଷ୍ଣ ନିତ୍ୟ ଧର୍ମ ।।
ଏ ନୀଳ ନିତ୍ୟ ଗିରି ଦୁଇ । ଅଭିନ୍ନ ଅଭେଦ ଅଟଇ ।।
ଗୋପ ମଥୁରା ଦ୍ୱାରାବତୀ । ଶ୍ରୀକୃଷ୍ଣ ଅଯୋଧ୍ୟାର ପତି ।।
ଏମାନେ ନିତ୍ୟ ସ୍ଥଳୁ ଜାତ ।
ଅଭିନ୍ନ ନକର ହୋ ପାର୍ଥ ।।
ଏ ସର୍ବ ନିତ୍ୟରୁ ନିର୍ମାଣ ।
ଶ୍ରୀକୃଷ୍ଣ କ୍ରୀଡ଼ା ରସ ସ୍ଥାନ ।।
ତୁ ଏହା ସଂଚୟ ନ କର ।
ନିତ୍ୟରେ ଯେମନ୍ତ ବିହାର ।।
ସେହି ରୂପରେ ନିରାକର ।
ଶ୍ରୀନୀଳ ଗିରିରେ ବିସ୍ତାର ।।

ଭାରତବର୍ଷରେ ହିନ୍ଦୁମାନଙ୍କର ପ୍ରଧାନ ଚାରିଧାମ ମଧ୍ୟରୁ ପୁରୁଷୋତ୍ତମ ଧାମ ଅନ୍ୟତମ ଓ କ୍ଷେତ୍ର ମାହାତ୍ମ୍ୟରେ ଏହା ସର୍ବଶ୍ରେଷ୍ଠ ଅଥବା ପ୍ରଧାନ ବିଷ୍ଣୁ କ୍ଷେତ୍ରଭାବେ ନାମିତ । ‘କପିଳ ପୁରାଣ’ ପୁରୁଷୋତ୍ତମ କ୍ଷେତ୍ରକୁ ସାକ୍ଷାତ୍ ବୈକୁଣ୍ଠ ସମାନ କହିବା ସହିତ ଏହା ସମସ୍ତ ପରମ ଗୃହ୍ୟ କ୍ଷେତ୍ରଭାବେ ବର୍ଣ୍ଣନା କରିଛନ୍ତି– ‘‘ସାକ୍ଷାତ୍ ବୈକୁଣ୍ଠ ସ୍ୱରୂପଂ, ତତ୍ କ୍ଷେତ୍ର ପୁରୁଷୋତ୍ତମ୍’’ ଏବଂ ଏହା ଚତୁର୍ଦ୍ଧାମୂର୍ତ୍ତି ସ୍ୱୟଂ ବିଷ୍ଣୁଙ୍କ ଆଳୟ ଭାବେ ବିଦିତ ।

'ନାରଦ ପୁରାଣ' ଏହି କ୍ଷେତ୍ରକୁ ତୀର୍ଥମାନଙ୍କ ମଧ୍ୟରେ ବରିଷ୍ଠ ଓ ପରାଣ ଦୁର୍ଲ୍ଲଭ ଭାବେ ବର୍ଣ୍ଣନା କରିଛନ୍ତି । '' ବିଷ୍ଣୁଯାମଳ''ରେ ଗାୟତ୍ରୀ ଯେପରି ଶ୍ରେଷ୍ଠ ସେହିପରି କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠ ବୋଲି ଉଲ୍ଲେଖ ରହିଛି । ''ଲଘୁ ଭାଗବତ''ରେ ବର୍ଣ୍ଣିତ ଅଛି ବେଦ, ଆଗମ ଓ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠ ଅଟେ । ବୈଷ୍ଣବ ଗୁରୁମାନଙ୍କ ଦୃଷ୍ଟିରେ ପୁରୁଷୋତ୍ତମ ଜଗନ୍ନାଥ ସର୍ବଶ୍ରେଷ୍ଠ ଦେବତା ଓ ସର୍ବୋତ୍ତମ କ୍ଷେତ୍ର ରୂପେ ପୁରୁଷୋତ୍ତମ କ୍ଷେତ୍ର ପରିଚିତ ।

ସୃଷ୍ଟିକର୍ତ୍ତା ପ୍ରଜାପତି ବ୍ରହ୍ମା କ୍ଷେତ୍ରମାନଙ୍କ ମହିମାକୁ ବିଚାରକୁ ନେଇ ଚାରିଗୋଟି ଆୟୁଧକୁ ପୃଥିବୀରେ ବିକ୍ଷିପ୍ତ କରିଥିଲେ । ଏହି ଚାରିକ୍ଷେତ୍ରରେ ପୁରୁଷୋତ୍ତମ କ୍ଷେତ୍ରରେ ଶଙ୍ଖ, ବିରଜା କ୍ଷେତ୍ରରେ ଗଦା, ଏକାମ୍ର କ୍ଷେତ୍ରରେ ଚକ୍ର ଓ ଅର୍କକ୍ଷେତ୍ରରେ ପଦ୍ମ ପଡ଼ିବାରୁ ଏହି କ୍ଷେତ୍ରଗୁଡ଼ିକ ସେହି ନାମରେ ମଧ ପରିଚିତ ହେଲେ । ପୁରୁଷୋତ୍ତମ କ୍ଷେତ୍ରରେ ପରମବ୍ରହ୍ମ ଶ୍ରୀଜଗନ୍ନାଥ ସ୍ୱୟଂ ବିରାଜମାନ କରିଥିବାରୁ ଏହା ସର୍ବଶ୍ରେଷ୍ଠ କ୍ଷେତ୍ରର ମାନ୍ୟତା ନେଇ ''ବ୍ରହ୍ମପୁରାଣ''ରେ କୁହାଯାଇଛି – ''ସର୍ବେଷାଂ ମେଦ କ୍ଷେତ୍ରାଣାଂ ବରିଷ୍ଠ ପୁରୁଷୋତ୍ତମଃ'' । ବିରଜା କ୍ଷେତ୍ର ଯାଜପୁର, ଏକାମ୍ର କ୍ଷେତ୍ର ଭୁବନେଶ୍ୱର, ଅର୍କକ୍ଷେତ୍ର କୋଣାର୍କରେ ଦର୍ଶନଜନିତ ପୁଣ୍ୟର ପରିସମାପ୍ତି ଘଟିଥାଏ ଯେତେବେଳେ ପାବନ ପୁରୁଷୋତ୍ତମ କ୍ଷେତ୍ରକୁ ଭକ୍ତ ଦର୍ଶନ କରେ ।

ଜଗତର ନାଥ ଜଗନ୍ନାଥଙ୍କର ଅଧିଷ୍ଠାନ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧ ତଥା ଏହାର ଅଲୌକିକ ସମଗ୍ର ବିଶ୍ୱ ଦରବାରରେ ପୂଜ୍ୟ । ଏହି ପବିତ୍ର ପୁଣ୍ୟ ଭୂମିର ମହତ୍ତ୍ୱକୁ ଦେଖିଲେ ସାଧାରଣ ଭାବେ ଏହା ସାଂସ୍କୃତିକ ଚେତନା ଆଧ୍ୟତ୍ମିକ ଭାବଧାରା ଜାଗ୍ରତ କରିବାରେ ମୂଳ ପ୍ରାଣକେନ୍ଦ୍ର । ଏ କ୍ଷେତ୍ର ଯୁଗେ ଯୁଗେ କବି କଳାକାରମାନଙ୍କୁ ଆକୃଷ୍ଟ କରି ସେମାନଙ୍କର ଚିନ୍ତା, ଚେତନା, ଭକ୍ତିଭାବ ଓ ଜ୍ଞାନର ଚେତନାକୁ ଏଭଳି ପ୍ରଭାବିତ କରିଛି, ଯେଉଁଥିରେ ଓଡ଼ିଆ ସାହିତ୍ୟ ବିଭିନ୍ନ ବିଭବରେ ଋଦ୍ଧିମନ୍ତ ଓ ସମୃଦ୍ଧ । ପଞ୍ଚସଖା ଯୁଗର କବି ବଳରାମ ଦାସ ଓ ସାରଳା ଦାସଙ୍କଠାରୁ ଭକ୍ତକବି ମହାଦେବ ଦାସ, ଅର୍ଜ୍ଜୁନ ଦାସ, ପିତାମ୍ବର ଦାସ, ଶିଶୁ ଶଙ୍କର ଦାସ, ଦେବଦୁର୍ଲ୍ଲଭ ଦାସ, ଦୀନକୃଷ୍ଣ ଦାସ, ଲୋକନାଥ ବିଦ୍ୟାଧର, ବ୍ରଜନାଥ ବଡ଼ଜେନା ପ୍ରଭୃତି ତାଙ୍କ ରଚିତ ପୁରାଣ କାବ୍ୟ ଓ କବିତାମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରର ମହିମା ଓ କ୍ଷେତ୍ରାଧିପତିଙ୍କର ପ୍ରଶସ୍ତିର ସୁନ୍ଦର କମନୀୟ ବର୍ଣ୍ଣନା କରିଯାଇଅଛନ୍ତି । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଏହି କ୍ଷେତ୍ରକୁ ଆସି କ୍ଷେତ୍ରରାଜ ପୁରୁଷୋତ୍ତମ ବର୍ଣ୍ଣନା ପ୍ରସଙ୍ଗରେ କବି ବହୁ ଆଲୌକିକତାର ବିଦ୍ୟମାନ୍ୟତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ପ୍ରସାଦ ସେବନରେ ଜାତିଗତ ଭେଦ ନଥିବା ଓ ତାଙ୍କର ରୂପ ବର୍ଣ୍ଣନାରେ ଅତୀବ ଆକର୍ଷିତ ହୋଇଛନ୍ତି ।

ପୁରୁଷୋତ୍ତମ ଧାମରେ ବିଭିନ୍ନ ସମୟରେ ଭକ୍ତ, ସନ୍ଥମାନେ ଆସି ନିଜର ଭକ୍ତିତ୍ୱର ପରାକାଷ୍ଠା ନଦର୍ଶନ କରିଅଛନ୍ତି ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆପଣା ଦେବତା ଭାବରେ ହିଁ ଉପାସିତ କରିଛନ୍ତି । ଭକ୍ତ ଓ କ୍ଷେତ୍ରାଧିପତିଙ୍କୁ ନେଇ ଅନେକ କଥା, କିମ୍ବଦନ୍ତୀ ଓ ଇତିହାସ ରଚିତ ହୋଇଛି । ରାମଦାସ, ରଘୁ ଅରକ୍ଷିତ, ବନ୍ଧୁ ମହାନ୍ତି, ବଳରାମ ଦାସ, ଝୋଲିଆ କବୀର, ମଣିଦାସ, ଗଣପତି ଭଟ୍ଟ,ଭକ୍ତ ସାଲବେଗ, ତୁଳସୀ ଦାସ ଓ ଭକ୍ତ ଦାସିଆ ବାଉରୀ ପ୍ରଭୃତି ଭକ୍ତମାନେ ଯେଭଳି ଭାବରେ ଜଗନ୍ନାଥଙ୍କୁ ତାଙ୍କ ଲୀଳା କ୍ଷେତ୍ରର ପ୍ରଚାର ଓ ଘଟଣା ପ୍ରବାହର ସମ୍ବାଦ ଦେଇଛନ୍ତି, ତାହା ଚିରସ୍ମରଣୀୟ ଓ ଏହା ଆଧ୍ୟାତ୍ମିକ ଚେତନାରେ ଆଦି ଜନମାନସକୁ ଉଜୀବୀତ କରିରଖିଛି । ଏହାଛଡ଼ା ଅନେକ ଋଷି ଓ ତପସ୍ୱୀମାନେ ଏ କ୍ଷେତ୍ରକୁ ଆସି ଆଶ୍ରମମାନ ପ୍ରତିଷ୍ଠା କରିଯାଇଅଛନ୍ତି । କଥିତ ଅଛି ସେମାନେ ସୂକ୍ଷ୍ମ ଶରୀରରେ ପ୍ରଭୁଙ୍କ ଦର୍ଶନ କରୁଛନ୍ତି । ଏଣୁ ଏହି ମହାପୁରଷମାନଙ୍କ ଆସନ ସ୍ଥାନ ପୁରୁଷୋତ୍ତମ କ୍ଷେତ୍ରରେ ୫୨ଟି ମଠ ରହିଅଛି । ଏ କ୍ଷେତ୍ରରେ ମାର୍କେଣ୍ଡେୟ, ଅଙ୍ଗିରା ଓ କଣ୍ଡୁ ଋଷି ତପସ୍ୱୀମାନେ ବ୍ରହ୍ମକୁ ଉପଲବ୍ଧି କରିଛନ୍ତି ।

ଏହି ପୁରୁଷୋତ୍ତମ କ୍ଷେତ୍ରର ଗୋଟିଏ ପଟେ ମହୋଦଧି ଯମନିକ ତୀର୍ଥକୁ ନେଇ ମହାତୀର୍ଥ ସ୍ୱର୍ଗଦ୍ୱାର ଓ ଅନ୍ୟପଟେ ମହୋଦଧି ସଲଗ୍ନ ହୋଇ ଦିବ୍ୟତୀର୍ଥ ରହିଅଛି । ଏହି ଦିବ୍ୟ ତୀର୍ଥ ହିଁ ମହାପ୍ରଭୁଙ୍କର ଆବିର୍ଭାବ ଘାଟ । ପୁରୁଷୋତ୍ତମ କ୍ଷେତ୍ରର ଆକୃତି ଶଙ୍ଖ ସଦୃଶ୍ୟ । ଏଣୁ ଏହାକୁ ଶଙ୍ଖକ୍ଷେତ୍ର ମଧ କୁହାଯାଏ । ଏହି କ୍ଷେତ୍ରର ପରିସୀମା ସମ୍ବନ୍ଧରେ ଶାସ୍ତ୍ର, ପୁରାଣରେ ବର୍ଣ୍ଣିତ ରହିଛି ।

ଯୁଗେ ଯୁଗେ ପ୍ରଭୁ ଅବତାର ନେଇ ଏହି ଜୀବଜଗତକୁ ରକ୍ଷା କରିଛନ୍ତି । ଏ ଜୀବକୁ ମୋକ୍ଷ ମାର୍ଗର ନିର୍ଦ୍ଦେଶ ହେଇଛନ୍ତି । ଏ ପୁରୁଷୋତ୍ତମ କ୍ଷେତ୍ରର ପରମ ପବିତ୍ର ରହସ୍ୟମୟ ଠାକୁର ଶ୍ରୀଜଗନ୍ନାଥ ଯୁଗେ ଯୁଗେ ସମସ୍ତ ଭକ୍ତ, ସାଧୁ, ସନ୍ଥ, ଯୋଗୀ, ମୁନି, ଋଷି ପ୍ରଭୃତିକୁ ଆକୃଷ୍ଟ କରିଅଛନ୍ତି । ପ୍ରଭୁ ଅଲୌକିକତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସେମାନଙ୍କର ଭକ୍ତିର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ପୁରୁଷୋତ୍ତମ କ୍ଷେତ୍ରରେ ଲୀଳା ପ୍ରତିପାଦିତ କରିଛନ୍ତି ।

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମଗ୍ର ଜଗତର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ଲୀଳାକ୍ଷେତ୍ରକୁ ସବୁ ଧର୍ମାଧର୍ମୀ ସଂପ୍ରଦାୟର ଗୁରୁମୁଖ୍ୟମାନେ ଆସିଛନ୍ତି ଓ ସମସ୍ତେ ଏ କ୍ଷେତ୍ରରେ କ୍ଷେତ୍ରାଧିଶଙ୍କୁ ପରମ ଆରାଧ ଭାବରେ ସ୍ୱୀକାର କରିଯାଇଅଛନ୍ତି । ଏହି ପବିତ୍ର ଧାମକୁ କବୀର, ସନ୍ଥ ନାନକ, ଜଗଦ୍ ଗୁରୁ ଶଙ୍କରାଚାର୍ଯ୍ୟ, ସନ୍ଥ ତୁଳସୀ ଦାସ, ମାଧ୍ୱାଚାର୍ଯ୍ୟ, ନିମ୍ବାର୍କ, ବିଷ୍ଣୁସ୍ୱାମୀ, ଭକ୍ତ ସାଲବେଗ ଓ କବି ଜୟଦେବ ପରି ଅନେକ ଭକ୍ତ, ସାଧୁସନ୍ଥ ଛୁଟି ଆସିଛନ୍ତି ଓ ସେମାନଙ୍କ ଅବସ୍ଥାନ କାଳରେ ଏହି କ୍ଷେତ୍ରର ତତ୍ତ୍ୱ ଓ ସ୍ଥିତିକୁ ନେଇ ସମ୍ମାନ ଓ ମର୍ଯ୍ୟାଦା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ପ୍ରଚାର ପ୍ରସାର କରିଅଛନ୍ତି ।

ଶ୍ୟାମା ଶ୍ୟାମ ନିବାସ
ପୁରୀ–୨

❖ ❖ ❖

# ପତିତ ପାବନ ହରି

ପରୀକ୍ଷିତ ମିଶ୍ର



ପତିତ ପାବନ ହରି ଜଗବନ୍ଧୁ ଦାନବାରି
ଭିଆଅ ପୁରୁଷୋତ୍ତମେ ଲୀଳା ଅନନ୍ତ
ଅତୀବ ଦୁର୍ଲଭ କ୍ଷେତ୍ର ପାଣି ପବନ ପବିତ୍ର
ତୋ ମନ୍ଦିର ଶିଖରେ ଉଡଇ ନେତ ।

ନେତ କରଇ ଆହ୍ୱାନ ଆଦରେ ଭକତ ଜନ
ଆସ ଦେଖି ଯା କଳାଶ୍ରୀମୁଖ  ବାରେ
ବାନା ଅଟଇ ସଙ୍କେତ ମହାପ୍ରଭୁ ବିରାଜିତ
ରତ୍ନବେଦୀରେ ଚତୁଃମୂର୍ତ୍ତି ରୂପରେ ।

ଅପାର ତାଙ୍କ ମହିମା କେ ଦେଇ ପାରେ ଉପମା
ଏକ ମାତ୍ର ସାଥୀ ଜନ୍ମମରଣର
ଏକ ମାତ୍ର ବନ୍ଧୁ ପ୍ରିୟ ବିପଦାପଦେ ସହାୟ
ଅନ୍ତର୍ଯ୍ୟାମୀ ସିଏ ବ୍ରହ୍ମ ଅଣାକାର ।

ସତ୍ୟ ପରମ ଆନନ୍ଦ ନିର୍ମଳ ସଚ୍ଚିଦାନନ୍ଦ
ଅନେକାକାରେ ପ୍ରକଟ ଚକ୍ରଧର
ଶ୍ରୀକୃଷ୍ଣ ରାଧାମାଧବ ଦେଖି ଭକ୍ତି ପ୍ରେମଭାବ
ଭକତେ ମିଳନ୍ତି ସ୍ଥିର ଚିତ୍ତ ଯାର ।

ହରିନାମ ମହାପୁଣ୍ୟ ଅନ୍ୟସବୁ ତୁଚ୍ଛ ଗଣ୍ୟ
ମହାନାମ ଶ୍ରେଷ୍ଠ ବିପଦ ହାରକ
ଜୀବନେ ଜୀବନ ପରେ ମୋକ୍ଷଦାତା କୃଷ୍ଣ ହରେ
ଜଗନ୍ନାଥ ପରଂଗୁରୁ ନିୟାମକ ।

ନାମେ ଲୟ ସ୍ୱର ଜ୍ଞାନ ପ୍ରଭୁପାଦେ ସଦା ମନ
ନାମ ନିତ୍ୟ ପବିତ୍ର ଜାହ୍ନବୀ ଧାର
ନାମ ବିନା ଜନ୍ମ ହୀନ ଶୁଷ୍କ ନିରସ ଜୀବନ
ନାମ ସମ୍ପଦ ଭରା ଅମୃତ ନୀର ।

ଯେ ପଶେ ତୋର ଶରଣ ଦୟାବନ୍ତ ପ୍ରଭୁ ଶୁଣ
ଯେମନ୍ତ ଧାରଣ କଲ ଗୋବର୍ଦ୍ଧନ
ତେମନ୍ତ ଦିଅ ଅଭୟ ଭକତକୁଳ ନିର୍ଭୟ
ସାର୍ଥକ କୀର୍ତ୍ତି ତବ ପଦ୍ମଲୋଚନ ।

ରାଜେନ୍ଦ୍ର ନଗର, କଟକ

# ସ୍କନ୍ଦ ପୁରାଣରେ ଦୁଇଟି ସମ୍ବାଦ

ସୂର୍ଯ୍ୟମଣି ଖୁଣ୍ଟିଆ

**ଇନ୍ଦ୍ରଦ୍ୟୁମ୍ନ– ବିଦ୍ୟାପତି ସମ୍ବାଦ**

ସେଦିନ ବ୍ରାହ୍ମଣଶ୍ରେଷ୍ଠ ବିଦ୍ୟାପତି ଅବନ୍ତୀକୁ ଫେରି ଆସିଛନ୍ତି । ସେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କର ଇଚ୍ଛାକୁ ପୂର୍ଣ୍ଣ କରିଛନ୍ତି । ଶ୍ରୀନୀଳାଚଳ ପର୍ବତ ଉପରେ ଦର୍ଶନ କରିଛନ୍ତି ଶ୍ରୀନୀଳମାଧବଙ୍କର ଇନ୍ଦ୍ରନୀଳମଣି ମୂର୍ତ୍ତିକୁ । ସେ ତ ନିଜେ ତାଙ୍କର ଜନ୍ମକୁ ସାର୍ଥକ କରିଛନ୍ତି । ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ଭଗବାନଙ୍କ ସ୍ୱରୂପର ବର୍ଣ୍ଣନା କରି ତାଙ୍କ ଜୀବନକୁ ସାର୍ଥକ କରିବେ ବୋଲି ମନସ୍ଥ କରିଛନ୍ତି ।

ସମସ୍ତଙ୍କ ଭିତରେ ପ୍ରବଳ ଉତ୍କଣ୍ଠା । ସମସ୍ତେ ଶୁଣିବେ ଶ୍ରୀନୀଳମାଧବଙ୍କ ସଂପର୍କରେ । ସେଇଥିପାଇଁ ସମସ୍ତେ ସମବେତ ହୋଇଛନ୍ତି । ଅବନ୍ତୀର ରାଜ ଦରବାରରେ କୁଳଗୁରୁ ପୁରୋହିତଙ୍କ ସମେତ ଅଛନ୍ତି ବିଦ୍ୱାନ୍ ପଣ୍ଡିତମାନେ । ସମସ୍ତେ ଶୁଣିବେ ଶ୍ରୀବିଷ୍ଣୁଙ୍କର ଅପୂର୍ବ ରୂପମାଧୁରୀ ସଂପର୍କରେ । ବିଦ୍ୟାପତି ରାଜ ଦରବାରକୁ ପ୍ରବେଶ କରିବା କ୍ଷଣି ମହାରାଜା ଇନ୍ଦ୍ରଦ୍ୟୁମ୍ନ ଆସନ ତ୍ୟାଗ କରି ଧାଇଁ ଆସିଛନ୍ତି ତାଙ୍କ ନିକଟକୁ । ତାଙ୍କର ପଦବନ୍ଦନା କରିଛନ୍ତି । ଦୀପାର୍ଘ୍ୟ ଦେଇ ସୁନ୍ଦର ଆସନରେ ଉପବେଶନ କରାଇଛନ୍ତି । ହାତଯୋଡି ନୀଳାଚଳ ଓ ନୀଳମାଧବଙ୍କର ବର୍ଣ୍ଣନା କରିବା ପାଇଁ ଅନୁରୋଧ କରିଛନ୍ତି । ବିଦ୍ୟାପତି୍ୟ ନିଜର ଅନୁଭବର ବର୍ଣ୍ଣନା କରିଛନ୍ତି । କିପରି ସେ ଶବରୀ ଦ୍ୱୀପରେ ପହଂଚିଲେ, କିପରି ସମୁଦ୍ରରେ ସ୍ନାନ କଲେ, କିପରି ପୁରୁଷୋତ୍ତମ କ୍ଷେତ୍ରର ପରିକ୍ରମା କଲେ । କିପରି ନୀଳାଚଳ ପର୍ବତ ଉପରେ ଆରୋହଣ କରି ନୀଳମାଧବଙ୍କର ଦର୍ଶନ କଲେ । ରୋହିଣୀ କୁଣ୍ଡରେ ସ୍ନାନ କଲେ ଏ ସବୁ କଥା ଗୋଟି ଗୋଟି କରି ବର୍ଣ୍ଣନା କରିଛନ୍ତି ।

ସେ କଳ୍ପବଟର ମହିମା ବର୍ଣ୍ଣନା କରିବା ସଂଗେ ସଂଗେ ନୃସିଂହଙ୍କର ବର୍ଣ୍ଣନା କରିଛନ୍ତି । ଅଷ୍ଟଶମ୍ଭୁ ଓ ଅଷ୍ଟଶକ୍ତିଙ୍କର ଦର୍ଶନ କରିଛନ୍ତି ଓ ରଥରେ ବୁଲି ବୁଲି ସବୁ ଦେଖିଛନ୍ତି ବୋଲି କହିଛନ୍ତି ।

ଇନ୍ଦ୍ରଦ୍ୟୁମ୍ନ ରୋମାଞ୍ଚିତ ହୋଇ ଉଠିଛନ୍ତି । ତାଙ୍କର ଆଖି ଭକ୍ତି ଓ ପ୍ରେମରେ ଛଳଛଳ ହୋଇଉଠିଛି । ସେ ପଚାରିଛନ୍ତି ବ୍ରହ୍ମନ୍ ଆପଣ ଦେଖିଥିବା ଭଗବାନ୍ ବିଷ୍ଣୁଙ୍କର ସେହି ଇନ୍ଦ୍ରନୀଳମଣି ମୂର୍ତ୍ତିର ବର୍ଣ୍ଣନା କରନ୍ତୁ । ମୁଁ ଆପଣଙ୍କ ଶ୍ରୀମୁଖରୁ ସେହି ଦିବ୍ୟ ମୂର୍ତ୍ତିଙ୍କର ବର୍ଣ୍ଣନା ଶୁଣି ଧନ୍ୟ ହେବି ।

ବିଦ୍ୟାପତି ଭକ୍ତି ଗଦ୍‌ଗଦ୍ କଣ୍ଠରେ କହିଛନ୍ତି– ରାଜନ୍ ! ମୁଁ ଏବେବି ଭଗବାନ୍ ଜଗନ୍ନାଥଙ୍କର ସେହି ଦିବ୍ୟ ମୂର୍ତ୍ତିକୁ ଦର୍ଶନ କରୁଛି । ସେ ମୂର୍ତ୍ତିକୁ ଚର୍ମଚକ୍ଷୁରେ ଦେଖିଲେ ମଣିଷ ମୋକ୍ଷପ୍ରାପ୍ତ ହୁଏ । ଭଗବାନଙ୍କର ସେହି ମୂର୍ତ୍ତି ଅତ୍ୟନ୍ତ ପ୍ରାଚୀନ । ତାହା ଇନ୍ଦ୍ରନୀଳମଣି ପଥରରେ ନିର୍ମିତ ।

ବ୍ରହ୍ମା ରୁଦ୍ର ଓ ଇନ୍ଦ୍ରାଦି ଦେବତାମାନେ ପ୍ରତିଦିନ ଯାଇ ତାଙ୍କର ପୂଜା କରନ୍ତି । ହେ ରାଜନ୍ ! ନା ଏ ମୂର୍ତ୍ତି କେବେ ମଳିନ ହୁଏ ନା । ଭଗବାନଙ୍କର ପ୍ରସାଦ ଲାଭକରି ମୋର ପାପ କ୍ଷୟ ହୋଇଗଲା ଓ ମୁଁ ଦେବତାମାନଙ୍କ ପରି ପବିତ୍ର ହୋଇଗଲି ।

ପୁଣି ବିଦ୍ୟାପତି କହିଛନ୍ତି, ରାଜନ୍ ଏଠାରେ ଭୋଗ ଓ ମୋକ୍ଷ ଏକ ସଙ୍ଗରେ ଅବସ୍ଥାନ କରନ୍ତି । ବାର୍ଦ୍ଧକ୍ୟ ରୋଗ ଓ ଶୋକ କ୍ଷେତ୍ରରେ ଦୁର୍ଲଭ । ଏମାନେ ଏଠାରେ ନିଜର ପ୍ରଭାବ ବିସ୍ତାର କରି ପାରନ୍ତି ନାହିଁ । ନୀଳପଦ୍ମ ସଦୃଶ୍ୟ ନେତ୍ର ଧାରଣ କରି ଭଗବାନ୍ ଜଗନ୍ନାଥ ଏଠାରେ ବିଦ୍ୟମାନ । ସେ ଶରଣାଗତକୁ ଅମୃତମୟ ଓ ମୋକ୍ଷ ପ୍ରଦାନ କରନ୍ତି ।

ଇନ୍ଦ୍ରଦ୍ୟୁମ୍ନ ଉଲ୍ଲସିତ ହୋଇଛନ୍ତି । ବିଦ୍ୟାପତି କିପରି ସେହି ଇନ୍ଦ୍ରନୀଳମଣି ପ୍ରସ୍ତର ନିର୍ମିତ ଭଗବାନଙ୍କ ନିକଟରେ ପହଂଚିଲେ ସେ କଥା ଜାଣିବାକୁ ଚାହିଁଛନ୍ତି । ବିଦ୍ୟାପତି ନିଜର ଅନୁଭବ ବର୍ଣ୍ଣନା କରିଛନ୍ତି ।

ମୁଁ ସଂଧ୍ୟା ସମୟରେ ପୁରୁଷୋତ୍ତମ ତୀର୍ଥରେ ଭଗବାନ୍ ଶ୍ରୀ ନୀଳାଚଳବାସୀ ବିଷ୍ଣୁଙ୍କ ନିକଟରେ ପହଞ୍ଚିଲି । ସେସମୟରେ ସେଠାରେ ଦିବ୍ୟ ସୁଗନ୍ଧ ବାୟୁ ବହୁଥିଲା। ବିଦ୍ୟାପତି ପୁଣି କହଛନ୍ତି ଆକାଶ ମାର୍ଗରେ ଦେବତାମାନଙ୍କର ଆଗମନର ସମ୍ମିଳିତ ସ୍ୱର ଶୁଣିବାକୁ ମିଳିଲା। ସେଠାରେ ବିଶ୍ୱାବସୁ ନାମକ ଜଣେ ଶବର ମୋର ମିତ୍ର ହେଲେ। ସେ ହିଁ ମୋତେ ଦିବ୍ୟ ଭୋଜନ କରାଇଲେ। ମାଳା ପ୍ରଦାନ କଲେ। ଏ ମାଳା କେବେବି ମଳିନ ହୁଏ ନାହିଁ। ଏହା ଲକ୍ଷ୍ମୀବର୍ଦ୍ଧକ । ଏହି ମାଳାଦ୍ୱାରା ହିଁ ରାଜ୍ୟର ଶ୍ରୀବୃଦ୍ଧି ଘଟିବ। କେବଳ ସେତିକି ନୁହେଁ, ଏ ମାଳା ସମସ୍ତ ଦରିଦ୍ରତା ଓ ପାପକୁ ଦୂର କରିପାରେ । ଏହା ଆପଣଙ୍କର ଯୋଗ୍ୟ ବୋଲି ମୁଁ ଆପଣଙ୍କ ନିକଟକୁ ନେଇ ଆସିଛି । ଭଗବାନ ବିଷ୍ଣୁଙ୍କର ସେହି ପାବନ କ୍ଷେତ୍ର ଘନବନାନୀରେ ପରିପୂର୍ଣ୍ଣ । ନୀଳାଚଳ ଏହି କ୍ଷେତ୍ରର ନାଭିସ୍ଥଳ ବା କେନ୍ଦ୍ରସ୍ଥଳ ଅଟେ । ଦୈର୍ଘ୍ୟ ଏବଂ ପ୍ରସ୍ଥରେ ଏ କ୍ଷେତ୍ର ପାଂଚକୋଶ ବୋଲି କୁହାଯାଏ । ତୀର୍ଥରାଜ ସମୁଦ୍ରର ତଟ ଉପରେ ଏହି ନୀଳାଚଳର ଅବସ୍ଥିତି । ଚାରି ପଟରେ ସ୍ୱର୍ଣ୍ଣ ରଙ୍ଗର ବାଲୁକା ଦ୍ୱାରା ଆଛାଦିତ ପ୍ରାନ୍ତର।

ପର୍ବତ ଶିଖର ଉପରେ ଗୋଟିଏ ଉଚ୍ଚ ବଟ ବୃକ୍ଷ ରହିଛି ଓ ବଟବୃକ୍ଷ ପ୍ରଳୟ କାଳରେ ମଧ୍ୟ ସ୍ଥିର ହୋଇ ରହିଥାଏ। ଏହାର ଉଚ୍ଚତା ମଧ୍ୟ ଏକକୋଶ ଅଟେ । ଏ ବଟବୃକ୍ଷରେ ଫୁଲ ଫୁଟେ ନାହିଁ କିମ୍ବା ଫଳ ଫଳେ ନାହିଁ । ସୁନ୍ଦର ସବୁଜପତ୍ର ଦ୍ୱାରା ଆଛାଦିତ ଏ ବୃକ୍ଷ । ସୂର୍ଯ୍ୟଙ୍କର ଗତି ସହିତ ଏ ବୃକ୍ଷର ଛାୟାରେ କିଛି ପରିବର୍ତ୍ତନ ଘଟେ ନାହିଁ । ଏହି ବୃକ୍ଷର ପଶ୍ଚିମରେ ଗୋଟଏ କୁଣ୍ଡ ଅଛି । ସେହି କୁଣ୍ଡର ନାମ ରୋହିଣୀକୁଣ୍ଡ । ଏ କୁଣ୍ଡକୁ ପ୍ରବେଶ କରିବା ପାଇଁ ନୀଳରଙ୍ଗର ପଥରରେ ତିଆରି ପାହଚମାନ ରହିଛି । କୁଣ୍ଡର ବାହାରେ ଚାରି ଦିଗରେ ସ୍ଫଟିକ ନିର୍ମିତ ଚାରିଗୋଟି ବେଦୀ ରହିଛି ।

ସେହି ବେଦୀ ମଧ୍ୟ ଭାଗରେ ଭଗବାନ୍ ବିଷ୍ଣୁ ବିରାଜମାନ ଅଟନ୍ତି। ବଟବୃକ୍ଷର ଛାୟାରେ ଏ ସ୍ଥାନ ଅତ୍ୟନ୍ତ ଶୀତଳ । ଭଗବାନଙ୍କର ଏହି ବିଗ୍ରହ ଏକାଶୀ ଆଙ୍ଗୁଳି ଉଚ୍ଚ । ସେ ସୁବର୍ଣ୍ଣମୟ ପଦ୍ମ ଉପରେ ଦଣ୍ଡାୟମାନ । ସେହି ବିଗ୍ରହଙ୍କର ମୁଖ ଚନ୍ଦ୍ର ଦର୍ଶନରେ ଜୀବର ପାପ ତ୍ରୟର ବିନାଶ ଘଟେ । ଭଗବାନଙ୍କର ଦୁଇନାସିକା ତିଳପୁଷ୍ପପରି ଶୋଭାପାଏ ଓ ପଥର ତିଆରି ମୂର୍ତ୍ତି ହୋଇଥିଲେ ବି ତାଙ୍କର ଅଧରରେ ମଧୁର ହସର ଛଟା ଚିର ବିଦ୍ୟମାନ । ଏ ବିଗ୍ରହଙ୍କର କପୋଳ ସୁନ୍ଦର । ଦେବଶିଳ୍ପୀ ବିଶ୍ୱକର୍ମା ମଧ୍ୟ ଏ ବିଗ୍ରହଙ୍କୁ ଦେଖି ବିସ୍ମିତ ହୁଅନ୍ତି । ତାଙ୍କ ଗଳାରେ ଦିବ୍ୟ ବନମାଳା, ହାତରେ ଦକ୍ଷିଣାବର୍ତ୍ତ ଶଙ୍ଖ ଓ ବକ୍ଷ ସ୍ଥଳରେ ଦିବ୍ୟମାଳା ସୁଶୋଭିତ। ପୁଣି ତା ଉପରେ କୌସ୍ତୁଭ ମଣିର ଝଲକ । ଏହି ଦିବ୍ୟ ବିଗ୍ରହଧାରୀ ନୀଳାଚଳବାସୀ ଭଗବାନଙ୍କର ବାମ ପାର୍ଶ୍ୱରେ ମହାଲକ୍ଷ୍ମୀ ବିରାଜିତା ।

ଭଗବତୀ ଲକ୍ଷ୍ମୀ ବୀଣା ବଜାଉଛନ୍ତି। ତାଙ୍କର ଦୃଷ୍ଟି ଭଗବାନଙ୍କର ମୁଖ ଉପରେ ଲାଖି ରହିଛି। ସେ ଲାବଣ୍ୟମୟୀ ଓ ନାନା ଅଳଙ୍କାର ବିଭୂଷିତା ।

ଜଗତପିତା ବିଷ୍ଣୁ ଓ ଜଗତଜନନୀ ଲକ୍ଷ୍ମୀ ସେହି ପର୍ବତ ଉପରେ ନିବାସ କରିଛନ୍ତି । ସେ ଦୁହେଁ ପ୍ରାଣୀମାନଙ୍କ ଉପରେ ଦୟାର ବର୍ଷା କରନ୍ତି। ସେ ଦୁହିଁଙ୍କ ପଛରେ ଶେଷନାଗ ଫଣା ବିସ୍ତାର କରି ଦଣ୍ଡାୟମାନ ହୋଇଛନ୍ତି। ସାମ୍ନାରେ ଚକ୍ରରାଜ ସୁଦର୍ଶନ ଦିବ୍ୟ ଦେହ ଧାରଣ କରି ଦଣ୍ଡାୟମାନ ହୋଇଛି। ତା ପଛକୁ କରପତ୍ରଯୋଡି ଦଣ୍ଡାୟମାନ ହୋଇଛି ପକ୍ଷୀରାଜ୍ ଗରୁଡ।

ଭଗବାନଙ୍କର ଚତୁର୍ଭୁଜରେ ଥିବା ଆୟୁଧମାନଙ୍କର ତତ୍ତ୍ୱ ମଧ୍ୟ ମହାନ୍ । ତେଜମୟ ସୁଦର୍ଶନ ପ୍ରକାଶମାନ ଜ୍ଞାନର ପ୍ରତୀକ, କମଳ ବା ପଦ୍ମ ଅହଂକାରର ପ୍ରତୀକ । ଗଦା ଐଶ୍ୱର୍ଯ୍ୟର ପ୍ରତୀକ ଓ ଶଙ୍ଖ ନାଦାତ୍ମକ ଶବ୍ଦ ବ୍ରହ୍ମର ପ୍ରତୀକ ।

ମହାରାଜା ଇନ୍ଦ୍ରଦ୍ୟୁମ୍ନ ଭଗବାନଙ୍କ ନୀଳାଚଳବାସୀ ଜଗନ୍ନାଥଙ୍କ ସଂପର୍କରେ ଶୁଣୁଶୁଣୁ ବିମୋହିତ ହୋଇପଡିଛନ୍ତି। ସେ ଆତ୍ମବିସ୍ମୃତ ହୋଇ ଯାଇଛନ୍ତି ।

ସେ କହିଛନ୍ତି – ହେ ବ୍ରହ୍ମନ୍, ଭଗବାନଙ୍କର ନିର୍ମାଲ୍ୟ ସ୍ପର୍ଶରେ ମୋର ବହୁଜନ୍ମର ପାପ ଦୂର ହୋଇଗଲା । ମୁଁ ଭଗବାନଙ୍କୁ ଦର୍ଶନ କରିବାର ଯୋଗ୍ୟତା ଅର୍ଜନ କଲି ବୋଲି ମନେ କରୁଛି।

ମୁଁ ସେହି ଦିବ୍ୟ ନୀଳାଚଳଧାମକୁ ଯାତ୍ରା କରିବି। ସେଇଠି ସୁନ୍ଦର ଓ ସମୃଦ୍ଧିଶାଳି ନଗର ନିର୍ମାଣ କରିବି । ଭଗବାନ ବିଷ୍ଣୁଙ୍କର ଆନନ୍ଦ ପାଇଁ ସହସ୍ର ଅଶ୍ୱମେଧ ଯଜ୍ଞ କରିବି । ପ୍ରତିଦିନ ଷୋଡଶ ଉପଚାରରେ ଜଗନ୍ନାଥଙ୍କର ପୂଜା କରିବି।

ଇନ୍ଦ୍ରଦ୍ୟୁମ୍ନ– ନାରଦ ସମ୍ବାଦ

ମହାରାଜା ଇନ୍ଦ୍ରଦ୍ୟୁମ୍ନ ମହାପ୍ରଭୁ ଜଗନ୍ନାଥ ଭକ୍ତିରେ ବୁଡିଯାଇଛନ୍ତି । ତାଙ୍କର ବାହ୍ୟ ଜ୍ଞାନ ଲୋପ ହୋଇଆସୁଛି । ଏହି ସମୟରେ ଆକାଶ ମାର୍ଗରୁ ବୀଣାର ଝଙ୍କାର ଶୁଭୁଛି । ତତ୍ ସହିତ ନାରାୟଣ ନାମ କୀର୍ତ୍ତନ ଶ୍ରୁତିଗୋଚର ହୋଇଛି । ଇନ୍ଦ୍ରଦ୍ୟୁମ୍ନ ଚକିତହୋଇ ପଡିଛନ୍ତି। ଦେଖୁଛନ୍ତି ଭକ୍ତ ଶିରୋମଣି ନାରଦ ତାଙ୍କ ଦରବାରକୁ ଅବତରଣ କରୁଛନ୍ତି। ଆଶ୍ଚର୍ଯ୍ୟ ଚକିତ ଇନ୍ଦ୍ରଦ୍ୟୁମ୍ନ ଛିଡା ହୋଇ ପଡିଛନ୍ତି। ସେ ନାରଦକୁ ସ୍ୱାଗତ କରି କର ଯୋଡିକହିଛନ୍ତି–

ଆଜି ମୋର ସମସ୍ତ ଯଜ୍ଞ, ଦାନ, ସ୍ୱାଧ୍ୟାୟ ତଥା ତପସ୍ୟା ସଫଳ ହୋଇଗଲା । କାରଣ ମୋ ଘରକୁ ଆଜି ବ୍ରହ୍ମାଙ୍କର ଦ୍ୱିତୀୟ ସ୍ୱରୂପ ନାରଦ କୃପା ପୂର୍ବକ ଆସିଛନ୍ତି । ହେ ମୁନି ଆପଣ ଆଜି ଯେତିକି କୃପା କରିଛନ୍ତି, ମୁଁ ସେତିକିରେ ତ କୃତାର୍ଥ ହୋଇଯାଇଛି । ତଥାପି ଆପଣଙ୍କ ପ୍ରସନ୍ନତା ପାଇଁ ଆପଣଙ୍କର କି ସେବା କରିବି । ସେ ଆଦେଶ ଆପଣ ମୋତେ ଦିଅନ୍ତୁ । କେଉଁ କାରଣରୁ ଆପଣ ମୋ ଦୁଆରେ ପଦାର୍ପଣ କରି ମୋ ଘରକୁ ପବିତ୍ର କଲେ ।

ରାଜାଙ୍କର ଭକ୍ତି ଓ ବିନୟ ଭାବରେ ମୁଗ୍ଧ ହୋଇଯାଇଛନ୍ତି ଦେବର୍ଷି ନାରଦ । ନାରଦ ହସି ହସି କହିଛନ୍ତି ହେ ନୃପଶ୍ରେଷ୍ଠ ତୁମର ନିର୍ମଳ ଗୁଣ ପାଇଁ ବ୍ରାହ୍ମାଦି ସମସ୍ତ ଦେବତା ସିଦ୍ଧ ଏବଂ ମୁନିମାନେ ତୁମ ଉପରେ ଅତ୍ୟନ୍ତ ପ୍ରୀତ । ତୁମେ ବହୁତ ଭଲ କାମ କରିଛ ଏବଂ ଭଲ ନିଷ୍ପତ୍ତି ନେଇଛ । ହଜାର ଜନ୍ମର ପୁଣ୍ୟ ଫଳରେ ନୀଳାଚଳ ନିବାସୀ ଭଗବାନ୍ ମାଧବଙ୍କଠାରେ ଭକ୍ତି ଉତ୍ପନ୍ନ ହୁଏ । ଏଣୁ ଭଗବାନ୍‌ଙ୍କ ପ୍ରତି ତୁମର ଏହିପରି ଭକ୍ତି ହେବା ସ୍ୱାଭାବିକ । ମନୁଷ୍ୟ ନାନା ଦୁଃଖ ଜଂଜାଳପୂର୍ଣ୍ଣ ସଂସାର ରୂପକ ଅରଣ୍ୟରେ ଚାଲିଲା ବେଳେ କେବଳ ବିଷ୍ଣୁଭକ୍ତି ହିଁ ଭଗବାନଙ୍କୁ ଆନନ୍ଦ ଦେଇଥାଏ । ଏ ସଂସାର ସମୁଦ୍ରରେ ସହାୟ ହେବାକୁ କେବଳ ବିଷ୍ଣୁ ଭଗବାନଙ୍କ ବ୍ୟତୀତ ଆଉ କେହିନାହିଁ । ଏ ସମୁଦ୍ରରେ ଅନେକ ସମୟରେ ଦୁଃଖ ଓ ସୁଖର ପ୍ରଚଣ୍ଡ ଦ୍ୱନ୍ଦ୍ୱ ରୂପୀ ତୋଫାନ୍ ଆସେ । ସେଇଥିପାଇଁ ସଂସାରକୁ ଦୁସ୍ତର ପାରାବାର ବୋଲି କୁହାଯାଏ । ଏ ଭବସାଗରରେ ଭାସି ଯାଉଥିବା ବ୍ୟକ୍ତି ପାଇଁ ଭଗବତ୍ ଭକ୍ତି ବା ବିଷ୍ଣୁଭକ୍ତି ଏକମାତ୍ର ନୌକା ଅଟେ । କେବଳ ଭଗବତୀ ଭକ୍ତି କରି ଆଶ୍ରୟ ନେଇ ସନ୍ତୁଷ୍ଟ ହେଉଥିବା ସାଧୁପୁରୁଷମାନେ କେବେବି ଶୋକ କରନ୍ତି ନାହିଁ । ଦେହଧାରୀ ଜୀବର ଯେଉଁ ପାପ ରାଶି ତାହାକୁ ଅସ୍ଥିର କରେ, ସେହି ପାପ ରାଶି ବିଷ୍ଣୁଭକ୍ତିରୂପୀ ମହାନ୍ ଦାବାନଳରେ ପତଙ୍ଗ ପରି ଜଳିଯାଏ ।

ପ୍ରୟାଗ ଗଙ୍ଗା ଆଦି ତୀର୍ଥ, ତପସ୍ୟା, ଶ୍ରେଷ୍ଠ ଅଶ୍ୱମେଧ ଯଜ୍ଞ, ମହାନ୍ ଦାନ, ବ୍ରତ, ଉପବାସ, ଓ ନିୟମ– ଏହାକୁ ସହସ୍ରବାର ଅନୁଷ୍ଠାନ କରି ଯେତିକି ପୁଣ୍ୟ ହେବ, ତାକୁ କୋଟି କୋଟି ଗୁଣ କଲେ ମଧ୍ୟ ବିଷ୍ଣୁଭକ୍ତିର ସହସ୍ର ଅଂଶର ଗୋଟିଏ ଅଂଶ ସହିତ ସମାନ ହେବ ନାହିଁ ।

ସହଜେ ତ ଦେବର୍ଷି ନାରଦ ଭକ୍ତି ଶିରୋମଣି ଭଗବାନ୍ ବିଷ୍ଣୁଙ୍କର ସେ ଅନନ୍ୟ ଭକ୍ତ । ତାଙ୍କରି ମୁହଁରୁ ବିଷ୍ଣୁ ଭକ୍ତିର କଥାଶୁଣି ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଭକ୍ତି ସମ୍ବନ୍ଧରେ ଅଧିକ କଥା ଓ ମହତ୍ୱ ଜାଣିବାକୁ ଚାହିଁଛନ୍ତି । ତେଣୁ ସେ ପଚାରିଛନ୍ତି ଭଗବାନ୍ ! ଭକ୍ତିର ସ୍ୱରୂପ କଣ ? ଦୟାକରି ତାର ଲକ୍ଷଣ ସଂପର୍କରେ କିଛି କୁହନ୍ତୁ । ବକ୍ତାଙ୍କୁ କହିବା ପାଇଁ ତାଙ୍କର ମନକୁ ପାଇଲାଭଳି ବିଷୟଟିଏ ମିଳିଗଲେ ଯେପରି ବକ୍ତା ଆନନ୍ଦିତ ହୁଅନ୍ତି, ଦେବର୍ଷି ନାରଦ ସେହିପରି ଆନନ୍ଦିତ ହୋଇଛନ୍ତି ଓ କହିଛନ୍ତି, ରାଜନ୍ ! ସାବଧାନ ହୋଇ ଶୁଣ । ମୁଁ ଭଗବାନ୍ ବିଷ୍ଣୁଙ୍କର ସନାତନ ଭକ୍ତିର ବିଶେଷ ବର୍ଣ୍ଣନା କରୁଛି । ଗୁଣ ଭେଦରେ ଭକ୍ତି ତିନି ପ୍ରକାର ଯଥା– ସାତ୍ତ୍ୱିକୀ ରାଜସୀ ଓ ତାପସୀ । ଏହା ବ୍ୟତୀତ ଚତୁର୍ଥ ଭକ୍ତି ହେଉଛି ନିର୍ଗୁଣା ଭକ୍ତି ।

ଯେଉଁ ଲୋକ କାମ କ୍ରୋଧର ବଶୀଭୂତ ହୁଅନ୍ତି, ଅନ୍ୟର କ୍ଷତିସାଧନ କରିବା ପାଇଁ ଭଜନସାଧନ ପୂଜା ଆରାଧନା କରି ସତ୍ ଚେଷ୍ଟା କରନ୍ତି ସେ ଲୋକଙ୍କର ସେ ପ୍ରକାର ଭକ୍ତିକୁ ତାମସୀ ଭକ୍ତି କୁହାଯାଏ । ଅଧିକ ଯଶ ସଂପଦ ପାଇବା ପାଇଁ ବା ଅନ୍ୟ ସହିତ ଦ୍ୱନ୍ଦ୍ୱ କରି ତାକୁ ପରାଜିତ କରିବା ପାଇଁ ଯେଉଁ ଈଶ୍ୱର ଆରାଧନା କରାଯାଏ, ତାହାକୁ ରାଜସୀ ଭକ୍ତି କୁହାଯାଏ । ପରଲୋକଙ୍କ ଲାଭକୁ ସ୍ଥାୟୀ ଲାଭ ବୋଲି ବିଚାରକରି ଜଗତର ସମସ୍ତ ବସ୍ତୁକୁ ନଶ୍ୱର ବୋଲି ମନେକରି ନିଜର ବର୍ଣ୍ଣ । ଶ୍ରମକୁ ପରିତ୍ୟାଗ ନକରି ଆତ୍ମଜ୍ଞାନ ପାଇଁ ଯେଉଁ ଈଶ୍ୱର ଭକ୍ତି କରାଯାଏ, ତାହାକୁ ସାତ୍ତ୍ୱିକ ଭକ୍ତି କୁହାଯାଏ ।

ଏ ଜଗତ ଜଗନ୍ନାଥଙ୍କର ସ୍ୱରୂପ । ତାଙ୍କ ବିନା ଆଉ କିଛି ବା କେହି ଜଗତର କାରଣ ହୋଇ ପାରିବେ ନାହିଁ । ମୁଁ ଭଗବାନଙ୍କଠାରୁ ପୃଥକ ନୁହେଁ, ସେ ମଧ୍ୟ ମୋଠାରୁ ପୃଥକ ନୁହଁନ୍ତି । ଏହିପରି ବୁଝି ଭେଦ ସୃଷ୍ଟିକାରୀ ବାହାର ଉପାଧିମାନକୁ ତ୍ୟାଗକରି ଅଧିକ ପ୍ରେମର ସହିତ ଭଗବାନଙ୍କୁ ଭକ୍ତି କରିବା ଅଦ୍ୱୈତ ବା ନିର୍ଗୁଣା ଭକ୍ତି । ଏହି ଭକ୍ତି ମୁକ୍ତି ପ୍ରଦାନକାରୀ ଅତ୍ୟନ୍ତ ଦୁର୍ଲଭ ଅଟେ । ଦେବର୍ଷି ନାରଦ ଟିକିଏ ଅଟକିଯାଇ ପୁଣି କହିଛନ୍ତି– ବର୍ତ୍ତମାନ ମୁଁ ଭଗବାନଙ୍କର ଭକ୍ତମାନଙ୍କର ଲକ୍ଷଣ କହୁଛି ଯେଉଁମାନଙ୍କର ଚିତ୍ତ ଅତ୍ୟନ୍ତ ଶାନ୍ତ, ଯିଏ ସମସ୍ତଙ୍କ ପ୍ରତି କୋମଳଭାବ ରଖନ୍ତି, ଯିଏ ନିଜ ଇଚ୍ଛାନୁସାରେ ନିଜର ଇନ୍ଦ୍ରିୟମାନଙ୍କୁ ଜୟ କରିପାରନ୍ତି, କଥା ଏବଂ କାର୍ଯ୍ୟରେ ଯେ ଅନ୍ୟମାନଙ୍କ ଦ୍ରୋହ କରିବାର ଇଚ୍ଛା କରନ୍ତି ନାହିଁ । ଯେଉଁମାନଙ୍କର ହୃଦୟ ଦୟାରେ ଦ୍ରବୀଭୂତ ହୋଇଯାଏ, ଯେଉଁମାନେ ଚୋରି ଏବଂ ହିଂସାଠାରୁ ଦୂରରେ ରୁହନ୍ତି, ସଦ୍‌ଗୁଣର ଆଧାର ହୁଅନ୍ତି, ଅନ୍ୟର ସଫଳତାରେ ଆନନ୍ଦ ପ୍ରକାଶ କରନ୍ତି, ସଦାଚାରରେ ଯାହାଙ୍କର ହୃଦୟ ସବୁବେଳେ ନିଷ୍କଳଙ୍କ ଯିଏ ଅନ୍ୟର ଉତ୍ସବକୁ ନିଜର ଉତ୍ସବ ମନେ କରନ୍ତି, ସମସ୍ତ ପ୍ରାଣୀଙ୍କର ହୃଦୟରେ ବାସୁଦେବଙ୍କ ଦର୍ଶନ

କରି କାହାରିକୁ ଈର୍ଷାଦ୍ୱେଷ ପ୍ରଦର୍ଶନ କରନ୍ତି ନାହିଁ ଦୀନ ଦରିଦ୍ରଙ୍କ ପ୍ରତି ଦୟା ପ୍ରଦର୍ଶନ କରନ୍ତି, ପର ହିତ ସାଧନାରେ ବ୍ରତୀ ହୁଅନ୍ତି, ସେଇମାନେ ହିଁ ବିଷ୍ଣୁଙ୍କର ପରମଭକ୍ତ, ଅବିବେକୀ ମନୁଷ୍ୟମାନଙ୍କର ବିଷୟ ବାସନା ପ୍ରତି ଯେତିକି ମୋହଥାଏ । ତାର ଶହେ କୋଟି ଗୁଣ ପରିମାଣରେ ଭକ୍ତ ଭଗବାନଙ୍କ ପଦାରବିନ୍ଦରେ ପ୍ରୀତି ରଖେ।

ପ୍ରକୃତ ହରି ଭକ୍ତ ଶଙ୍କରାଦି ସମସ୍ତ ଦେବତାଙ୍କୁ ହରିଜ୍ଞାନରେ ପୂଜା କରନ୍ତି। ପିତୃ ପିତାମହଙ୍କୁ ଭଗବାନ୍ ବିଷ୍ଣୁ ବୋଲି ମନେକରନ୍ତି। ଭକ୍ତ ଭଗବାନ ବିଷ୍ଣୁଙ୍କ ବ୍ୟତୀତ ଅନ୍ୟ କିଛି କେଉଁଠି ଦେଖନ୍ତି ନାହିଁ। ସର୍ବତ୍ର ଭଗବାନ୍ ବିଷ୍ଣୁଙ୍କର ସ୍ଥିତିକୁ ଉପଲବ୍ଧ କରନ୍ତି। ସେବ୍ୟ ସେବକ ଭିତରେ କୌଣସି ଭିନ୍ନତା ଅନୁଭବ କରନ୍ତି ନାହିଁ । ବ୍ରହ୍ମାଦି ଦେବତାଙ୍କ ଦ୍ୱାରା ବନ୍ଦନୀୟ ସେହି ପାଦପଦ୍ମକୁ ଅନବରତ ଧ୍ୟାନ କରନ୍ତି। ଭଗବାନଙ୍କର ନାମ ସଦା ସର୍ବଦା କୀର୍ତ୍ତନ କରନ୍ତି। ତାଙ୍କର ଭଜନ କରନ୍ତି । ନିଜକୁ ତୃଣଠାରୁ ହୀନ ମନେକରି ଏ ସଂସାରର ଲୋକଙ୍କ ସହିତ ବିନୟପୂର୍ଣ୍ଣ ଆଚରଣ କରନ୍ତି। ଜଗତର ସମସ୍ତ ଲୋକଙ୍କର ଉପକାର କରିବା ପାଇଁ ଅଙ୍ଗୀକାରବଦ୍ଧ ହୁଅନ୍ତି। ଯେଉଁ ବ୍ୟକ୍ତି ପରଧନ ଓ ପର ସ୍ତ୍ରୀକୁ ଲୋଭ ନକରି ସମସ୍ତ ଜୀବ ଓ ସମସ୍ତ ବସ୍ତୁଠାରେ ସମଭାବାପନ୍ନ ହୋଇ ଈଶ୍ୱରଙ୍କୁ ଦେଖନ୍ତି ସେଇ ହିଁ ପରମ ଭକ୍ତ । ସେହିଁ ପରମ ବୈଷ୍ଣବ।

ନାରଦ ବିଷ୍ଣୁଭକ୍ତ ବୈଷ୍ଣବଙ୍କର ଲକ୍ଷଣମାନ କହିବା ସଂଗେ ସଂଗେ କହିଛନ୍ତି ରାଜନ୍ ! ତୁମ ମନରେ ଭଗବାନଙ୍କର ଦାସ୍ୟଭାବ ସୃଷ୍ଟି ହେବା ବିଧେୟ।

ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କଠାରୁ ବିଷ୍ଣୁଭକ୍ତି ଓ ଭକ୍ତଙ୍କ ସମ୍ବନ୍ଧରେ ବିସ୍ତୃତ ଭାବରେ ଶୁଣିବା ପରେ ଉଦ୍‌ବେଳିତ ହୋଇ ଉଠିଛନ୍ତି। ସେ ଦେବର୍ଷି ନାରଦଙ୍କୁ କହିଛନ୍ତି– ବ୍ରହ୍ମନ୍ ! ଏ ସତ୍‌ସଂଗର ଫଳ ମୋତେ ନିଶ୍ଚୟ ମିଳିବ। ମୁଁ ନୀଳମାଧବଙ୍କୁ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇ ଉଠିଛି। ଆପଣ ମୋ ରଥରେ ଆରୋହଣ କରନ୍ତୁ। ଦୟାକରି ମୋତେ ନୀଳମାଧବଙ୍କର ଦର୍ଶନ କରାଇ ଦିଅନ୍ତୁ। ନାରଦ ସମ୍ମତ ହୋଇଛନ୍ତି। ନୀଳାଚଳରେ ନୀଳମାଧବଙ୍କୁ ଦର୍ଶନ କରାଇ ଦେବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି। ଜ୍ୟେଷ୍ଠ ଶୁକ୍ଳ ପଂଚମୀ ବୁଧବାର ପୁଷ୍ୟାନକ୍ଷତ୍ରରେ ଉତ୍ତମ ଲଗ୍ନ ଦେଖି ପରମ ବୈଷ୍ଣବ ଇନ୍ଦ୍ରଦ୍ୟୁମ୍ନ ନୀଳାଚଳ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଛନ୍ତି। ତାଙ୍କର ସହାୟତା କରିଛନ୍ତି ଦେବର୍ଷି ନାରଦ।

ବେଗନା, କୋରାଇ
ଯାଜପୁର–୭୫୫୦୨୨



# ଶ୍ରୀଜଗନ୍ନାଥ

ସତ୍ୟରଞ୍ଜନ ବଳ

କୋଟି ଓଡ଼ିଆଙ୍କ ପ୍ରାଣର ସ୍ପନ୍ଦନ, କୋଟି ଓଡ଼ିଆଙ୍କ ଆଶା
ନିରାକାର ତୁମେ ସର୍ବତ୍ର ସୁଲଭ, ପବିତ୍ର ପୁରାଣ ଭାଷା
ବରଷଟା ଯାକ ଅନ୍ଧାର ଦେଉଳେ, ଭାଇ ଭଉଣୀଙ୍କ ମେଳେ
ସୁଖର ଆସର ମେଲି ବସ ତୁମେ, ପତିତପାବନ ତଳେ ।
ଆଷାଢରେ ଥରେ ଶ୍ରୀକ୍ଷେତ୍ର ପାଶୋରି, ଉଭା ହୁଅ ନନ୍ଦିଘୋଷେ
ତାଳଧ୍ୱଜ ଆଉ ଦେବଦୋଳନରେ, ଭାଇ ଭଉଣୀଙ୍କ ପାଶେ ।
କେତେ ଶ୍ରଦ୍ଧାଳୁଙ୍କ ପୂର୍ଣ୍ଣ ହୁଏ ଆଶା, ତୁମକୁ ରଥରେ ପାଇ
ଚାହିଁଆ ଛାଇରେ ତୁମକୁ ପାଇରେ, କୋଟି ଶିର ଆସେ ନଇଁ ।
ରଥ ଦଉଡିକୁ ସ୍ପର୍ଶ କରି କେତେ, ଆତ୍ମା ଯେ ପବିତ୍ର ହୁଏ
ଶ୍ରଦ୍ଧା ସମର୍ପଣ ଥାଏ ସର୍ବମୁଖେ, ଶ୍ରୀକ୍ଷେତ୍ରୁ ଗୁଣ୍ଡିଚା ଯାଏଁ ।
ସିଂହଦ୍ୱାରେ ଥାଇ ଡାକି ଆଖିଲୁହ, ମା'ଲକ୍ଷ୍ମୀ ଦେଖାନ୍ତି ରୋଷ
ନଅଦିନ ପାଇଁ ପ୍ରାଣ ଯାଉ ନେଇ, ନିର୍ଦ୍ଦୟ ତୁ ନନ୍ଦିଘୋଷ ।
ନଅଦିନ ଲାଗେ ନଅ ବର୍ଷ ପରି, କେମିତି କାଟିବି ଦିନ
ସିଂହଦ୍ୱାରେ ଆଉ କୋଳାହଳ ନାହିଁ, ବଡଦାଣ୍ଡ ଦିଶେ ଶୂନ୍ୟ ।
ଗୁଣ୍ଡିଚାଠୁ ନେଇ ବାହୁଡା ଯାଏଁ ସେ, ମାଉସୀ ପଣତେ ବନ୍ଧା
ପଡି ପଡି ବାସି ହୁଏ ରୋଷଶାଳେ, ଷାଠିଏ ପଉଟି ରନ୍ଧା ।
ନଅଦିନ ପରେ ଶ୍ରୀକ୍ଷେତ୍ର ବାହୁଡା, ରଥାରୂଢ ସୁନାବେଶ
ଶ୍ରୀହୀନ ଶ୍ରୀକ୍ଷେତ୍ର ପୁଲକିତ ହୁଏ, ଲକ୍ଷ୍ମୀ ଓଠେ ଫୁଟେ ହସ ।

ରାଉରକେଲା, ଶକ୍ତି ନଗର

# ଗଜପତି କପିଳେନ୍ଦ୍ର ଓ ଆଦିକବି ସାରଳା– ଏକ ଆଲେଖ୍ୟ

ରଂଜନ କୁମାର ପଣ୍ଡା

ଜନଶ୍ରୁତି, ଲୋକକଥା, କିମ୍ବଦନ୍ତୀ ବା ପ୍ରଥା ପରମ୍ପରା ମଧ୍ୟରେ ଏକ ସମୃଦ୍ଧ ଐତିହ୍ୟ ରହିଯାଇଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ । ଯଦିଓ ସମୟୋପଯୋଗୀ ପ୍ରମାଣ ଭିତ୍ତିରେ ବିତର୍କିତ ହୋଇ ନଥାଏ ତଥାପି ଏହି ସବୁ ଉପାଦାନକୁ ଯୁକ୍ତି ସଂଗତ ସଂଯୋଗ କରାଇ ପାରିଲେ କେତେକ ଅସମାହିତ ପ୍ରଶ୍ନ ତାର ଉତ୍ତର ରଖିପାରନ୍ତା । ଏକଦା ଚନ୍ଦ୍ରଭାଗା ଓ ବୃଦ୍ଧା ମାତଙ୍ଗୀ ନଦୀମାନଙ୍କ କୋଳରେ ଗଢ଼ି ଉଠିଥିଲା ଜନପଦ ଝଙ୍କଡ । ଝଙ୍କଡ଼େଶ୍ୱର, ଝଙ୍କଡ଼େଶ୍ୱରୀ (ଶ୍ରୀଚଣ୍ଡୀ ସାରଳା) ଓ ମହାକବି ସାରଳା ଦାସ ଏହି ମଣ୍ଡଳର ସର୍ବସ୍ୱ । ଗଜପତି କପିଳେନ୍ଦ୍ରଦେବଙ୍କ ରାଜ ଦରବାରୀ ପଣ୍ଡିତମାନଙ୍କ ପ୍ରେରଣା ଓ ନିଷ୍ପତ୍ତିକ୍ରମେ ସାରଳା ଦାସ ଓ ତତ୍କାଳୀନ ଧର୍ମୀୟ ସଂସ୍କୃତିରୁ ଝଙ୍କଡ଼ ପ୍ରଗଣାରେ ଏକ ଧର୍ମୀୟ ବିବର୍ତ୍ତନ ସୃଷ୍ଟି ହୋଇଥିଲା । ସ୍ପଷ୍ଟ ନହେଲେ ମଧ୍ୟ ଖଣ୍ଡବିଖଣ୍ଡିତ ପ୍ରବାଦ ଆକାରରେ ଏବେ ମଧ୍ୟ ଲୋକମୁଖରେ ପ୍ରଚଳିତ । ଇତଃସ୍ତତଃ ଉପାଦାନମାନଙ୍କ ସହିତ ତତ୍‌କାଳରୁ ପ୍ରଚଳିତ ପ୍ରଥା ପରମ୍ପରା ଓ ଅନେକ ସ୍ମାରକୀ ମଧ୍ୟ ପ୍ରାମାଣିକ ତଥ୍ୟ ପ୍ରଦାନ କରି ଆସୁଛି ।

ଓଡ଼ିଶା ଇତିହାସ ପୃଷ୍ଠାରେ ପଞ୍ଚଦଶ ଶତାବ୍ଦୀ ସ୍ମରଣ ନିମନ୍ତେ ଏକ ସ୍ୱତନ୍ତ୍ର ଦାବି ରଖିଆସିଛି । ସମ୍ରାଟ କପିଳେନ୍ଦ୍ରଦେବଙ୍କ ଯୁଦ୍ଧ ଦୁନ୍ଦୁଭି ଓ ତରବାରୀର ଝଙ୍କାରରେ ଓଡ଼ିଶାର ବିସ୍ତାରିତ ଭୂଗୋଳ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଯେମିତି ପ୍ରତିବିମ୍ବିତ ପ୍ରତିଧ୍ୱନିତ ହୋଇ ଉଠୁଥିଲା, ଝଙ୍କଡ଼ ପ୍ରଗଣାର ଅଖ୍ୟାତ ପଲ୍ଲୀ ସାରୋଳ ଗ୍ରାମରେ ଓଡ଼ିଆ ଜାତି, ଜାତୀୟତା, ଭାଷା, ସାହିତ୍ୟ, ସଂସ୍କୃତି ଆଦି ଜନ୍ମଜାତକର କାୟା ସେତିକି ପୃଥୁଳ ଆକାର ଧାରଣ କରୁଥିଲା । ତତ୍କାଳୀନ ରକ୍ଷଣଶୀଳ ବିଧି ବ୍ୟବସ୍ଥା ସମାଜର ଛତ୍ରେ ଛତ୍ରେ ଅନୁଭୂତ ହେଉଥିଲା । ସଂସ୍କୃତ ଭାଷାରେ ଶାସ୍ତ୍ରାଭ୍ୟାସ ଓ ଲିଖନ ପଠନର ମୁଖ୍ୟ ମାଧ୍ୟମ ଯାହା କେବଳ କୁଳୀନ, ସମ୍ଭ୍ରାନ୍ତ, ବ୍ରାହ୍ମଣମାନଙ୍କ ଜନ୍ମଗତ ଅଧିକାର ଥିଲା । ଧର୍ମୀୟ ସ୍ରୋତର ବହୁଧାର ବିଭାଜନ ଯଥା– ଶୈବ, ବୌଦ୍ଧ, ଶାକ୍ତ, ବୈଷ୍ଣବ ଆଦି ସମୃଦ୍ଧ ସାମାଜିକ ଉଦାରବାଦର ଅଙ୍କୁଶ ସ୍ୱରୂପ ଥିଲା । ଏମିତି ଏକ ଘଡିସନ୍ଧି ମୁହୂର୍ତ୍ତରେ ଝଙ୍କଡ଼ ପ୍ରଗଣାର ଅଖ୍ୟାତ ପଲ୍ଲୀ ସାରୋଳ ଗ୍ରାମର କୃଷି କ୍ଷେତ୍ରରୁ ଶୁଭିଥିଲା ନବ ଜାଗୃତିର ପ୍ରଥମ ତୂର୍ଯ୍ୟନାଦ । କୃଷକ ସିଦ୍ଧେଶ୍ୱର ନିଜକୁ ଶୂଦ୍ର ଓ ଶାକ୍ତ ଘୋଷଣା କରି ଓଡ଼ିଆ ଭାଷାରେ କାବ୍ୟ ମହାକାବ୍ୟମାନ ରଚନା କରିଥିଲେ । ଚନ୍ଦ୍ରଭାଗା ନଦୀ ତଟସ୍ଥ ସାରୋଳ ଗ୍ରାମରେ ଅବସ୍ଥିତ ସାରୋଳ ଚଣ୍ଡୀଙ୍କ ମନ୍ଦିର ଦୀପ ଆଲୁଅରେ ତାଳପତ୍ର ଖେଦା ଓ ଲୌହ ଲେଖନୀରୁ ଜନ୍ମ ନେଲା ଓଡ଼ିଆ ମହାଭାରତ ମହାକାବ୍ୟ ସହିତ ଆହୁରି ଅନେକ ଆବିଷ୍କୃତ ଅନାବିଷ୍କୃତ କାବ୍ୟମାନ । ଓଡ଼ିଆ ଜାତି ପ୍ରାଣରେ ଅଭ୍ୟୁଦୟର ଅଙ୍କୁରୋଦ୍‌ଗମ ଘଟିଥିଲା ।

ଝଙ୍କଡ ପ୍ରଗଣା ଗଜପତିଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ସାରଳା ଦାସ ଓଡ଼ିଆ ମହାଭାରତ ମହାକାବ୍ୟ ରଚନା ସମାପ୍ତ କରି ଏହାର ପଠନ ପ୍ରଚାର ପ୍ରସାର କରିବା ପୂର୍ବରୁ ରାଜାଙ୍କ ସ୍ୱୀକୃତି ପ୍ରାପ୍ତି ନିମନ୍ତେ କପିଳେନ୍ଦ୍ରଦେବଙ୍କ ରାଜ ଦରବାରରେ ଅନୁଗ୍ରହ ଭିକ୍ଷା କରିଛନ୍ତି । ପ୍ରାକୃତ ଭାଷାରେ ଜଣେ ନିମ୍ନ କୁଳଜ ଶୂଦ୍ର ମହାଭାରତ ରଚନା କରିଥିବା ହେତୁ ଦେବଙ୍କ ବ୍ରାହ୍ମଣ ସଂସ୍କୃତ ପଣ୍ଡିତମାନଙ୍କର ଭ୍ରୂକୁଞ୍ଚନ ସୃଷ୍ଟି ହୋଇଛି । ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ବୈଷ୍ଣବ ଧର୍ମର ଆଦି ମୁଖ୍ୟ ଭୂସ୍ୱର୍ଗ । ସାରଳା ଦାସ ଯେ ଜଣେ ଶାକ୍ତ ବୈଷ୍ଣବ ଧର୍ମାବଲମ୍ବୀ ରକ୍ଷଣଶୀଳ ମହନ୍ତ ମହାରାଜ, ରାଜପୁରୋହିତ, ସଭାପଣ୍ଡିତ, ରାଜଗୁରୁମାନଙ୍କ ରୋଷ ଭର୍ତ୍ସନାର ଶିକାର ହୋଇଛନ୍ତି । ସବିନମ୍ର ଅନୁରୋଧରେ ଗଜପତିଙ୍କ ଅନୁଗ୍ରହ ମିଳିଲା । ରାଜ ଦରବାରରେ ଓଡ଼ିଆ

ମହାଭାରତ ପଠନ ତର୍ଜମା ନିମନ୍ତେ ଅନୁମତି ପ୍ରାପ୍ତ ହେଲେ ସାରଳା ଦାସ । ଜଟା ଶ୍ମଶ୍ରୁଧାରୀ ଗେରୁ ବସ୍ତ୍ର ପରିହିତ ଅଗ୍ନିରଙ୍ଗା ସୁଦୀର୍ଘ ସୁଠାମ ଅବୟବ ସାରଳା ଦାସ କୁଶ ଆସନ ମଣ୍ଡନ କଲେ । ପ୍ରଜ୍ୱଳିତ ଦୀପଶିଖାମାନଙ୍କରେ ପ୍ରତିଭାତ ହେଲେ ନବୋଦୟ ସୂର୍ଯ୍ୟପରି । ଛନ୍ଦ, ରସ, ରଙ୍ଗ, ଲୟ, ତାନ, ତାଳ, ତୋଳି ଉଚ୍ଚାଙ୍ଗ କଣ୍ଠରେ ଗାଇ ଚାଲିଲେ ସାରଳା ଦାସ ଓଡ଼ିଆ ମହାଭାରତ। ଝଙ୍କୃତ ହେଲା ଗଜପତିଙ୍କ ରାଜଦରବାର ଝଙ୍କଡେଶ୍ୱରୀଙ୍କ ବୀଣା ଝଙ୍କାରରେ । ସ୍ତମ୍ଭୀଭୂତ ହେଲେ ଶ୍ରୋତା ମଣ୍ଡଳୀ, ମନ୍ତ୍ରମୁଗ୍ଧ ହେଲେ ରାଜା, ଅମାତ୍ୟ, ରାଜପଣ୍ଡିତ, ରାଜ ପୁରୋହିତ, ରାଜଗୁରୁ ଓ ରାଜନ୍ୟମଣ୍ଡଳୀ । ଓଡ଼ିଆ ମହାଭାରତ ମହାକାବ୍ୟର ଭୂୟସୀ ପ୍ରଶଂସା କରାଗଲା । ବିଚାର ବିମର୍ଷ ଚାଲିଲା– ନିମ୍ନ କୁଳଜ ତ ଉଚ୍ଚ କୁଳଜ ହୋଇପାରିବେ ନାହିଁ । ଶୂଦ୍ର ତ ବ୍ରାହ୍ମଣ କି କ୍ଷତ୍ରିୟ ହୋଇପାରିବେ ନାହିଁ । ଏକମାତ୍ର ଉପାୟ ଶ୍ରୀକ୍ଷେତ୍ରରେ ଶ୍ରୀବିଷ୍ଣୁଙ୍କ ସମ୍ମୁଖରେ ବୈଷ୍ଣବ ଧର୍ମାବଲମ୍ବୀ ହେଲେ କୁଳ, ଗୋତ୍ର, ଜାତି, ବଂଶର ପରିଚୟ ଅନାବଶ୍ୟକ । ତତ୍କାଳରୁ ପ୍ରଚଳିତ ଏହି ଲୋକ କଥା ସ୍ମରଣୀୟ – ବାରଜାତି ତେର ଗୋଲା ବଇଷ୍ଣିମ ହେଲେ ସେ ସବୁ ଗଲା । ଅର୍ଥାତ ଯେଉଁ ଜାତି ଗୋତ୍ର ହୋଇଥାଅ ନା କାହିଁକି ବୈଷ୍ଣବ ଧର୍ମାବଲମ୍ବୀ ହେଲେ ସେସବୁର ଆବଶ୍ୟକତା ନଥାଏ । ସମ୍ମତି ପ୍ରଦାନ କଲେ ସାରଳା ଦାସ ସଂକୀର୍ଣ୍ଣ ସର୍ତ୍ତରେ । ଗଳାରେ ତୁଳସୀ ମାଳି ପରିଧାନ କଲେ । ଅନୁରୂପ ଶୈଳୀରେ ଚନ୍ଦନ/ତିଳକ ମଣ୍ଡନ କଲେ କପାଳରେ । ଗଜପତିଙ୍କ ଦରବାରରେ ଶିର ପହରଣ ହେଲା ପାଟ ବସ୍ତ୍ରରେ, ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ ସାରଳା ଦାସ । ଶୂଦ୍ରମୂନି ସାରଳା ଦାସଙ୍କ ରଚିତ ଓଡ଼ିଆ ମହାଭାରତ ସ୍ୱୀକୃତି ଲାଭ କଲା ଗଜପତିଙ୍କ ରାଜଦରବାର ରାଜପଣ୍ଡିତମାନଙ୍କ ଦ୍ୱାରା ।

କବିବର ଚିନ୍ତାମଣି ମହାନ୍ତି ଅସମ୍ପୂର୍ଣ୍ଣ କାବ୍ୟ ଝଙ୍କଡ଼ କିୟଂଦଶ ଉଲ୍ଲେଖନୀୟ– ଗୁଣୀ ଗୁଣଗ୍ରାହୀ ଉତ୍କଳ ସମ୍ରାଟ/କରି ସେହି ଗ୍ରନ୍ଥ ହିମାଳୟ ପାଠ । ଲଭି ପରିତୋଷ ରାଜ ଚକ୍ରବର୍ତ୍ତି/ ଅର୍ପିଲେ କବିଙ୍କୁ ବହୁ ଭୂସମ୍ପତ୍ତି ।

ଗଜପତିଙ୍କ ରାଜଦରବାରରୁ ଝଙ୍କଡ଼ ସମେତ କେତୋଟି ପ୍ରଗଣାର ମାଲିକାନା ସହିତ ରାଧା ଓ କୃଷ୍ଣ ଯୁଗଳ ମୂର୍ତ୍ତି ଉପଢ଼ୌକନ ସ୍ୱରୁପ ପ୍ରାପ୍ତ ହେଲେ ସାରଳା ଦାସ । ଶ୍ରୀଜଗନ୍ନାଥଙ୍କର କରପଲ୍ଲବ ତୁଳସୀ କଣ୍ଠି ମହାପ୍ରସାଦ ସହିତ ପହଞ୍ଚିଲେ ଝଙ୍କଡ଼ରେ । ସେଦିନ ଥିଲା କାର୍ତ୍ତିକ ପୂର୍ଣ୍ଣିମା ଚଣ୍ଡୀ ସାରଳାଙ୍କୁ ତୁଳସୀ କଣ୍ଠି ଲାଗି କରାଇ ଓ ମହାପ୍ରସାଦ ସମର୍ପଣ ହେଲା । ରାଧାକୃଷ୍ଣ ଯୁଗଳ ବିଗ୍ରହ ଗୋପିନାଥ ନାମଧାରଣ କଲେ । ସାରୋଳ ଗ୍ରାମରେ ଅନୁଗାମୀ ବୈଷ୍ଣବମାନଙ୍କର ମହୋତ୍ସବ ଚାଲିଲା ।

ଯେବେଠାରୁ ତନ୍ତ୍ରାୟିତ ଚଣ୍ଡୀ ସାରଳା ବୈଷ୍ଣବୀ ବାକ୍‌ଦେବୀ ସାରଦାରେ ପରିଣତ ହେବା ଆରମ୍ଭ ହେଲେ, ଷଷ୍ଠ ଶତାବ୍ଦୀରୁ ନିଷ୍ପ୍ରଭ ହୋଇ ଆସୁଥିବା ବୌଦ୍ଧଧର୍ମ ବୈଷ୍ଣବ ଧର୍ମ ସଂସ୍କୃତିରେ ଲୀନ ହୋଇଗଲା । ଜୟଦେବଙ୍କ ଦ୍ୱାରା ରଚିତ ବିଷ୍ଣୁଙ୍କ ଦଶ ଅବତାର ସ୍ତୋତ୍ରରେ ବୁଦ୍ଧଙ୍କୁ ନବମ ଅବତାର ରୂପେ ସ୍ଥାନିତ କରାଗଲା । ଓଡ଼ିଶାର ପୁର ପଲ୍ଲୀରେ ପୂଜିତା ବୌଦ୍ଧ ତନ୍ତ୍ର ଦେବୀମାନଙ୍କର ହିନ୍ଦୁ ଧର୍ମରେ ମିଶ୍ରଣ ଘଟିବା ସମାପ୍ତ ହେଲା । ତନ୍ତ୍ରାୟନରୁ ବୈଷ୍ଣବାୟନ ଏକ ପ୍ରକ୍ରିୟା ଝଙ୍କଡ଼ରେ ସଂଗଠିତ ହୋଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ବଳରାମ ଦାସଙ୍କ ଦ୍ୱାରା ରଚିତ ବଟଅବକାଶରେ ଏହି ଧର୍ମୀୟ ବିବର୍ତ୍ତନ ପ୍ରତିଫଳନ ଦେଖିବାକୁ ମିଳେ । କାତ୍ୟାୟନୀ, ସପ୍ତମାତୃକା, ବିମଳା, ବିରଜା, ସାରଳା ଆଦି ଚଉଷଠି ଯୋଗିନୀମାନେ ନିଜକୁ ଜଗନ୍ନାଥଙ୍କ ପାଖରେ ସମର୍ପଣ କରିଅଛନ୍ତି ।

ସାରଳା ଦାସଙ୍କର ଏତାଦୃଶ ପରିବର୍ତ୍ତିତ ଆଚରଣ ରକ୍ଷଣଶୀଳ ଶାକ୍ତମାନଙ୍କର ହୃଦୟ ବିଦାରଣ କଲା । ବୈଷ୍ଣବ ଧର୍ମ ଗ୍ରହଣ କରିଥିବା ହେତୁ ସାମାଜିକ ବାସନ୍ଦ ବ୍ୟବସ୍ଥା ଲାଗୁହେଲା । ଆତ୍ମୀୟ ସ୍ୱଜନମାନଙ୍କ ସମେତ ସାରଳା ଠାକୁରାଣୀଙ୍କ ପୂଜକ ସେବକମାନଙ୍କ ଦ୍ୱାରା ତୀବ୍ର ବିରୋଧର ସମ୍ମୁଖୀନ ହେଲେ । ଇଷ୍ଟଦେବୀ ଶାରଳା ଠାକୁରାଣୀଙ୍କୁ ଦର୍ଶନ କରିବା ଉପରେ କଟକଣା ଜାରି ହେଲା ମହାକବି ସାରଳା ଦାସଙ୍କୁ । ମାନବ ଇତିହାସରେ ଯାହା ଘଟି ଆସିଛି ଯୁଗପ୍ରବର୍ତ୍ତକ ମହାମନୀଷୀମାନଙ୍କ ଜୀବ ଦଶା ଭିତରେ । ଝଙ୍କଡ଼ ଇତିହାସର ଏହା ଏକ ସମ୍ବେଦନଶୀଳ ସମୟ । ଚନ୍ଦ୍ରଭାଗା ନଦୀ ତଟ ପୈତୃକ ବାସ ଛାଡ଼ି ବୃଦ୍ଧା ମାତଙ୍ଗୀ ନଦୀ ତଟ (ତେନ୍ତୁଳିପଦା ଗ୍ରାମ)ରେ ଅନୁଗାମୀମାନଙ୍କ ଦ୍ୱାରା ଏକ ଆଶ୍ରମ ସ୍ଥାପନ ହେଲା, ଯେଉଁଠାକୁ ବାହୁଡ଼ି ଆସିଲେ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ । ଯାହା ଅଦ୍ୟାବଧି ମୁନି ଗୋସାଇଁ ଆଶ୍ରମ ନାମରେ ପରିଚିତ । ଗୋପୀନାଥଜୀଉ ରାଧାକୃଷ୍ଣ ଏହି ଆଶ୍ରମର ଇଷ୍ଟଦେବ ଭାବେ ପ୍ରତିଷ୍ଠା ହେଲେ । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଭୂତ ଭୂସମ୍ପତ୍ତି ତେନ୍ତୁଳିପଦା ଗ୍ରାମରେ ସ୍ଥାପନା ହେଲେ । ଇଷ୍ଟଦେବୀ ସାରଳା ଠାକୁରାଣୀ ଦର୍ଶନରୁ ବଞ୍ଚିତ ଜନିତ ବିଷାଦରୁ ମୁକ୍ତି ନିମନ୍ତେ ଆଦି ବିଗ୍ରହଙ୍କ ସହ ସାମଞ୍ଜସ୍ୟ ଥାଇ ଅଷ୍ଟଭୁଜା ମହିଷମର୍ଦ୍ଦିନୀ ବିଗ୍ରହ

ମୁନିଗୋସେଇଁଙ୍କ ଆଶ୍ରମରେ ଉପାସିତ ହେଲେ । ପରବର୍ତ୍ତୀ ପର୍ଯ୍ୟାୟରେ ମୁନିଗୋସେଇଁଙ୍କ ଆଶ୍ରମକୁ ଦୃଷ୍ଟି ରଖି ପଶ୍ଚିମାଭିମୁଖୀ ହୋଇ ବିଲ୍ୱ ଶାରଳା ନାମରେ ସ୍ଥାପନା ହେଲେ । ଆଦି ବିଗ୍ରହଙ୍କ ଅନୁରୂପ ପୂଜାର୍ଚ୍ଚନା ନିମନ୍ତେ ନକଟସ୍ଥ ପଣ୍ଡା ପୂଜକମାନେ ଦାୟିତ୍ୱ ଗ୍ରହଣ କରିଥିଲେ । ଦେବୀଙ୍କୁ ବେଲପତ୍ର ସହିତ ତୁଳସୀ ଅର୍ପଣ ତାତ୍ପର୍ଯ୍ୟପୂର୍ଣ୍ଣ । ଶାକ୍ତ ତନ୍ତ୍ର ସମ୍ପର୍କିତ ପଶୁ ପକ୍ଷୀ ବଳି ପ୍ରୋକ୍ଷଣ ବ୍ୟବସ୍ଥା ଆରମ୍ଭରୁ କେବେ ନଥିଲା କି ଏବେ ମଧ୍ୟ ନାହିଁ । ଦେବୀ ପରମ ବୈଷ୍ଣବୀ ଅଟନ୍ତି । ମହାକବିଙ୍କ ମହାପ୍ରୟାଣ ପରେ ବୈଷ୍ଣବ ରୀତିରେ ସମାଧି ଦିଆଗଲା ଆଶ୍ରମ ପରିସରରେ । ତେନ୍ତୁଳିପଦାସ୍ଥ ମୁନିଗୋସେଇଁଙ୍କ ଆଶ୍ରମ କବିଙ୍କ ସମାଧି ପୀଠ ନାମରେ ପରିଚିତ ହୋଇ ଆସୁଅଛି ।

ସାରଳା ଦାସଙ୍କ ଶ୍ରୀକ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ ସ୍ମାରକୀ ସ୍ୱରୂପ ଅଦ୍ୟାବଧି କାର୍ତ୍ତିକ ମାସ ଶୁକ୍ଳ ଦ୍ୱାଦଶୀ ତିଥି ସନ୍ଧ୍ୟାରେ ଗୋପୀନାଥ ଜୀଉ ବିଜେ କରନ୍ତି ସାରଳା ଠାକୁରାଣୀ ମନ୍ଦିରକୁ । ଦେବୀଙ୍କ ପ୍ରତିନିଧି ସ୍ୱରୂପ ପରିଚ୍ଛା ମହାଶୟ ଚାମର ପକାଇ ଘଣ୍ଟ ଘଣ୍ଟା କାହାଳୀ ଆଳଟ ସହିତ ପାଛୋଟି ନିଅନ୍ତି ମନ୍ଦିର ବେଢ଼ା ଭିତରକୁ । ସାରଳା ମନ୍ଦିର ବେଢ଼ାରେ ସାତଦିନ ଗୋପୀନାଥ ଜୀଉ ଅବସ୍ଥାନ କରନ୍ତି । ଶୁକ୍ଳ ଚତୁର୍ଦ୍ଦଶୀ ଦିନଠାରୁ ତିନିଦିନ ଗୋପୀନାଥ ଜୀଉଙ୍କ ସହ ଠାକୁରାଣୀଙ୍କ ବିଜେ ପ୍ରତିମାକୁ ବାହାର ବିଜେ କରାଯାଏ । ମନ୍ଦିର ସମ୍ମୁଖ ରାସ ମଣ୍ଡପରେ ଉଭୟ ଦେବ ବିଗ୍ରହମାନଙ୍କୁ ପୂଜାପଣ୍ଡାଙ୍କ ଦ୍ୱାରା ପୂଜା ଆଳତି ସମର୍ପଣ କରାଯିବା ପରେ ବୈଷ୍ଣବମାନେ ରାଧାକୃଷ୍ଣଙ୍କ ରାସ ସଙ୍ଗୀତ ଗାନ କରନ୍ତି । ସାରଳାଦେବୀଙ୍କ ସମ୍ମୁଖରେ ସଜ୍ଜିତ କୁଞ୍ଜରେ ଗୋପୀନାଥ ରାସ ଖେଳନ୍ତି । କାର୍ତ୍ତିକ ପୂର୍ଣ୍ଣମା ଦିନ ସାରଳା ମଣ୍ଡଳ ପାଞ୍ଚକୋଶ ପରିଧିରୁ ପ୍ରଶାସନ ତରଫରୁ କଟୁଆଳଙ୍କ ନିମନ୍ତ୍ରଣ କ୍ରମେ ବିଭିନ୍ନ ମଠରେ ବୈଷ୍ଣବ ମହନ୍ତମାନେ ଆଡ଼ମ୍ବର ପୂର୍ଣ୍ଣ ଗସ୍ତରେ ନାପିତ ପରିଚାରକମାନଙ୍କୁ ସାଙ୍ଗରେ ନେଇ ସବାରି ଘୋଡ଼ା ପାଲିଙ୍କି ସାହାଯ୍ୟରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ସନ୍ଧ୍ୟା ସୁଦ୍ଧା ତୁଳସୀ କଣ୍ଠିମାଳ ମହାପ୍ରସାଦ ସହିତ ଉପସ୍ଥିତ ହୁଅନ୍ତି । ବୈଷ୍ଣବ ମହନ୍ତମାନଙ୍କ ଗହଣରେ ହରିନାମ କୀର୍ତ୍ତନର ଉଦ୍ଦଣ୍ଡ ଧ୍ୱନିରେ ବିଧିବଦ୍ଧ ଭାବରେ ମୁଖ୍ୟ ପୂଜକଙ୍କ ଦ୍ୱାରା ସାରଳା ଠାକୁରାଣୀଙ୍କୁ ତୁଳସୀ କଣ୍ଠିହାର ଲାଗି କରାଯାଇ ମହାପ୍ରସାଦ ସମର୍ପଣ କରାଯାଏ । ମନ୍ଦିର ପ୍ରଶାସନ ତରଫରୁ ବୈଷ୍ଣବମାନଙ୍କ ଉଦ୍ଦେଶ୍ୟରେ ପଂକ୍ତି ଭୋଜନର ଆୟୋଜନ ହୋଇଥାଏ । ସାତଦିନ ଗୋପୀନାଥଙ୍କ ରହଣି ମଧ୍ୟରେ ବୈଷ୍ଣବ ମହନ୍ତମାନଙ୍କ ଗହଣରେ ଉତ୍ସବ ମୁଖରିତ ହୋଇ ଉଠେ ସାରଳା ମନ୍ଦିର ପରିସର ।

ସାରଳା ମନ୍ଦିର, ଝଙ୍କଡ଼
ଜଗତସିଂହପୁର

# ତୁମ ସୁନାବେଶ

ଶରତ କୁମାରୀ ମିଶ୍ର

ତୁମ ସୁନାବେଶ ଦେଖି ମୁଁ ହରଷ
ପତିତ ପାବନ ବାନା
କି ସୁନ୍ଦର ରୂପ ନାହିଁତ ସନ୍ତାପ
ସନ୍ତୋଷ ନୟନ ସିନା ।
ସୁବର୍ଣ୍ଣର ହସ୍ତେ ଶଙ୍ଖଚକ୍ର ସାଜେ
ସୁନ୍ଦର ଦିଶଇ ତାହା
ସୁନ୍ଦର ଟାହିଆ କନକର ପରା
ମନ ମୋହିନିଏ ଯାହା ।
ବଡ ଭାଇଙ୍କର ସୁନାର ମୁଷଳ
ତାହା ସହିତରେ ହଳ
କନକ କରରେ ଶୋଭା ପାଉଥାଏ



ପ୍ରକାଶିତ କରେ ବଳ ।
ସୁନା ବରଣୀଙ୍କ ସୁନାର ଟାହିଆ
ସୁନାଚିତା ପାଖେ ଶୋହେ
ଦୁଇ ଭାଇଙ୍କର ଗେହ୍ଲା ଭଉଣୀ ସେ
କି ସୁନ୍ଦର କଥା କହେ ।
ହେ ଜଗତନାଥ କି ଲୀଳା କରୁଛ
ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ
ସ୍ରଷ୍ଟା ହେ ତୁମେ ଭାବେ ରାତିଦିନେ
ମୋ ଦୁଃଖ ଘେନ ସତ୍ୱର ।

ଏନ୍‌–୫/୧୨୮, ଆଇଆରସି ଭିଲେଜ, ଭୁବନେଶ୍ୱର

# ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠ ଦ୍ୱାରା ନିରାଶ୍ରୟଙ୍କୁ ଆଶ୍ରୟ ପ୍ରଦାନ

**୧.** କେନ୍ଦୁଝରର ଜିଲ୍ଲାର ଏକ ଅନାମଧେୟ ଗାଁ ଧୋବାଡ଼ିହର ଝିଅଟିଏ । ନାଁ ତାର ସୋନୀ । ପୂରା ନାଁ ସୋନୀ ବିଶ୍ୱକର୍ମା । ଦୁର୍ଭାଗ୍ୟ ତା'ର ଚିର ସହଚର । ଦାରିଦ୍ର୍ୟର ତାଡ଼ନା ସାଙ୍ଗକୁ ଦୃଷ୍ଟିହୀନା। ମା' ତା'ର ରକ୍ତ କର୍କଟ ରୋଗରେ ପୀଡ଼ିତା । ଏହା ସାଧାରଣଭାବେ ଯେକୌଣସି ଲୋକର ମନୋବଳକୁ ଭାଙ୍ଗି ଦେବାପାଇଁ ଯଥେଷ୍ଟ । କିନ୍ତୁ ଦୃଷ୍ଟିହୀନା ସୋନୀର ଦୂରଦୃଷ୍ଟି ଓ ଆତ୍ମବିଶ୍ୱାସ ଆଗରେ ଭାଗ୍ୟ ଆଜି ହାର ମାନିଛି । ଗଭୀର ଆତ୍ମବିଶ୍ୱାସ ଓ ଦୃଢ଼ ମନୋବଳ ସହିତ ଯିଏ ନିଜର ଲକ୍ଷ୍ୟ ପୂରଣ ଦିଗରେ ଆଗେଇ ଚାଲେ, ତାକୁ ସାହାଯ୍ୟ କରିବାକୁ ଈଶ୍ୱର ମଧ୍ୟ ପୃଥିବୀକୁ ଅବତରଣ କରିଥାନ୍ତି। ସୋନୀ କ୍ଷେତ୍ରରେ ଆଜି ଏହା ପୁଣି ଥରେ ପ୍ରମାଣିତ ହୋଇଅଛି । ସୋନୀ ପାଖକୁ ଆଜି ସରକାର ବଢ଼ାଇଛନ୍ତି ସହାୟତାର ହାତ ।

ସରକାରଙ୍କ ବାଣୀଶ୍ରୀ ଯୋଜନା ଓ ବିଭିନ୍ନ ଅନୁଷ୍ଠାନର ସହାୟତାରେ ବି.ଏ.ପାଶ୍ କଲା ପରେ ସୋନୀ ନିଜର ଏକ ବ୍ୟବସାୟିକ ଅନୁଷ୍ଠାନ ଖୋଲିବା ପାଇଁ ସ୍ୱପ୍ନ ଦେଖିଛି । ତା'ର ଇଚ୍ଛା ସେ ନିଜର ଏକ ଷ୍ଟେସନାରୀ ଦୋକାନ ଖୋଲିବ ଓ ସ୍ୱାବଲମ୍ବୀ ହୋଇ ନିଜ ପରିବାରର ଭରଣପୋଷଣ କରିବ । ଏହି ଆଶା ନେଇ ସେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଆର୍ଥିକ ସହାୟତା ପାଇଁ ଆବେଦନ କଲା । ସୋନୀର ଅଦମନୀୟ ଆତ୍ମବିଶ୍ୱାସ ଓ ମନୋବଳରେ ପ୍ରଭାବିତ ହୋଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ବ୍ୟବସାୟ ପାଇଁ ତାକୁ ୩୦ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ଏତଦ୍‌ବ୍ୟତୀତ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ସୋନୀର ପରିବାରକୁ ମାସକୁ ୩୫ କିଲୋ ଚାଉଳ ମଧ୍ୟ ଯୋଗାଇ ଦିଆଯାଉଛି । ସୋନୀର ସ୍ୱପ୍ନ ଆଜି ପୂରଣ ହେବାକୁ ଯାଉଛି । ସରକାରଙ୍କ ଆତ୍ମନିଯୁକ୍ତି କାର୍ଯ୍ୟକ୍ରମର ଅଂଶଭାବେ ସୋନୀ ଆଜି ଏକ ଉଦାହରଣ ପାଲଟି ଯାଇଛି । ତା'ର ଆଦର୍ଶ ରାଜ୍ୟର ଅନେକ ଯୁବକ ଯୁବତୀମାନଙ୍କ ପାଇଁ ଏକ ପ୍ରେରଣା ହୋଇଛି ।

**୨.** ଅନୁରୂପଭାବେ ଅନୁଗୁଳ ଜିଲ୍ଲା ପାଲଲହଡ଼ା ଅଞ୍ଚଳର ଛୋଟିଆ ଗାଁ ସାରବେଡ଼ା । ସେହି ଗାଁର ଅଧିବାସୀ ଇନ୍ଦ୍ର ମୁଣ୍ଡା ଓ ସୁବର୍ଣ୍ଣ ମୁଣ୍ଡା । ବି.ପି.ଏଲ. ପରିବାର । ସରକାରୀ ଯୋଜନାରେ ତାଙ୍କ ବାପା ବୁଧୁ ମୁଣ୍ଡା ପାଇଥିବା ଘର ଭଗ୍ନ ଅବସ୍ଥାରେ ରହିଛି । ଉଭୟ ଇନ୍ଦ୍ର ମୁଣ୍ଡା ଓ ସୁବର୍ଣ୍ଣ ମୁଣ୍ଡା ତାଳଚେର ଓ ଆଖପାଖ ଅଞ୍ଚଳରେ ଦିନ ମଜୁରିଆ ଭାବେ କାମ କରି ବହୁ କଷ୍ଟରେ ଗୁଜୁରାଣ ମେଣ୍ଟାନ୍ତି । ସବୁଦିନ କାମ ମିଳିବା ମଧ୍ୟ କଷ୍ଟକର । ପରିବାର କହିଲେ ସ୍ୱାମୀ, ସ୍ତ୍ରୀ ଓ ଗୋଟିଏ ଦେଢ଼ ବର୍ଷର ପୁଅ । ବହୁ କଷ୍ଟରେ ଚଳୁଥିବା ଏହି ପରିବାର ଉପରେ ଦୁଃଖର ପାହାଡ଼ ଲଦି ହୋଇ ଯାଇଥିଲା, ଯେତେବେଳେ ତାଙ୍କର ଦେଢ଼ ବର୍ଷର ପୁଅ ଗୁରୁତର ଭାବରେ ଅସୁସ୍ଥ ହୋଇଥିଲା । ଚିକିତ୍ସା ପାଇଁ ପ୍ରଥମେ ଅନୁଗୁଳ ସରକାରୀ ଡ଼ାକ୍ତରଖାନାରେ ପିଲାଟିକୁ ଭର୍ତ୍ତି କରାଯାଇଥିଲା । କିନ୍ତୁ ଅବସ୍ଥାରେ ଉନ୍ନତି ନ ଆସିବାରୁ ତାକୁ କଟକ ବଡ଼ ଡ଼ାକ୍ତରଖାନାକୁ ପଠାଇ ଦିଆଯାଇଥିଲା । MRI ପରେ ପିଲାଟିର ମସ୍ତିଷ୍କର କିଛି ଅଂଶ ସମ୍ପୂର୍ଣ୍ଣ ଭାବରେ ନଷ୍ଟ ହୋଇଥିବା ଜଣାପଡ଼ିଥିଲା । ଏହି ବ୍ୟୟବହୁଳ ଚିକିତ୍ସା ପାଇଁ ନିରୀହ ଆଦିବାସୀ ଦମ୍ପତିଙ୍କ ପାଖରେ ସମ୍ବଳ ବୋଲି କିଛି ନ ଥିଲା । ବି.ପି.ଏଲ ତାଲିକାଭୁକ୍ତ ଭାବରେ ପାଇଥିବା ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା କାର୍ଡ଼ ମଧ୍ୟ Validation କାରଣରୁ ଅକାମୀ ହୋଇଯାଇଥିଲା । ପୁଅର ଚିକିତ୍ସା ଖର୍ଚ୍ଚ ତୁଲାଇବା ଇନ୍ଦ୍ର ମୁଣ୍ଡା ପାଇଁ ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ଏହି ସମୟରେ କିଛି ସଦାଶୟ ଡ଼ାକ୍ତର ଯତ୍‌କିଞ୍ଚିତ ସାହାଯ୍ୟ କରି ପିଲାଟିର ଚିକିତ୍ସା ଜାରି ରଖିଥିଲେ ।

ଏ ସମ୍ପର୍କରେ ଦୈନିକ ସମ୍ବାଦପତ୍ର ସମାଜରେ ଗତ ମଇ ୨୯ ତାରିଖ ଦିନ ଖବର ପ୍ରକାଶିତ ହେବାପରେ ଏହା ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଅଣାଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ, କଟକ ଶ୍ରୀରାମ ଚନ୍ଦ୍ର ମେଡ଼ିକାଲ କଲେଜର ସୁପରିଣ୍ଟେଣ୍ଡେଣ୍ଟ ଓ ପିଲାଟିକୁ ଚିକିତ୍ସା କରୁଥିବା ଡ଼ାକ୍ତରମାନଙ୍କ ସହିତ ଯୋଗାଯୋଗ କରାଯାଇଥିଲା ଏବଂ OSTFରୁ ଅର୍ଥ ବ୍ୟୟ କରି ପିଲାଟିର ଚିକିତ୍ସା ଜାରି ରଖିବା ପାଇଁ ପରାମର୍ଶ ଦିଆଯାଇଥିଲା। ଏତଦ୍‌ବ୍ୟତୀତ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କ ରିଲିଫ ପାଣ୍ଠିରୁ ୧୦ ହଜାର ଟଙ୍କା ମଧ୍ୟ ମଞ୍ଜୁର କରିଛନ୍ତି।

ଶ୍ରୀ ଇନ୍ଦ୍ର ମୁଣ୍ଡାଙ୍କ ପରିବାରକୁ ଇନ୍ଦିରା ଆବାସ ଯୋଜନା ବା ମୋ କୁଡ଼ିଆ ଯୋଜନାରେ ଗୋଟିଏ ଘର ଯୋଗାଇ ଦେବାପାଇଁ ଜିଲ୍ଲାପାଳଙ୍କୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି । ଏତଦ୍‌ବ୍ୟତୀତ ଇନ୍ଦ୍ର ମୁଣ୍ଡାଙ୍କର ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା ଯୋଜନା କାର୍ଡ଼ revalidate କରିବା ପାଇଁ ପଦକ୍ଷେପ ନେବାକୁ ଅନୁଗୁଳ ଜିଲ୍ଲା ମୁଖ୍ୟ ଚିକିତ୍ସା ଅଧିକାରୀ (ସି.ଡ଼ି.ଏମ୍.ଓ)ଙ୍କୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ।

ପୁଅର ଉପଯୁକ୍ତ ଚିକିତ୍ସା ପାଇଁ ସରକାର ପଦକ୍ଷେପ ନେଇଥିବାରୁ ସରକାରଙ୍କ ବ୍ୟବସ୍ଥା ପ୍ରତି ଇନ୍ଦ୍ର ମୁଣ୍ଡାଙ୍କ ଭରସା ବଢ଼ାଇବାରେ ସଫଳ ହୋଇଛି ଏବଂ ପୁଅର ସ୍ୱାସ୍ଥ୍ୟର ଉନ୍ନତି ତାଙ୍କ ମନରେ ଦମ୍ଭ ଆଣିଛି ଓ ବଞ୍ଚିବା ପାଇଁ ତାଙ୍କର ଅଭୀପ୍ସା ବୃଦ୍ଧି ପାଇଛି ।

**୩.** ଢ଼େଙ୍କାନାଳ ଜିଲ୍ଲା ଓଡ଼ାପଡ଼ା ବ୍ଲକ୍‌ର ଧଳପୁର ଗାଁ । ସେହି ଗାଁର ସ୍ୱର୍ଗତ ଅକ୍ଷୟ ନାୟକଙ୍କ ପତ୍ନୀ ଶ୍ରୀମତୀ ବାସନ୍ତୀ ନାୟକ । ୬ ବର୍ଷ ତଳେ ଆକସ୍ମିକ ଭାବେ ସ୍ୱାମୀଙ୍କ ବିୟୋଗ ତାଙ୍କୁ ସମ୍ପୂର୍ଣ୍ଣ ମର୍ମାହତ କରିଦେଇଥିଲା । ପରିବାରରେ କେହି ରୋଜଗାରକ୍ଷମ ନ ଥିଲେ। ଚାଷବାସ କରି ଚଳିବା ପାଇଁ ଜମିବାଡ଼ି ମଧ୍ୟ ନଥିଲା। ତାଙ୍କ ପରିବାର ବି.ପି.ଏଲ. ତାଲିକାରେ ଅନ୍ତର୍ଭୁକ୍ତ ନଥିଲା । ଏଭଳି ପରିସ୍ଥିତିରେ ଛୋଟ ଛୋଟ ଦୁଇଟି ପିଲାଙ୍କ ଭବିଷ୍ୟତ ଗଠନ ତାଙ୍କ ପାଇଁ ଏକ ଆହ୍ୱାନ ହୋଇପଡ଼ିଥିଲା । କିନ୍ତୁ ଭାଗ୍ୟର ଏହି ବିଡ଼ମ୍ବନାରେ ସେ ହାରି ଯାଇ ନ ଥିଲେ । ଏହି ଦୁଃସମୟକୁ ସାହସର ସହ ମୁକାବିଲା କରିବା ପାଇଁ ସେ ନିଷ୍ପତ୍ତି ନେଇଥିଲେ । ପିଲାମାନଙ୍କୁ ଭଲ ମଣିଷ କରିବା ସ୍ୱପ୍ନ ତାଙ୍କ ମନୋବଳକୁ ଦୃଢ଼ କରିଥିଲା ।

ମାତ୍ର ଅଳ୍ପ କିଛି ମୂଳଧନରେ ସେ ଗୋଟିଏ ଛୋଟ ତେଜରାତି ଦୋକାନ ଆରମ୍ଭ କରି ତାଙ୍କର ଜୀବନଯାତ୍ରା ଆରମ୍ଭ କରିଥିଲେ । ପାଉଥିବା ବିଧବା ଭତ୍ତା ଓ ଦୋକାନରୁ ମିଳୁଥିବା ସ୍ୱଳ୍ପ ଆୟକୁ ନେଇ ବଡ଼ କଷ୍ଟରେ ତାଙ୍କ ସଂସାର ଚଳାଇ ଆସୁଛନ୍ତି । କିନ୍ତୁ ପିଲାମାନଙ୍କ ପାଠପଢ଼ା ଓ ପରିବାରର ବର୍ଦ୍ଧିତ ଖର୍ଚ୍ଚ ମେଣ୍ଟାଇବା ପାଇଁ ଏହା ଯଥେଷ୍ଟ ହୋଇପାରିନାହିଁ ।

ଜୀବନ ସଂଗ୍ରାମରେ ବାସନ୍ତୀ ଆଗକୁ ବଢ଼ିବାକୁ ଚାହାନ୍ତି । ନିଜ ବ୍ୟବସାୟକୁ ଟିକିଏ ବଢ଼ାଇବାକୁ ଚାହାନ୍ତି । ଏଥିପାଇଁ ସେ ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠରେ ଆସି ପହଞ୍ଚିଲେ ଏବଂ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସହୃଦୟତା ତାଙ୍କୁ ଜୀବନଯୁଦ୍ଧରେ ବିଜୟୀ ହେବାର ଆଶା ପ୍ରଦାନ କରିଥିଲା। ୨୦୧୩ ଜୁନ୍ ୨୪ ତାରିଖ ଦିନ ସେ ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠରେ ପହଞ୍ଚିଥିଲେ । ନିଜ ବ୍ୟବସାୟ ବଢ଼ାଇବା ପାଇଁ କିଛି ଅର୍ଥ ସାହାଯ୍ୟ କାମନା କରି ସେ ଆବେଦନ କରିଥିଲେ । ତାଙ୍କ ଦରଖାସ୍ତ ଉପରେ ତୁରନ୍ତ ବିଚାର କରି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଜୁନ୍ ୨୫ ତାରିଖ ଦିନ ୨୦ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ପିତୃହୀନ ଶିଶୁ ଦୁଇଟିଙ୍କୁ ମଣିଷ କରିବା ପାଇଁ ବାସନ୍ତୀଙ୍କ ଉଦ୍ୟମରେ ମୁଖ୍ୟମନ୍ତ୍ରୀଙ୍କ ସହାୟତା ଆଜି ତାଙ୍କୁ ଅନେକ ଶକ୍ତି ଓ ସାହସ ଯୋଗାଇଛି ।

❖ ❖ ❖



# ସମର୍ପଣ

ଡାକ୍ତର ସରୋଜିନୀ ଷଡ଼ଙ୍ଗୀ

ଆଶ୍ଚର୍ଯ୍ୟ ପଦ୍ମଫୁଲର
କେଶରରେ ପାଦଥାପି
ତୁମେ ଓହ୍ଲାଇବ ସତେ ମହାପ୍ରଭୁ !
ଅପୂର୍ବ ମହକଟିରେ ଭରିଦେଇ
ମୋ ଶୂନ୍ୟ କୋଠରୀ
କେଉଁ ଫୁଲ ଅର୍ପିବି ମୁଁ
ଚମ୍ପା, ମଲ୍ଲୀ, ଗୋଲାପ ନା
ସୁବାସିତ ଯୂଇ, ଜାଇ, ତମାଳ, ବକୁଳ
ଏସବୁ ତ ତୁମ ସୃଷ୍ଟି, ତୁମରି ସର୍ଜନା
ପ୍ରତି ଫୁଲ ପାଖୁଡାରେ
ତୁମ ଦିଆ ସୁଗନ୍ଧର ଅଖଣ୍ଡ ମହକ ।
ତୁମେ ଏ' ସାରା ବିଶ୍ୱର
ସୁବାସର ଉତ୍ସ
ସକଳ ଐଶ୍ୱର୍ଯ୍ୟ ଆଉ ସମସ୍ତ ସୌନ୍ଦର୍ଯ୍ୟ
ତୁମଠାରୁ ଆରମ୍ଭ ଓ ତୁମଠାରେ ଶେଷ ।
ଭାବିଥିଲି ଛୋଟ ଏଇ
ହୃଦୟକୁ ବାଢିଦେବି ତୁମ ପାଦତଳେ
ସମର୍ପଣ କରିଦେବି
ସବୁତକ ଅହଂକାର ଚାରୁ ଚରଣରେ ।
ଅଥଚ ହୃଦୟଟିର
ସ୍ୱଚ୍ଛ ଆସ୍ତରଣ ତଳେ
ପରସ୍ତ ପରସ୍ତ ଧୂଳି
ମିଛ ମିଛ ଆସ୍ଫାଳନ
ଗର୍ବ, ଈର୍ଷା, ଦମ୍ଭ, ଦ୍ୱେଷ
ପାହାଡ, ପାହାଡ
କେଉଁ ଗଙ୍ଗାଜଳ ସତେ



ଧୋଇଦେବ ସେ ଧୂଳିର କୃଷ୍ଣ ଆବରଣ ?
ଭାବିଥିଲି
ଶ୍ରୀଅଙ୍ଗ ସଜାଇ ଦେବି
କସ୍ତୁରୀରେ, ଗୋଲାପ ଜଳରେ
କୁଙ୍କୁମର ଧାରଟିଏ
ଲଗାଇବି ପ୍ରଭୁଙ୍କର ସ୍ନିଗ୍ଧ କପାଳରେ
ସଙ୍କୁଚିତ ଆତ୍ମା ମୋର
କେଉଁଠୁ ପାଇବ ରଙ୍ଗ
ତୁମେ ଯେ' ସବୁ ବର୍ଣ୍ଣର, ସ୍ନିଗ୍ଧ ମୂଳାଧାର ।
ଜାହ୍ନବୀ ଛୁଇଁ ଯାଆନ୍ତି ଯା'ର ନଖକୋଣ
ସପ୍ତସିନ୍ଧୁ ଧୋଇଥାନ୍ତି ଯା'ର ପଦ୍ମପାଦ
କେମିତି ପଖାଳିଦେବ
ଦୁଇ ଆଖି ଲୁହ ମୋର,
ତ୍ରିଭୁବନ ବ୍ୟାପି ତୁମ ଦିବ୍ୟସତ୍ତା
ତୁମ ଦେବ ରୂପର ସମ୍ଭାର ।
କୋଟି ନକ୍ଷତ୍ରର ସ୍ରଷ୍ଟା, ତୁମେ ନୀଳାଞ୍ଜନ
କେଉଁ ଶୁଭ୍ର ସଳିତାରେ
ନିରାଜନା କରିବି ମୁଁ
ତେଜିଦେବି ଭକ୍ତିଭରା ଦୀପ ?
ଆତ୍ମ ଅଭିମାନ ଆଉ ଆତ୍ମ ବଡିମାର ଯେତେ
ଅନ୍ଧକାର ଦୂର କରି
ତୁମେ ପ୍ରଭୁ ଜାଳିଦେବ
ମୋ ଆତ୍ମାର ଚଉଦିଗେ
ଜ୍ଞାନର ପ୍ରଦୀପ ?

ଲିଙ୍କ୍ ରୋଡ୍, କଟକ-୧୨

# ତୁମେ ବ୍ରହ୍ମ, ପରମାତ୍ମା, ତୁମେ ଭଗବାନ

ଇଂଜିନିୟର ରଘୁନାଥ ପାତ୍ର



ଏକ ହୋଇ ବହୁ ରୂପେ ପ୍ରତିଭାତ ହରି
ତୁମେ ବ୍ରହ୍ମ, ପରମାତ୍ମା, ତୁମେ ଭଗବାନ
ନିର୍ଗୁଣ ଓ ନିରାକାର, ଜ୍ଞାନୀ ଯୋଗୀ ପାଇଁ
ଭକ୍ତ ପାଇଁ ତୁମେ ପ୍ରଭୁ ସାକାର, ସଗୁଣ ।

ପ୍ରପଞ୍ଚ ଜଗତେ ହେଲେ ଅଧର୍ମର ବୃଦ୍ଧି
ଅବତାର ଛଳେ ଆସ ବହୁ ରୂପ ଧରି
କେବେ କର ସତ୍ୟଧର୍ମ ମର୍ଯ୍ୟାଦା ପ୍ରଚାର
କେବେ ପ୍ରେମ ବିତରଣ କର ଦେବ ହରି !

ଦିବ୍ୟ ଲୋକ ଶିକ୍ଷା ଦିଅ ଅବତାର ଛଳେ
ଋଷି ମୁନି ସନ୍ତେ ଦିଅ ସାନ୍ନିଧ, ଦର୍ଶନ
ତବ ହସ୍ତ ଆଜ୍ଞାମାଳେ ଅବତାର ସୃଷ୍ଟି
ଅବତାରୀ ତୁମେ ପ୍ରଭୁ ନୀଳାଦ୍ରି ମୋହନ ।

ଲୀଳା ଶେଷେ ଅବତାର ତୁମ ଦିବ୍ୟ ଅଂଗେ
ମିଳାଇ ଯାଆନ୍ତି ଯଥା ତରଙ୍ଗ ଅର୍ଣ୍ଣବେ
ତୁମ ପ୍ରୀତି ଜୀବହୃଦେ ଲାଗିଗଲେ ଥରେ
ବ୍ରତ ଯଜ୍ଞ ତୀର୍ଥ ସବୁ ତୁଚ୍ଛ ଲାଗେ ଭବେ ।

ଭକ୍ତ ନେତ୍ରେ ତୁମେ ସତ୍ୟ ଶିବ ଓ ସୁନ୍ଦର
ଶ୍ରୀକ୍ଷେତ୍ର ପରମ ଧାମ, ପରମ ପାବନ
ତୁମ ପରି ଜଣେ ନାହିଁ ଦୀନଜନ ବନ୍ଧୁ
ନୀଳାଚଳେ ଉଡେ ନେତ ପତିତ ପାବନ ।

ଗଜ ଉଦ୍ଧାରଣ ତୁମେ ମୃଗୁଣୀ ରକ୍ଷକ
ଶବରୀ ଉଚ୍ଛିଷ୍ଟ ଖିଆ, ଗୁହକର ବନ୍ଧୁ
ଅନ୍ତ୍ୟେଷ୍ଟି କ୍ରିୟା କରିଛ ଗୃଧ୍ର ଜଟାୟୁର
ଶତ୍ରୁଙ୍କୁ ବି ଦେଲ ଗତି ନୀଳାଚଳ ଇନ୍ଦୁ !

ବକା, ଶକଟା, ପୁତନା ଉଦ୍ଧାରିଛ ହରି
ଗୋପୀ ଗୋପାଳଙ୍କୁ ଦେଲ ଅପ୍ରାକୃତ ପ୍ରେମ
ସୂର୍ପଣଖା ମନୋବାଞ୍ଛା ପୂର୍ଣ୍ଣକଲ ପ୍ରଭୁ !
କୁବୁଜା କରି ଦ୍ୱାପରେ, ଧନ୍ୟ, ପୂର୍ଣ୍ଣକାମ !

ଦଣ୍ଡକ ଅରଣ୍ୟେ ତବ ରାମ ଅବତାରେ
ନିର୍ବିକଳ୍ପ ଯୋଗୀମୁନି ଇଚ୍ଛାକଲେ ହରି !

ମଧୁର ଭାବେ ଆବଦ୍ଧ ହେବା ପାଇଁ ସଙ୍ଗେ
ଗୋପୀ ହେଲେ ବୃନ୍ଦାବନେ ବିପିନ ବିହାରୀ

ଅପ୍ରାକୃତ ପ୍ରେମାର୍ଣ୍ଣବେ ମଜ୍ଜିଲେ ସକଳ
ତୁଚ୍ଛ କଲେ ଜାଗତିକ ସୁଖ ଦୁଃଖ ଦ୍ୱନ୍ଦ୍ୱ
ଗୋଲକ ଲୀଳା ରଚିଲ ମର୍ତ୍ତ୍ୟ ବୃନ୍ଦାବନେ
ରସାନନ୍ଦୀ ରାଧା ହୃଦାକାଶ ରାକା ଚାନ୍ଦ ।

କଳିଯୁଗେ ଭକ୍ତ ସାଲବେଗ ପାଇଁ ପ୍ରଭୁ !
'ବାହୁଡା'ରେ ଚାରିଦିନ ଅଟକିଲା ରଥ
ସଖା ବଳରାମ ଦାସ ଦୁଃଖେ ହୋଇ ଦୁଃଖୀ
ବଡ ଦାଣ୍ଡେ ଅଟକିଲ ପଦ୍ମାଳୟା ନାଥ ।

ଦାସିଆ ନଡିଆ ଆମ୍ବ ଖାଇଛ କି ନାହିଁ
କରମାବାଇ ଖେଚେଡି ଅତିପ୍ରିୟ ତବ
ମାଣିକ ହାତରୁ ତୁମେ ଖାଇଛ ବି ଦହି
ବିଶ୍ୱାବସୁ ବଂଶ ସଖା ଇନ୍ଦିରା ବାନ୍ଧବ ।

ଯେଉଁ ବିଶାଳ ଭୁଜରେ ନେଇଛ କୋଳେଇ
ଗୁହକ, ସୁଗ୍ରୀବ, ହନୁମାନ, ବିଭୀଷଣେ
ଗୋପୀ ଗୋପାଳ ଉଦ୍ଧବ ପାଣ୍ଡବଙ୍କୁ ହରି
ଭକ୍ତ ପାଇଁ ବିସ୍ତାରିତ ରତ୍ନ ସିଂହାସନେ !

ପାପୀ ତାପୀ ସମସ୍ତଙ୍କୁ ଉଦ୍ଧାରିବା ପାଇଁ
ଗୁଣ୍ଡିଚା ବାହୁଡା ଯାତ୍ରା କର ପ୍ରତିବର୍ଷ
ଜାତି ବର୍ଣ୍ଣ ବିଦ୍ୱେଷର ଊର୍ଦ୍ଧ୍ୱେ ଭାବଗ୍ରାହୀ
ଭାବ ବିନୋଦିଆ ପ୍ରଭୁ ଇନ୍ଦିରା ବିଳାସ ।

ବିଷୟେ ନରସି ନିତି କବି ରଘୁନାଥ
ବାତ୍ସଲ୍ୟ ରଜ୍ଜୁରେ ବାନ୍ଧି ନୀଳାଦ୍ରି ମାଉଙ୍ଗ
ଗେଲ କରେ ଶ୍ରୀମନ୍ଦିରେ ଦରଶନ କାଳେ
ବଳଭଦ୍ର ଭଦ୍ରା ସଙ୍ଗେ ନୀଳାଦ୍ରି ଅନଙ୍ଗ ।

---

ବୃନ୍ଦାବନ ଧାମ, ଲୋକନାଥ ରୋଡ୍
ପାଟଣାହାଟ ସାହି ଛକ, ପୁରୀ–୭୫୨୦୦୧

# ଭାଇ ଭଉଣୀଙ୍କ ଦେଉଳ

ମିନତି ମହାପାତ୍ର

ଏମିତି ଠାକୁର କେଉଁଠି ଅଛିରେ
କିଏ ସେ ପାରିବ କହି ?
ରତ୍ନ ସିଂହାସନେ ବସିଛି ମଉନେ
ଭାଇ ଭଉଣୀଙ୍କୁ ନେଇ ।
ଦେଉଳେ ପଶିଲେ ଭାଇକୁ ଦେଖିବ
ଭଉଣୀ ଦେଖିଲା ପରେ
ଦୀପଟିଏ ଜାଳି ଗରୁଡକୁ ଡାକି
କାଳିଆ ଦେଖିବ ପରେ ।
ଆଗକୁ ଆଗକୁ ମାଡିଯାଉଥିବ
ଡାକୁଥିବ ହାତଠାରି
ମୁହଁ ନଖୋଲିବ ଲୁହ ଶୁଖିଯିବ
ଯିବ ସେଠି ଥକା ମାରି ।
ଗହଳି ଠେଲିବ କାଳିଆ କହିବ
ଯାଆରେ ଏବେ ତୁ ଫେରି
ଭୋକ ହେଉଥିବ ଆନନ୍ଦ ବଜାରେ
ଖାଇବୁ ତୁ ପେଟ ଭରି ।



ଲକ୍ଷ୍ମୀଠାକୁରାଣୀ ବାଢି ଦେଇଛନ୍ତି
ଅପୂର୍ବ ରନ୍ଧା ତାଙ୍କର
ଖାଉ ଖାଉ ତୋର ପେଟ ଭରିଯିବ
ଆନନ୍ଦେ ଫେରିବୁ ଘର ।
ନିଇତି ଆସିବୁ ନିତି ଦେଖିବୁ
ନଥିବରେ ତୋର ଡର
ମୁଁ ତୋତେ ଦେଖିବି ତୁ ମତେ ଦେଖିବୁ
ସରିଯିବ ଦିନ ତୋର ।
ଏମିତି ଠାକୁର ଏଇଠି ଅଛିରେ
ସିଏ ଆମ ଜଗନ୍ନାଥ
ବଡଦାଣ୍ଡର ସେ ବଡ ଦେଉଳର
ଅନାଥ ଜନଙ୍କ ନାଥ ।

ଆଇ.ଆର.ସି.ଭିଲେଜ
ଏନ୍-୧/୨୦ ନୟାପଲ୍ଲୀ, ଭୁବନେଶ୍ୱର

# ଶ୍ରେଷ୍ଠଭିକ୍ଷା

ଶଶିଭୂଷଣ ଦାସ

ବାଙ୍କି ମୁହାଣରେ ଲାଗିଅଛି ଦାରୁ
ସପନେ କହନ୍ତି ଜଗତନାଥ
ଗଢ ମୋ ପ୍ରତିମା ଆଣି ଯତନରେ
ସ୍ଥାପ ମନ୍ଦିରରେ ହେ ମହାରାଜା ।

କେତେ କାରିଗର, କେତେ ମହାରଣା
ଗଲେଣି ବିବଶେ ବିଫଳ ଚିତ୍ତେ
ଲୌହଠାରୁ ବଳି ଶକ୍ତ ଦାରୁବର
ହାଣି ହେଉନାହିଁ ନିହାଣ ଘାତେ ।

ଅଣ୍ଟା ନଇଁଲାଣି, ଦେହ ଥରିଲାଣି
ବୃଦ୍ଧ ବିଶ୍ୱକର୍ମା ବିନୀତ ଭାବେ
ଉଭାହୋଇ ଆସି, କହିଲେ ଗଢିବି
ଏକୋଇଶ ଦିନ ସମୟ ମାଗେ ।

କେବଳ ଗୋଟିଏ ସର୍ତ୍ତ ଯେ ମୋହର
ନିବୁଜା ମନ୍ଦିରେ ଗଢିବି ଦିଅଁ
ଦ୍ୱାର ଖୋଲିବନି ନଲୋଡିବା ଯାଏ
ମହାରାଜ ମୋତେ ବଚନ ଦିଅ ।

ଏକ ପକ୍ଷ କାଳ ଅତୀତ ହେଲାଣି
ନିରାହାରେ କିବା ଛାଡିଲେ ପ୍ରାଣ
ଠକ ଠକ ଶବ୍ଦ ଶୁଭୁନାହିଁ କାହିଁ
ଉଦ୍‌ବେଗ ଅସ୍ଥିର ବିଭ୍ରାନ୍ତ ମନ ।

ଖୋଲିଦିଅ ଆରେ ମନ୍ଦିର ଦୁଆର
ଆଦେଶ ବାଢନ୍ତି ଗୁଣ୍ଡିଚା ରାଣୀ
ଖୋଲା ହେଲା ଦ୍ୱାର ଦେଖିଲେ ପାର୍ଶ୍ୱଦ
ଅନ୍ତର୍ଦ୍ଧାନ ଶିଳ୍ପୀ ମଉଡମଣି ।

ଦିଅଁ ଅସମ୍ପୂର୍ଣ୍ଣ, ହାତଗୋଡ ଶୂନ୍ୟ
ମାଦଳଙ୍କ ପରି ଦିଶଇ ତନୁ

କି କଲି କି କଲି ଭାଳି ହେଲେ ରାଣୀ
ବତ୍ସା ପ୍ରାଣପାତେ ଯେସନେ ଧେନୁ ।
ସହସା ଶୁଭିଲା ଅନ୍ତରୀକ୍ଷ ବାଣୀ
କାହିଁକି ମନରେ କରୁଛୁ ଖେଦ
ମଣିଷ ଇଚ୍ଛାରେ କିଛି ହୁଏନାହିଁ
ସବୁ ଦୁନିଆରେ ଦଇବ କୃତ ।

ମହାଭାବ ରୂପ ଏହି ଯେ ମୋହର
ଦେଖି ମୋହ ହେବେ ଜଗତ ଜନ
କାହିଁକି ଭାବୁଛ ବିକଳାଙ୍ଗ ବୋଲି
କାହିଁକି ଭାବୁଛ ମୁଁ ଅସମ୍ପୂର୍ଣ୍ଣ ?

ଭାଇ ଭଉଣୀଙ୍କୁ ସଙ୍ଗତରେ ନେଇ
ଆସିଛି ଜଗତ କଲ୍ୟାଣ ପାଇଁ
ଆରତ ଭଞ୍ଜନ କରିବି ମହୀରେ
ସାହାଣ ମେଳାରେ ଦର୍ଶନ ଦେଇ ।

ଚଣ୍ଡାଳ ହାତରୁ ବ୍ରାହ୍ମଣ ଛଡାଇ
ଖାଇବେ ମୋ ଲାଗି ମହାପ୍ରସାଦ
ଜାତି ଭେଦଭାବ ସବୁ ଲୋପ ପାଇ
ପ୍ରତିଷ୍ଠିତ ହେବ ମାନବବାଦ ।

ତବ ସେବା, ପୂଜା, ଅର୍ଚ୍ଚନାରେ ଆମ୍ଭ
ଦିନ ବିତିଯାଉ ହେ ଭାବଗ୍ରାହୀ
ବଂଶରେ ଆମ୍ଭର କେହି ନରହନ୍ତୁ
ଭବିଷ୍ୟତେ ଦାବି କରିବା ପାଇଁ ।

ଓଡ଼ିଶା ପ୍ରଶାସନିକ ସେବା ଅଧିକାରୀ
(ଅବସରପ୍ରାପ୍ତ)
ଚାଉଳିଆଗଞ୍ଜ ମେନ୍‌ରୋଡ୍
କଟକ–୪

# ହରି ତୁମେ ହର ଦୁଃଖ

ନିରଞ୍ଜନ ସେଠୀ



ଜଗତ ବିସ୍ତାରୀ ବାହୁକୁ ପ୍ରସାରୀ
ଦାରୁବ୍ରହ୍ମ ଦାରୁମୁରାରୀ
ମୁରଲୀର ସ୍ୱନ ଶୁଭେ ଘନଘନ
ଅନନ୍ତ ଯୁଗରୁ ହରି ।
ହରି ହରି ବୋଲି ଚାରିଆଡେ ହୁରି
ହରି ତୁମେ ହର ଦୁଃଖ,
ହରଣ କରିଛ ହଳାହଳ ବିଷ
ନ ହୋଇ କେବେ ବିମୁଖ ।
ତ୍ରେତୟା ଯୁଗରେ ସୀତା ଉଦ୍ଧରିଲ
ଦଶାନନ ବଧ କରି,
ସତ୍ୟ ଧର୍ମ ନ୍ୟାୟ ପ୍ରତିଷ୍ଠା କରିଲ
ରାମ ରୂପେ ଅବତରି ।
ପାଞ୍ଚାଳୀର ଦୁଃଖ ହରିଥିଲ ପ୍ରଭୁ
ହେଳେ ଦେଇ କୋଟି ବସ୍ତ୍ର,
ଚକ୍ରଧାରୀ ତୁମେ ଏ ମହୀମଣ୍ଡଳେ
ଚକ୍ରଧର ବ୍ୟୋମକେଶ ।
ଏ କଳି ଯୁଗରେ କଳିକୁ ଆଦରି
ବସିଅଛ ନୀଳାଚଳେ,
କେତେ ଲୀଳାଖେଳା କେତେ ନଟକୂଟ
ରଚୁଛ ଏ ମହୀତଳେ ।
ଦାସିଆ ବାଉରୀ ଯବନ ଭିକାରୀ
କାହିଁ କେତେ ଚଇତନ୍ୟ,
ତୁମରି ଦୁଆରୁ ଖାଲି ହାତେ କେହି
ଫେରିବା ଶୁଣିନି କାନ ।
ସୁନୀଳ ଆକାଶ ନୀଳନୀଳ ଢେଉ



ନୀଳ ପାରାବାର ସେତ,
ଅକ୍ଷୟ ଅଜୟ ବାନା ଫରଫର
ଉଡୁଥାଏ ଅବିରତ ।
ପାତକ ଚାତକ ପରାଏ ନେତ୍ରକୁ
ଚାହିଁଦେଲେ ନେତ୍ର ଢାଳି,
ମହାବାହୁ ତୁମେ ବାହୁ ମେଲିଦେଇ
ଶ୍ରୀଅଙ୍ଗରେ ନିଅ ତୋଳି ।
କାଳିଆ ଠାକୁର କାଳିଆ ସାଆନ୍ତ
କାଳିଆ ବଳିଆ ହରି,
କାଳିଆ ବଦନ କାଳୀୟ ଦଳନ
କାଳକୂଟ ପାନକାରୀ ।
ଏ ମହୀ ମଣ୍ଡଳେ କାହିଁ କେହି ଜଣେ
ତୋ'ପରି ଠାକୁର ଅଛି,
ବ୍ରହ୍ମଲୋକ ଯାଏଁ ବ୍ରହ୍ମାଣ୍ଡକୁ ଧରି
ଜଗନ୍ନାଥ ବୋଲାଉଛି ।
ତୁହି ଜଗନ୍ନାଥ ଜଗତର ନାଥ
ଜଗତ ମଉଡମଣି,
ତୋ ବିନା ଜଗତେ ଆନ କେହି ଜଣେ
ଅଛି ବୋଲି ନାହିଁ ଜାଣି ।
ମହାବାହୁ ତୁମେ ମହାବଳଶାଳୀ
ମହିମା ମଣ୍ଡିତ ହରି,
ମୁହିଁ ନିରଞ୍ଜନ ଦୀନ ଅକିଞ୍ଚନ
ଆରତେ ଡାକଇ ହରି ।

ଭି.ଏ– ୧୦/୧
ୟୁନିଟ୍–୨, ଭୁବନେଶ୍ୱର

# ଅଧାଗଢ଼ା ଦିଅଁ

ସୁପ୍ରଭା ମିଶ୍ର



କଳା କଟକଟ ମୁହଁଟିରେ
ଯୋଡ଼ିଏ ଚକାଡୋଳା
ବର୍ଷସାରା ବଡ଼ଦାଣ୍ଡଟାରେ
ଯାତରା ମେଳିଛ
ତୁମ ମନ ହେଲା
ତୁମେ ଗୋପ ବୃନ୍ଦାବନ
ମଥୁରା ଦ୍ୱାରକାରେ
ଏତେ ଲୀଳା କଲ
କୋଉ ବୁଝେଇଦେଲ
ସେ ବଂଶୀଟିର ଗୁଣ
ନା ଯୁଦ୍ଧ ଭୂଇଁରେ ରଥ ଉପରେ
ଅର୍ଜ୍ଜୁନ ପ୍ରତି ତୁମ ଭାଷଣ
ନା ଏକାନ୍ତରେ ବିଶ୍ୱାବସୁର ସେବାପୂଜା
ବୁଝିବି କେମିତି !
ଶ୍ରୀମନ୍ଦିର ନେତ
ସାରା ବିଶ୍ୱର ଲୋକଙ୍କୁ
ଶରଧାବାଲିକୁ ଡାକୁଥାଏ ?
ତୁମ ସୁନାପାଦ ସୁନାହାତ
ସୁନା ମୁକୁଟ ସୁନାଚିତା
ଆଉ ଯେତେ ଆୟ ଅଳଙ୍କାର
ଦେଖିବାକୁ
ଆମର ଏତେ ଲୋଭ କାହିଁକି ଯେ ?
ତୁମ ଗଜାନନ ବେଶ ଲାଗି
ଆମେ ଉହଳ ବିକଳ
ଠେଲାଠେଲି ଅଧରପଣା ଲାଗି
ପହଣ୍ଡିବେଳେ ତୁମ ଟାହିଆକୁ
ଟାଣିଟୁଣି ଏମିତି ଛିଣ୍ଡାଇବାରେ
କି ଫଳ ମିଳେ ସତେ
କି ଫଳ ତୁମ ଧଣ୍ଡା ତୁଳସୀ
ନିର୍ମାଲ୍ୟ ପାଇଲେ ?
ସୁନା ପିଲାଟି ପରି
ତୁନିହୋଇ ବସିଚ
ଆଖିମେଲି ସବୁ ଦେଖୁଚ
ଦେଉଳଠୁ ଦୂରେଇ ଯାଉଚି
ପାଣି ସମୁଦ୍ର
ମେଘନାଦ ପାଚେରୀରେ
ପିଟି ହଉଚି ଜନସମୁଦ୍ର
କି କିମିଆଁ ଜାଣିଚ
ଅଧାଗଢ଼ା ଦିଅଁ
ଚୁପ୍‌କିନି ଥରେ
ମୋ କାନରେ
କହି ଦଉନ ?

---

ପ୍ରାଧାପିକା, ବିଜେବି ସ୍ୱୟଂଶାସିତ କଲେଜ
ଭୁବନେଶ୍ୱର

# କେଉଁ ଜନ୍ମ ଲଭି ଅବା ହେବି ଭବୁ ପାରି

ଚନ୍ଦ୍ରଶେଖର ପଣ୍ଡା

ଗଙ୍ଗାଧର ପ୍ରିୟ ରଙ୍ଗାଧର ବାରେ ଶୁଣ
ସ୍ଥିର କର ମତି ମୋର ଦେଇ ଦିବ୍ୟ ଜ୍ଞାନ
କେଉଁ ଜନମ ଲଭିଲେ ପାଇବି ମୁକତି
ସେଥିପାଇଁ ଶ୍ରୀପୟରେ କରିବି ମୁଁ ସ୍ତୁତି ହେ
ଖଗପତି
ସ୍ଥିର କର ମୋର ମୂଢ ମତି ।

ହରଶିର ସୁଶୋଭିନୀ ବିଷ୍ଣୁପଦୀ ଜଳେ
ସ୍ନାନ କରି ମୁକତିବା ଲଭନ୍ତି ମୁଁ ହେଳେ
ଦେଖିଲି ଜନମିଛନ୍ତି ତହିଁ ମତ୍ସ୍ୟ ଯେତେ
ମୁକତି ନ ଲଭି କିମ୍ପା ମତ୍ସ୍ୟଜୀବୀ ହସ୍ତେ ହେ
ଲକ୍ଷ୍ମୀଧନ
ଅକାରଣେ ହରାନ୍ତି ପରାଣ ।

ଆହାର ବିହାର ଅବା ସୁସ୍ୱାଦୁ ଭୋଜନ
ତେଜି ମଜ୍ଜି ନିତି ଧ୍ୟାନେ ଭକ୍ଷିବି ପବନ
ମୁକତି ଲଭିବା ଆଶେ ମନ ବଳାଇଲି
କଳାପୀ ଅରି ଦର୍ଶନେ ନିରାଶ ମୁଁ ହେଲି ହେ
ଜଗଦୀଶ
ଫିଟିବ କେହ୍ନେ ମୋ ଭବ ପାଶ ।

ଧୂଳି ବୋଳି ଅଙ୍ଗେ ମୁହିଁ ଯୋଗୀଟିଏ ହେବି
ସଂସାର ସୁଖ ବିସର୍ଜି ଗୃହ ତ୍ୟାଗୀ ହେବି
ଗର୍ଦ୍ଦଭ ଦର୍ଶନେ ମୋର ମନ ମଉଳିଲା
ମଳିନ ବସ୍ତ୍ର ବହିତା ଦିନ କିମ୍ପା ଗଲା ହେ
ଦଇତାରି
କେଉଁ ଜନ୍ମେ ହେବି ଭବୁ ପାରି ।

ଗୃହସ୍ଥ ଜୀବନ ତେଜି ହେବି ବନବାସୀ
ଶ୍ରୀପୟରେ ଲୟ ରଖିଥିବି ନିତି ପ୍ରତି
ଦେଖି ବନରାଜ ହିଂସ୍ର ପ୍ରବୃତ୍ତି ମୋ ଚିତ୍ତ
ବଳୁନାହିଁ ତିଳେ ମୋର କହୁଛି ମୁଁ ସତ ହେ
ଦୀନବନ୍ଧୁ
ଲଙ୍ଘିବି କେମନ୍ତେ ଭବ ସିନ୍ଧୁ ।

ତେଜିବି ଆହାର ଜଳ ପାନେ ଦେବି ମନ
ଚିନ୍ତିଲି ମୁକତି ପାଇଁ କାଟିବି ମୁଁ ଦିନ
ଚକୋର ଦର୍ଶନେ ମନ ହେଲା ଆନମନା
ଜୀବନେ ତା ସୁଖ ନାହିଁ କିମ୍ପା ବିଡମ୍ବନା ହେ
ଚକ୍ରଧର
ସଦ୍‌ବୁଦ୍ଧି ଦେଇଣ ଉଦ୍ଧର ।

ବହୁ ସନ୍ତାନର ଅବା ହୋଇବି ଜନକ
ତନୟ ମୁଖ ଦର୍ଶନେ ଲଭିବି ମୁଁ ସୁଖ
କରି ଆଶ ଯେବେ ଶ୍ୱାନ ଶୂକର ଦେଖିଲି
ଜଗତ ଜୀବନ ମୋର ମନ ଗଲା ମରି ହେ
ଜନାର୍ଦ୍ଦନ
ଦିଅ ସଦବୁଦ୍ଧି ସଦଜ୍ଞାନ ।

ସୁମନେ ମୋର ଶେଷରେ ବଳିଲା ସୁମନ
ନିତି ପ୍ରତି ପ୍ରଭୁପଦେ ହେବି ସମର୍ପଣ
ପ୍ରତ୍ୟୁଷେ ଫୁଟି ପ୍ରଦୋଷେ ମଉଳିବା ଦେଖି
ମନ ବଳୁନାହିଁ ମୋର ଆହେ ଚକା ଆଖି ହେ
ବିଶ୍ୱସାକ୍ଷୀ
ତୁମ୍ଭଙ୍କୁ ଝୁରେ ମୋ ପ୍ରାଣପକ୍ଷୀ ।

ପ୍ଲଟ୍ ନଂ–୧୮୫୩/୩୭୨୦
କପିଳପ୍ରସାଦ, ମହତାବ ରୋଡ୍
ପୁରୁଣା ଭୁବନେଶ୍ୱର

# ମାଣିକ

**ସୁଶାନ୍ତ କୁମାର ମହାନ୍ତି**

କଳିଙ୍ଗ ରାଇଜ ଚିଲିକାର ତୀରେ
ପାଟଣା ଗାଆଁର ନାଆଁ
ସେଇ ଗାଆଁଟିରେ 'ମାଣିକ' ନାଆଁରେ
ସତେକି 'ଯଶୋଦା' ମାଆ ।
ମହାପୁରୁଙ୍କୁ ସେ ସପନେ ଦେଖିଛି
ପାହାନ୍ତା ପହର ବେଳେ
ଭାବନାରେ ତାର ଚତୁର୍ଦ୍ଧା ମୂରତି
ଦେଖେ ସୁନାବେଶ ବେଳେ ।

ଭାବୁ ଭାବୁ ସିଏ ସପନ ରାଇଜେ
ଶିରୀକ୍ଷେତ୍ର ଆଡୁ ଆସି
କଳା ଆଉ ଧଳା ଦୁଇଟା ଘୋଡାରେ
ସଇନିକ ଦୁଇ ବସି ।
ଓହ୍ଲାଇ ପଡିଲେ ମାଣିକ ଆଗରେ
ମାଣିକ ଭୟରେ ଥରେ
ତଥାପି ମନଟା ଦମ୍ଭକରି ସିଏ
ଦୁହିଁଙ୍କୁ ଚାହିଁଲା ବାରେ ।
ଗୋଟିଏ ସୈନିକ ଟିକିଏ ଗମ୍ଭୀର
ଚେହେରାଟା ଯାର ଗୋରା
ଶ୍ୟାମଳ ବର୍ଣ୍ଣର ସୈନିକ ଜଣକ
ଥିଲା କିନ୍ତୁ ହସକୁରା ।
ହସହସ କଣ୍ଠେ କହିଲା ମାଉସୀ
ଅଟକିଛୁ ତୋ ପାଖରେ
ତୋ ଦହିଟି ପରା ସବୁଠୁ ବଢିଆ
ଶୁଣିଲୁ ଗାଆଁ ଦାଣ୍ଡରେ ।

ବଢାଏ ବଢାଏ କରି ବଢାଇଲା
ଦୁଇ ହାଣ୍ଡି ଯାକ ଦହି
ଖାଇଗଲେ ଯାହା ମୁହଁକୁ ଲଗାଇ
ମାଣିକ ରହିଛି ଚାହିଁ ।





ଦୁଇ ଜଣ ଯାକ କହନ୍ତି– ମାଣିକ
ପଇସା କଉଡି କାଇଁ
ରାଜା ବିପଦରେ ପଡିଛନ୍ତି ବୋଲି
ଯୁଦ୍ଧକୁ ଯାଉଛୁ ଧାଇଁ ।
ରତ୍ନମୁଦି ରଖ ଆମଠାରୁ ବନ୍ଧା
ଏଇବାଟେ ରାଜା ଯିବେ
ତାଙ୍କୁ ଆମ କଥା କହି 'ମୁଦି' ଦେଲେ
ବାକି ପଇସା ସେ ଦେବେ ।
କହିବୁ କାଳିଆ, ବଳିଆ ଦି' ଭାଇ
ସୈନିକ ତୋ ରାଇଜର
ଯୁଦ୍ଧ କରିଗଲେ ଦହି ଖାଇଛନ୍ତି
ଦେଇ ମୁଦି ତୋ ପାଶର ।
ଶ୍ରୀପୁରୁଷୋତ୍ତମ ଗଜପତି ରାଜା
ଭାବ ଗଦଗଦ ହୋଇ
କହୁଥା'ନ୍ତି ହତଭାଗିନୀ ତୁହିରେ
ପ୍ରଭୁ ଗଲେ ଦହି ଖାଇ ।
ଚିହ୍ନି ପାରିଲୁନି ଏତେ ପାଖେ ଥାଇ
ଦୁଇ ଠାକୁରଙ୍କୁ ତୁହି
ଦହି ହାଣ୍ଡି ତାଙ୍କ ନଜର ଲାଗିଲା
ଆଦରରେ ଗଲେ ଖାଇ ।
ରାଜାଙ୍କ ଆଦେଶେ ସେଇଦିନୁ ଆଜି
ମାଣିକ ପାଟଣା ଗାଆଁ
ଏ ଜାତିର ଇତିହାସର ପୃଷ୍ଠାରେ
ରହିଗଲା ବଡ ନାଆଁ ।

୧୧୮୪/୧୬୬୫, ଭୋଇ ନଗର,
ରୋଡ୍–୮, ୟୁନିଟ୍–୯, ଭୁବନେଶ୍ୱର